# ଜ୍ୟୋତିଃସାର ରତ୍ନାବଳୀ



ଶ୍ରୀ ବାଇକୋଳି ମହାପାତ୍ର ଶର୍ମା

ସଂକଳତ



# Jotish-sar Ratnabali

BY

**Baikoli Mahapatro**

**Balukeswarpur,** KHALLIKOTE.

**(Ganjam)**

ପ୍ରଥମ ମୁଦ୍ରଣ

***PUBLISHED BY***

**Sri Sri Sri Kisore Chandra**

**Simha Dev**

**Rajah of Badagada Estate**

BERHAMPUR

(*Ganjam*)

1931

ମୂଲ୍ୟ ୨ ।

Rs 2/-

# ଗ୍ରନ୍ଥକାରଙ୍କ ପୁସ୍ତକାବଳୀ



| | | |
|---|---|---|
| ୧ | ଜ୍ୟୋତିଃସାର ରତ୍ନାବଳୀ | ଟ ୨ ୧ |
| ୨ | ତତ୍ତ୍ୱଜୀବନୀ ୧ମ ଭାଗ | ଟ ୦ ।/ |
| ୩ | ,, ୨ୟ ଭାଗ | ଟ ୦ ।/ |
| ୪ | ଚଣ୍ଡୀପୁରାଣ | ଟ ୦ ୩ |
| ୫ | ଯୋଗବାଶିଷ୍ଠ | ଟ ୦ । |
| ୬ | ମଣିରତ୍ନମାଳା | ଟ ୦ / |



ପ୍ରାପ୍ତିସ୍ଥାନ:—

*The Manager*

**The Students' Store**

**Book-Sellers & Publishers**

**P. O. BERHAMPUR**

*(Ganjam)*



ଶ୍ରୀ ଶ୍ରୀ ଶ୍ରୀ କିଶୋର ଚନ୍ଦ୍ର ସିଂହ ଦେବ

ରାଜା ସାହେବ (ବଡ଼ଗଡ଼)

# ଉତ୍ସର୍ଗପତ୍ର



ଶ୍ରୀମଦ୍ରାଧାକାନ୍ତଚରଣାରବିନ୍ଦଦ୍ୱନ୍ଦନିଷ୍ୟନ୍ଦମନ୍ଦମନ୍ଦମକରନ୍ଦ
ପାନମତ୍ତମିଳିନ୍ଦାୟମାନ, ଔଦାର୍ଯ୍ୟମାଧୁର୍ଯ୍ୟଶୌର୍ଯ୍ୟ
ଧୈର୍ଯ୍ୟାଦ୍ୟନେକଗୁଣଗଣବିଭୂଷଣ, ସାରାସାରବିବେକ
ବିଚାରବିଚାରଚତୁର ପ୍ରଜାଜନପରିପାଳନଧୁରନ୍ଧର,
ବଦାନ୍ୟାଗ୍ରଗଣ୍ୟ, ବୃହଦ୍ଦୁର୍ଗବସୁଧାମଣ୍ଡଳାଖଣ୍ଡଳ
ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ସିଂହ ଦେବ
ଶ୍ରୀ କରକମଳେଷୁ—

ଶ୍ରୀମନ୍ ମହାରାଜା ମହୋଦୟ,

ଜ୍ୟୋତିଃଶାସ୍ତ୍ର ଅଧ୍ୟୟନ କାଳରୁ ଜାତକବିଚାରୋପଯୋଗୀ ସାରଣୀଗୁଡ଼ିକ କ୍ରମାନ୍ୱୟରେ ସଂଗ୍ରହ କରିବା ବାସନା ମୋର ମନରେ ଜାଗ୍ରତ ହେଲା । ମୁଁ ସେଗୁଡ଼ିକ ସଂଗ୍ରହ କଲେ ସୁଦ୍ଧା ପୁସ୍ତକାକାରରେ ପ୍ରକାଶ କରିବା ସାମର୍ଥ୍ୟ ବହିର୍ଭୂତ ବିଚାରି ନୀରବ ଥିଲି । ସୌଭାଗ୍ୟକ୍ରମେ ବ୍ରହ୍ମପୁରରେ ଶ୍ରୀଛାମୁଙ୍କ ସହିତ ମୋର ପରିଚୟ ଘଟିଲା । ଶ୍ରୀଛାମୁ ପୁସ୍ତକଟି ଅମୂଲ୍ୟରତ୍ନ ଶ୍ରବଣ କରି ମୋତେ ଯେଉଁ ଉତ୍ସାହ ଦେଇଥିଲେ ତାହା ଅଲେଖନୀୟ । ଅତ୍ର ଶ୍ରୀଛାମୁଙ୍କ ସଦୟ ବ୍ୟବହାର ଓ ସୌଜନ୍ୟର ଉପହାରସ୍ୱରୂପ ଏହି ଜ୍ୟୋତିଃସାର ରତ୍ନାବଳୀ ଗ୍ରନ୍ଥଟି ଶ୍ରୀଛାମୁଙ୍କ ଶ୍ରୀକରରେ ଅର୍ପଣ କରୁଅଛି । ସାଦରେ ଗୃହୀତ ହେଲେ ଉପକୃତ ହେବି । ଇତି ।

୨୮ । ୧୨ । ୨୮ } ଅନୁଗ୍ରହାକାଂକ୍ଷୀ
ଶ୍ରୀ ବାଲୁକେଶ୍ୱରପୁର ଶାସନ } ଶ୍ରୀ ବାଇକୋଳି ମହାପାତ୍ର

# ନିବେଦନ



ସହୃଦୟ ପାଠକବୃନ୍ଦ,

ମୁଁ ଯେତେବେଳେ ଜ୍ୟୋତିଃଶାସ୍ତ୍ର ଅଧ୍ୟୟନ କଲି, ଦେଖିଲି ଉତ୍କଳାକ୍ଷରରେ କ୍ରମନିବଦ୍ଧ ଲିଖିତ ଖଣ୍ଡିଏ ହେଲେ ଜ୍ୟୋତିଷବିଷୟକ ଗ୍ରନ୍ଥ ନାହିଁ । ଯାହା କିଛି ଅଛି ତାହା ପ୍ରଥମ ଶିକ୍ଷାର୍ଥୀଙ୍କ ପକ୍ଷରେ ନିତାନ୍ତ ଦୁର୍ବୋଧ । ଭୁକ୍ତଭୋଗୀ ହେବା ହେତୁରୁ ସେହି କ୍ଲେଶ ଦୂରୀ-କରଣାର୍ଥ ଖଣ୍ଡିଏ ଜ୍ୟୋତିଷଗ୍ରନ୍ଥ ସଂଗ୍ରହ ବାସନା ମୋର ମନରେ ଉଦିତ ହେଲା । ସେହିଦିନଠାରୁ କ୍ରମରକ୍ଷାପୂର୍ବକ ସମସ୍ତ ବିଷୟ ସଂଗ୍ରହ କରିବାକୁ ଲାଗିଲି । ଅପାର କରୁଣାମୟ ପରମେଶ୍ୱରଙ୍କ କରୁଣାରୁ ମୋର ସେହି ଉଦ୍ଦେଶ୍ୟ ସଫଳ ହୋଇଅଛି ।

ବହିଟି ଲେଖାଯାଇଥିଲା ସତ୍ୟ; କିନ୍ତୁ ତାହା ପ୍ରକାଶ ହୋଇ ପାରିଥାନ୍ତା କି ନାହିଁ ସନ୍ଦେହ । ସୌଭାଗ୍ୟକ୍ରମେ ବୃହଦ୍‌ଗ୍ରାଧୀଶ୍ୱର ଗୁଣଗ୍ରାହୀ ଶ୍ରୀ ଶ୍ରୀ ଶ୍ରୀ କିଶୋରଚନ୍ଦ୍ର ସିଂହ ଦେବଙ୍କ ସହିତ ମୋର ପରିଚୟ ଘଟିଲା । ସେ ପୁସ୍ତକଟି ଦେଖି ଅତ୍ୟନ୍ତ ପ୍ରୀତ ହୋଇ ତାହାର କେତେକ ପରିବର୍ତ୍ତନ ଓ ପରିବର୍ଦ୍ଧନାଦି ନିମିତ୍ତ ଉପଦେଶ ଦେଇ ସମସ୍ତ ମୁଦ୍ରଣବ୍ୟୟ ଅକାତରଚିତ୍ତରେ ବହନ କଲେ । ପରମେଶ୍ୱର ତାହାଙ୍କୁ ପଟ୍ଟଦେବଙ୍କ ସହ ପରମସୁଖରେ ରଖନ୍ତୁ—ଏତିକି ମାତ୍ର ପ୍ରାର୍ଥନା ।

ଏହି ପୁସ୍ତକର ସଂଗ୍ରହ କାଳରେ ଜ୍ୟୋତିଷସିଦ୍ଧାନ୍ତସନ୍ଧିତ୍ସୁ, ଶ୍ରୀଯୁକ୍ତ ଦାମୋଦର ସାହୁ ମହୋଦୟ ମୋତେ ବିଶେଷ ସାହାଯ୍ୟ କରି-

ଅଛନ୍ତି । ଭଗବାନ୍ ତାହାଙ୍କର ମଙ୍ଗଳ କରନ୍ତୁ । ମଦୀୟ ମାତୁଳଦ୍ୱୟ ଶ୍ରୀଯୁକ୍ତ ନୀଳକଣ୍ଠ ସ୍ମୃତିଭୂଷଣ, ଶ୍ରୀଯୁକ୍ତ ସଦାଶିବ ମହେଶ୍ୱର ବିଦ୍ୟା-ବାଗୀଶ ଓ ଶ୍ରୀଯୁକ୍ତ ଗଣେଶ୍ୱର ମିଶ୍ର ମୋତେ ଉତ୍ସାହିତ କରିଥିବା ହେତୁରୁ ତାହାଙ୍କଠାରେ ଚିରକୃତଜ୍ଞତା ଜ୍ଞାପନ କରୁଅଛି ।

ପରିଶେଷରେ ବକ୍ତବ୍ୟ ଏହି ଯେ, ଜ୍ୟୋତିଷ ବହୁଳ ଓ କଠିନ ଶାସ୍ତ୍ର । ଏଥିରେ ଭ୍ରମ ରହିବା ଅବଶ୍ୟମ୍ଭାବୀ । ସହୃଦୟ ପାଠକମଣ୍ଡଳୀ କୌଣସି ଦୋଷ ଦେଖିଲେ ତାହା ମୋତେ ଜଣାଇ ଦେଲେ ଭବିଷ୍ୟତ ସଂସ୍କରଣରେ ସାବଧାନ ହେବି । ଗ୍ରନ୍ଥଟି ଜ୍ୟୋତିଷଶାସ୍ତ୍ର ପିପଠିଷୁ ବ୍ୟକ୍ତି-ମାନଙ୍କର ଉପକାରରେ ଲାଗିଲେ ଶ୍ରମ ସାର୍ଥକ ମନେ କରିବି । ଇତି ।

ଶ୍ରୀ ବାଲୁକେଶ୍ୱରପୁର ଶାସନ<br>୨୮ । ୧୨ । ୨୮ ।

ବିନୀତ<br>ଶ୍ରୀ ବାଇକୋଳି ମହାପାତ୍ର

# ଉପକ୍ରମଣିକା ।



ଜ୍ୟୋତିଷ ବେଦର ଏକ ପ୍ରଧାନ ବିଷୟ ବା ଅଙ୍ଗ । "ଶିକ୍ଷା କଳ୍ପୋ ବ୍ୟାକରଣଂ ନିରୁକ୍ତି ଛନ୍ଦ ଏବ ଚ । ଜ୍ୟୋତିଷଂ ଚେତି ବେଦନାଂ ଷଡ଼ଙ୍ଗାନ ପ୍ରଚକ୍ଷତେ ।" ଜ୍ୟୋତିଷ ଅତି ପୁରାତନ ଓ ଅଭ୍ରାନ୍ତ ଶାସ୍ତ୍ର । ଏହି ଶାସ୍ତ୍ର ପ୍ରଧାନତଃ ଅଷ୍ଟାଦଶ ଆର୍ଯ୍ୟଙ୍କ କର୍ତ୍ତୃକ ଅବିଷ୍କୃତ ହୋଇଥିଲା ।

ସୂର୍ଯ୍ୟଃ ପିତାମହୋ ବ୍ୟାସଃ ବଶିଷ୍ଠୋଽତ୍ରିଃ ପରାଶରଃ ।
କାଶ୍ୟପୋ ନାରଦୋ ଗର୍ଗୋ ମରୀଚିର୍ମନୁରଙ୍ଗିରାଃ ॥
ଲୋମଶଃ ପୌଲିଶଶ୍ଚୈବ ଚ୍ୟବନୋ ଯବନୋ ଭୃଗୁଃ ।
ଶୌନକୋଽଷ୍ଟାଦଶା ହ୍ୟେତେ ଜ୍ୟୋତିଃଶାସ୍ତ୍ରପ୍ରବର୍ତ୍ତକାଃ ॥

ଦୁଃଖର ବିଷୟ ଉପରୋକ୍ତ ଅବିଷ୍କର୍ତ୍ତା ଆର୍ଯ୍ୟଗଣଙ୍କ କୃତ ଜ୍ୟୋତିର୍ଗ୍ରନ୍ଥମାନ ବର୍ତ୍ତମାନ ଅଧିକାଂଶ ଦୁଷ୍ପ୍ରାପ୍ୟ । କେବଳ ଭୃଗୁ, ପରାଶର, ଗର୍ଗ, ଯବନେଶ୍ୱର ଓ ନାରଦ କୃତ ଗ୍ରନ୍ଥମାନ ଅମ୍ଭକୁ ମିଳୁଅଛି । ଅନ୍ୟାନ୍ୟ ଗ୍ରନ୍ଥକାରମାନଙ୍କ ସଂଗୃହୀତ ଗ୍ରନ୍ଥ ମଧ୍ୟରୁ କେତେ ପ୍ରମାଣ ଉଦ୍ଧୃତ ପୂର୍ବୋକ୍ତ ଗ୍ରନ୍ଥ ଦୃଷ୍ଟିଗୋଚର ହୁଏ ନାହିଁ ।

ଜ୍ୟୋତିଷକୁ ତିନି ଭାଗରେ ବିଭକ୍ତ କରାଯାଇଅଛି । (୧) ସିଦ୍ଧାନ୍ତସ୍କନ୍ଧ (୨) ସଂହିତାସ୍କନ୍ଧ (୩) ହୋରାସ୍କନ୍ଧ ।

(୧) ସିଦ୍ଧାନ୍ତସ୍କନ୍ଧ—ଏହାକୁ ଗଣିତ ଜ୍ୟୋତିଷ Astronomy କହନ୍ତି । ଏହାଦ୍ୱାରା ଗ୍ରହନକ୍ଷତ୍ରାଦିର ଗତି, ସ୍ଥିତି, ଉଦୟାସ୍ତାଦିକାଳ, ଗ୍ରହଣ

ଓ ରାଶିମାନଙ୍କର ଦୃଷ୍ଟ୍ୟାଦୃଷ୍ଟ୍ୟ କାଳ ନିରୂପଣ କରାଯାଏ । ପରବର୍ତ୍ତୀ ସଂହିତାସ୍କନ୍ଧ ଓ ହୋରାସ୍କନ୍ଧ ଏହି ଉଭୟ ବିଭାଗ ଏହି ସିଦ୍ଧାନ୍ତ ସ୍କନ୍ଧ ଉପରେ ନିର୍ଭର । ବିନା ଗଣିତରେ ଫଳିତାଦିର ବିଚାର ବୃଥା । ତେଣୁ ମହାମତି ଭାସ୍କରାଚାର୍ଯ୍ୟ ସ୍ୱୀକୃତ ଅଦ୍ୱିତୀୟ ସିଦ୍ଧାନ୍ତଗ୍ରନ୍ଥ ସିଦ୍ଧାନ୍ତଶିରୋମଣିରେ କହିଅଛନ୍ତି—

ଜ୍ୟୋତିଃଶାସ୍ତ୍ରଫଳଂ ପୁରାଣଗଣକୈରାଦେଶ ଇତ୍ୟୁଚ୍ୟତେ
ନୂନଂ ଲଗ୍ନବଲାଶ୍ରିତଃ ପୁନରୟଂ ତତ୍ ସ୍ପଷ୍ଟଖେଟାଶ୍ରୟଂ ।
ତେ ଗୋଲାଶ୍ରୟିଣୋଽନ୍ତରେଣ ଗଣିତଂ ଗୋଲୋଽପି ନ ଜ୍ଞାୟତେ
ତସ୍ମାଦ୍ ଯୋ ଗଣିତଂ ନ ବେତ୍ତି ସ କଥଂ ଗୋଲାଦିକଂ ଜ୍ଞାସ୍ୟତି ॥

ଶୁଭାଶୁଭ ଫଳ ଲଗ୍ନ ଓ ଗ୍ରହର ବଳାବଳ ଉପରେ ନିର୍ଭର କରେ । ସେହି ଗ୍ରହ ଓ ଲଗ୍ନର ସମସ୍ତ ସ୍ଥିତି ଗତି ବିଚାର ସିଦ୍ଧାନ୍ତସ୍କନ୍ଧରୁ କରାଯାଇ ଶୁଭାଶୁଭ ଫଳର କଳ୍ପନା କରାଯାଏ । ପ୍ରତ୍ୟକ୍ଷଦର୍ଶୀ ଆର୍ଯ୍ୟଭଟ୍ଟ ମହାମତି ଭାସ୍କରାଚାର୍ଯ୍ୟ, ବ୍ରହ୍ମଗୁପ୍ତ, ଶ୍ରୀପତି ଓ ଲଲ୍ଲାଦି ମନୀଷିଗଣ ଏହି ସିଦ୍ଧାନ୍ତସ୍କନ୍ଧ ସମ୍ବନ୍ଧେ ନିଜ ନିଜ ମତ ଲେଖି ଯାଇଅଛନ୍ତି । ସୂର୍ଯ୍ୟ-ସିଦ୍ଧାନ୍ତ, ସୋମସିଦ୍ଧାନ୍ତ, ସାକଲ୍ୟସିଦ୍ଧାନ୍ତ ଶିଷ୍ୟଧୀବୃଦ୍ଧିଦ, ସିଦ୍ଧାନ୍ତ ଶିରୋମଣି, ସିଦ୍ଧାନ୍ତରହସ୍ୟ, ଗୋଲତତ୍ତ୍ୱପ୍ରକାଶିକା ଓ ମହାତ୍ମା ଚନ୍ଦ୍ରଶେଖର କୃତ ସିଦ୍ଧାନ୍ତଦର୍ପଣ ପ୍ରଭୃତି ଗ୍ରନ୍ଥସମୂହ ସିଦ୍ଧାନ୍ତ ଭଣ୍ଡାରର ଏକ ଏକ ଦେଦୀପ୍ୟମାନ ରତ୍ନ କହିଲେ ଚଳେ । ପ୍ରତ୍ୟକ୍ଷ ଦର୍ଶନ, ଯନ୍ତ୍ର ସାହାଯ୍ୟ ବିନା ଗଣିତ ଜ୍ୟୋତିଷ ଜ୍ଞାନ ଜନ୍ମି ନ ପାରେ । ପଞ୍ଜିକାରେ ଗ୍ରହସ୍ଫୁଟାଦି ସମସ୍ତ ଆବଶ୍ୟକୀୟ ବିଷୟ ଥିବା ଯୋଗେ ଫଳିତ ଜ୍ୟୋତିଷ ଶିକ୍ଷାର୍ଥୀର ପକ୍ଷରେ ଗଣିତଜ୍ଞାନ ସାମାନ୍ୟ ଥିଲେ ଚଳେ ।

(୨) ସଂହିତାସ୍କନ୍ଧ:—ଏହି ବିଭାଗରେ ଯାବତୀୟ ଶୁଭାଶୁଭ କର୍ମର କାଳ ନିର୍ଣ୍ଣୟ କରାଯାଇଅଛି । ଶୁଭମୁହୂର୍ତ୍ତ ଓ ଅଶୁଭମୁହୂର୍ତ୍ତର ବିଚାର ବିଷ

ଅଶୁଭ ମୁହୂର୍ତ୍ତ ପରିତ୍ୟାଗ, ଅଦେଶ ଓ ତିଥି, ବାର ନକ୍ଷତ୍ର ଆଦି ସ୍ୱତନ୍ତ୍ର-ବହିତ ସମସ୍ତ କ୍ରିୟାଯୋଗ୍ୟ କାଳର ପରିଚୟ ଏଥିରୁ ମିଳେ । ତେଣୁ ପୂର୍ବାଚାର୍ଯ୍ୟଗଣ "ଜ୍ୟୋତିଷାମୟନଂ ନେତ୍ରଂ" ବୋଲି କହିଅଛନ୍ତି । ଏହି ବିଭାଗଟି ଧର୍ମସଂକ୍ରାନ୍ତ କର୍ମର ମୂଳଭିତ୍ତି । ଏହି ବିଭାଗରେ ହିନ୍ଦୁର ନିତ୍ୟାବଶ୍ୟକୀୟ କ୍ରିୟାଯୋଗ୍ୟ କାଳର ବିଚାର ଅଛି । ଏହାର ପ୍ରବର୍ତ୍ତକ ବ୍ୟାସ, ବଶିଷ୍ଠ, କାଶ୍ୟପ, ନାରଦ, ଅଙ୍ଗିରା, ମରୀଚି, ଲୋମଶ ଓ ମନୁ । ଏହି ବିଭାଗକୁ ବ୍ୟବହାରୀୟ ଜ୍ୟୋତିଷ କହନ୍ତି ।

(୩) ହୋରାସ୍କନ୍ଧ—ଗ୍ରହନକ୍ଷତ୍ରାଦିର ଗତି, ସ୍ଥିତି, ଉଦୟ, ଅସ୍ତ ଓ ଭୁକ୍ତିକୁ ନେଇ ତାହା ସହିତ ମାନବଜୀବନର ସମସ୍ତ ଶୁଭାଶୁଭ ଫଳ ସଂଯୁକ୍ତ କରାଯାଇଅଛି । ଗ୍ରହନକ୍ଷତ୍ରାଦିର ପ୍ରଭାବାନୁସାରେ ମାନବ କିପରି ସୁଖ, ଦୁଃଖ ଫଳ ଭୋଗ କରେ, କେଉଁ ଗ୍ରହର କାରକତ୍ୱ ଫଳ କଣ ? ଗ୍ରହମାନେ କେଉଁ ସ୍ଥାନରେ ଥିଲେ ଶୁଭଫଳଦାୟକ କେଉଁ ସ୍ଥାନରେ ଥିଲେ ଅଶୁଭ ଫଳ ପ୍ରଦାନ କରନ୍ତି ସେହି ସମସ୍ତ ବିଚାର ଏହି ଭାଗରେ ସନ୍ନିବିଷ୍ଟ । ଜନ୍ମକାଳର ଗ୍ରହ ସ୍ଥିତିକୁ ନେଇ ଏହି ବିଭାଗର ସମସ୍ତ ଶୁଭାଶୁଭ ବିଚାର କରାଯାଏ ।

ଗ୍ରହମାନଙ୍କର ଦଶାକାଳର ତାରତମ୍ୟର କାରଣ କ'ଣ ? ସେମାନଙ୍କର ଏହି ଯେଉଁ କାରକତ୍ୱ ଫଳର କଳ୍ପନା ପରସ୍ପରଠାରୁ ପୃଥକ୍ ଏହାର ବା କାରଣ କ'ଣ ? । ଏଥି ସମ୍ବନ୍ଧରେ ଉତ୍ତର ଦେବାକୁ ଗଲେ ପ୍ରତ୍ୟେକ ଗ୍ରହ ସମ୍ବନ୍ଧରେ ଅନେକ କଥା ଲେଖିବାକୁ ହେବ । ପୂର୍ବା-ଚାର୍ଯ୍ୟଗଣ ଏହି ସମସ୍ତ ବିଷୟ ସୂତ୍ରରୂପେ ଉଲ୍ଲେଖ କରି ଯାଇଅଛନ୍ତି । ପ୍ରମାଣାନୁସାରେ ଶୁଭାଶୁଭ ଫଳ ଯାହା ବିଚାର କରି ଠିକ୍ କରାଯାଏ ତାହ ଅକ୍ଷରେ ଅକ୍ଷରେ ପ୍ରତିଫଳିତ ହୁଏ ।

ଗ୍ରହ ପ୍ରଭାବରେ ମାନବ ପ୍ରତି ମୁହୂର୍ତ୍ତରେ ପ୍ରଭାବିତ । ଶୁଭାଶୁଭ ସ୍ଥାନ ବୋଲି ଯାହା ପୂର୍ବରୁ ଠିକ୍ କରାଯାଇଅଛି ସେହି ସ୍ଥାନସ୍ଥିତ ଗ୍ରହଗଣ ସେମାନଙ୍କର ବଳାବଳ ଅନୁସାରେ ଫଳପ୍ରଦ ହୁଅନ୍ତି ।

ଏହି ହୋରାସ୍କନ୍ଧ ( ଫଳିତ ଜ୍ୟୋତିଷ Astrology ) ର ପ୍ରବର୍ତ୍ତକ ପରାଶର, ଭୃଗୁ, ଅଙ୍ଗିରା, ବାଦରାୟଣ, ଜୀବଶର୍ମା, ବରାହମିହିର, ଗାର୍ଗି, ଯବନେଶ୍ୱର, କେରଳାଚାର୍ଯ୍ୟ ଓ ଖନା ଇତ୍ୟାଦି । ଏହିମାନଙ୍କର ମତାବଲମ୍ବନ କରି ଅନେକ ଆଚାର୍ଯ୍ୟ ନାନା ପ୍ରକାର ପ୍ରମାଣ ଦେଇ ଶୁଭାଶୁଭ ବିଚାର ନିମନ୍ତେ ଅନେକ ଗ୍ରନ୍ଥ ଲେଖି ଯାଇଅଛନ୍ତି । ଏଥି ମଧ୍ୟରୁ ବୃହତ୍ ପାରାଶରୀ ହୋରା, ଭୃଗୁସଂହିତା, କୁଣ୍ଡଳୀକଳ୍ପତରୁ କୋଷ୍ଠୀପ୍ରଦୀପ, ବୃହଜ୍ଜାତକ, ତାଜକ ନୀଳକଣ୍ଠୀ, ବୃହତ୍ କେରଳଶାସ୍ତ୍ରସଂଗ୍ରହ, ହୋରାସାର, ସର୍ବାର୍ଥଚିନ୍ତାମଣି, ସାରାବଳୀ, ଦୈବଜ୍ଞକାମଧେନୁ ଓ ମୁହୂର୍ତ୍ତମାର୍ତ୍ତଣ୍ଡାଦି ଗ୍ରନ୍ଥ ପ୍ରଧାନ । ଏହି ସମସ୍ତ ଫଳିତ ଜ୍ୟୋତିଷର ମୂଳଗ୍ରନ୍ଥ ।

ଏହି ପୁସ୍ତିକାରେ କେବଳ ଏହି ଉପରୋକ୍ତ ହୋରାସ୍କନ୍ଧ ବା ଫଳିତ ଜ୍ୟୋତିଷର ବିଚାର କରାଯାଇଅଛି । ଉପରୋକ୍ତ କେତେକ ଗ୍ରନ୍ଥମାନଙ୍କରୁ ଓ ଅନ୍ୟାନ୍ୟ କେତେକ ଗ୍ରନ୍ଥରୁ ପ୍ରମାଣ ସଂଗ୍ରହ କରି ଜାତକର ଶୁଭାଶୁଭ ଫଳର ସମସ୍ତ ବିଷୟ ଏଥିରେ ବିବୃତ ହୋଇଅଛି । ପ୍ରମାଣ ବାକ୍ୟର ପାର୍ଶ୍ୱରେ ଯେଉଁ ଗ୍ରନ୍ଥରୁ ତାହା ସଂଗ୍ରହ କରାଯାଇଅଛି ସେହି ଗ୍ରନ୍ଥର ସଂକ୍ଷିପ୍ତ ନାମ ମଧ୍ୟ ଦିଆଯାଇଅଛି ।

ପୁସ୍ତିକାର ଶେଷ ଭାଗରେ ଭାଗ୍ୟସୂଚକ ସାମୁଦ୍ରିକର ବିଚାର ମଧ୍ୟ କରାଯାଇଅଛି । ଏହି ବିଭାଗ ସାମୁଦ୍ରିକ ଶାସ୍ତ୍ରସଂଗ୍ରହ, ଜ୍ୟୋତିଷ-ତତ୍ତ୍ୱ ଓ ଭଲ ଦର୍ପଣାଦି ଗ୍ରନ୍ଥରୁ ସଂଗ୍ରହ କରାଯାଇଅଛି । ସର୍ବଶେଷରେ

ଗ୍ରହଶାସ୍ତ୍ରପ୍ରକରଣ ନାମରେ ଏକ ପରିଚ୍ଛେଦ ଶାସ୍ତ୍ରଦୀପିକା, ଶ୍ରୀନିବାସ ଦୀପିକା ଓ ଶାସ୍ତ୍ରତତ୍ତ୍ୱାଦିରୁ ସଂଗୃହୀତ ହୋଇ ଦିଆଯାଇଅଛି । ପରିଶିଷ୍ଟରେ ଦୃଷ୍ଟାନ୍ତାଦିର ବିଶଦ ବିବରଣ ମଧ୍ୟ ଲେଖା ଯାଇଅଛି । ବାରମ୍ବାର ବିଚାର ଓ ଠିକ୍ ତତ୍ତ୍ୱ ନିର୍ଣ୍ଣୟ ଉପରେ ଫଳିତ ଜ୍ୟୋତିଷ ନିର୍ଭର କରେ । ଏକ ବିଷୟ ସମ୍ବନ୍ଧେ ଭିନ୍ନ ଭିନ୍ନ ମତ ଦେଖାଗଲେ ଯାହା ଯୁକ୍ତିଗ୍ରାହ୍ୟ ଓ ପୂର୍ଣ୍ଣ ପ୍ରମାଣମୂଳକ ତାହା ଗ୍ରହଣ କରି ଫଳ ବିଚାର କଲେ ଶୁଭାଶୁଭ ଫଳ ଠିକ୍ ହେବ ।

ଫଳିତ ଜ୍ୟୋତିଷ ପାଠ କରିବା ପୂର୍ବେ ଗ୍ରହ ନକ୍ଷତ୍ରାଦିର ସମ୍ବନ୍ଧେ ସାମାନ୍ୟ ଜ୍ଞାନ ଥିବା ଆବଶ୍ୟକ । ଫଳିତ ଜ୍ୟୋତିଷ ରବି, ଚନ୍ଦ୍ର, ମଙ୍ଗଳ, ବୁଧ ବୃହସ୍ପତି, ଶୁକ୍ର, ଶନି ଏହି ସାତଟି ଗ୍ରହ; ରାହୁ ଓ କେତୁ ଦୁଇଟି ଛାୟାଗ୍ରହ; ମେଷ, ବୃଷ, ମିଥୁନ, କର୍କଟ ସିଂହ, କନ୍ୟା, ତୁଳା, ବୃଶ୍ଚିକ, ଧନୁ, ମକର କୁମ୍ଭ ଓ ମୀନ ଏହି ବାରଟି ରାଶି ଏବଂ ଅଶ୍ୱିନୀ ଆଦି ସତେଇଶଟି ନକ୍ଷତ୍ରକୁ ନେଇ ଗଠିତ ।

ଗ୍ରହମଣ୍ଡଳୀ ତିନି ଭାଗରେ ବିଭକ୍ତ । ଯଥା—(୧) ଦୀପ୍ତଗ୍ରହ (୨) ତାରାଗ୍ରହ (୩) ତମୋଗ୍ରହ ।

ରବି ଓ ଚନ୍ଦ୍ର ଉଭୟଙ୍କଦ୍ୱାରା ପୃଥିବୀ ଆଲୋକିତ ହୁଏ ବୋଲି ଏମାନେ ଦୀପ୍ତଗ୍ରହ । ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନି ଏମାନେ ତାରା ସଦୃଶ ଦେଖାଯାଆନ୍ତି ବୋଲି ଏମାନେ ତାରାଗ୍ରହ । ରାହୁ ଓ କେତୁଙ୍କର କିରଣ ନ ଥିବା ଯୋଗୁଁ ଏମାନେ ତମୋଗ୍ରହ ।

ସୂର୍ଯ୍ୟର ଚତୁଃପାର୍ଶ୍ୱରେ ନକ୍ଷତ୍ରପୁଞ୍ଜପରିବେଷ୍ଟିତ ଗୋଟିଏ ମାର୍ଗର କଳ୍ପନା କରାଯାଏ । ଏହି ମାର୍ଗଟିର ନାମ ରାଶିଚକ୍ର । ଏହା ସମ ଦ୍ୱାଦଶ ଭାଗରେ ବିଭକ୍ତ । ପ୍ରତ୍ୟେକ ଭାଗର ନାମ ରାଶି । ରାଶି ଶବ୍ଦର

ଅର୍ଥ ସମଷ୍ଟି । ଏଠାରେ ମଧ୍ୟ ସେହି ଅର୍ଥ । କେତେଗୁଡ଼ିଏ ନକ୍ଷତ୍ରପୁଞ୍ଜ ସମଷ୍ଟିର ନାମ ରାଶି । ଏହି ନକ୍ଷତ୍ରପୁଞ୍ଜ ଅବସ୍ଥାନର ଆକାରକୁ ନେଇ ମେଷାଦି ନାମ କଳ୍ପିତ । ଜ୍ୟୋତିଷ୍ଚକ୍ରରେ ସତେଇଶଟି ନକ୍ଷତ୍ରପୁଞ୍ଜ ଅବସ୍ଥିତ । ପ୍ରତ୍ୟେକ ରାଶି ୨¼ ନକ୍ଷତ୍ର ନେଇ ଗଠିତ । ପ୍ରତ୍ୟେକ ନକ୍ଷତ୍ର ୧୩ ଅଂଶ ୨୦ କଳା । ପ୍ରତ୍ୟେକ ରାଶି ୩୦ ଅଂଶ, ସୁତରାଂ ସମଗ୍ର ରାଶିଚକ୍ର ୩୬୦ ଅଂଶରେ ବିଭକ୍ତ ।

ଏହି ଯେଉଁ ରାଶିଚକ୍ର କଥା ଉଲ୍ଲେଖ କରାଗଲା, ତାହାର ପ୍ରତ୍ୟେକ ଦ୍ୱାଦଶ ଭାଗର ପରିମାଣ ସମାନ । କିନ୍ତୁ ଦେଶ ବିଦେଶରେ ସେମାନଙ୍କର ଉଦୟାସ୍ତ କାଳ ପୃଥକ୍ ଓ କାଳର ପରିମାଣ ମଧ୍ୟ ଭିନ୍ନ । ପୃଥିବୀର ସମସ୍ତ ଭାଗକୁ ଏହି ଦ୍ୱାଦଶ ରାଶି ଦେଖାଯାଆନ୍ତି ନାହିଁ । ଯେଉଁ ସ୍ଥାନର ଅକ୍ଷାଂଶ ୬୯-୭୦ ସେହି ସ୍ଥାନମାନଙ୍କୁ ଧନୁ, ମକର, ଏହି ଦୁଇଟି ରାଶି ଦେଖାଯାଆନ୍ତି ନାହିଁ; କାରଣ ସେହି ସ୍ଥାନମାନଙ୍କର ଲମ୍ବାଂଶ ୨୦।୦୦ ମିଥୁନାନ୍ତ ଉତ୍ତରକ୍ରାନ୍ତି ୨୪ । କର୍କଟାନ୍ତ ଉତ୍ତର-କ୍ରାନ୍ତି ୨୦।୪୦ । ଏହା ଲମ୍ବାଂଶଠାରୁ ଅଧିକ ହେବାରୁ ମିଥୁନ ଓ କର୍କଟ କ୍ଷିତିଜବୃତ୍ତରେ ଉପରେ ଭ୍ରମଣ କରନ୍ତି । ସୁତରାଂ ଏମାନେ ସର୍ବଦା ଦୃଷ୍ଟ ହୁଅନ୍ତି ।

ମକରାନ୍ତ ଦକ୍ଷିଣକ୍ରାନ୍ତି ୨୦।୪୦ ଧନୁରନ୍ତ ଦକ୍ଷିଣକ୍ରାନ୍ତି ୨୮ । ଏହି ହେତୁରୁ ଏହି ରାଶିଦ୍ୱୟ କ୍ଷିତିଜବୃତ୍ତର ନିମ୍ନରେ ରହି ଭ୍ରମଣ କରିବା ହେତୁରୁ ଏମାନେ ସର୍ବଦା ଅଦୃଶ୍ୟ ।

ଯେଉଁ ସ୍ଥାନର ଅକ୍ଷାଂଶ ୬୮।୧୫ ସେହି ସ୍ଥାନକୁ ବୃଶ୍ଚିକ, ଧନୁ, ମକର, କୁମ୍ଭ ଏହି ଚାରୋଟି ରାଶି ସର୍ବଦା ଅଦୃଶ୍ୟ ଓ ବୃଷ, ମିଥୁନ, କର୍କଟ, ସିଂହ ଏହି ଚାରିଟି ରାଶିଚକ୍ରସ୍ଥ ସର୍ବଦା ସମୁଦିତ । ଏହି ଏହି ସ୍ଥାନମାନଙ୍କର ଲମ୍ବାଂଶ ୧୧।୪୫ ମେଷାନ୍ତ ଉତ୍ତରକ୍ରାନ୍ତି ୧୨ ଅଂଶ,

ସିଂହାନ୍ତ ଉତ୍ତରକ୍ରାନ୍ତି ୧୨ ଅଂଶ, ସୁତରାଂ ବୃଷ, ମିଥୁନ, କର୍କଟ, ସିଂହ ଏହି ଛଗୋଟି ରାଶି ଲମ୍ବାଂଶ ଉତ୍ତରକ୍ରାନ୍ତି ହେତୁରୁ ସେହି ସ୍ଥାନରେ ସର୍ବଦା କ୍ଷିତିଜର ଉପରେ ରହି ଭ୍ରମଣ କରନ୍ତି । ଏ ହେତୁରୁ ସର୍ବଦା ଦେଖାଯାଆନ୍ତି ।

ତୁଳାର ଶେଷରେ ଦକ୍ଷିଣକ୍ରାନ୍ତି ୧୨ ଅଂଶ, କୁମ୍ଭ ଶେଷରେ ଦକ୍ଷିଣକ୍ରାନ୍ତି ୧୨ ଅଂଶ । ଦକ୍ଷିଣକ୍ରାନ୍ତି ହେତୁରୁ କଥିତ ରାଶିଚତୁଷ୍ଟୟ କ୍ଷିତିଜ ବୃତ୍ତର ନିମ୍ନରେ ରହି ଭ୍ରମଣ କରିବା ହେତୁରୁ ସର୍ବଦା ଅଦୃଶ୍ୟ ।

ଯେଉଁ ସ୍ଥାନର ଅକ୍ଷାଂଶ ୯୦ (ମେରୁ ପର୍ବତରେ) ସେହି ସ୍ଥାନରେ ତୁଳାଦି ଛ'ଟି ରାଶି ସର୍ବଦା ଅଦୃଶ୍ୟ । ମେଷାଦି ଛଟି ରାଶି ସର୍ବଦା ଦୃଶ୍ୟ । ଏହି ସ୍ଥାନର ଲମ୍ବାଂଶ ନାହିଁ । ସେ ଦେଶର ବିଷୁବଦ୍ ବୃତ୍ତହିଁ କ୍ଷିତିଜାକାର । ଏ ହେତୁରୁ ମେଷାଦି ଛ'ଟି ରାଶି ଉତ୍ତରକ୍ରାନ୍ତି ହେତୁରୁ କ୍ଷିତିଜର ଉପରେ ଓ ତୁଳାଦି ଛଟି ରାଶି ଦକ୍ଷିଣକ୍ରାନ୍ତି ହେତୁରୁ କ୍ଷିତିଜର ନିମ୍ନରେ ରହନ୍ତି । ଏ ହେତୁରୁ ମେଷାଦି ଛ ଗୋଟି ରାଶି ସର୍ବଦା ଦୃଶ୍ୟ ଓ ତୁଳାଦି ଛ'ଟି ରାଶି ସର୍ବଦା ଅଦୃଶ୍ୟ । ( ଏହି ଯେଉଁ ଅକ୍ଷାଂଶ କଥା ବୋଲଗଲା ତାହା ପରେ ଲେଖାଯିବ)

ଆକାଶ କକ୍ଷର ପରିମାଣ ୧୮୭୧୨୦୬୯୨୦୦, ୦୦, ୦୦, ୦୦ ଯୋଜନ । ଏଥି ମଧ୍ୟରେ ପୃଥିବୀ, ରାଶିଚକ୍ର, ଗ୍ରହଗଣ ଓ ନକ୍ଷତ୍ର କକ୍ଷ ଅବସ୍ଥିତ ।

ଆମ୍ଭେ ବାସ କରୁଥିବା ଏହି ପୃଥିବୀ କଦମ୍ବପୁଷ୍ପ ପ୍ରାୟ ଗୋଲାକାର । କଦମ୍ବପୁଷ୍ପ ଯେପରି ସମସ୍ତ ଭାଗରେ କେଶର ପରିବେଷ୍ଟିତ ଏହି ପୃଥିବୀ ମଧ୍ୟ ସେହିପରି ବନ, ଗ୍ରାମ ଓ ପର୍ବତଦ୍ୱାରା ପରିବେଷ୍ଟିତ । ପୃଥିବୀସ୍ଥ ବାୟୁର ନାମ ଆବହ, ତଦୁପରି ପ୍ରବହ,

ତାହାର ପର ଉପର ଉପର ଭାବେ ଉଦ୍‌ବହ, ସଂବହ, ସୁବହ, ପରିବହ ଓ ପରାବହ ନାମକ ବାୟୁସ୍ତରମାନ ଅବସ୍ଥିତ ।

କେହିଁ କେହିଁ ମାନଙ୍କ ମତରେ ପୃଥିବୀ ସ୍ଥିର ଓ ଗ୍ରହଗଣ ଗତିଶୀଳ । ଏହାର ପ୍ରମାଣ ଲକ୍ଷ ଓ ଶ୍ଳୋକ ଇତ୍ୟାଦି ହିନ୍ଦୁ ଗ୍ରନ୍ଥକାରଗଣ ଦେଇଅଛନ୍ତି । କିନ୍ତୁ ଏମାନଙ୍କର ଯୁକ୍ତି ଭିତ୍ତିହୀନ ।

ଚତୁର୍ଥ ଶତାବ୍ଦୀର ପ୍ରଧାନ ଜ୍ୟୋତିଷାଚାର୍ଯ୍ୟ ମହାମତି ଆର୍ଯ୍ୟଭଟ୍ଟ ସ୍ୱକୃତ ଆର୍ଯ୍ୟସିଦ୍ଧାନ୍ତନାମକ ଗ୍ରନ୍ଥରେ ପୃଥିବୀ ଗତିଶୀଳ ଓ ଏହାର ଆହ୍ନିକ ଓ ବାର୍ଷିକ ଉଭୟବିଧ ଗତି ବିଦ୍ୟମାନ ବୋଲି ଠିକ କରିଅଛନ୍ତି । ସେ କହନ୍ତି, ନୌକାରୋହୀଗଣ ତୀରସ୍ଥିତ ଅଚଳ ବୃକ୍ଷ ଓ ପର୍ବତଗୁଡିକୁ ଯେପରି ନୌକାର ବିପରୀତ ଦିଗରେ ଗମନଶୀଳ ମନେ କରନ୍ତି ସେହିପରି ପୃଥିବୀର ନିୟତ ଭ୍ରମଣ ହେତୁରୁ ଅଚଳ ଗ୍ରହ-ନକ୍ଷତ୍ରଗୁଡ଼ିକ ପୂର୍ବଦିଗରୁ ପଶ୍ଚିମକୁ ଗଲା ପରି ଦେଖାଯାଆନ୍ତି ।

ଆର୍ଯ୍ୟ ଭଟ୍ଟଙ୍କର ଯୁକ୍ତି :—

ଅନୁଲୋମଗତିନୌସ୍ଥଃ ପଶ୍ୟତ୍ୟଚଲବିଲୋମଗଂ ଯଦ୍ୱତ୍ ।
ଅଚଲାନି ଭାନି ତଦ୍ୱତ୍ ସମପଶ୍ଚିମଗାନି ଲଙ୍କାୟାଂ ॥ (ଆ. ସି)

ଆର୍ଯ୍ୟଭଟ୍ଟ ଭୂପୃଷ୍ଠସ୍ଥ ଦ୍ରଷ୍ଟା ପକ୍ଷରେ ଜ୍ୟୋତିଷମଣ୍ଡଳୀର ଗତି କିପରି ଦୃଷ୍ଟ ହୁଏ ତାହା ବୁଝାଇଅଛନ୍ତି । ସେ କହନ୍ତି, ନକ୍ଷତ୍ର କକ୍ଷର ଅଧୋଭାଗରେ ଯଥାକ୍ରମେ ଶନି, ବୃହସ୍ପତି, ମଙ୍ଗଳ, ରବି ଶୁକ୍ର ବୁଧ ଓ ଚନ୍ଦ୍ର ଅବସ୍ଥାନ କରିଅଛନ୍ତି । ସେମାନଙ୍କର ଅଧୋଭାଗରେ ଆକାଶର କେନ୍ଦ୍ରରୂପେ ପୃଥିବୀ ରହିଅଛି । ଏହି ଗୋଲାକାର ପୃଥିବୀ ବୃତ୍ତାକାର ଗ୍ରହଚକ୍ରର କେନ୍ଦ୍ର ଓ ଏହା ମୃତ୍ତିକା, ବାୟୁ, ଜଳ ଓ ତେଜପୂର୍ଣ୍ଣ ।

ତାହାଙ୍କର ଯୁକ୍ତି ଏହି:—

ଭଣାମଧଃ ଶନୈଶ୍ଚରସୁରଗୁରୁଭୌମାର୍କଶୁକ୍ରବୁଧଚନ୍ଦ୍ରାଃ ।
ତେଷାମଧଶ୍ଚ ଭୂମିର୍ମେଧୀଭୂତା ଖମଧ୍ୟସ୍ଥା ॥ ଆ. ସି.
ବୃତ୍ତଭପଞ୍ଜରମଧ୍ୟେ କକ୍ଷ୍ୟା ପରିବେଷ୍ଟିତଃ ଖମଧ୍ୟଗତଃ
ମୃଜ୍ଜଲଶିଖିବାୟୁମୟୋ ଭୂଗୋଲଃ ସର୍ବତୋ ବୃତ୍ତଃ ॥

ଭାସ୍କରାଚାର୍ଯ୍ୟଙ୍କ ମତରେ (୧୦୩୬ ଶକାବ୍ଦରେ ବର୍ତ୍ତମାନ) ପ୍ରବହ ବାୟୁଦ୍ୱାରା ଆଘାତ ପ୍ରାପ୍ତ ହୋଇ ନକ୍ଷତ୍ରକକ୍ଷା, ଗ୍ରହକକ୍ଷା ଓ ପୃଥିବୀ ଅନବରତ ପରିଭ୍ରମଣ କରୁଅଛନ୍ତି । ତାହାଙ୍କର ଯୁକ୍ତି ଏହି:—

ନକ୍ଷତ୍ରକକ୍ଷା ଖଚରୈଃ ସମେତା
ଯସ୍ମାଦତସ୍ତେନ ସମାହତୋଽୟଂ ।
ଭୂପଞ୍ଜରଃ ଖେଚରଚକ୍ରଯୁକ୍ତୋ
ଭ୍ରମତ୍ୟଜସ୍ରଂ ପ୍ରବହାନିଳେନ ॥ ସି. ଶି.

ପାଶ୍ଚାତ୍ୟ ପଣ୍ଡିତଗଣ ପୃଥିବୀର ଭ୍ରମଣଗତି ସ୍ୱୀକାର କରନ୍ତି । ଆର୍ଯ୍ୟ ସିଦ୍ଧାନ୍ତକାରଗଣଙ୍କ ମତରୁ ପାଶ୍ଚାତ୍ୟ ପଣ୍ଡିତମାନଙ୍କ ମତର ପ୍ରଭେଦ ଏତିକି ଯେ—ପାଶ୍ଚାତ୍ୟ ପଣ୍ଡିତମାନେ ନକ୍ଷତ୍ରକକ୍ଷା ଓ ଯଥାକ୍ରମେ ଅଧୋଭାବେ ଶନି, ବୃହସ୍ପତି, ମଙ୍ଗଳ, ରବି, ବୁଧ, ଶୁକ୍ର, ଚନ୍ଦ୍ର ଓ ପୃଥିବୀ ଅବସ୍ଥିତ ବୋଲି ଠିକ୍ କରିଅଛନ୍ତି । ପ୍ରକୃତରେ ଦେଖିବାକୁ ଗଲେ ବୁଧ ସୂର୍ଯ୍ୟର ନିକଟବର୍ତ୍ତୀ ଗ୍ରହ ।

ପୃଥିବୀର କକ୍ଷ ଆବର୍ତ୍ତନ କାଳକୁ ଦୈନିକ ଓ ସୂର୍ଯ୍ୟର ଚତୁଷ୍ପାର୍ଶ୍ୱର ଘୂର୍ଣ୍ଣନ କାଳକୁ ବାର୍ଷିକ ଗତି ବୋଲାଯାଏ । ପୃଥିବୀର କକ୍ଷ ଆବର୍ତ୍ତନ କାଳ ଦ୬୦।୧୦ଲିପ୍ତା, ଏହା ଏକ ସାବନ ଦିବସ ବା ଏକ ସୂର୍ଯ୍ୟୋଦୟଠାରୁ ଅପର ଦିନ ସୂର୍ଯ୍ୟୋଦୟ କାଳ । ସୂର୍ଯ୍ୟର ଚତୁଷ୍ପାର୍ଶ୍ୱରେ

ଏକବାର ଭ୍ରମଣ କରିବା ଲାଗି ପୃଥିବୀକୁ ୩୬୫ ଦିନ ୧୫ ଦଣ୍ଡ ୩୦ ପଳ ୩୧ ବିପଳ ଲାଗେ ବୋଲି ସୂର୍ଯ୍ୟସିଦ୍ଧାନ୍ତର ମତ । ଭାସ୍କରାଚାର୍ଯ୍ୟ ଏହି ପ୍ରଦକ୍ଷିଣ କାଳ ୩୬୫ ଦିନ ୧୫ ଦଣ୍ଡ ୩୦ ପଳ ୨୨ ବିପଳ ୩୦ ପର ବୋଲି ସ୍ଥିର କରିଅଛନ୍ତି । ପାଶ୍ଚାତ୍ୟ ପଣ୍ଡିତଗଣ ଏହାର କାଳ ଦି ୩୬୫।୧୫।୨୨।୫୭ ବୋଲି ଠିକ୍ କରିଅଛନ୍ତି । ଏହି ପ୍ରଦକ୍ଷିଣ କାଳକୁ ବର୍ଷମାନ ବୋଲାଯାଏ । ଏହି ବର୍ଷମାନକୁ ଦ୍ୱାଦଶ ଭାଗ କଲେ ଭାଗକୁ ୩୦ ଦିନ ୨୬ ଦଣ୍ଡ ୧୬ ପଳ ୩୧ ବିପଳ ୫୨ ପର ପଡ଼ିଲା । ଏହା ପୃଥିବୀର ଏକରାଶି ସ୍ଥିତି କାଳ ବା ଏକ ସୌରମାନ ମାସ । ସୌରମାନ ମାସ ଏକ ସଂକ୍ରାନ୍ତିଠାରୁ ଅପର ସଂକ୍ରାନ୍ତି ପର୍ଯ୍ୟନ୍ତ ଗଣନା କରାଯାଏ । ପୃଥିବୀର ଦୈନିକ ଓ ବାର୍ଷିକ ଗତିରୁ ଆମ୍ଭେ ଯଥାକ୍ରମେ ଦିନମାନ ଓ ବର୍ଷମାନର ପରିମାଣ ପାଇଲେଁ ।

## ଅୟନାଂଶ

ପୃଥିବୀର ରାଶିଚକ୍ରରେ ଯେଉଁ ଦୋଳନଗତି ଥାଏ ତଦ୍ଦ୍ୱାରା ପୃଥିବୀ କ୍ରାନ୍ତିମାର୍ଗର ପୂର୍ବକୁ ୨୭ ଅଂଶ ଓ ପଶ୍ଚିମକୁ ୨୭ ଅଂଶ ଗତି କରେ—ଏହି ଗତିର ନାମ ଅୟନ ଗତି । ସୂର୍ଯ୍ୟସିଦ୍ଧାନ୍ତ, ସୋମସିଦ୍ଧାନ୍ତ ଓ ଶାକଲ୍ୟସିଦ୍ଧାନ୍ତ ମତରେ ଅୟନଗତି ବାର୍ଷିକ ୫୪ ବିକଳା । ପ୍ରତ୍ୟେକ ଅଂଶର ଗମନ କାଳ ୬୬ ବର୍ଷ ୮ ମାସ । ସୁତରାଂ ଉପରୋକ୍ତ ଶାସ୍ତ୍ରକାର-ମାନଙ୍କ ମତରେ ଏହି ଅୟନଗତି ଶେଷ ହେବାକୁ ୩୬୦୦ ବର୍ଷ ଲାଗେ । ଭାସ୍କରାଚାର୍ଯ୍ୟ ଏହି ଗତି ବାର୍ଷିକ ୫୭ ବିକଳା ୩୫ ପର କାଳ ବୃଦ୍ଧି ହୁଏ ବୋଲି ଠିକ୍ କରିଅଛନ୍ତି । ପ୍ରଚଳିତ ଅୟନାଂଶ ଗତିର ଆରମ୍ଭ କାଳ ୦୨୩ ଶକାବ୍ଦ, ପରାଶର ଏହି ଗତି ବାର୍ଷିକ ୫୨ ବିକଳା ୩୫ ପର ବୃଦ୍ଧି ବୋଲି ଠିକ୍ କରିଅଛନ୍ତି । ମୁଞ୍ଜାଲନାମା ଦୈବଜ୍ଞ ଏହି ଗତି ବାର୍ଷିକ ୫୯ ବିକଳା ୯ ପର ଓ ଏହାର ଆରମ୍ଭ କାଳ ୦୨୫

ଷବାଦ ବୋଲି ଠିକ୍ କରୁଅଛନ୍ତି । ଗ୍ରହଲାଘବ ମତରେ ଏହି ଗତି ବାର୍ଷିକ ୧ କଳା । ସିଦ୍ଧାନ୍ତଦର୍ପଣ ଗ୍ରନ୍ଥକର୍ତ୍ତା ମହାତ୍ମା ଚନ୍ଦ୍ରଶେଖର ଏହି ଗତିକୁ ପ୍ରାୟ ୫୭ ବିକଳା ୩୭ ପର୍‌ ଓ ଗତିର ଆରମ୍ଭ ୪୧୫ ଷବାବ୍ଦ ବୋଲି ଠିକ୍ କରିଅଛନ୍ତି ।

ପ୍ରତୀଚ୍ୟ ପଣ୍ଡିତଗଣ ସୂକ୍ଷ୍ମବେଧ ଅନୁସାରେ ବାର୍ଷିକ ୫୦ ବିକଳା ୨୫ ପର୍‌ ଅୟନଗତି ବୃଦ୍ଧି ବୋଲି ଠିକ୍ କରୁଅଛନ୍ତି । ଅୟନାଂଶର ହ୍ରାସ ବୃଦ୍ଧି ହେତୁରୁ ଲଗ୍ନମାନଙ୍କର ଉଦୟ କାଳର ହ୍ରାସ ବୃଦ୍ଧି ହୁଏ ।

ଭୂଗୋଳର ମଧ୍ୟ ଭାଗରେ ପୂର୍ବ ପଶ୍ଚିମ କରି ଗୋଟିଏ ରେଖା କଳ୍ପନା କରାଯାଇଅଛି । ଏହାର ନାମ ବିଷୁବରେଖା । ଏଠାରେ ସର୍ବଦା ଦିନ ୩୦ ଦଣ୍ଡ ଓ ରାତ୍ରି ୩୦ ଦଣ୍ଡ । ଏହି ରେଖା ସିଦ୍ଧାନ୍ତକାରମାନଙ୍କ ମତରେ ଲଙ୍କା, ଯମକୋଟି, ସିଦ୍ଧପୁର ଓ ରୋମକପତ୍ତନ ଦେଇ ଯାଇଅଛି । ଆଧୁନିକ ନାମାନୁଯାୟୀ ଏହି ରେଖା ଲଙ୍କାର ଦକ୍ଷିଣରେ, ସୁମାତ୍ରା ଓ ବୋର୍ଣ୍ଣିଓର ମଧ୍ୟ ଭାଗରେ, ସେଲେବେସ ଦ୍ୱୀପର ଉତ୍ତର ସୀମାରେ, ଗାଲପାଗସ୍ ଦ୍ୱୀପପୁଞ୍ଜର ମଧ୍ୟରେ ଦକ୍ଷିଣ ଆମେରିକାର ଆମେଜନ ନଦୀର ସମୁଦ୍ରସଙ୍ଗମସ୍ଥଳ ଏବଂ ଆଫ୍ରିକାର ଭିକ୍ଟୋରିଆ ହ୍ରଦ ମଧ୍ୟ ଦେଇ କଳ୍ପନା କରାଯାଇଅଛି ।

ଏହି ରେଖାଠାରୁ ଉତ୍ତରକୁ ଉତ୍ତର ମେରୁପର୍ଯ୍ୟନ୍ତ ଚକ୍ରବେଧ ଅନୁସାରେ ୯୦ ଭାଗ କରାଯାଇଅଛି । ପ୍ରତ୍ୟେକ ଭାଗର ନାମ ଅକ୍ଷାଂଶ । ଏହି ରେଖାର ଦକ୍ଷିଣକୁ ଦକ୍ଷିଣ ମେରୁମଣ୍ଡଳ ପର୍ଯ୍ୟନ୍ତ ୯୦ ଭାଗ କରାଯାଇଅଛି । ପ୍ରତ୍ୟେକ ଭାଗର ନାମ ନତାଂଶ । ଏହି ଅକ୍ଷାଂଶ ଓ ନତାଂଶକୁ ନେଇ ଲଗ୍ନମାନଙ୍କ ହ୍ରାସବୃଦ୍ଧି ଓ ଉଦୟାସ୍ତାଦି କାଳର ପ୍ରଭେଦ ଦେଖାଯାଏ ।

ସମଦିବସ ( ମେଷ ସଙ୍କ୍ରମଣ ଓ ତୁଲ ସଙ୍କ୍ରମଣ ଦିବସରୁ ଅୟନାଂଶ ବାଦ୍ ଦେଇଦେଲେ ଯଥାକ୍ରମେ ଉକ୍ତ ସାୟନ ମେଷପ୍ରବେଶ ଓ ସାୟନ ତୁଲପ୍ରବେଶକାଳ ) ରେ ସୂର୍ଯ୍ୟ ଠିକ୍ ବିଷୁବରେଖାର ସିଧାରେ ଉଦନ୍ତି । ଏହି ଦିନର ମଧ୍ୟାହ୍ନ ଛାୟାକୁ କେହି କେହି ବିଷୁବଚ୍ଛାୟା, ଅକ୍ଷଚ୍ଛାୟା ଓ ପଲଭା କହନ୍ତି । ଏହି ଛାୟା ୧୨ ଅଙ୍ଗୁଳ ଲମ୍ବ ମୂଳ ଦୁଇ ଅଙ୍ଗୁଳ ପରିଧିବିଶିଷ୍ଟ ଅଗ୍ର ଆଡ଼କୁ କ୍ରମସୂକ୍ଷ୍ମ କାଠ ଖଣ୍ଡର । ଏଥିରୁ ଅକ୍ଷାଂଶ ଓ ଚରକାଳ ବାହାର ଅଟେ ।

ବିଷୁବଚ୍ଛାୟାରୁ ଅକ୍ଷାଂଶ ଆନୟନ—ସମଦିବସ ଦିନ ମଧ୍ୟାହ୍ନଛାୟା ଯାହା ହେବ ତାକୁ ୫ରେ ଗୁଣ କରିବେ । ତା ପରେ ବିଷୁବଚ୍ଛାୟାକୁ ବିଷୁବଚ୍ଛାୟାଦ୍ୱାରା ଗୁଣ କରି ଫଳକୁ ୧୦ରେ ହରଣ କରିବେ । ହରଣ କଲେ ଲବ୍ଧ ଯାହା ଆସିବ ତାହା ସେହି ପୂର୍ବୋକ୍ତ ୫ ଅଙ୍ଗୁଳଦ୍ୱାରା ଗୁଣା ଯାଇଥିବା ଫଳରୁ ବାଦ ଦେଇଦେବେ । ଯାହା ରହିଲା ତାହା ସେହି ସ୍ଥାନର ଅକ୍ଷାଂଶ । ଏହି ନିୟମ ସ୍ଥୂଳ । ସୂକ୍ଷ୍ମ ନିୟମରେ ଆଣିବାକୁ ହେଲେ ବିଷୁବଚ୍ଛାୟାକୁ ତ୍ରିଜ୍ୟାରେ ଗୁଣି ବିଷୁବ କର୍ଣ୍ଣରେ ଭାଗ ଦେଲେ ଅକ୍ଷଜ୍ୟା ଆସିବ । ଏହି ନିୟମ ଫଳିତ ଜ୍ୟୋତିଷ-ଶିକ୍ଷାର୍ଥୀର କଷ୍ଟକର ହେବାରୁ ସ୍ଥୂଳ ନିୟମ ଦିଆଗଲା । ସୂକ୍ଷ୍ମ ନିୟମ ମତ୍ପ୍ରଣୀତ ସିଦ୍ଧାନ୍ତ ସଂଗ୍ରହରେ ଦେଖନ୍ତୁ ।

ଉ. ହ.—ପୁରୀର ବିଷୁବଚ୍ଛାୟା ୪ ଅଙ୍ଗୁଳ ୨୦ ବ୍ୟଙ୍ଗୁଳ

ନିୟମ:—(ବିଷୁବଚ୍ଛାୟା × ୫ ଅଙ୍ଗୁଳ —(ବିଷୁବଚ୍ଛାୟା (ବର୍ଗ) ÷ ୧୦)=ଅକ୍ଷାଂଶ

ଦଶମିକ ନିୟମରେ ବିଷୁବଚ୍ଛାୟା ହେଲା ୪. ୩୫ ଅଙ୍ଗୁଳ। ଏହାକୁ ୫ରେ ଗୁଣିଲେ ହେଲା ୪. ୩୫ × ୫ = ୨୧. ୭୫ ଅଙ୍ଗୁଳ. ବିଷୁବଚ୍ଛାୟାର ବର୍ଗ ହେଲା ୪. ୩୫ × ୪. ୩୫ ଅଙ୍ଗୁଳ ବା

୧ ୨ ୫ ୯
୧ ୨ ୯ ୯
୧ ୭ ୩ ୨

୧୮ . ୭୪ ୮୫ ଅଙ୍ଗୁଳ।

ଏହାକୁ ୧୦ ରେ ହରଣ କରିବାରୁ ଲବ୍ଧ ଆସିଲା ୧. ୮୭୪୮୯।
ପୂର୍ବୋକ୍ତ ଗୁଣିତ ପିଣ୍ଡାଙ୍କ ୨୧. ୭୫ ରୁ ୧. ୮୭୪୮୯ ବାଦ୍ ଦେଲେ ଅବଶିଷ୍ଟ ରହିଲା

୨୧. ୭୫
୧. ୮୭୪୮୯

୧୯. ୮୭୫୧୧ ପ୍ରାୟ

୧୯. ୮୮ ଅକ୍ଷାଂଶ ହେଲା। ଅଂଶ କଳାରେ ଆଣିଲେ ହେଲା ୧୯ ଅକ୍ଷାଂଶ ୫୩ କଳା। ଏଥିରୁ ଜଣାଗଲା ପୁରୀ ୧୯ ଅକ୍ଷାଂଶ ୫୩ କଳାରେ ଅବସ୍ଥିତ।

## ସ୍ଥୂଳ ଚରକାଳ ସାଧନଂ।

ମଧ୍ୟାହ୍ନକାଳେ ବିଷୁବଦ୍ଦିନେ ଯା
ଶଙ୍କୋଃ ପ୍ରଭା ସା ପଲଭା ନିରୁକ୍ତା।
ଦଙ୍‌ନାଗସତ୍ର୍ୟଂଶ ଗୁଣୈର୍ବିନିଘ୍ନୀ
ସ୍ଥୂଲାନି ଦେଶେ ଚରଖଣ୍ଡକାନି ॥ ସି. ସା ॥

ବିଷୁବଚ୍ଛାୟାକୁ ଯଥାକ୍ରମେ ୧୦, ୮, ୩⅓ ଦ୍ୱାରା ଗୁଣିଲେ ସ୍ୱଦେଶ ମେଷାଦି ରାଶିତ୍ରୟର ଚରକାଳ ହେବ। ଏହି ଚରକାଳ ସାଧନ ଅତି ସ୍ଥୂଳ।

ମେଷ, କନ୍ୟା, ତୁଳା ଓ ମୀନର ଚରକାଳ ଏକ । ବୃଷ, ସିଂହ, ବୃଶ୍ଚି ଓ କୁମ୍ଭର ଚରକାଳ ଏକ । ମିଥୁନ, କର୍କଟ, ଧନୁ, ଓ ମକରର ଚରକାଳ ଏକ ।

### ସୂକ୍ଷ୍ମଚରକାଳ ଆନୟନଂ ।

କ୍ରାନ୍ତିଜ୍ୟକା ପଲଭଘ୍ନୀ ବିହୃତାର୍କ ଭକ୍ତା
କୁଜ୍ୟା ଭବେତ୍ତୁ ପୁନରପି ତ୍ରିଗୁଣାହତା ସା ।
ଦ୍ୟୁଜ୍ୟାହୃତା ଚରଗୁଣଶ୍ଚରମସ୍ୟଚାପଂ
ଷଟ୍‌ଭିର୍ହୃତଂ ଚରପଲଂ ଭବତୀହ ସୂକ୍ଷ୍ମଂ । ଜ୍ୟୋ. ବ.

କ୍ରାନ୍ତିଜ୍ୟାକୁ ଦେଶୀୟ ପଲଭା (ବିଷୁବଚ୍ଛାୟା) ଦ୍ୱାରା ଗୁଣ କରି ବାରଦ୍ୱାରା ଭାଗ କଲେ କୁଜ୍ୟା ହୁଏ । ତାହାକୁ ତ୍ରିଜ୍ୟାଦ୍ୱାରା ଗୁଣି ଦ୍ୟୁଜ୍ୟାଦ୍ୱାରା ଭାଗ କଲେ ଚରଜ୍ୟା ଲବ୍ଧ ଅଟେ । ତାହା ଧନୁଃଚରାଂଶ । ସେହି ଚରାଂଶକୁ ୧୦ରେ ଗୁଣିଲେ ଚରକାଳ ବାହାରିଅଟେ ।

### ଗୋଲଗଣିତ ନିୟମେନ ଚରକାଲସାଧନଂ

ଅକ୍ଷାଂଶସ୍ପର୍ଶରେଖା ଯା କ୍ରାନ୍ତ୍ୟଂଶସ୍ପୃଷ୍ଟ୍ୟା ହତା ।
ତ୍ରିଜ୍ୟାଭକ୍ତାଚରଜ୍ୟା ସ୍ୟାତ୍ତ୍ ଚର କାଲସ୍ତତୋଭବେତ୍ତା । ଜ୍ୟୋ.ବ.

ଅକ୍ଷାଂଶ ସ୍ପର୍ଶରେଖାକୁ କ୍ରାନ୍ତିର ସ୍ପର୍ଶରେଖାଦ୍ୱାରା ଗୁଣି ତ୍ରିଜ୍ୟାଦ୍ୱାରା ଭାଗ କଲେ ଚରଜ୍ୟା ହୁଏ । ତାହାର ଧନୁଃ ସାଧନ କରି ପୂର୍ବୋକ୍ତ ନିୟମରେ ଚରକାଳ ନିର୍ଣ୍ଣୟ କରିବ ।

ଗଣିତ କ୍ରାନ୍ତି, ଜ୍ୟା, ଧନୁ ସ୍ପର୍ଶରେଖା ପ୍ରଭୃତିର ଉପପତ୍ତିଗୁଡ଼ିକ ପଣ୍ଡିତ ଜ୍ୟୋତିଷଶିକ୍ଷାର୍ଥୀମାନଙ୍କ ପକ୍ଷରେ ନିତାନ୍ତ କଷ୍ଟବୋଧ୍ୟ ଓ

ଅନାବଶ୍ୟକ ଦେଖି ସେଗୁଡ଼ିକ ବିଶଦଭାବରେ ବୁଝାଇ ଦିଆଗଲା ନାହିଁ । ଏ ଗୁଡ଼ିକ ଗଣିତସ୍କନ୍ଧରେ ବିସ୍ତର କରିବା ବାସନା ରହିଲା ।

କେତେକ ସ୍ଥାନର ବିଷୁବଚ୍ଛାୟା ଓ ପୂର୍ବୋକ୍ତ ନିୟମରେ ସେ ସ୍ଥାନମାନଙ୍କର ଅକ୍ଷାଂଶ କଳା ଆନୟନ :—

| ସ୍ଥାନମାନଙ୍କର ନାମ, | ବିଷୁବଚ୍ଛାୟା. | ଅକ୍ଷାଂଶ. | କଳା. |
|---|---|---|---|
| ବାଲେଶ୍ୱର | ୪ ଅଙ୍ଗୁଳି | ୪୭ ବ୍ୟଙ୍ଗୁଳି. | ୨୧।୪୮ |
| ସମ୍ବଲପୁର | ୪ ଅଙ୍ଗୁଳି | ୪୪ ବ୍ୟଙ୍ଗୁଳି | ୨୧।୪୨ |
| କଟକ | ୪ ଅଙ୍ଗୁଳି | ୩୦ ବ୍ୟଙ୍ଗୁଳି | ୨୦।୨୯ |
| ପୁରୀ | ୪ ଅଙ୍ଗୁଳି | ୨୦ ବ୍ୟଙ୍ଗୁଳି | ୧୯।୦୩ |
| ଖଲିକୋଟ | ୪ ଅଙ୍ଗୁଳି | ୧୯ ବ୍ୟଙ୍ଗୁଳି | ୧୯।୪୩ |
| ବଡ଼ଗଡ଼ | ୪ ଅଙ୍ଗୁଳି | ୧୮ ବ୍ୟଙ୍ଗୁଳି | ୧୯।୩୯ |
| ବ୍ରହ୍ମପୁର | ୪ ଅଙ୍ଗୁଳି | ୧୨ ବ୍ୟଙ୍ଗୁଳି | ୧୯।୧୦ |
| ପାରଲ. | ଅଙ୍ଗୁଳି | ୪ ବ୍ୟଙ୍ଗୁଳି | ୧୮।୦୧ |

ନିରକ୍ଷ ଦେଶ ସ୍ୱଦେଶଠାରୁ କେତେଦୂରରେ ଅବସ୍ଥିତ ଏହା ଯେପରି ଅକ୍ଷାଂଶଦ୍ୱାରା ଜଣାଯାଏ, ସୁମେରୁ ସ୍ୱଦେଶ କେତେ ଦୂରରେ ତାହା ଲମ୍ବାଂଶଦ୍ୱାରା ଜଣାଯାଏ । ସ୍ୱଦେଶଠାରୁ ନିରକ୍ଷ ଦେଶର ଅନ୍ତର ଅକ୍ଷାଂଶ ଏବ ସ୍ୱଦେଶଠାରୁ ସୁମେରୁର ଅନ୍ତର ଲମ୍ବାଂଶ । ନିରକ୍ଷ ଦେଶରେ ଅକ୍ଷାଂଶ ନାହିଁ । ଲମ୍ବାଂଶ ୯୦ । ଯେ ହେତୁ ଅକ୍ଷାଂଶ ଓ ଲମ୍ବାଂଶର ଯୋଗ ୯୦ । ନିରକ୍ଷ ଦେଶଠାରୁ ଯେତିକି ଯେତିକି ଦୂରରେ ସ୍ୱଦେଶ ହେବ ଅକ୍ଷାଂଶ ତେତିକି ତେତିକି ଅଧିକ ଓ ଲମ୍ବାଂଶ ତେତିକି ତେତିକି କମ ହେବ । ନିରକ୍ଷ ଦେଶ, ପୃଥିବୀର ମଧ୍ୟସ୍ଥାନ; ଏହି ସ୍ଥାନର ପରିଧି ୪୯୬୭ ଯୋଜନ । ଏହାର ନାମ ମଧ୍ୟମ ପରିଧି । ଅକ୍ଷାଂଶ ଯେତିକି

ଯେତିକ ଅଧିକ ହେଉଥିବ, ସ୍ପଷ୍ଟଭୂପରିଧି କ୍ରମେ କ୍ରମେ କମ୍ ହୋଇ ଆସିବ। ଲମ୍ବାଂଶ ଜ୍ୟା ପରିମାଣାନୁସାରରେ ସ୍ପଷ୍ଟଭୂପରିଧି ସାଧନ କରାଯାଏ।

ଉପପତ୍ତି ସ୍ପଷ୍ଟଭୂପରିଧି = ମଧ୍ୟମ ପରିଧି × ଲମ୍ବଜ୍ୟା = ତ୍ରିଜ୍ୟା = ବ୍ୟାସାର୍ଦ୍ଧ।

ପୃଥିବୀର ପରିଧି ୪୯୬୭ ଯୋଜନ। ବ୍ୟାସ ୧୫୮୧ $\frac{1}{24}$ ଯୋଜନ ପୃଷ୍ଠଫଳ ୭୮୫୩୦୩୪ ଯୋଜନ, ଆଧୁନିକ ମତେ ଭୂବ୍ୟାସ ୭୯୧୨ ମାଇଲ।

## ଭୂମଧ୍ୟରେଖା—

ପୃଥିବୀର ମଧ୍ୟ ଭାଗରେ ଯାମ୍ୟୋତ୍ତର କରି ଗୋଟିଏ ରେଖା କଳ୍ପନା କରାଯାଇଅଛି। ଏହି ରେଖାର ନାମ ଭୂମଧ୍ୟରେଖା। ଏହି ରେଖାକୁ ଆର୍ଯ୍ୟମାନେ ସୁମେରୁଠାରୁ ଆରମ୍ଭ କରି କୁରୁକ୍ଷେତ୍ର ଉଜ୍ଜୟିନୀ ଦେଇ ଲଙ୍କା ପର୍ଯ୍ୟନ୍ତ କଳ୍ପନା କରିଅଛନ୍ତି। ପାଶ୍ଚାତ୍ୟ ପଣ୍ଡିତଗଣ ଏହି ରେଖାକୁ ଗ୍ରିନଵିଚ୍ ସହର ଦେଇ କଳ୍ପନା କରିଅଛନ୍ତି।

ଭୂମଧ୍ୟରେଖାଦ୍ୱାରା ଦେଶାନ୍ତର କାଳ ଜଣାଯାଏ। ରେଖାର ପୂର୍ବ ଦେଶମାନଙ୍କରେ ପ୍ରଥମେ ସୂର୍ଯ୍ୟୋଦୟ ହୁଏ। ଏହି ଭୂମଧ୍ୟ ରେଖାକୁ ସମାନ୍ତର କରି ୩୬୦ଟି ରେଖା କଳ୍ପନା କରାଯାଇଅଛି। ପୂର୍ବରୁ ପଶ୍ଚିମକୁ ଏକ ଏକ ରେଖାକୁ ସୂର୍ଯ୍ୟୋଦୟ ୧୦ ପଳ ପରେ ହୁଏ। ଏହି ପ୍ରତ୍ୟେକ ରେଖାକୁ ଦ୍ରାଘିମା ବୋଲାଯାଏ। ଦୂରତ୍ୱ ଜାଣିଲେ ସମୟ ଓ ସମୟ ଜାଣିଲେ ଦୂରତ୍ୱ କହାଯାଇ ପାରେ।

## ଗ୍ରହ-ମଣ୍ଡଳ

ସୂର୍ଯ୍ୟ— ଗ୍ରହମଣ୍ଡଳ ମଧ୍ୟରେ ସୂର୍ଯ୍ୟ ଅତି ତେଜୀୟାନ୍ । ସୌର ଜଗତସ୍ଥ ସମସ୍ତ ଗ୍ରହଗଣ ସୂର୍ଯ୍ୟଙ୍କର କିରଣଦ୍ୱାରା ସମୁଦ୍ଭାସିତ । ସମସ୍ତ ଜଗତର ଉତ୍ପତ୍ତି କାରଣ ସୂର୍ଯ୍ୟ । ତେଣୁ ଏହାଙ୍କ ନାମ ସବିତା । ମାନୁଷିକ ଶକ୍ତି ବିକାଶ, ଜୀବଜନ୍ତୁର ପ୍ରାଣରକ୍ଷା, ଉଦ୍ଭିଦାଦିର ଜୀବନର କାରଣ ଏକମାତ୍ର ସୂର୍ଯ୍ୟକିରଣ । ସୃଷ୍ଟି, ସ୍ଥିତି ଓ ବିନାଶ ସମସ୍ତ ଏକମାତ୍ର ସୂର୍ଯ୍ୟ-ଦ୍ୱାରା ସଂଘଟିତ ହୋଇ ପାରେ ।

ସୂର୍ଯ୍ୟର ଦର୍ଶନରେ ଦିନ ଓ ଅଦୃଶ୍ୟରେ ରାତ୍ରି ହୁଏ । ପୃଥିବୀର ଦୈନିକ ଆବର୍ତ୍ତନ ହେତୁରୁ ସୂର୍ଯ୍ୟର ଉଦୟ ଅସ୍ତ ସଂଘଟିତ ହୁଏ । ସର୍ବଦା ପୃଥିବୀର କୌଣସି ଏକ ପାର୍ଶ୍ୱ (ଯେଉଁ ପାର୍ଶ୍ୱ ସୂର୍ଯ୍ୟ ଆଡ଼କୁ ଥାଏ) ଆଲୋକିତ ଓ ଅପର ପାର୍ଶ୍ୱ ତମସାଚ୍ଛନ୍ନ । ପୃଥିବୀର ଦୋଳନ ହେତୁରୁ କେତେକ ସ୍ଥାନରେ ସର୍ବଦା ଦିନ ଓ ଅପର କେତେକ ସ୍ଥାନରେ ସର୍ବଦା ରାତ୍ରି ହୁଏ ।

ଲମ୍ବାଧିକା କ୍ରାନ୍ତି ରୁଦ୍ରକ୍ ଚ ଯାବତ୍
ତାବତ୍ ଦିନଂ ସନ୍ତତମେବ ତତ୍ର । ସି. ଶି ।

କ୍ରାନ୍ତି ଲମ୍ବାଂଶଠାରୁ ଅଧିକ ହେଲେ ଅହୋରାତ୍ରବୃତ୍ତ, କ୍ଷିତିଜର ଉପର ଭାଗରେ ଅବସ୍ଥିତ । ସୁତରାଂ ଅହୋରାତ୍ର ବୃତ୍ତରେ ଭ୍ରମଣକାରୀ ସୂର୍ଯ୍ୟ କେବେ ହେଲେ କ୍ଷିତିଜର ନିମ୍ନସ୍ଥ ହୁଏ ନାହିଁ ଏ ହେତୁରୁ ସୂର୍ଯ୍ୟ ସର୍ବଦା ଦେଖାଯାଏ ।

ଯେଉଁ ସ୍ଥାନର ଅକ୍ଷାଂଶ ୬୮ ସେହି ସ୍ଥାନରେ ମିଥୁନ ମାସଯାକ ସୂର୍ଯ୍ୟ ଦେଖାଯାଉଥାନ୍ତି ।

ଯେଉଁ ସ୍ଥାନର ଅକ୍ଷାଂଶ ୭୦ ସେହି ସ୍ଥାନରେ ବୃଷ ଓ ମିଥୁନ ଏହି ଦୁଇ ମାସ ଯାକ ସୂର୍ଯ୍ୟ ସର୍ବଦା ଦୃଷ୍ଟ ହେବେ ।

ଯେଉଁ ସ୍ଥାନର ଅକ୍ଷାଂଶ ୭୪ ସେହି ସ୍ଥାନରେ ସୂର୍ଯ୍ୟ ତିନି ମାସ ଯାଏ ସର୍ବଦା ଦେଖା ଯାଉଥାନ୍ତି ।

ଅକ୍ଷାଂଶ ୭୮ ଠାରେ ୪ ମାସ ଓ ଅକ୍ଷାଂଶ ୮୪ଠାରେ ୫ ମାସ ଓ ଅକ୍ଷାଂଶ ୯ ଠାରେ ସୂର୍ଯ୍ୟ ୬ ମାସ ପର୍ଯ୍ୟନ୍ତ ସର୍ବଦା ଦେଖାଯାଉ-ଥାନ୍ତି ।

ସୂର୍ଯ୍ୟ ପୃଥିବୀଠାରୁ ୯୩ ନିୟୁତ ମାଇଲ ଦୂରରେ ଅବସ୍ଥିତ । ସୂର୍ଯ୍ୟମଣ୍ଡଳର ବ୍ୟାସ ପ୍ରାୟ ୮୬୬,୦୦୦ ମାଇଲ । ସୂର୍ଯ୍ୟ ଗ୍ରହଚକ୍ରର କେନ୍ଦ୍ର । ସୂର୍ଯ୍ୟମଣ୍ଡଳ ମଧ୍ୟରେ କେତେକ କୃଷ୍ଣବର୍ଣ୍ଣ ଛିଦ୍ର ଦେଖାଯାଏ । (ଦୂରବୀକ୍ଷଣ ଯନ୍ତ୍ରଦ୍ୱାରା) ସେହି ସେହି ଛିଦ୍ରଗୁଡ଼ିକର ସ୍ଥାନ ପରିବର୍ତ୍ତିତ ହେଉଥିବା ଯୋଗେ ଓ ସମୟେ ସମୟେ ସେଗୁଡ଼ିକ ଦେଖାଯାଉ ନ ଥିବାରୁ ସୂର୍ଯ୍ୟ ସ୍ୱକକ୍ଷ ଉପରେ ଘୂର୍ଣ୍ଣିତ ହେଉଅଛି ବୋଲି ଠିକ୍ କରା-ଯାଇଅଛି । ନିଜ ମେରୁ ଉପରେ ଏକବାର ଘୂର୍ଣ୍ଣିତ ହେବା ନିମିତ୍ତ ସୂର୍ଯ୍ୟଙ୍କୁ ୨୫ ଦିନ ୧୯ ଦଣ୍ଡ ୩୦ ପଳ ଲାଗେ ।

ଫଳିତ ଜ୍ୟୋତିଷର ସୂର୍ଯ୍ୟ ପ୍ରଧାନ ପଦାର୍ଥ । ସୂର୍ଯ୍ୟଙ୍କୁ ଆତ୍ମା ରୂପେ ନିଆଯାଇଅଛି । ଜାତକରେ କେବଳ ରବି ପୂର୍ଣ୍ଣ ଶୁଭ ଥିଲେ ମାନବ ସମଗ୍ର ଜୀବନରେ ସୁଖଭୋଗ କରେ ।

## ସୂର୍ଯ୍ୟୋପରାଗ

ସୂର୍ଯ୍ୟର ଚତୁଷ୍ପାର୍ଶ୍ୱରେ ପୃଥିବୀ ଓ ପୃଥିବୀର ଚତୁଷ୍ପାର୍ଶ୍ୱରେ ଚନ୍ଦ୍ର ବୁଲେ । ଏପରି ବୁଲୁ ବୁଲୁ ଚନ୍ଦ୍ର ପୃଥିବୀ ଓ ସୂର୍ଯ୍ୟର ମଧ୍ୟରେ

ରହିଯାଏ । ଚନ୍ଦ୍ର ଏପରିଭାବେ ଅବସ୍ଥାନ କରିବା ହେତୁରୁ ପୃଥିବୀସ୍ଥ (କେତେକ ସ୍ଥାନ) ଲୋକେ ସୂର୍ଯ୍ୟର କେତେକ ଅଂଶ ଦେଖି ପାରନ୍ତି ନାହିଁ । ଏହିଠାରେ ସନ୍ଦେହ ହୋଇ ପାରେ, ଯେ ସୂର୍ଯ୍ୟ ତ ଚନ୍ଦ୍ର ଅପେକ୍ଷା ୬୩୭ ଲକ୍ଷଗୁଣ ବଡ଼; ସେ ଚନ୍ଦ୍ରଦ୍ୱାରା କିପରି ଆଚ୍ଛାଦିତ ହୁଅନ୍ତି ? ଚନ୍ଦ୍ର ପୃଥିବୀର ନିକଟରେ ଓ ସୂର୍ଯ୍ୟ ବହୁଦୂରରେ ଅବସ୍ଥିତ । ଅତି ଛୋଟ ପଦାର୍ଥଟିଏ ଚକ୍ଷୁର ନିକଟରେ ଧରିଲେ ଦୂରସ୍ଥ ଅତି ବଡ଼ ପଦାର୍ଥ ଦିଶେ ନାହିଁ । ତେଣୁ ଦୃଶ୍ୟମାନ କୋଣର ତାରତମ୍ୟାନୁସାରେ ଆମ୍ଭେ ସୂର୍ଯ୍ୟର କେତେକାଂଶ ବା ସମ୍ପୂର୍ଣ୍ଣ ସୂର୍ଯ୍ୟ ଦେଖି ନ ପାରୁଁ । ଏହି ଦିନ ଚନ୍ଦ୍ର ଓ ସୂର୍ଯ୍ୟ ଏକରାଶିରେ ଅବସ୍ଥାନ କରୁଥାଆନ୍ତି । ଅମାବାସ୍ୟା ଓ ପ୍ରତିପଦାର ସନ୍ଧି ସମୟରେ ସୂର୍ଯ୍ୟୋପରାଗ ସଂଘଟିତ ହୁଏ । ଅଧଃସ୍ଥିତ ମେଘର ଛିଦ୍ରକତା ହେତୁରୁ କେତେକ ସ୍ଥାନରେ ସୂର୍ଯ୍ୟ ଯେପରି ଦେଖାଯାଏ ଓ ଅନ୍ୟ କେତେକ ସ୍ଥାନରେ ଯେପରି ଦେଖାଯାଏ ନାହିଁ, ସେହିପରି ସୂର୍ଯ୍ୟକକ୍ଷା ଓ ଚନ୍ଦ୍ରକକ୍ଷାର ପାର୍ଥକ୍ୟ ହେତୁରୁ ଅଧଃସ୍ଥିତ ଚନ୍ଦ୍ରଦ୍ୱାରା କୌଣସି କୌଣସିଠାରେ ସୂର୍ଯ୍ୟ ଅଦୃଶ୍ୟ ଓ କୌଣସି କୌଣସିଠାରେ ଦୃଶ୍ୟ ହୁଏ ।

ଚନ୍ଦ୍ର :—ପୃଥିବୀର ଚତୁଃପାର୍ଶ୍ୱରେ ଚନ୍ଦ୍ର ଭ୍ରମଣ କରେ । ପୃଥିବୀଠାରୁ ଚନ୍ଦ୍ରର ଦୂରତା ପ୍ରାୟ ୨୩୭୩୦୦ ମାଇଲ । ଚନ୍ଦ୍ରକୁ କେହି କେହି ପୃଥିବୀର ଉପଗ୍ରହ କହନ୍ତି । କିନ୍ତୁ ଜ୍ୟୋତିଷରେ ଚନ୍ଦ୍ର ସୂର୍ଯ୍ୟ ସଦୃଶ ପ୍ରଧାନ ଗ୍ରହ ।

ଚନ୍ଦ୍ର ଜ୍ୟୋତ୍ସ୍ନା କରି ଜଗତ ଶୀତଳ କରେ । ତେଣୁ ଚନ୍ଦ୍ରକୁ ଅମୃତପିଣ୍ଡ ବୋଲି ବୋଲାଯାଇଅଛି । ଚନ୍ଦ୍ରର ନିଜର କିରଣ ନାହିଁ । ଚନ୍ଦ୍ରର ଅର୍ଦ୍ଧେକ ସର୍ବଦା ସୂର୍ଯ୍ୟକିରଣରେ ଆଲୋକିତ । ଗୋଲ ପଦାର୍ଥର ଅର୍ଦ୍ଧାଂଶ ସର୍ବଦା ସମ୍ପୂର୍ଣ୍ଣ ବୋଲି ପ୍ରତୀୟମାନ ହୁଏ । ଚନ୍ଦ୍ରର ଅର୍ଦ୍ଧାଂଶ

ସର୍ବଦା ଆଲୋକିତ ସତ, କିନ୍ତୁ ଆମ୍ଭେ କେବଳ ଚନ୍ଦ୍ରର ଗୋଟିଏ ପାର୍ଶ୍ୱ ( ଶଶାଙ୍କଚିହ୍ନିତ ) ଦେଖି ପାରିବା ହେତୁରୁ ସେହି ପାର୍ଶ୍ୱରେ ଯେତେକାଂଶରେ ସୂର୍ଯ୍ୟକିରଣ ପଡ଼େ ଆମ୍ଭେ ସେତିକି ଅଂଶମାତ୍ର ଉଜ୍ଜ୍ୱଳ ହୋଇଥିବା ଦେଖୁଁ ।

ଅମାବାସ୍ୟା ଦିନ ପୃଥିବୀ, ଚନ୍ଦ୍ର ଓ ସୂର୍ଯ୍ୟ ଏକ ସରଳରେଖାରେ ଥାଆନ୍ତି । ଏହି ଦିନ ସୂର୍ଯ୍ୟର କିରଣ ଚନ୍ଦ୍ରର ଉପର ପାର୍ଶ୍ୱରେ (ଶଶାଙ୍କ ଚିହ୍ନିତ ପାର୍ଶ୍ୱର ବିପରୀତ ପାର୍ଶ୍ୱରେ ) ପଡ଼େ । ନିମ୍ନ ଅର୍ଦ୍ଧାଂଶ ଆଦୌ ଆଲୋକ ପାଏ ନାହିଁ । କିନ୍ତୁ ମନୁଷ୍ୟଗଣ ଚନ୍ଦ୍ରର କେବଳ ନିମ୍ନ ଅର୍ଦ୍ଧାଂଶ ଦେଖି ପାରନ୍ତି ବୋଲି ପୂର୍ବେ କହାଯାଇଅଛି । ତେଣୁ ଅମାବାସ୍ୟା ଦିନ ଚନ୍ଦ୍ର ଆଦୌ ଦେଖାଯାନ୍ତି ନାହିଁ ।

ଚନ୍ଦ୍ର ସୂର୍ଯ୍ୟଠାରୁ ଯେତିକି ଯେତିକି ଦୂରକୁ ଚାଲିଯାଏ ମନୁଷ୍ୟ ଦୃଷ୍ଟ ନିମ୍ନ ଅର୍ଦ୍ଧାଂଶ ସେତିକି ସେତିକି ଆଲୋକିତ ହୁଏ । ଏପରି କ୍ରମେ ଚନ୍ଦ୍ର, ପୃଥିବୀ ଓ ସୂର୍ଯ୍ୟ ଏକ ସରଳରେଖାବିଶିଷ୍ଟ ହୁଅନ୍ତି । ଏହି ଦିନର ନାମ ପୂର୍ଣ୍ଣିମା । ଚନ୍ଦ୍ରଠାରୁ ସୂର୍ଯ୍ୟ ୨ ଗୁଣ ଅନ୍ତରରେ ପୂର୍ଣ୍ଣିମା ଦିନ ଅବସ୍ଥାନ କରନ୍ତି । ମନୁଷ୍ୟଦୃଷ୍ଟ ନିମ୍ନ ଅର୍ଦ୍ଧାଂଶରେ ସୂର୍ଯ୍ୟକିରଣ ଏଦିନ ସମ୍ପୂର୍ଣ୍ଣ ହିତାଭାବେ ପଡ଼େ । ତେଣୁ ପୂର୍ଣ୍ଣିମା ଦିନ ସମ୍ପୂର୍ଣ୍ଣ ଆଲୋକିତ ଚନ୍ଦ୍ର ଆମ୍ଭେ ଦେଖୁଁ ।

## ଚନ୍ଦ୍ରଗ୍ରହଣ

ଉପରୋକ୍ତ ପୂର୍ଣ୍ଣିମା ଦିନ ଯଦି ପୃଥିବୀ ଠିକ୍ ସରଳ ରେଖାରେ ରହିଯାଏ ତେବେ ସୂର୍ଯ୍ୟର କିରଣ ଚନ୍ଦ୍ରର କେତେକ ଅଂଶରେ ବା ଚନ୍ଦ୍ର ଉପରେ ଆଦୌ ପଡି ନ ପାରେ । ଭୂପୃଷ୍ଠସ୍ଥ ଦ୍ରଷ୍ଟା ଚନ୍ଦ୍ରର କେତେକ ଅଂଶ ବା ସମ୍ପୂର୍ଣ୍ଣ ଚନ୍ଦ୍ର ଦେଖି ନ ପାରେ । ସମସ୍ତ ଦେଶରେ ଗ୍ରହଣ ଏକ ସମୟରେ ଦେଖାଯାଏ ନାହିଁ । ଦୃଶ୍ୟମାନ କୋଣର ତାର-ତମ୍ୟାନୁସାରେ କେତେ ଦେଶକୁ ଭିନ୍ନ ଭିନ୍ନ ସମୟରେ ଦେଖାଯାଏ ।

ଚନ୍ଦ୍ରର ଛାଦକ (ପୃଥିବୀ) ଚନ୍ଦ୍ରଠାରୁ ବଡ଼ ହେତୁରୁ ଚନ୍ଦ୍ରଗ୍ରହଣ କାଳ ସୂର୍ଯ୍ୟୋପରାଗ ଅପେକ୍ଷା ବେଶି ହୁଏ । ଚନ୍ଦ୍ରମଣ୍ଡଳର ପୂର୍ବ ଦିଗରୁ ଗ୍ରହଣ ସ୍ପର୍ଶ ଓ ପଶ୍ଚିମ ଦିଗରୁ ଗ୍ରହଣ ମୋକ୍ଷ ହୋଇଥାଏ । ପୂର୍ଣ୍ଣିମା ଓ ପ୍ରତିପଦାର ସନ୍ଧିସ୍ଥଳରେ ଏହି ଗ୍ରହଣ ହୁଏ । ପୂର୍ଣ୍ଣିମା ପରେ ଚନ୍ଦ୍ର ସୂର୍ଯ୍ୟର ନିକଟକୁ ଯେତିକି ଯେତିକି ଅଗ୍ରସର ହୁଏ, ନିମ୍ନ ଅର୍ଦ୍ଧାଂଶ ସେତିକି ସେତିକି କୃଷ୍ଣବର୍ଣ୍ଣ ହୋଇ ପୁଣି ଅମାବାସ୍ୟା ହୁଏ । ଏହି ଉଜ୍ଜ୍ୱଳତାର ହ୍ରାସବୃଦ୍ଧିକୁ ନେଇ ପ୍ରତିପଦାଦି ତିଥି କଳ୍ପନା କରାଯାଇଅଛି ।

ଏକ ଅମାବାସ୍ୟାଠାରୁ ଅପର ଅମବାସ୍ୟାପର୍ଯ୍ୟନ୍ତ କାଳକୁ ଚାନ୍ଦ୍ରମାନ ମାସ ବୋଲାଯାଏ । ଏହାର ପରିମାଣ ୨୯ ଦିନ ୩୧ ଦଣ୍ଡ ୫୦ ପଳ । ପୂର୍ବ କଥିତ ସୌରମାନ ମାସ ଅପେକ୍ଷା ଚାନ୍ଦ୍ରମାନ ମାସ ୦ ଦିନ ୫୪ ଦଣ୍ଡ ୨୭ ପଳ ୩୧ ବିପଳ ୫୨ ପରାଦଂ । ତେଣୁ ପ୍ରତିସୌର-ମାନ ମାସ ଚାନ୍ଦ୍ରମାନ ମାସ ଅପେକ୍ଷା ପୂର୍ବ କଥିତ ପରିମାଣ ବଳିପଡ଼େ । ଏପରି ବଳିବଳି ସୌର ୨ବର୍ଷ । ମାସ ୧୫ ଦିନ ୩୧ ଦଣ୍ଡରେ ଗୋଟିଏ ଚାନ୍ଦ୍ରମାନ ମାସର ପରିମାଣ ବଳିପଡ଼େ । ଏହି ମାସଟି ଲୁନ ମଳରୂପେ ଗୃହୀତ ହୁଏ । ପ୍ରତି ବ୨-୮-୧୫-୩୧ ସୌରବର୍ଷାଦିର ପର, ମଳ ମାସ ହୋଇଥାଏ ।

ଚନ୍ଦ୍ରମଣ୍ଡଳର ବ୍ୟାସ ୨୧୬୦ ମାଇଲ । ଚନ୍ଦ୍ର ପୃଥିବୀର ଚତୁଃ-ପାର୍ଶ୍ୱରେ ଏକବାର ପ୍ରଦକ୍ଷିଣ କରିବା ନିମନ୍ତେ ୨୭ ଦିନ ୧୯ ଦଣ୍ଡ ୨୦ ପଳ ଲାଗେ । କିନ୍ତୁ ଚନ୍ଦ୍ରଗତିର ହ୍ରାସବୃଦ୍ଧି ଯୋଗେ ଚନ୍ଦ୍ରକୁ ଏହି ଭ୍ରମଣ ନିମନ୍ତେ ୨୯ ଦିନ ୩୧ ଦଣ୍ଡ ୫୦ ପଳ ଲାଗିଥାଏ । ଚନ୍ଦ୍ରର ୧ ଘଣ୍ଟାର ଗତି ପ୍ରାୟ ୩୭୨ ମାଇଲ ।

ଗଣିତ ସାହାଯ୍ୟରେ ପୂର୍ବରୁ ଗ୍ରହଣାଦି ସମସ୍ତ ବିଷୟ ଠିକ୍ କରାଯାଇ ପଞ୍ଜିକାରେ ଦିଆଯାଇଥାଏ । ସମସ୍ତ ପୂର୍ଣ୍ଣିମା ଓ ସମସ୍ତ

ଅମାବାସ୍ୟାରେ ସୂର୍ଯ୍ୟ, ଚନ୍ଦ୍ର ଓ ପୃଥିବୀ ଏକ ସରଳରେଖାରେ ରହନ୍ତି ସତ କିନ୍ତୁ ଗ୍ରହଣ ବା ପରଗ ଦିନ ଏକ ସରଳରେଖାରେ ରହିବା ବିଶେଷତ୍ୱ ଏହିକି ଯେ ସୂର୍ଯ୍ୟ ଓ ପୃଥିବୀର ମଧ୍ୟ ଚନ୍ଦ୍ରମାନ ଏକ ସରଳ-ରେଖାରେ ଥାଏ । ଚନ୍ଦ୍ରର ବଳ ଜାତକ ଉପରେ ଖୁବ୍ ବେଶି । ଜନ୍ମ କାଳରୁ ଚନ୍ଦ୍ର ଭୋଗ ନକ୍ଷତ୍ରକୁ ନେଇ ଜନ୍ମଦଶା ନିର୍ଣ୍ଣୟ କରାଯାଏ ।

ମଙ୍ଗଳ—ରସଶୋଷଣ, ତାପବିଧାନକାରୀ ଓ ଶସ୍ୟୋତ୍ପାଦକ ଶକ୍ତିନାଶକ ମଙ୍ଗଳ ସୂର୍ଯ୍ୟକୁ ୬୮୬ ଦିନ ୫୮ ଦଣ୍ଡ ୯ ପଳ ୨୦ ବିପଳରେ ପ୍ରଦକ୍ଷିଣ କରେ । ମଙ୍ଗଳ ୪୨ ଦିନ ସ୍ଥିର ଓ ୮୦ ଦିନ ବକ୍ର ଭାବରେ ଅବସ୍ଥାନ କରେ ।

ପୃଥିବୀସ୍ଥ ମୃତ୍ତିକା ଓ ଜଳବାୟୁ ସହିତ ମଙ୍ଗଳ ଗ୍ରହର ଅନେକ ସୌସାଦୃଶ୍ୟ ବିଦ୍ୟମାନ । ତେଣୁ ଅର୍ଯ୍ୟବିଜ୍ଞାନକାରଗଣ ମଙ୍ଗଳକୁ ଭୂପୁତ୍ର ଆଖ୍ୟା ଦେଇ ଯାଇଅଛନ୍ତି । ମଙ୍ଗଳ ଦୁଇଟି ଉପଗ୍ରହ ଯୁକ୍ତ । ମଙ୍ଗଳର ବ୍ୟାସ ପ୍ରାୟ ୪୦୦୦ ମାଇଲ ଓ ତାହାର ୧ ଘଣ୍ଟାକୁ ଗତି ୫୩,୦୦୦ ମାଇଲ । ନିଜର ମେରୁ ଉପରେ ଏକବାର ଘୂରିବା ନିମନ୍ତେ ମଙ୍ଗଳକୁ ୬୧ ଦଣ୍ଡ ୩୩ ପଳ ଲାଗିଥାଏ ।

ବୁଧ—ଏହା ସୂର୍ଯ୍ୟର ଅତି ନିକଟବର୍ତ୍ତୀ ଗ୍ରହ । ବୁଧ ସୂର୍ଯ୍ୟ ଥିବା ସ୍ଥାନର ୧୮°-୨୦ ମଧ୍ୟରେ ସର୍ବଦା ଥାଏ । ବୁଧ ବୈଶାଖ, ଆଷାଢ଼, ଶ୍ରାବଣ କାର୍ତ୍ତିକ ମାସରେ ପ୍ରାୟ ଦେଖାଯାଏ ନାହିଁ । ସୂର୍ଯ୍ୟାସ୍ତର ପୂର୍ବେ ୧ ଘଣ୍ଟା ମଧ୍ୟରେ ଓ ପରେ ୧ ଘଣ୍ଟା ମଧ୍ୟରେ ଅନ୍ୟାନ୍ୟ ମାସରେ ଦେଖାଯାଏ । ବୁଧର ବ୍ୟାସ ପ୍ରାୟ ୩୦୦୮ ମାଇଲ, ବୁଧର କକ୍ଷ ଘୂର୍ଣ୍ଣନ କାଳ ୬୦ ଦଣ୍ଡ ୧୩ ପଳ ଓ ୪୫ ବିପଳ । ସୂର୍ଯ୍ୟର ଚତୁଷ୍ପାର୍ଶ୍ୱରେ ପ୍ରଦକ୍ଷିଣ ନିମନ୍ତେ ବୁଧକୁ ୮୭ ଦିନ ୫୮ ଦଣ୍ଡ ୯ ପଳ ୧୨ ବିପଳ ଲାଗେ । ବୁଧର ୧ ଘଣ୍ଟାକୁ ଗତି ୧୦୬,୦୦୦ ମାଇଲ । ବୁଧ ୨୧ ଦିନ ବକ୍ରଗମନ କରେ ।

ବୃହସ୍ପତି—ସମଶୀତୋଷ୍ଣ ରସବର୍ଦ୍ଧନକାରୀ, ସମସ୍ତୋତ୍ପାଦକାଶକ୍ତି ଯୁକ୍ତ ବୃହସ୍ପତି ସୂର୍ଯ୍ୟଙ୍କୁ ୧୧ ବର୍ଷ, ୧୦ ମାସ, ୧୫ ଦିନ, ୩୬ ଦଣ୍ଡ ୮ ପଳରେ ଏକବାର ପ୍ରଦକ୍ଷିଣ କରେ । ସମସ୍ତ ଗ୍ରହ ମଧ୍ୟରେ ବୃହସ୍ପତି ବୃହତ୍ ଓ ତେଜଯୁକ୍ତ ।

ବୃହସ୍ପତି ୫ଟି ଉପଗ୍ରହ ଯୁକ୍ତ । ତାହାର ବ୍ୟାସ ୮୮୪୩୯ ମାଇଲ । ଘଣ୍ଟାକୁ ଗତି ୨୯୦୦୦ ମାଇଲ । କକ୍ଷ ଆବର୍ତ୍ତନ କାଳ ୨୩ ଦଣ୍ଡ ୧୮ ପଳ ।

ଶୁକ୍ର—ଶୀତଳ,ଅଗ୍ନିମନ୍ଦାଯୁକ୍ତ, ଶକ୍ତିବିନାଶକାରୀ । ଶୁକ୍ର ସୂର୍ଯ୍ୟଙ୍କୁ ୨୨୪ ଦିନ ୪୨ ଦଣ୍ଡ ୩ ପଳରେ ପ୍ରଦକ୍ଷିଣ କରେ । ସୂର୍ଯ୍ୟାସ୍ତ ପୂର୍ବେ ଓ ସୂର୍ଯ୍ୟାସ୍ତ ପରେ ଶୁକ୍ର ସ୍ପଷ୍ଟ ଭାବରେ ଦେଖାଯାଏ । ଶୁକ୍ର ପୂର୍ବରେ ୨୫୬ ଦିନ ଓ ପଶ୍ଚିମରେ ୨୪୬ ଦିନ ଉଦୟ ହୁଏ । [illegible] ୧୨ ଦିନ ମାତ୍ର ବକ୍ରଗମନ କରେ । ଶୁକ୍ରର ବ୍ୟାସ ୭୮୮୦ ମାଇଲ । କକ୍ଷ ଆବର୍ତ୍ତନ କାଳ ୫୮ ଦଣ୍ଡ ୨୨ ପଳ, ତାହାର ୧ ଘଣ୍ଟାର ଗତି ୭୮,୦୦୦ ମାଇଲ ।

ଶନି—ରସଶୋଷକ, ଉଷ୍ଣବୃଦ୍ଧି ଓ ବାୟୁପ୍ରକୋପକାରୀ । ଶନି ସୂର୍ଯ୍ୟଙ୍କୁ ୨୯ ବର୍ଷ, ୫ ମାସ, ୧୭ ଦିନ, ୧୨ ଦଣ୍ଡ, ୩୦ ପଳରେ ପ୍ରଦକ୍ଷିଣ କରେ । ଶନି ଏକ ବିସ୍ତୃତ ବଳୟାକାର ମଣ୍ଡଳଯୁକ୍ତ । ତାହାର ୮ଟି ଉପଗ୍ରହ ଅଛନ୍ତି । ଶନି ୧୮୪ ଦିନ ବକ୍ରଗମନ କରେ ।

ଶନିର ବ୍ୟାସ ୭୫, ୦୩୬ ମାଇଲ । କକ୍ଷ ଆବର୍ତ୍ତନକାଳ ୨୬ ଦଣ୍ଡ ୧୫ ପଳ; ୧ ଘଣ୍ଟାରେ ଗତି ୨୧, ୦୦୦ ମାଇଲ । (ଶନି ପରେ ଯଥାକ୍ରମେ ନବାବିଷ୍କୃତ ୟୁରେନାସ୍ ଓ ନେପଚ୍ୟୁନ ଅବସ୍ଥିତ, ଏମାନେ ଯଥାକ୍ରମେ ୮୪ ବର୍ଷ ଓ ୧୬୪ ବର୍ଷ ୭ ମାସରେ ସୂର୍ଯ୍ୟଙ୍କୁ ପ୍ରଦକ୍ଷିଣ କରନ୍ତି । ଆର୍ଯ୍ୟ ଜ୍ୟୋତିଷରେ ଏମାନେ ସମ୍ପର୍କଶୂନ୍ୟ । )

ରାହୁ ଓ କେତୁ—ଏ ଉଭୟେ ଗ୍ରହ ନୁହନ୍ତି । କେହୁଁମାନେ ଯଥାକ୍ରମେ

ପୃଥିବୀ ଓ ଚନ୍ଦ୍ରର ଛାୟା ଓ ଅନ୍ୟ କେହିଁ ମାନେ ଚନ୍ଦ୍ର ଓ ପୃଥିବୀର ଭ୍ରମଣ ପଥର ଏକ କ୍ରାନ୍ତିପାତ ବିନ୍ଦୁ ବୋଲି ଠିକ କରନ୍ତି । ଏ ଦୁଇଟିଯେ ସର୍ବଦା ସମ ସପ୍ତମ ଭାବରେ ରହନ୍ତି । ଗ୍ରହ ବୋଲି ଏମାନଙ୍କୁ ନ ନେଇଥିବା ଯୋଗେ ଜ୍ୟୋତିଃଶାସ୍ତ୍ରରେ ଏମାନଙ୍କର ସ୍ୱକୃତ ପ୍ରକାଶ ଫଳ କିଛି ନାହିଁ ।

ଆର୍ଯ୍ୟ ସିଦ୍ଧାନ୍ତକାରଗଣ ଜ୍ୟୋତିଃଶାସ୍ତ୍ରର ଆବଶ୍ୟକତା ଶୁଭାଶୁଭ ଫଳ ଜ୍ଞାନ ନିମିତ୍ତ ବୋଲି ଠିକ୍ କରିଥିବା ହେତୁରୁ ଫଳିତ ଜ୍ୟୋତିଷକୁ ଯେତିକି ପରିମାଣରେ ଗଣିତର ଆବଶ୍ୟକ ସେତିକି ମାତ୍ର ଲେଖି ଯାଇଅଛନ୍ତି । ଗ୍ରହ ଶୁଭାଶୁଭ ବସ୍ତୁର ନିମିତ୍ତ ଯେଉଁ ଉପାୟଗୁଡ଼ିକ ନିର୍ଦ୍ଦେଶ କରିଯାଇଅଛନ୍ତି ତାହାର ଫଳ ଆମେ ପ୍ରତ୍ୟେକ ମୁହୂର୍ତ୍ତରେ ଅନୁଭବ କରୁଅଛୁ । ପବନ ଜୁଆର, ଭୂକମ୍ପ ଇତ୍ୟାଦି ସମସ୍ତ ଘଟନା ଗ୍ରହ ପ୍ରଭାବରେ ସଂଘଟିତ ହୁଏ । ମାନଯନ୍ତ୍ରଦ୍ୱାରା ବା ଗଣିତ ଦ୍ୱାରା ଉପରୋକ୍ତ ଘଟନାମାନଙ୍କ ସମ୍ବନ୍ଧରେ ବା ଗ୍ରହଣାଦିର ସମ୍ବନ୍ଧରେ ପୂର୍ବରୁ ଯାହା ଠିକ୍ କରାଯାଇଥାଏ ଫଳରେ ତାହାର କୌଣସି ବୈଷମ୍ୟ ଦେଖାଯାଏ ନାହିଁ । ସେପରି ମନୁଷ୍ୟର ଭାଗ୍ୟ ବିଷୟର ଗ୍ରହ ଶୁଭାଶୁଭକୁ ଧରି ଯାହା ଗଣନା କରାଯାଇଥାଏ ତାହାର ଫଳରେ କୌଣସି ଭୁଲ ପରିଦୃଷ୍ଟ ହୁଏ ନାହିଁ । ଜ୍ୟୋତିଃଶାସ୍ତ୍ର ବଳରେ ଈଶ୍ୱରଙ୍କର ସର୍ବଦା ବ୍ୟାପକତ୍ୱ ଓ ସର୍ବଶକ୍ତିତ୍ୱ ଉପଲବ୍ଧି କରାଯାଏ । ଭାଗ୍ୟରେ ବିଶ୍ୱାସ କଲେ ଲୋକ ନାସ୍ତିକ ହୋଇ ନ ପାରେ । ତେଣୁ ପ୍ରତ୍ୟେକ ବ୍ୟକ୍ତି ଜ୍ୟୋତିଃ ଶାସ୍ତ୍ରରେ କିଛି ନା କିଛି ଜ୍ଞାନ ଲାଭ କରିବା ଅତ୍ୟାବଶ୍ୟକ ।
ଇଂ ବନ୍ଧୁନେତ ।

ଭବୀତ —

ଶ୍ରୀ ବାଉକୋଳି ମହାପାତ୍ର ଶର୍ମା ।

# ଜ୍ୟୋତିଷ ପାରିଭାଷିକ ଶବ୍ଦାଭିଧାନ

ଅଂଶ:—ରାଶିଚକ୍ରକୁ ୩୬୦ ଭାଗ କଲେ ୧ ଭାଗ ।

ଅନୁପଚୟ:—୧, ୨, ୪, ୫, ୭, ୮, ୯, ୧୨ (ଲଗ୍ନଠାରୁ)

ଅମାତ୍ୟକାରକ:—ଆତ୍ମକାରକ ଗ୍ରହ ଅପେକ୍ଷା ଯେ ଗ୍ରହସ୍ଫୁଟାଂଶରେ କମ୍ ।

ଅବରୋହ:—ଉଚ୍ଚ ସ୍ଥାନଠାରୁ ନୀଚ ଦିଗରେ ଗତି ।

ଅସ୍ତଗତ:—ରବିର ୧୧ ଅଂଶ ମଧ୍ୟରେ ବୃହସ୍ପତି ।
" ୧୫ " " ଶନି ।
" ୧୭ " " ମଙ୍ଗଳ ।
" ୧୦ " " ଶୁକ୍ର ।
" ୮ " " ବକ୍ରୀ ଶୁକ୍ର ।
" ୧୪ " " ବୁଧ ।
" ୧୨ " " ବକ୍ରୀ ବୁଧ ।

ଆତ୍ମକାରକ:—ରାଶିଚକ୍ର ମଧ୍ୟରେ ଯେଉଁ ଗ୍ରହ ରାଶିର ସ୍ଫୁଟ ଅଂଶରେ ସମସ୍ତଙ୍କଠାରୁ ଅଧିକ ।

ଆପୋକ୍ଲିମ:—୩ୟ, ୬ଷ୍ଠ, ୯ମ ଓ ୧୨ଶ ସ୍ଥାନ ।

ଆରୂଢ଼ ଚକ୍ର:—ଜନ୍ମ ଚକ୍ରରେ ଲଗ୍ନାଧିପତି ଲଗ୍ନଠାରୁ ଯେତେ ସ୍ଥାନରେ ଥିବ ତାହାଠାରୁ ସେତିକି ସ୍ଥାନରେ ଆରୂଢ଼ ଲଗ୍ନ । ଏହିପରି ୨ୟର ଅଧିପତି ୪ର୍ଥର ଅଧିପତି, ୫ମର ଅଧିପତି ୭ମର ଅଧିପତି, ୯ମର ଅଧିପତି ଓ ୧୨ଶର ଅଧିପତିଙ୍କୁ ମଧ୍ୟ ଆରୂଢ଼ ଚକ୍ରରେ ପୂର୍ବୋକ୍ତ ନିୟମରେ ଅବସ୍ଥିତ କରାଇବ ।

ଉପଚୟ:—ତୃତୀୟ, ଷଷ୍ଠ, ଦଶମ ଓ ଏକାଦଶ ।

ଓଜରାଶି:—ମେଷ, ମିଥୁନ, ସିଂହ, ତୁଳା, ଧନୁ ଓ କୁମ୍ଭ ।

କୀଟରାଶି—କର୍କଟ ଓ ବୃଶ୍ଚିକ ।

କେନ୍ଦ୍ର:—ଲଗ୍ନ, ଚତୁର୍ଥ, ସପ୍ତମ, ଦଶମ ।

କ୍ରୂର ଗ୍ରହ:—ମଙ୍ଗଳ ଓ ଶନି

ଗତି:—ଏହା ଆଠ ପ୍ରକାର । ଯଥା:—ବକ୍ର, ଅନୁବକ୍ର, ବିକଳ, ମନ୍ଦ, ମନ୍ଦତର, ସମ, ଶୀଘ୍ର ଓ ଅତିଶୀଘ୍ର ।

ଗୁଳିକ:—ଦିବା ଭାଗରେ ଗୁଳିକଘଣ୍ଟି ଆଣିବାକୁ ହେଲେ ଦିବାମାନକୁ ଓ ରାତ୍ରିକାଳରେ ଆଣିବାକୁ ହେଲେ ରାତ୍ରିମାନକୁ ୮ରେ ହରଣ କରିବେ । ଯେଉଁ ବାରର ଗୁଳିକ ଲଗ୍ନ ଆଣିବାକୁ ହେବ ସେହିବାରର ଧ୍ରୁବାଙ୍କଦ୍ୱାରା ପୂର୍ବୋକ୍ତ ଏକ ଅଷ୍ଟମାଂଶ କାଳକୁ ଗୁଣିବେ । ଯେତେ ଦଣ୍ଡ ଯେତେ [illegible]ତା ହେବ ତ ସେତିକ-ବେଳକୁ ଯେ ଲଗ୍ନର ଯେତିକ ଅଂଶ ଭୋଗ ହେଉଥିବ ତାହାର ସେତିକି ଅଂଶରେ ଗୁଳିକ ଲଗ୍ନ ।

ବାରମାନଙ୍କର ନାମ:—ରବି, ସୋମ, ମଙ୍ଗଳ, ବୁଧ, ଗୁରୁ, ଶୁକ୍ର, ଶନି

ଧ୍ରୁବାଙ୍କ:—ଦିବାଭାଗରେ:—୭, ୬, ୫, ୪, ୩, ୨, ୧,

" :—ରାତ୍ରି ଭାଗରେ:—୩, ୨, ୧, ୭, ୬, ୫, ୪,

ତ୍ରିକ:—ଷଷ୍ଠ, ଅଷ୍ଟମ ଓ ଦ୍ୱାଦଶ,

ତ୍ରିକୋଣ:—ନବମ ଓ ପଞ୍ଚମ

ଦୀପ୍ତାଂଶ:—ରବି ଯେ ରାଶିରେ ଥିବ ସେ ରାଶିର ୧୫ ଅଂଶରେ ରବି ଦୀପ୍ତ । ଏହିପରି ଚନ୍ଦ୍ର ୧୨ ଅଂଶସ୍ଥ, ମଙ୍ଗଳ, ବୁଧ ଓ ଶୁକ୍ର ୭ମ ଅଂଶସ୍ଥ, ବୃହସ୍ପତି ଓ ଶନି ରାଶିର ୯ମ ଅଂଶସ୍ଥ ହେଲେ ଦୀପ୍ତ ହୁଅନ୍ତି ।

ଧୂମରାଶି—ରବିସ୍ଫୁଟ + ୪ରାଶି ୧୩।୨୦

ଧ୍ୱଜରାଶି:—ରବିସ୍ଫୁଟ—୧ରାଶି ।

ନୀଚ:—ଯଥାସ୍ଥାନରେ ଦେଖ ।

ପରାଜିତ:—ଗ୍ରହର ଦୀପ୍ତାଂଶ ମଧ୍ୟଗତ ।

ପରିବେଶ:—୧୨ଶ ରାଶି—ଧୂମ+୭ରାଶି ।

ବକ୍ର:—କ୍ଷୀଣ କାନ୍ତିବିଶିଷ୍ଟ ପୃଷ୍ଠଗାମୀ ଗ୍ରହ ।

ବର୍ଷଲଗ୍ନ:—ଜାତକରେ ଯେ ରାଶିର ଯେତେ ଅଂଶରେ ରବି ଥିବ ବର୍ଷ ମଧ୍ୟରେ ସେହି ରାଶିର ସେତିକି ଅଂଶକୁ ରବି ଯେତେବେଳେ ଆସିବ ସେତିକିବେଳକୁ ଯେ ଲଗ୍ନ ହେବ ତାହାର ନାମ ବର୍ଷ ଲଗ୍ନ ।

ବ୍ୟତିପାତ:—୧୨ରାଶି+ଧୂମରାଶି ।

ମାନ୍ଦ:—ଜୁଳକ ଲଗ୍ନ ଯେଉଁଠାରେ ହେବ ତାହାର ସପ୍ତମରେ ମାନ୍ଦ ହେବ ।

ମୁନ୍ଥା:—ବାମାବର୍ତ୍ତରେ ଗଣନୀୟ ବର୍ଷଲଗ୍ନ ।

ସପ୍ତାଂଶ: ରାଶିକୁ ୭ ଭାଗ କଲେ ପ୍ରତ୍ୟେକ ଭାଗର ନାମ ସପ୍ତାଂଶ । ବିଷମ ରାଶିର ପ୍ରଥମ ସପ୍ତାଂଶପତି ସେହି ରାଶିର ଅଧିପତି, ୨ୟ ସପ୍ତାଂଶାଧିପତି ସେହି ରାଶିର ଦ୍ୱିତୀୟ ରାଶିର ଅଧିପତି, ଏହିକପେ ବିଷମ ରାଶି ସପ୍ତାଂଶାଧିପତି ନିର୍ଣ୍ଣୟ କରିବ । ସମରାଶିର ପ୍ରଥମ ସପ୍ତାଂଶର ଅଧିପତି ସେହି ରାଶିର ସପ୍ତମ ରାଶ୍ୟଧିପତି । ଦ୍ୱିତୀୟ ସପ୍ତାଂଶର ଅଧିପତି ୭ମର ଦ୍ୱିତୀୟ ଅର୍ଥାତ୍ ଅଷ୍ଟମର ଅଧିପତି । ଏହି କ୍ରମେ ଗଣନା କରିବ ।

## କାଳ ପରିମାଣ

୬୦ ବିପଳରେ ୧ ପଳ (ପଳକୁ ୨୪ ସେକେଣ୍ଡ)

୬୦ ପଳରେ ୧ ଦଣ୍ଡ (ଦଣ୍ଡକୁ ୨୪ ମିନିଟ)

୭ ଦଣ୍ଡ ୩୦ ପଳରେ ୧ ପ୍ରହର (ପ୍ରହରକୁ ୩ଘଣ୍ଟା)

୮ ପ୍ରହର ବା ୬୦ ଦଣ୍ଡରେ ୧ ଅହୋରାତ୍ର (ଅହୋରାତ୍ର ୨୪ଘଣ୍ଟା)

୩୬୫ ଦିନ ୧୫ ଦଣ୍ଡରେ ୧ ବର୍ଷ ।

ଅର୍ଯ୍ୟହିନ୍ଦୁଶାସ୍ତ୍ରୋପଯୋଗୀ କାଳପରିମାଣ ଓ ପାଶ୍ଚାତ୍ୟ ଦେଶ ବ୍ୟବହାର୍ଯ୍ୟ କାଳପରିମାଣ ମଧ୍ୟରେ କୌଣସି ପ୍ରଭେଦ ନାହିଁ ।

୬୦ ସେକଣ୍ଡରେ=୧ ମିନିଟ

୬୦ ମିନିଟରେ=୧ ଘଣ୍ଟା ।

୨୪ ଘଣ୍ଟାରେ=୧ ଅହୋରାତ୍ର ।

୩୬୫ ଦିନ ୬ ଘଣ୍ଟାରେ=୧ ବର୍ଷ ।

| ପ୍ରାଚୀନ ମାପପରିମାଣ:— | ପାଶ୍ଚାତ୍ୟ ମାପପରିମାଣ:— |
|---|---|
| ୮ ଯବରେ=୧ ଅଙ୍ଗୁଳ | ୧୨ ଇଞ୍ଚରେ=୧ ଫୁଟ |
| ୨୪ ଅଙ୍ଗୁଳରେ=୧ ହସ୍ତ | ୩ ଫୁଟରେ=୧ ଗଜ |
| ୪ ହସ୍ତରେ=୧ ଦଣ୍ଡ | ୨୨ ଗଜରେ=୧ ଶିକୁଳି |
| ୨୦୦୦ ଦଣ୍ଡରେ=୧ କୋଶ | ୧୦ ଶିକୁଳିରେ=୧ ଫର୍ଲଙ୍ଗ |
| ୪ କୋଶରେ=୧ ଯୋଜନ | ୮ ଫର୍ଲଙ୍ଗରେ=୧ ମାଇଲ |
| | ୨ ମାଇଲରେ=୧ କୋଶ |

# ସୂଚୀ


| ବିଷୟ | ପୃଷ୍ଠା |
|---|---|
| ମଙ୍ଗଳାଚରଣଂ | ୧ |
| ପ୍ରଥମୋଽଧ୍ୟାୟଃ— | |
| ରବ୍ୟାଦ୍ୟୁତ୍ପତ୍ତିଃ | ୨ |
| କାଲୋତ୍ପତ୍ତିଃ | ,, |
| ମେଷାଦି ଦ୍ୱାଦଶ ରାଶୟଃ | ୩ |
| ରବ୍ୟାଦିନବଗ୍ରହାଃ | ,, |
| ରାଶିବିଭାଗଃ | ,, |
| ନକ୍ଷତ୍ର କଥନଂ | ୪ |
| ରାଶିସଂଜ୍ଞା | ,, |
| କ୍ରୂରସୌମ୍ୟାଦି କଥନଂ | ୫ |
| କାଲପୁରୁଷସ୍ୟାଙ୍ଗବିଭାଗଃ | ,, |
| ରାଶୀନାଂ ଜାତିବିଭାଗଃ | ୬ |
| ମେଷାଦୀନାଂ ବର୍ଣ୍ଣଜ୍ଞାନଂ | ,, |
| ଚଳଜାଦି ଜ୍ଞାନଂ | ,, |
| ପୃଷ୍ଠୋଦୟଶୀର୍ଷୋଦୟାଦି ଜ୍ଞାନଂ | ୭ |
| ଗ୍ରହସଂଜ୍ଞା | ,, |
| ଜାତି କଥନଂ | ୮ |
| ବର୍ଣ୍ଣ କଥନଂ | ,, |
| ପ୍ରକୃତି କଥନଂ | ,, |
| ସତ୍ତ୍ୱାଦିଜ୍ଞାନଂ | ୯ |
| ଦିଗଧିପତି ନିର୍ଣ୍ଣୟଃ | ୧୦ |
| ପୁଂସ୍ତ୍ର୍ୟାଦି ନିରୂପଣଂ | ,, |
| ବେଦାଧିପ କଥନଂ | ,, |
| ପାପଶୁଭ ବିଚାରଃ | ୧୧ |
| କ୍ଷେତ୍ର ନିର୍ଣ୍ଣୟଃ | ,, |
| ମୂଳତ୍ରିକୋଣଂ | ,, |
| ତୁଙ୍ଗନୀଚ କଥନଂ | ୧୨ |
| ଶତ୍ରୁମିତ୍ର କଥନଂ | ୧୩ |
| ସ୍ୱଦ୍ୱୋରୁଚ୍ଛମିତ୍ରାଦିକଥନଂ | ୧୪ |
| କେତୋରୁଚ୍ଛମିତ୍ରାଦି କଥନଂ | ,, |
| ତାତ୍କାଳିକ ଶତ୍ରୁମିତ୍ର କଥନଂ | ୧୫ |
| ଅଧିମିତ୍ରାଦି କଥନଂ | ,, |
| ଦୃଷ୍ଟିବିଚାରଃ | ୧୬ |
| ତାଜକୋକ୍ତ ଦୃଷ୍ଟି କଥନଂ | ,, |
| ସିଦ୍ଧବେତ୍ତୋର୍ଦୃଷ୍ଟି କଥନଂ | ,, |
| ଗ୍ରହାଣାଂ ଅଙ୍ଗାଧିକାର କଥନଂ | ୧୮ |
| ଗ୍ରହକାରକ ନିର୍ଣ୍ଣୟଃ | ୧୯ |
| ସ୍ୱାମ୍ୟାଦି ଜ୍ଞାନଂ | ୨୨ |
| ରସାଧିପତି ନିର୍ଣ୍ଣୟଃ | ୨୩ |
| ସ୍ଥାନ ସଂଜ୍ଞା | ,, |

| ବିଷୟ | ପୃଷ୍ଠା |
|---|---|


**ଦ୍ୱିତୀୟୋଽଧ୍ୟାୟଃ—**

ଲଗ୍ନ ବିସ୍ତରଃ ୨୪
ସମୟ ଆନୟନଂ ୨୫
ଖଣ୍ଡାବସ୍ଥା ୨୮
ମଧ୍ୟାହ୍ନାବସ୍ଥା ୨୯
ନକ୍ଷତ୍ର ଦର୍ଶନଂ ୩୧
ଲଗ୍ନ ନିରୂପଣଂ ୩୪
ଉଦୟାସ୍ତାଦି ଜ୍ଞାନଂ ,,
ଦିବଭୋଗ ନିର୍ଣ୍ଣୟଃ ,,
ସ୍ଥୂଲ ଲଗ୍ନମାନଂ ୩୫
ଅୟନାଂଶ ସଂଶୋଧିତ ବିଭିନ୍ନ ସ୍ଥାନୀୟ ଲଗ୍ନମାନଂ ୩୫
ଲଗ୍ନକୁଣ୍ଡଳୀ ପ୍ରଣାଳୀ ୩୭
ଷଡ୍‌ବର୍ଗ ନିରୂପଣଂ ୩୯
କ୍ଷେତ୍ରାଧିପତି କଥନଂ ,,
ହୋରାଦ୍ରେକ୍କାଣ ବିଭାଗଃ ୪୦
ନବାଂଶ ନିରୂପଣଂ ୪୧
ତ୍ରିଂଶାଂଶ କଥନଂ ,,
ଷଡ୍‌ବର୍ଗ ଫଳଂ ୪୨
ଗ୍ରହକୁଣ୍ଡଳୀ ବିସ୍ତରଃ ୪୩
ହୋରା ଲଗ୍ନକୁଣ୍ଡଳୀ କଥନଂ ୪୬
ଦଶା ନିର୍ଣ୍ଣୟଃ ୪୭

ବିଂଶୋତ୍ତରୀଦଶା ବିସ୍ତରଃ ୪୮
ବିଂଶୋତ୍ତରୀ ଦଶା ପରିମାଣଂ ୪୯
ଅଷ୍ଟୋତ୍ତରୀ ଦଶା ନିର୍ଣ୍ଣୟଃ ,,
ଅଷ୍ଟୋତ୍ତରୀ ଦଶା ପରିମାଣଂ ୫୦
ବିଂଶୋତ୍ତରୀ ଦଶା ଭୋଗ ଆନୟନଂ ,,
ଅଷ୍ଟୋତ୍ତରୀ ଦଶାଭୋଗ ଆନୟନଂ ୫୩
ନକ୍ଷତ୍ରତୋ ନାମ ନୟନଂ ୫୪
ଜାତକ ଲକ୍ଷଣଂ ୫୫

**ତୃତୀୟୋଽଧ୍ୟାୟଃ—**

ଶିଶୁ ଅରିଷ୍ଟ ପ୍ରକରଣଂ ୫୮
ଅରିଷ୍ଟ ବିଭାଗଃ ,,
ରବି ଅରିଷ୍ଟଂ ,,
ଚନ୍ଦ୍ର ଅରିଷ୍ଟଂ ୫୯
ମଙ୍ଗଳ ଅରିଷ୍ଟଂ
ବୁଧ ଅରିଷ୍ଟଂ ,,
ବୃହସ୍ପତି ଅରିଷ୍ଟଂ ୬୦
ଶୁକ୍ର ଅରିଷ୍ଟଂ ,,
ଶନି ଅରିଷ୍ଟଂ ,,
ରାହୁ ଅରିଷ୍ଟଂ ୬୧
କେତୁ ଅରିଷ୍ଟଂ ୬୨

| ବିଷୟ | ପୃଷ୍ଠା |
| --- | --- |
| ବିବିଧ ରିଷ୍ଟଯୋଗାଃ | „ |
| ପାପଯୁତ ଚନ୍ଦ୍ରରିଷ୍ଟଂ | ୬୩ |
| ପାପମଧ୍ୟଗ ଚନ୍ଦ୍ରରିଷ୍ଟଂ | „ |
| କ୍ଷୀଣଚନ୍ଦ୍ର ରିଷ୍ଟଂ | ୬୪ |
| ଅଂଶବିଶେଷସ୍ଥ ଚନ୍ଦ୍ରରିଷ୍ଟଂ | „ |
| ତିଥିନକ୍ଷତ୍ରଯୋଗ ରିଷ୍ଟଂ | „ |
| ଦ୍ରେକ୍କାଣ ରିଷ୍ଟଂ | ୬୫ |
| ଦ୍ରେକ୍କାଣବିଶେଷ ରିଷ୍ଟଂ | „ |
| ଲଗ୍ନାଧିପଜନ୍ମାଧିପୟୋଃ ରିଷ୍ଟଂ | ୬୬ |
| ଅଷ୍ଟମସ୍ଥ ପାପଗ୍ରହ ରିଷ୍ଟଂ | ୬୭ |
| ଅଷ୍ଟମାଧିପସ୍ଥିତି ରିଷ୍ଟଂ | „ |
| ଶିଶୁପତାକୀଚକ୍ରଂ | ୬୮ |
| ବେଧ ନିର୍ଣ୍ଣୟଃ | ୬୯ |
| ବେଧାଙ୍କ ନିର୍ଣ୍ଣୟଃ | ୭୦ |
| ରିଷ୍ଟକାଳଂ | „ |
| ଯାମାର୍ଦ୍ଧାଧିପତି ନିରୂପଣଂ | ୭୧ |
| ଦିବା ଯାମାର୍ଦ୍ଧାଧିପତିନିର୍ଣ୍ଣୟଃ | ୭୨ |
| ରାତ୍ରି ଯାମାର୍ଦ୍ଧାଧିପତି | ୭୩ |
| ଦିବାଦଣ୍ଡାଧିପ ନିର୍ଣ୍ଣୟଃ | „ |
| ରାତ୍ରି ଦଣ୍ଡାଧିପତି ନିର୍ଣ୍ଣୟଃ | ୭୪ |
| ପତାକୀରିଷ୍ଟ ଭଙ୍ଗଃ | ୭୫ |
| ଗଣ୍ଡନକ୍ଷତ୍ରାଣି | „ |
| ଗଣ୍ଡକାଲଃ | „ |
| ତ୍ରିବିଧ ଗଣ୍ଡକଥନଂ | ୭୬ |
| ଗଣ୍ଡସମୟ ନିରୂପଣଂ | „ |
| ଗଣ୍ଡରିଷ୍ଟ ଭଙ୍ଗଃ | „ |
| ଗଣ୍ଡଦୋଷ ଶାନ୍ତିଃ | ୭୭ |
| ସହସ୍ରାକ୍ଷମନ୍ତ୍ରାଃ | „ |
| ମାତୃରିଷ୍ଟଂ | ୭୮ |
| ପିତୃରିଷ୍ଟଂ | ୮୦ |
| ମାତୃହାପିତୃହାଯୋଗାଃ | ୮୧ |
| ରିଷ୍ଟଭଙ୍ଗପ୍ରକରଣଂ | ୮୨ |
| ଜନ୍ମବିଧିପରିଶିଷ୍ଟଃ | ୮୫ |
| ମସ୍ତକ ଜ୍ଞାନଂ | „ |
| ଧାତ୍ରୀଜ୍ଞାନଂ | ୮୬ |
| ଦୀପଜ୍ଞାନଂ | „ |
| ତୃଣାଦିଜ୍ଞାନଂ | „ |
| ପିତୃ ବିଦେଶସ୍ଥଜ୍ଞାନଂ; | ୮୮ |
| ଜାରଜଯୋଗଃ | ୮୯ |
| ଜାରଜ ଯୋଗଭଙ୍ଗଃ | ୯୦ |
| ଗ୍ରହବଲ ବିଚାରଃ | „ |
| ଚେଷ୍ଟାବଲମାହ | „ |
| କାଲବଲମାହ | ୯୧ |
| ଚନ୍ଦ୍ରବଲଜ୍ଞାନଂ | ୯୨ |
| ଦିଗ୍‌ବଲ ଜ୍ଞାନଂ | „ |
| ଷଡ୍‌ଭାବ ନିର୍ଣ୍ଣୟଃ | ୯୩ |

ବିଷୟ | ପୃଷ୍ଠା


ଲଜ୍ଜିତ ଗ୍ରହଃ „
ଗର୍ବିତ ଗ୍ରହଃ „
କ୍ଷୁଧିତଗ୍ରହଃ „
ତୃଷିତ ଗ୍ରହଃ ୯୪
ମୁଦିତ ଗ୍ରହଃ „
କ୍ଷୋଭିତ ଗ୍ରହଃ „
ଶୟନାଦ୍ୟାଦଶାବସ୍ଥା ବର୍ଣ୍ଣନଃ, ୯୫
ଗ୍ରହଜାତ ନକ୍ଷତ୍ରଂ ୯୬
ଦ୍ୱାଦଶ ଅବସ୍ଥା „
ଶୁଭାଶୁଭ ଅବସ୍ଥାନିର୍ଣ୍ଣୟଃ ୯୭
ଭାବାଧିପତିବଲଲକ୍ଷଣମାହ ୯୮
ମେଷଲଗ୍ନଜାତାନାଂ
ଶୁଭାଶୁଭଗ୍ରହନିରୂପଣମାହ ୧୦୩
ବୃଷସ୍ୟ ୧୦୪
ମିଥୁନସ୍ୟ „
କର୍କଟସ୍ୟ „
ସିଂହସ୍ୟ „
କନ୍ୟାୟାଃ ୧୦୫
ତୁଲାୟାଃ „
ବୃଶ୍ଚିକସ୍ୟ „
ଧନୁଷଃ „
ମକରସ୍ୟ ୧୦୬
କୁମ୍ଭସ୍ୟ „
ମୀନସ୍ୟ „
ପରସ୍ପର ସ୍ଥାନଦେହୋବାଧକତା ୧୦୮
ବାଲାଦିପଞ୍ଚାବସ୍ଥା „
ବାଲାଦ୍ୟବସ୍ଥା ଫଳଂ ୧୦୯
ଫଳବିଶ୍ୱବିକ୍ରମଃ „
ରାଶିଜାତ ଫଳଂ ୧୧୧
ନକ୍ଷତ୍ରଜାତ ଫଳଂ „

ଚତୁର୍ଥୋଽଧ୍ୟାୟଃ—

ଦୃଷ୍ଟିଫଳ ବିଚାରଃ ୧୧୨
ରବିଂ ପ୍ରତି ଗ୍ରହଦୃଷ୍ଟି ଫଳଂ ୧୧୩
ଚନ୍ଦ୍ରଂ ପ୍ରତି ଗ୍ରହଦୃଷ୍ଟି ଫଳଂ „
ମଙ୍ଗଳଂପ୍ରତି ଗ୍ରହଦୃଷ୍ଟି ଫଳଂ ୧୧୫
ବୁଧଂ ପ୍ରତି ଗ୍ରହଦୃଷ୍ଟି ଫଳଂ ୧୧୬
ବୃହସ୍ପତିଂ ପ୍ରତି ଗ୍ରହଦୃଷ୍ଟି ଫଳଂ „
ଶୁକ୍ରଂ ପ୍ରତି ଗ୍ରହଦୃଷ୍ଟି ଫଳଂ ୧୧୭
ଶନିଂ ପ୍ରତି ଗ୍ରହଦୃଷ୍ଟି ଫଳଂ ୧୧୮
ସମସ୍ତ ଗ୍ରହଦୃଷ୍ଟି ଲଗ୍ନଫଳଂ „
ସମସ୍ତ ଗ୍ରହଦୃଷ୍ଟି ଚନ୍ଦ୍ରଫଳଂ ୧୧୯
ଗ୍ରହଯୋଗଫଳ ନିରୂପଣଂ ୧୨୦
ରାଶିସ୍ଥିତ ଫଳବିଚାରଃ ୧୨୩
ଭାବଫଳ ବିଚାରଣାଃ :— ୧୩୬

| ବିଷୟ | ପୃଷ୍ଠା |
|---|---|
| ତନୁସ୍ଥାନ ବିଗ୍ରହଃ | ୧୩୨ |
| ଧନସ୍ଥାନ ବିଗ୍ରହଃ | „ |
| ଭ୍ରାତୃସ୍ଥାନ ବିଗ୍ରହଃ | „ |
| ବାହନସ୍ଥାନ ବିଗ୍ରହଃ | „ |
| ପୁତ୍ରସ୍ଥାନ ବିଗ୍ରହଃ | ୧୩୩ |
| ଶତ୍ରୁସ୍ଥାନ ବିଗ୍ରହଃ | „ |
| ପତ୍ନୀସ୍ଥାନ ବିଗ୍ରହଃ | „ |
| ନିଧନସ୍ଥାନ ବିଗ୍ରହଃ | ୧୩୪ |
| ଧର୍ମସ୍ଥାନ ବିଗ୍ରହଃ | „ |
| କର୍ମସ୍ଥାନ ବିଗ୍ରହଃ | „ |
| ଲାଭସ୍ଥାନ ବିଗ୍ରହଃ | „ |
| ବ୍ୟୟସ୍ଥାନ ବିଗ୍ରହଃ | ୧୩୫ |
| ଲଗ୍ନଭାବ ବିଗ୍ରହଃ :— | ୧୩୬ |
| ଲଗ୍ନସ୍ଥ ଗ୍ରହଫଳଂ | ୧୩୬ |
| ଲଗ୍ନାଂଧିପସ୍ଥିତି ଫଳଂ | ୧୩୯ |
| ଧନଭାବ ବିଗ୍ରହଃ :— | ୧୪୧ |
| ଧନସ୍ଥ ଗ୍ରହଫଳଂ | „ |
| ଧନେଶସ୍ଥିତି ଫଳଂ | ୧୪୪ |
| ତୃତୀୟ ଭାବବିଗ୍ରହଃ :— | ୧୪୫ |
| ତୃତୀୟସ୍ଥ ଗ୍ରହଫଳଂ | „ |
| ତୃତୀୟ ସ୍ଥାନାଧିପସ୍ଥିତି ଫଳଂ | ୧୪୬ |
| ଭ୍ରାତୃନାଶଯୋଗାଃ | ୧୪୯ |
| ଚତୁର୍ଥ ଭାବବିଗ୍ରହଃ — | ୧୫୦ |
| ଚତୁର୍ଥସ୍ଥ ଗ୍ରହଫଳଂ | „ |
| ଚତୁର୍ଥ ସ୍ଥାନାଧିପତିସ୍ଥିତିଫଳଂ | ୧୫୬ |
| ପଞ୍ଚମ ଭାବବିଗ୍ରହଃ | ୧୫୫ |
| ପଞ୍ଚମସ୍ଥ ଗ୍ରହଫଳଂ | „ |
| ପଞ୍ଚମାଧିପସ୍ଥିତି ଫଳଂ | ୧୦୮ |
| ବିଦ୍ୟାବିଦଯୋଗାଃ | ୧୬୦ |
| ଦତ୍ତକ ପୁତ୍ରଗ୍ରହଣଯୋଗାଃ | ୧୬୧ |
| ବ୍ରହ୍ମଶାପଦେତୁକ ସନ୍ତାନନାଶଃ | ୧୬୪ |
| ପିତୃମାତୃ ଶାପହେତୁକ ସନ୍ତାନକ୍ଷୟଃ | ୧୬୪ |
| ସନ୍ତାନ ପ୍ରାପ୍ତି ନିମିତ୍ତ ପ୍ରାୟଶ୍ଚିତ୍ତଂ | ୧୬୫ |
| ଶାପ ପ୍ରତୀକାରୋପାୟଃ | „ |
| ଷଷ୍ଠଭାବ ବିଗ୍ରହଃ :— | |
| ଷଷ୍ଠସ୍ଥ ଗ୍ରହଫଳଂ | ୧୬୬ |
| ଷଷ୍ଠାଧିପସ୍ଥିତିଫଳଂ | ୧୬୯ |
| ସପ୍ତମ ଭାବବିଗ୍ରହଃ :— | |
| ସପ୍ତମସ୍ଥ ଗ୍ରହଫଳଂ | ୧୭୦ |
| ସପ୍ତମସ୍ଥାନାଧିପତିସ୍ଥିତି ଫଳଂ | ୧୭୪ |
| ବିବାହ ବୟସ ନିର୍ଣ୍ଣୟଃ | ୧୭୫ |
| ବିବାହ ପରଭାଗ୍ୟ ନିର୍ଣ୍ଣୟଃ | ୧୭୬ |
| ଅଷ୍ଟମ ଭାବବିଗ୍ରହଃ :— | ୧୭୮ |

| ବିଷୟ | ପୃଷ୍ଠା |
|---|---|
| ଅଷ୍ଟମସ୍ଥ ଗ୍ରହଫଳଂ | ୧୭୮ |
| ଅଷ୍ଟମାଧିପତ୍ଭ ସ୍ଥିତିଫଳଂ | ୧୮୧ |
| ନବମ ଭାବବିଚାରଃ :— | ୧୮୨ |
| ନବମସ୍ଥ ଗ୍ରହଫଳଂ | ,, |
| ନବମାଧିପତି ସ୍ଥିତିଫଳଂ | ୧୮୫ |
| ସ୍ୱଦେଶ ଭାଗ୍ୟଯୋଗଃ | ୧୮୬ |
| ଭାଗ୍ୟୋଦ୍ରେକ ସମୟଃ | ୧୮୭ |
| ଧର୍ମବଳ ବିଚାରଃ | ୧୮୮ |
| ଦଶମ ଭାବବିଚାରଃ | ୧୮୯ |
| ଦଶମସ୍ଥ ଗ୍ରହଫଳଂ | ୧୯୦ |
| ଦଶମାଧିପସ୍ଥିତି ଫଳଂ | ୧୯୩ |
| ଏକାଦଶ ଭାବବିଚାରଃ :— | ୧୯୫ |
| ଏକାଦଶସ୍ଥ ଗ୍ରହଫଳଂ | ,, |
| ଅୟସ୍ଥାନ ବଳବିଚାରଃ | ୧୯୭ |
| ଲାଭାଧିପସ୍ଥିତି ଫଳଂ | ୧୯୮ |
| ଦ୍ୱାଦଶ ଭାବବିଚାରଃ :— | ୧୯୯ |
| ଦ୍ୱାଦଶସ୍ଥ ଗ୍ରହଫଳଂ | ,, |
| ବ୍ୟୟଭାବବଳ ନିର୍ଣ୍ଣୟଃ | ୨୦୨ |
| ବ୍ୟୟାଧିପ ସ୍ଥିତିଫଳଂ | ,, |
| **ପଞ୍ଚମୋଽଧ୍ୟାୟଃ—** | |
| ରାଜଯୋଗ ବିଚାରଃ | ୨୦୩ |
| ଶୁଭଯୋଗ ନିର୍ଣ୍ଣୟଃ | ୨୧୦ |

| ବିଷୟ | ପୃଷ୍ଠା |
|---|---|
| ବୋଶ୍ୟାଦି ଯୋଗଃ | ୨୨୦ |
| ଯୋଗଜାତ ଫଳଂ | ୨୨୧ |
| ସ୍ୱଗୃହସ୍ଥ ଗ୍ରହଫଳଂ | ,, |
| ଚନ୍ଦ୍ର ଯୋଗବିଚାରଃ | ୨୨୨ |
| ଅଧିଯୋଗଃ | ,, |
| ସୁନଫାଦିଯୋଗଃ | ୨୨୩ |
| ସୁନଫାଦି ଯୋଗଜାତଫଳଂ | ୨୨୪ |
| କେମଦ୍ରୁମ ଯୋଗଭଙ୍ଗଃ | ୨୨୫ |
| ଭାଗ୍ୟଯୋଗଃ | ୨୨୬ |
| ପ୍ରବ୍ରଜ୍ୟାଯୋଗଃ | ୨୨୭ |
| ଜାରକାଦିବିଚାରଃ | ୨୨୮ |
| **ଷଷ୍ଠୋଽଧ୍ୟାୟଃ—** | |
| ଅନଷ୍ଟଯୋଗଃ | ୨୩୧ |
| ରାଜଯୋଗଭଙ୍ଗଃ | ,, |
| ସ୍ତ୍ରୀନାଶଯୋଗଃ | ୨୩୩ |
| ପୁତ୍ରନାଶଯୋଗଃ | ୨୩୪ |
| ଚକ୍ଷୁନାଶଯୋଗଃ | ୨୩୫ |
| ବଧିରଯୋଗଃ | ୨୩୭ |
| ଖଞ୍ଜଯୋଗଃ | ,, |
| ଶିରଶ୍ଛେଦନଯୋଗଃ | ୨୩୯ |
| ବନ୍ଧନଯୋଗଃ | ,, |

| ବିଷୟ | ପୃଷ୍ଠା |
| --- | --- |
| ସର୍ପଶୃଙ୍ଖଳଯୋଗାଃ | ୧୪୦ |
| ଜଳମଜ୍ଜନଯୋଗାଃ | ୧୪୧ |
| ବାତାଦ୍ୟରୋଗାଃ | ୧୪୨ |
| ମୂଷବୃଦ୍ଧିଃ | ,, |
| ଜଡ଼ଯୋଗାଃ | ୧୪୩ |
| ବୃକ୍ଷପତନଯୋଗାଃ | ,, |
| ବଜ୍ରପାତଯୋଗାଃ | ,, |

ସପ୍ତମୋଽଧ୍ୟାୟଃ—

| ବିଷୟ | ପୃଷ୍ଠା |
| --- | --- |
| ସ୍ତ୍ରୀଜାତକ ବିଷ୍ଟରଃ | ୧୪୪ |
| ବୈଧବ୍ୟଯୋଗାଃ | ୧୪୫ |
| ସୌଭାଗ୍ୟଯୋଗାଃ | ୧୪୬ |
| ଚଉର ନିର୍ଣ୍ଣୟଃ | ୧୪୯ |
| ଅଷ୍ଟକବର୍ଗ ବିସ୍ତରଃ | ,, |
| ରବ୍ୟଷ୍ଟକବର୍ଗଃ | ୧୫୦ |
| ଚନ୍ଦ୍ରାଷ୍ଟବର୍ଗଃ | ,, |
| ଭୂଜାଷ୍ଟବର୍ଗଃ | ୧୫୧ |
| ବୁଧାଷ୍ଟବର୍ଗଃ | ,, |
| ବୃହସ୍ପତ୍ୟଷ୍ଟବର୍ଗଃ | ୧୫୨ |
| ଶୁକ୍ରାଷ୍ଟବର୍ଗଃ | ,, |
| ଶନ୍ୟଷ୍ଟବର୍ଗଃ | ୧୫୩ |
| ଲଗ୍ନାଷ୍ଟବର୍ଗ ବିସ୍ତରଃ | ୧୫୩ |

| ବିଷୟ | ପୃଷ୍ଠା |
| --- | --- |
| ସ୍ପଷ୍ଟ ଶୁଭବିସ୍ତରଃ | ୧୫୫ |
| ଗ୍ରହାଣାମଷ୍ଟ ବର୍ଗଫଳବିସ୍ତରଃ | ୧୫୬ |
| ଅଷ୍ଟକବର୍ଗୋକ୍ତ ଆୟୁର୍ନିଦାନଂ | ୧୫୬ |
| ଆୟୁର୍ଦାୟ ନିର୍ଣ୍ଣୟଃ | ୧୫୮ |
| ଆୟୁଃପରିମାଣଂ | ୧୫୯ |
| ଆୟୁର୍ବିଭାଗଃ | ,, |
| ଆୟୁର୍ନିର୍ଣ୍ଣୟଃ | ୧୬୦ |
| ମାରକଗ୍ରହନିର୍ଣ୍ଣୟଃ | ,, |
| ଦୀର୍ଘମୃତ୍ୟୁଯୋଗାଃ | ୧୬୯ |

ଅଷ୍ଟମୋଽଧ୍ୟାୟଃ—

| ବିଷୟ | ପୃଷ୍ଠା |
| --- | --- |
| ଦଶାନ୍ତର୍ଦଶାନିର୍ଣ୍ଣୟଃ | ୧୭୧ |
| ଅଷ୍ଟୋତ୍ତରୀୟ ଅନ୍ତର୍ଦଶା ଆନୟନଂ | ୧୭୧ |
| ଅଷ୍ଟୋତ୍ତରୀୟ ପ୍ରତ୍ୟନ୍ତର୍ଦଶା ଆନୟନଂ | ୧୭୪ |
| ବିଂଶୋତ୍ତରୀୟ ଅନ୍ତର୍ଦଶା ଆନୟନଂ | ୧୭୪ |
| ବିଂଶୋତ୍ତରୀୟ ପ୍ରତ୍ୟନ୍ତର୍ଦଶା ଆନୟନଂ | ୧୭୬ |
| ରବିଦଶାଶୁଭାଶୁଭଫଳ ବିସ୍ତର | ୧୭୮ |

| ବିଷୟ | ପୃଷ୍ଠା |
|---|---|
| ଚନ୍ଦ୍ରଦଶାଶୁଭାଶୁଭଫଲ ବିଚାରଃ | ୨୮୧ |
| ଚନ୍ଦ୍ରାନ୍ତର୍ଦଶାଫଲ ବିଚାରଃ | ୨୮୨ |
| ମଙ୍ଗଳଦଶାଫଲ ବିଚାରଃ | ୨୮୪ |
| ରାହୁଦଶାଫଲ ବିଚାରଃ | ୨୮୭ |
| ବୃହସ୍ପତିଦଶାଫଲ ବିଚାରଃ | ୨୮୯ |
| ଶନିଦଶାଫଲ ବିଚାରଃ | ୨୯୧ |
| ବୁଧଦଶାଫଲ ବିଚାରଃ | ୨୯୪ |
| କେତୁଦଶାଫଲ ବିଚାରଃ | ୨୯୬ |
| ଶୁକ୍ରଦଶାଫଲ ବିଚାରଃ | ୨୯୯ |
| ଦଶାନ୍ତର୍ଦଶାସ୍ଥିତି ଫଳଂ | ୩୦୨ |
| **ନବମୋଽଧ୍ୟାୟଃ—** | |
| ମୁଂଥାଫଲ ବିଚାରଃ | ୩୦୭ |
| ପ୍ରଶ୍ନ ବିଚାରଃ | ୩୧୨ |
| ସନ୍ତାନପ୍ରଶ୍ନେ ବିଶେଷଃ | ୩୧୪ |
| ସାମୁଦ୍ରିକ ବିଚାରଃ | ୩୧୫ |
| ଅଙ୍ଗୁଳି ବିଚାରଃ | ୩୧୬ |

| ବିଷୟ | ପୃଷ୍ଠା |
|---|---|
| ରେଖା ବିଚାରଃ | ୩୧୬ |
| କରତଳ ଚକ୍ରଂ | ୩୨୧ |
| ତିଳ ଚିହ୍ନ ଦୀନାଂ ବିଚାରଃ | ୩୨୨ |
| ଅଦୃଷ୍ଟ ବିଚାରଃ | ୩୨୩ |
| **ଦଶମୋଽଧ୍ୟାୟଃ—** | |
| ଗ୍ରହଶାନ୍ତି ପ୍ରକରଣଂ | ୩୨୭ |
| ରତ୍ନ ଧାରଣଂ | " |
| ଧାତୁ ଧାରଣଂ | ୩୨୬ |
| ମୂଳ ଧାରଣଂ | " |
| ଗ୍ରହଦୋଷଶାନ୍ତ୍ୟର୍ଥସ୍ନାନଂ | ୩୨୮ |
| ହୋମ ପରିମାଣଂ | " |
| ଗ୍ରହଦାନଂ | ୩୨୯ |
| ଜପ ପରିମାଣଂ | ୩୩୨ |
| ବାଳରକ୍ଷାଶାନ୍ତ୍ୟର୍ଥଦ୍ରବ୍ୟାଦି ଧାରଣଂ | ୩୩୬ |
| ସ୍ୱାଚ ପରିଶିଷ୍ଟଂ | ୩୩୫ |
| ଇଂଗଜ ପରୀକ୍ଷା | ୩୬୧ |


ବିଷୟ ସୂଚୀ ସମାପ୍ତଃ ।

## ଗ୍ରନ୍ଥ ସଙ୍କଳନରେ ପ୍ରମାଣସଂଗ୍ରହ କରଥିବା ଗ୍ରନ୍ଥମାନଙ୍କର ନାମ ଓ ତଦ୍‌ବୋଧକ ସଙ୍କେତ ।

| | | | |
|---|---|---|---|
| ଅର୍ଯ୍ୟସିଦ୍ଧାନ୍ତ— | ଅ. ସି. | ବୃହଜ୍ଜାତକ— | ବୃ. ଜା. |
| କେରଳ ବ୍ୟାକରଣ— | କେ.ବ. | ଭଗବାନ୍ ଗାର୍ଗି — | ଭ ଗା |
| କେରଳସାର— | କେ.ସା. | ଭାବ କୁତୂହଳ— | ଭା. କୁ. |
| ଜାତକଚନ୍ଦ୍ରିକା | ଜା. ଚ. | ଯବନ ଜାତକ— | ଯ. ଜା. |
| ଜାତକାଲଙ୍କାର— | ଜା. ଅ. | ଯୋଗ ରତ୍ନାକର— | ଯୋ.ର. |
| ଜାତକାଭରଣ — | ଜା. ଭ. | ଲଘୁ ପାରାଶରୀ— | ଲ. ପା. |
| ଜାତକ ପାରିଜାତକ— | ଜା. ପା. | ଶମ୍ଭୁହୋରା— | ଶ.ହୋ. |
| ଜାତକଶିରୋମଣିଃ— | ଜା. ଶି. | ଶାନ୍ତିତତ୍ତ୍ୱ— | ଶା. ତ. |
| ଜ୍ୟୋତିର୍ନିବନ୍ଧ— | ଜ୍ୟୋ. | ଶାନ୍ତିଦୀପିକା— | ଶା. ଦୀ. |
| ଜ୍ୟୋତିଷାର୍ଣ୍ଣବ— | ଜ୍ୟୋ.ଅ. | ଶ୍ରୀନିବାସ ଦୀପିକା — | ଶ୍ରୀ. ଦୀ. |
| ଜ୍ୟୋତିଷସାର— | ଜ୍ୟୋ.ସା. | ସାରାବଳୀ— | ସା. ବ. |
| ଜ୍ୟୋତିସ୍ତତ୍ତ୍ୱ— | ଜ୍ୟୋ.ସ୍ତ | ସିଦ୍ଧାନ୍ତଶିରୋମଣି— | ସି. ଶି. |
| ତାଜକ ନୀଳକଣ୍ଠୀ — | ତା. ନୀ | ସିଦ୍ଧାନ୍ତ ସାର— | ସି. ସା. |
| ପାରାଶରୀ ହୋରା — | ପା. ହୋ. | ହୋରାବଲ୍ଲଭ— | ହୋ.ବ. |
| ପଦ୍ମଧର ସଂହିତା— | ପ. ସଂ. | ହୋରାସାର— | ହୋ.ସା. |



# ଜ୍ୟୋତିଃସାର ରତ୍ନାବଳୀ

## ମଙ୍ଗଳାଚରଣଂ

ଓଁ ନମଃ ସୂର୍ଯ୍ୟାୟ ପରଂବ୍ରହ୍ମଣେ ।
ଅଚିନ୍ତ୍ୟାବ୍ୟକ୍ତରୂପାୟ ନିର୍ଗୁଣାୟ ଗୁଣାତ୍ମନେ ।
ସମସ୍ତଜଗଦାଧାରମୂର୍ତ୍ତୟେ ବ୍ରହ୍ମଣେ ନମଃ ।୧।

ବାଲେନାଲୋଲଲୀଲା-କମଳମିବ ଗିରିଂ ଯେନ ଗୋଗୋପଗୁପ୍ତ୍ୟୈ ।
ଯୋଽରକ୍ଷଦ୍ ଦ୍ରୋଣିବାଣାତ୍ତୁରମୁଦରଗତଂ ପାଣ୍ଡବଂ ଚଣ୍ଡବେଗଃ ॥
ଜହ୍ରା ଖାରଂ ପୟୋଧେର୍ଗୁରୁତନୁଜମଦାଦ୍ଦକ୍ଷିଣାଂ ଦକ୍ଷିଣେଶାତ୍ ।
ଯୋଽୟଂ ବଃ ଶ୍ରେୟସେ ସ୍ତାଦଘ୍ନନପଟୁନାନାଟକସ୍ୟାଭିନେତା ।୨।

ଭୃଗୁଂ ସୂର୍ଯ୍ୟଂ ବସିଷ୍ଠଞ୍ଚ ପରାଶରମୁନୀଶ୍ୱରଂ ।
ନତ୍ୱା ଜ୍ୟୋତିଷସାରାଖ୍ୟରତ୍ନାଳି କଲ୍ପିତା ମୟା ।୩।

ବ୍ୟୋମ-ବାଣ-ବସୁ-କ୍ଷୌଣୀମିତେ ଶ୍ରୀ ଶକବତ୍ସରେ ।
ଖଲ୍ଲିକୋଟ ବାଲୁକେଶପୁର ଶାସନବାସିନା ॥
ବାଇକୋଲୀ ମହାପାତ୍ରଶର୍ମଣା କଲ୍ପିତାଧନା ।
ଜ୍ୟୋତିଷାଦ୍ଭୁତଶାସ୍ତ୍ରସ୍ୟ ସାରରତ୍ନାବଳୀ ମୁଦା ।୪।

ସୁଖବୋଧାୟ ଛାତ୍ରାଣାମେକଗ୍ରନ୍ଥେ ଯଥା ଭବେତ୍ ।
ତତ୍ ବିଚାର୍ଯ୍ୟ ମନସା ଗ୍ରନ୍ଥୋଽୟଂ କଲ୍ପିତୋ ମୟା ।୫।

# ପ୍ରଥମୋଽଧ୍ୟାୟଃ ।

## ରବ୍ୟାଦ୍ୟୁତ୍ପତ୍ତିଃ ।

ତମସ୍ତୋମାବୃତେ ବିଶ୍ୱେ ଜଗଦେତଚ୍ଚରାଚରଂ ।
ରାଶିଗ୍ରହୋଡୁସଙ୍ଘାତଂ ସୃଜନ୍ ସୂର୍ଯ୍ୟୋ ଭବେତ୍ତଦା ॥

ସୃଷ୍ଟିର ପୂର୍ବେ ଏହି ବ୍ରହ୍ମାଣ୍ଡ ଘନ ତମସାଚ୍ଛନ୍ନ ଥିଲା । ସେହି ସମୟରେ ପରମ ଅଚିନ୍ତ୍ୟ ପୁରୁଷ ଭଗବାନ୍ ଏହି ସ୍ଥାବର ଜଙ୍ଗମାତ୍ମକ ଜଗତ୍, ମେଷାଦି ଦ୍ୱାଦଶ ରାଶି, ଗ୍ରହମଣ୍ଡଳ ଓ ନକ୍ଷତ୍ରପୁଞ୍ଜର ସୃଷ୍ଟି କରି ନିଜେ ଗ୍ରହରାଜ ସୂର୍ଯ୍ୟରୂପେ ପ୍ରକାଶ ପାଇ ଅଛନ୍ତି ।

## କାଳୋତ୍ପତ୍ତିଃ ।

ତତଃ ପ୍ରଭୃତି ଜନ୍ତୂନାଂ ସଦସତ୍ କର୍ମସୂଚକଃ ।
ହୋରାଖ୍ୟୋ ବର୍ତ୍ତତେ କାଲୋ ହ୍ୟହୋରାତ୍ରୋଽନ୍ତ୍ୟ ଲୋପତଃ ॥

ସୃଷ୍ଟିର ନିର୍ମାଣ ପରେ ଜୀବଗଣର ଶୁଭାଶୁଭ କର୍ମସୂଚକ ଅହୋରାତ୍ର ଶବ୍ଦରୁ ଆଦ୍ୟ ଓ ଶେଷ ଅକ୍ଷର ଲୋପ କରିବାରୁ ହୋରାନାମକ ପଦ ରହିଲା । ଏହି ହୋରା ସଦସତ୍ କାଳର ବିଚାରଶାସ୍ତ୍ର ।

ଅହୋରାତ୍ରୋତ୍ଥିତା ହୋରା କାଳସ୍ୟାବୟବା ହି ସା ।
ମେଷାଦିରାଶିସ୍ଥା ହୋରା ହୋରା ରାଶିଦଳଂ ସ୍ମୃତଂ ॥

ଅହୋରାତ୍ର ଶବ୍ଦରୁ ହୋରା ଶବ୍ଦ ଜାତ ହେଲା । ତାହା କାଳର ଅବୟବ ସ୍ୱରୂପ । ମେଷାଦି ପ୍ରତ୍ୟେକ ରାଶିର ଭୋଗ୍ୟକାଳର ଅର୍ଦ୍ଧକୁ ହୋରା କହନ୍ତି ।

ମେଷାଦି ଦ୍ୱାଦଶରାଶୟଃ ।

ମେଷ ବୃଷ ମିଥୁନ କର୍କଟ ସିଂହାଃ କନ୍ୟା ତୁଲାଥ ବୃଶ୍ଚିକଂ ।
ଧନୁରଥ ମକରଃ କୁମ୍ଭୋ ମୀନ ଇତି ରାଶୟଃ କଥିତାଃ ॥

ମେଷ, ବୃଷ, ମିଥୁନ, କର୍କଟ, ସିଂହ, କନ୍ୟା, ତୁଲା, ବୃଶ୍ଚିକ, ଧନୁ, ମକର, କୁମ୍ଭ ଓ ମୀନ ଏହି ଦ୍ୱାଦଶଟି ରାଶି ନାମରେ ଅଭିହିତ ।

ରବ୍ୟାଦି ନବଗ୍ରହାଃ ।

ରବି ସୋମୋ ମଙ୍ଗଳଶ୍ଚ ବୁଧୋ ଜୀବଃ ସିତଃ ଶନିଃ ।
ରାହୁଃ କେତୁଶ୍ଚ କଥିତୋ ମାର୍କଣ୍ଡେୟାଦିଭିଃ ପୁରା ॥

ରବି, ଚନ୍ଦ୍ର, ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନି ଏହି ସାତଟି ଗ୍ରହ । ରାହୁ କେତୁ ପ୍ରକୃତପକ୍ଷେ ଗ୍ରହ ନୁହନ୍ତି, ଏମାନେ ଛାୟାଗ୍ରହ ।

ରାଶି ବିଭାଗଃ ।

ସପ୍ତବିଂଶତିଭିର୍ଜ୍ୟୋତିଶ୍ଚକ୍ରଂ ସ୍ତିମିତବାୟୁଗଂ ।
ତଦର୍କାଂଶୋ ଭବେଦ୍ରାଶିର୍ନବର୍କ୍ଷଚରଣାନ୍ୱିତଃ ॥

ଅଶ୍ୱିନୀ ପ୍ରଭୃତି ସପ୍ତବିଂଶ ନକ୍ଷତ୍ରଯୁକ୍ତ ରାଶିଚକ୍ର ନିଶ୍ଚଳ ବାୟୁର ଉପର ଭାଗରେ ଅବସ୍ଥିତ । ଏହି ସତାଇଶି ନକ୍ଷତ୍ରରୁ ଦ୍ୱାଦଶ ରାଶି ଗଠିତ । ପ୍ରତ୍ୟେକ ନକ୍ଷତ୍ର ଚାରିଭାଗରେ ବିଭକ୍ତ । ପ୍ରତ୍ୟେକ ଭାଗର ନାମ ପାଦ । ନ'ପାଦରେ ଗୋଟିଏ ରାଶି । ଯଥା :—ଅଶ୍ୱିନୀ ନକ୍ଷତ୍ରର ଚାରିପାଦ, ଦ୍ୱିଜାର ଚାରିପାଦ ଓ କୃତ୍ତିକା ନକ୍ଷତ୍ରର ଏକପାଦ ମିଶି ମେଷ ରାଶି । ଏହିପରି ଅନ୍ୟ ସମସ୍ତ ରାଶି ଦେଖିବ ।

## ନକ୍ଷତ୍ର କଥନଂ ।

ଅଶ୍ୱିନୀ ଭରଣୀ ଚୈବ କୃତ୍ତିକା ରୋହିଣୀ ତଥା ।
ମୃଗଶୀର୍ଷସ୍ତଥୈବାର୍ଦ୍ରା ତଥା ପ୍ରୋକ୍ତା ପୁନର୍ବସୁଃ ॥
ପୁଷ୍ୟାଽଶ୍ଳେଷା ମଘା ପୂର୍ବାଫାଲ୍ଗୁନ୍ୟୁତ୍ତରଫାଲ୍ଗୁନୀ ।
ହସ୍ତା ଚିତ୍ରା ସ୍ୱାତୀସ୍ତୁ ବିଶାଖା ସ୍ୟାଦନୁରାଧିକା ॥
ଜ୍ୟେଷ୍ଠା ମୂଳା ତଥା ପ୍ରୋକ୍ତା ପୂର୍ବାଷାଢ଼ା ତଥୋତ୍ତରା ।
ଶ୍ରବଣା ଚ ଧନିଷ୍ଠା ଚ ଶତତାରା ତଥୈବ ଚ ।
ପୂର୍ବଭଦ୍ରୋତ୍ତରଭଦ୍ରା ରେବତ୍ୟନ୍ତ ଭସଂଜ୍ଞକାଃ ॥

ସତେଇଶି ନକ୍ଷତ୍ରର ନାମ ଯଥା :—୧ ଅଶ୍ୱିନୀ ୨ ଭରଣୀ ୩ କୃତ୍ତିକା ୪ ରୋହିଣୀ ୫ ମୃଗଶିରା ୬ ଆର୍ଦ୍ରା ୭ ପୁନର୍ବସୁ ୮ ପୁଷ୍ୟା ୯ ଅଶ୍ଳେଷା ୧୦ ମଘା ୧୧ ପୂର୍ବାଫାଲ୍ଗୁନୀ ୧୨ ଉତ୍ତରଫାଲ୍ଗୁନୀ ୧୩ ହସ୍ତା ୧୪ ଚିତ୍ରା ୧୫ ସ୍ୱାତୀ ୧୬ ବିଶାଖା ୧୭ ଅନୁରାଧା ୧୮ ଜ୍ୟେଷ୍ଠା ୧୯ ମୂଳା ୨୦ ପୂର୍ବାଷାଢ଼ା ୨୧ ଉତ୍ତରାଷାଢ଼ା * ୨୨ ଶ୍ରବଣା ୨୩ ଧନିଷ୍ଠା ୨୪ ଶତଭିଷା ୨୫ ପୂର୍ବଭଦ୍ରପଦ ୨୬ ଉତ୍ତରଭଦ୍ରପଦ ୨୭ ରେବତୀ ॥

## ରାଶିସଂଜ୍ଞା ।

ଅଜ, ମେଷ, କ୍ରିୟ, ମେଷରାଶିର ନାମ; ତାବୁର, ବୃଷଭ, ସୁରଭି, ବୃଷରାଶିର ନାମ; ଜିତୁମ, ମିଥୁନ, ନୃଯୁକ୍ ମିଥୁନରାଶିର ନାମ; କୁଳୀର, କର୍କଟ, କଙ୍କଡ଼ାରାଶିର ନାମ; ସିଂହ, ଲେୟ, ହରି, ମୃଗପତି, ମୃଗାରି ସିଂହରାଶିର ନାମ; ପାଥେୟ, ଯୁବତୀ, କନ୍ୟା, କନ୍ୟକା, କନ୍ୟାରାଶିର

---

* ଉତ୍ତରାଷାଢ଼ାର ଶେଷ ୧୫ ଦଣ୍ଡ ଶ୍ରବଣାର ଆଦ୍ୟ ୪ ଘଡ଼ି ମିଶି ଅଭିଜିତ୍ ହୁଏ ।

ନାମ; ଯୁକ୍, ଧଟ, ତୌଲ, ବଣିଜାଖ୍ୟ, ତୁଳାଧର, ତୁଳାରାଶିର ନାମ; କୌର୍ପାଖ୍ୟ, ବୃଶ୍ଚିକ, କୀଟ, ଅଳି, ସରୀସୃପ ବୃଶ୍ଚିକରାଶିର ନାମ; ଅସୀ, ଧନୁ, କୋଦଣ୍ଡ, ଚାପ, ତୌକ୍ଷିକ ଧନୁରାଶିର ନାମ; ଆକୋକେର, ମୃଗ, ମୃଗାସ୍ୟ; ମକର ରାଶିର ନାମ; ହୃଦ୍ରୋଗ, ଘଟ, କୁମ୍ଭରାଶିର ନାମ; ମୀନ, ଅନ୍ତ୍ୟ, ଅମିଷ, ଝଷ ମୀନରାଶିର ନାମ ଅଟେ ।

## କ୍ରୂର ସୌମ୍ୟାଦି କଥନଂ ।

କ୍ରୂରୋଽଥ ସୌମ୍ୟଃ ପୁରୁଷାଽଙ୍ଗନାଚ, ଓଜୋଽଥ ଯୁଗ୍ମଂ ବିଷମଃ ସମଶ୍ଚ ।
ଚର ସ୍ଥିର ଦ୍ୱାତ୍ମିକ ନାମଧେୟା ମେଷାଦୟୋଽମୀ କ୍ରମଶଃ ପ୍ରଦିଷ୍ଟାଃ ॥

ମେଷ, ମିଥୁନ, ସିଂହ, ତୁଳା, ଧନୁ ଓ କୁମ୍ଭ ଏହି ରାଶିମାନଙ୍କୁ କ୍ରୂର, ପୁରୁଷ, ଓଜ ଓ ବିଷମ ରାଶି କହନ୍ତି । ବୃଷ, କର୍କଟ, କନ୍ୟା, ବୃଶ୍ଚିକ, ମକର ଓ ମୀନ ଏହି ରାଶିମାନଙ୍କୁ ସୌମ୍ୟ, ଅଙ୍ଗନା, ଯୁଗ୍ମ ଓ ସମ ରାଶି କହନ୍ତି । ମେଷ, କର୍କଟ, ତୁଳା ଓ ମକର ଏମାନେ ଚର ରାଶି । ବୃଷ, ସିଂହ, ବୃଶ୍ଚିକ, କୁମ୍ଭ ଏମାନେ ସ୍ଥିର ରାଶି; ମିଥୁନ, କନ୍ୟା ଧନ ଓ ମୀନ ଏମାନେ ଦ୍ୱାତ୍ମିକ ରାଶି ଅଟନ୍ତି ।

## କାଳପୁରୁଷସ୍ୟାଙ୍ଗବିଭାଗଃ ।

ଶୀର୍ଷ ମୁଖ ବାହୁ ହୃଦୟୋଦରାଣି କଟି ବସ୍ତି ଗୁହ୍ୟ ସଂଜ୍ଞକାନି
ଊରୁ ଜାନୁ ଜଂଘେ ଚରଣାବିତି ରାଶୟୋଽଜାଦ୍ୟାଃ ॥

ମେଷାଦି ଦ୍ୱାଦଶ ରାଶିକୁ ନେଇ କାଳରୂପୀ ପୁରୁଷ କଳ୍ପନା କଲେ ମେଷ ତାହାର ମସ୍ତକ, ବୃଷ ମୁଖ, ମିଥୁନ ବାହୁଦ୍ୱୟ, କର୍କଟ ହୃଦୟ, ସିଂହ ଉଦର, କନ୍ୟା କଟିଦେଶ, ବୃଶ୍ଚିକ ଗୁହ୍ୟଦେଶ, ଧନୁ ଊରୁଦ୍ୱୟ, ମକର ଜାନୁଦ୍ୱୟ, କୁମ୍ଭ ଜଙ୍ଘଦ୍ୱୟ ଓ ମୀନରାଶି ତାହାର ଚରଣଦ୍ୱୟ ଅଟେ ।

ରାଶୀନାଂ ଜାତିବିଭାଗଃ ।

ମୀନ କର୍କଟ ବୃଶ୍ଚିକ ବିପ୍ରାଃ ସିଂହ ତୁଲା ଧନୁଃ କ୍ଷତ୍ରିୟା କ୍ତାଃ ।
କୁମ୍ଭ ନର ଦ୍ୱନ୍ଦ୍ୱ ମେଷ ବୈଶ୍ୟାଃ ସ୍ତ୍ରୀ ବୃଷ ମକରାଃ କଥିତାଃ ଶୂଦ୍ରାଃ॥

ମୀନ, କର୍କଟ, ବୃଶ୍ଚିକ ଏମାନେ ବ୍ରାହ୍ମଣଜାତି ସଂଜ୍ଞକ । ସିଂହ, ତୁଳା, ଧନୁ ଏମାନେ କ୍ଷତ୍ରିୟଜାତି ସଂଜ୍ଞକ । କୁମ୍ଭ, ମିଥୁନ, ମେଷ ଏମାନେ ବୈଶ୍ୟ ଜାତି ସଂଜ୍ଞକ । କନ୍ୟା, ବୃଷ ଓ ମକର ଶୂଦ୍ରଜାତି ସଂଜ୍ଞକ ଅଟନ୍ତି ।

ମେଷାଦୀନାଂ ବର୍ଣ୍ଣଜ୍ଞାନଂ ।

ଅରୁଣ ସିତ ହରିତ ପାଟଲ ପାଣ୍ଡୁ ବିଚିତ୍ରା ।
ଶିତେତର ପିଶଙ୍ଗୌ ପିଙ୍ଗଲ କର୍ବୁର ବଭ୍ରୁକ-
ମଳିନା ରୁଚୟୋ ଯଥା ସଙ୍ଖ୍ୟଂ ॥

ମେଷ ରକ୍ତବର୍ଣ୍ଣ, ବୃଷ ଶୁକ୍ଳବର୍ଣ୍ଣ, ମିଥୁନ ହରିଦ୍‌ବର୍ଣ୍ଣ, କର୍କଟ ପାଟଳବର୍ଣ୍ଣ, ସିଂହ ପାଣ୍ଡୁବର୍ଣ୍ଣ, କନ୍ୟା ନାନାପ୍ରକାର ବର୍ଣ୍ଣବିଶିଷ୍ଟ, ତୁଳା କୃଷ୍ଣବର୍ଣ୍ଣ, ବୃଶ୍ଚିକ ଖଇରଅ ବର୍ଣ୍ଣ, ଧନୁ ପିଙ୍ଗଳବର୍ଣ୍ଣ, ମକର ଚିତ୍ରିତ ବର୍ଣ୍ଣ, କୁମ୍ଭ ବଭ୍ରୁକ ବର୍ଣ୍ଣ ଓ ମୀନ ମଳିନ ବର୍ଣ୍ଣବିଶିଷ୍ଟ ।

ଜଳଜାଦି ଜ୍ଞାନଂ ।

ଜଳଜୌ କର୍କଟମୀନୌ ମକରାନ୍ତ୍ୟାର୍ଦ୍ଧଂ ଶିବମତେ କୁମ୍ଭଃ ।
ରାଶିସ୍ୱରୂପମେତନ୍ମାର୍କଣ୍ଡେୟାଦିଭିଃ କଥିତଂ ॥

କର୍କଟ, ମୀନ ଓ ମକରର ଶେଷାର୍ଦ୍ଧ ଜଳଜ ରାଶି । ଶିବ ଋଷିଙ୍କ ମତାନୁସାରେ କୁମ୍ଭ ମଧ୍ୟ ଜଳଜ । ଅନ୍ୟ ସମସ୍ତ ଶୁଷ୍କ ରାଶି । ଏହା ମାର୍କଣ୍ଡେୟାଦି ମୁନିମାନଙ୍କର ମତ ।

**ପୃଷ୍ଠୋଦୟ ଶୀର୍ଷୋଦୟାଦି ଜ୍ଞାନଂ ।**

ଗୋଜାଶ୍ୱି କର୍କି ମିଥୁନାଃ ସମୃଗା ନିଶାଖ୍ୟାଃ,
ପୃଷ୍ଠୋଦୟାଦ୍ୱି ମିଥୁନାଃ କଥିତାସ୍ତ ଏବ
ଶୀର୍ଷୋଦୟା ଦିନବଲାଶ୍ଚ ଭବନ୍ତି ଶେଷା,
ଲଗ୍ନଂ ସମେତ୍ୟୁଭୟତଃ ପୃଥୁ ରୋମଯୁଗ୍ମଂ ॥

ମେଷ, ବୃଷ, ମିଥୁନ, କର୍କଟ, ଧନୁ, ମକର ଏମାନେ ନିଶାବଳୀ, ମିଥୁନ ରାଶିକୁ ଛାଡି ଦେଇ ଏହି ଉପରୋକ୍ତ ପାଞ୍ଚଟି ରାଶି ପୃଷ୍ଠୋଦୟ । ସିଂହ, କନ୍ୟା, ତୁଳା, ବିଛା, କୁମ୍ଭ ଓ ମିଥୁନ ଏମାନେ ଶୀର୍ଷୋଦୟ, ମୀନ ପୃଷ୍ଠୋଦୟ ଓ ଶୀର୍ଷୋଦୟ ଉଭୟ ସଂଜ୍ଞକ ।

**ଗ୍ରହସଂଜ୍ଞା ।**

ହେଳିଃ ସୂର୍ଯ୍ୟଶ୍ଚନ୍ଦ୍ରମାଃ ଶୀତରଶ୍ମିଃ,
ହେମ୍ନା ବିଜ୍ଜ୍ଞୋ ବୋଧନଶ୍ଚେନ୍ଦୁପୁତ୍ରଃ ।
ଆରୋ ବକ୍ରଃ କ୍ରୂରଦୃକ୍ ଚାବନେୟଃ,
କାଲୋ ମନ୍ଦଃ ସୂର୍ଯ୍ୟପୁତ୍ରୋଽସିତଶ୍ଚ ॥
ଜୀବୋଙ୍ଗିରାଃ ସୁରଗୁରୁର୍ବଚସାଂ ପତୀଜ୍ୟୌ
ଶୁକ୍ରୋ ଭୃଗୁର୍ଭୃଗୁସୁତଃ ସିତ ଆସ୍ଫୁଜିଚ୍ଚ ।
ରାହୁସ୍ତମୋଽଗୁରସୁରଶ୍ଚ ଶିଖୀ ଚ କେତୁ-
ପର୍ଯ୍ୟାୟମନ୍ୟମୁପଲଭ୍ୟ ବଦେଚ୍ଚ ଲୋକାତ୍ ॥

ହେଳି ସୂର୍ଯ୍ୟଙ୍କର ନାମ; ଶୀତରଶ୍ମି ଚନ୍ଦ୍ରଙ୍କ ନାମ; ହେମ୍ନା, ବିଦ୍, ଜ୍ଞ ବୋଧନ ଓ ଇନ୍ଦୁପୁତ୍ର ବୁଧଙ୍କ ନାମ; ଆର, କ୍ରୂର, ବକ୍ର ଓ ଅବନେୟ ମଙ୍ଗଳଙ୍କ ନାମ; କାଲ, ମନ୍ଦ, ସୂର୍ଯ୍ୟପୁତ୍ର ଓ ଅସିତ ଶନିଙ୍କ ନାମ; ଜୀବ, ଅଙ୍ଗିରା, ସୁରଗୁରୁ, ବାଚସାଂପତି ଓ ଇଜ୍ୟ ବୃହସ୍ପତିଙ୍କ ନାମ;

ଭୃଗୁସୁତ, ସିତ ଓ ଅଚ୍ଛକୃତ ଶୁକ୍ରଙ୍କ ନାମ; ତମ, ଅଗୁ, ଅସୁର, ରାହୁଙ୍କ ନାମ; ଶିଖୀ କେତୁଙ୍କ ନାମ ଅଟେ ।

### ଜାତି କଥନଂ ।

ବ୍ରାହ୍ମଣୌ ଶୁକ୍ରବାଗୀଶୌ କ୍ଷତ୍ରିୟୌ ଭୌମଭାସ୍କରୌ ।
ବୈଶ୍ୟଶ୍ଚନ୍ଦ୍ରୋ ବୁଧଃ ଶୂଦ୍ରୋ ପତିର୍ମନ୍ଦୋଽନ୍ତ୍ୟଜେ ଜନେ ।

ଶୁକ୍ର, ବୃହସ୍ପତି ବ୍ରାହ୍ମଣ ଜାତିର ଅଧିପତି; ରବି, ମଙ୍ଗଲ, କ୍ଷତ୍ରିୟ ଜାତିର ଅଧିପତି; ଚନ୍ଦ୍ର, ବୈଶ୍ୟ ଜାତିର ଅଧିପତି; ବୁଧ, ଶୂଦ୍ର ଜାତିର ଓ ଶନି, ଅନ୍ତ୍ୟଜ ଜାତିମାନଙ୍କର ଅଧିପତି ଅଟନ୍ତି ।

### ବର୍ଣ୍ଣ କଥନଂ ।

ଗୌରବର୍ଣ୍ଣୋ ଦିନାଧୀଶୋ ଗୌରଶ୍ଚନ୍ଦ୍ରେଜ୍ୟଭୂମିଜାଃ ।
ଶ୍ୟାମଲୌ ବୁଧଶୁକ୍ରୌ ଚ କୃଷ୍ଣୌ ରାହୁଶନୈଶ୍ଚରୌ ।
ରାହୁଃ ଶନୈଶ୍ଚରଃ କୃଷ୍ଣଃ ମିଶ୍ରବର୍ଣ୍ଣସ୍ତୁ କେତବଃ ॥ ଷଷ୍ଠୀ ଦାସ ।

ରବି, ଚନ୍ଦ୍ର, ମଙ୍ଗଲ ଓ ବୃହସ୍ପତି ଏମାନେ ଗୌରବର୍ଣ୍ଣ । ବୁଧ ଓ ଶୁକ୍ର ଶ୍ୟାମଲବର୍ଣ୍ଣ । ରାହୁ ଓ ଶନି କୃଷ୍ଣବର୍ଣ୍ଣ । କେତୁ ମିଶ୍ରିତ ବର୍ଣ୍ଣ ।

### ପ୍ରକୃତି କଥନଂ ।

ପିତ୍ତେ ପ୍ରଭାକରକ୍ଷମାଜୌ ଶ୍ଲେଷ୍ମାଣୌ ଚନ୍ଦ୍ରଭାର୍ଗବୌ ।
ଜ୍ଞ ଗୁରୂ ସମଧାତୂ ଚ ପବନୌ ରାହୁମନ୍ଦଗୌ ॥

ରବି ଓ ମଙ୍ଗଲ ପିତ୍ତପ୍ରକୃତିକ; ଚନ୍ଦ୍ର ଓ ଶୁକ୍ର ଶ୍ଲେଷ୍ମ ପ୍ରକୃତିକ; ବୁଧ ଓ ବୃହସ୍ପତି ସମପ୍ରକୃତିବିଶିଷ୍ଟ; ରାହୁ ଓ ଶନି ବାତପ୍ରକୃତିକ ଅଟନ୍ତି । ଜନ୍ମକାଳରେ ଯେ ଗ୍ରହ ବଳବାନ୍ ହେମା। ବାଳକ, ଯେଉଁ

ଗ୍ରହର ନବାଂଶରେ ଜନ୍ମ ଗ୍ରହଣ କରେ, ତାହାର ଯେ ପ୍ରକୃତ ଜାତକର ସେହି ପ୍ରକୃତ ହୁଏ ।

ସତ୍ତ୍ୱାଦି ଜ୍ଞାନଂ ।

ଚନ୍ଦ୍ରାର୍କଗୀର୍ବାଜ୍ଞଶିତୌ ଭୃଜାର୍କି ଯଥାକ୍ରମଂ ସତ୍ତ୍ୱରଜ ସ୍ତମାଂସି ।
( ବୃ: ଜା: )

ରବି, ଚନ୍ଦ୍ର, ବୃହସ୍ପତି ସତ୍ତ୍ୱଗୁଣବିଶିଷ୍ଟ, ବୁଧ ଓ ଶୁକ୍ର ରଜୋଗୁଣ-ବିଶିଷ୍ଟ; ମଙ୍ଗଳ ଓ ଶନି ତମୋଗୁଣବିଶିଷ୍ଟ ଅଟନ୍ତି ।

ସତ୍ତ୍ୱାଧିକା ଭାସ୍କରଭୌମଜୀବା ଭୃଗ୍ୱାତ୍ମଜୋ ରାଜସିକୋ ଶଶୀ ଚ ।
ଶନୈଶ୍ଚରସ୍ତାମସିକୋ ବୁଧସ୍ତୁ ସଂଯୋଗ ତସ୍ମାଲ୍ଲଭତେ ବିଶେଷାନ୍ ॥
ଯବନେଶ୍ୱର ।

ଯବନେଶ୍ୱରଙ୍କର ମତ ବୃହଜ୍ଜାତକ ରଚୟିତା ବରାହମିହିରଙ୍କ ମତ ଅପେକ୍ଷା ସାମାନ୍ୟ ପୃଥକ୍ । ସେ କହିଅଛନ୍ତି —ରବି, ମଙ୍ଗଳ ଓ ବୃହସ୍ପତି ସତ୍ତ୍ୱ ଗୁଣ ବିଶିଷ୍ଟ । ଶୁକ୍ର ଓ ଚନ୍ଦ୍ର ରଜୋଗୁଣବିଶିଷ୍ଟ । ଶନି ବୁଧ ଉଭୟେ ତାମସଗୁଣ ବିଶିଷ୍ଟ ଅଟନ୍ତି ।

ଯଃ ସାତ୍ତ୍ୱିକସ୍ତସ୍ୟ ଦୟାସ୍ଥିରତ୍ୱଂ ସତ୍ୟାର୍ଜବଂ ବ୍ରାହ୍ମଣଦେବଭକ୍ତିଃ ।
ରଜୋଽଧିକଃ କାବ୍ୟକଳା-କ୍ରତୁ-ସ୍ତ୍ରୀ-ସଂସକ୍ତଚିତ୍ତଃ ପୁରୁଷୋଽପି ଶୂରଃ ।
ତମୋଽଧିକୋ ବଞ୍ଚୟିତା ପରେଷାଂମୂର୍ଖୋଽଲସଃ କ୍ରୋଧପରୋଽତିନିଦ୍ରଃ ॥
( ବୃ: ଜା: )

ଜାତକରେ ଯେଉଁ ଗ୍ରହ ସମସ୍ତଙ୍କ ଅପେକ୍ଷା ବଳବାନ୍ ବା ମନୁଷ୍ୟ ଯେଉଁ ଗ୍ରହର ନବାଂଶରେ ଜନ୍ମଗ୍ରହଣ କରେ, ସେହି ଗ୍ରହର ଗୁଣଯୁକ୍ତ ହୁଏ । ସାତ୍ତ୍ୱିକଗୁଣବିଶିଷ୍ଟ ବ୍ୟକ୍ତି ଦୟାଳୁ, ସତ୍ୟପର, ନ୍ୟାୟବାନ୍

ଓ ଦେବ-ବ୍ରାହ୍ମଣ-ପୂଜକ ହୁଏ । ରଜୋଗୁଣବଶିଷ୍ଟ ବ୍ୟକ୍ତି କାବ୍ୟ, ସଙ୍ଗୀତ ଓ କଳାଶାସ୍ତ୍ରବିଳାସୀ ହୁଏ, ଶୂର ଓ ସ୍ତ୍ରୀ ଆସକ୍ତଚିତ୍ତ ହୋଇଥାଏ । ତମୋଗୁଣବଶିଷ୍ଟ ବ୍ୟକ୍ତି ପରକୁ ଠକେ, ମୂର୍ଖ, କ୍ରୋଧୀ, ଅଳସ୍ୟପର ଓ ନିଦ୍ରାଳୁ ହୁଏ ।

### ଦିଗଧିପତି ନିର୍ଣ୍ଣୟଃ ।

ସୂର୍ଯ୍ୟଃ ଶୁକ୍ରଶ୍ଚ ଭୂମୀଜଃ ସୈଂହିକେୟଃ ଶନିଃ ଶଶୀ ।
ସୌମ୍ୟସ୍ତ୍ରିଦଶମନ୍ତ୍ରୀ ଚ ପ୍ରାଚ୍ୟାଦି ଦିଗଧୀଶ୍ୱରାଃ ॥

ପୂର୍ବଦିଗ ରବିର, ଅଗ୍ନିକୋଣ ଶୁକ୍ରର, ଦକ୍ଷିଣ ମଙ୍ଗଳର, ନୈଋତ ରାହୁର, ପଶ୍ଚିମ ଶନିର, ବାୟୁକୋଣ ଚନ୍ଦ୍ରର, ଉତ୍ତର ବୁଧର ଓ ଈଶାନ୍ୟ-କୋଣ ବୃହସ୍ପତିର ଅଟେ । ଦଶାର ଶୁଭାଶୁଭ ବିଚାରକାଳରେ ଅଶୁଭରେ ଏହି ଦିଗମାନଙ୍କରୁ କଷ୍ଟ ଓ ଶୁଭରେ ଏହି ଦିଗମାନଙ୍କରୁ ଲାଭ ହୋଇଥାଏ ।

### ପୁଂସ୍ତ୍ର୍ୟାଦି ନିରୂପଣଂ ।

ଭୌମାର୍କଜୀବାଃ ପୁରୁଷାଃ କ୍ଳୀବୌ ଚନ୍ଦ୍ରଜଭାନୁଜୌ ।
ସ୍ତ୍ର୍ୟାଖ୍ୟୌ ଭାର୍ଗବଚନ୍ଦ୍ରୌ ଦ୍ୱୌ ଚତୁର୍ପତିହାଭଥୋଚ୍ୟତେ ॥

ରବି, ମଙ୍ଗଳ ଓ ବୃହସ୍ପତି ପୁରୁଷକାରକ ଗ୍ରହ, ଶୁକ୍ର ଓ ଚନ୍ଦ୍ର ସ୍ତ୍ରୀକାରକ ଗ୍ରହ, ବୁଧ ଓ ଶନି ନପୁଂସକକାରକ ଗ୍ରହ ଅଟନ୍ତି ।

### ବେଦାଧିପ କଥନଂ ।

ଋଗ୍‌ବେଦାଧିପତିର୍ଜୀବୋ ଯଜୁର୍ବେଦାଧିପଃ ସିତଃ ।
ସାମବେଦାଧିପୋ ଭୌମଃ ଶଶିଜୋଽଥର୍ବବେଦପଃ ॥

ବୃହସ୍ପତି ଋଗ୍‌ବେଦର ଅଧିପତି, ଶୁକ୍ର ଯଜୁର୍ବେଦର ଅଧିପତି, ମଙ୍ଗଳ ସାମବେଦର ଅଧିପତି ଓ ବୁଧ ଅଥର୍ବବେଦର ଅଧିପତି ଅଟନ୍ତି ।

ପାପଶୁଭ ବର୍ଗବଃ ।

ଅର୍ଦ୍ଧୋନେନ୍ଦୁର୍ଦ୍ଦଶୋସଃ ପାପାଙ୍କସ୍ତଦ୍‌ଯୁତୋ ପରେ ।
ଶୁଭାଃ ପାପୌ ତମଃ କେତୁର୍ବିଷ୍ଣୁଧର୍ମୋତ୍ତରେଦିତୌ ॥

କୃଷ୍ଣପକ୍ଷର ଅଷ୍ଟମୀଠାରୁ ଆରମ୍ଭ କରି ଶୁକ୍ଳପକ୍ଷ ଅଷ୍ଟମୀ ପର୍ଯ୍ୟନ୍ତ ଚନ୍ଦ୍ର ପାପ ଗ୍ରହ, ତା ପରେ ଶୁଭ । ରବି, ମଙ୍ଗଳ, ଶନି ଏମାନେ ପାପଗ୍ରହ । ବୁଧ ପାପଗ୍ରହ ଯୁକ୍ତରେ ପାପ ଓ ଶୁଭଗ୍ରହ ଯୁକ୍ତରେ ଶୁଭ । ବୃହସ୍ପତି ଓ ଶୁକ୍ର ଶୁଭ ଗ୍ରହ । ବିଷ୍ଣୁଧର୍ମାଙ୍କ ମତରେ ରାହୁ କେତୁ ପାପଗ୍ରହ ।

କ୍ଷେତ୍ର ନିର୍ଣ୍ଣୟଃ ।

କୁଜଶୁକ୍ରବୁଧେନ୍ଦ୍ୱର୍କସୌମ୍ୟଶୁକ୍ରାବନିଭୁବାଂ ।
ଜୀବାର୍କିମନ୍ଦୁଜୀବାନାଂ କ୍ଷେତ୍ରାଣି ସ୍ୟୁରଜାଦୟଃ ॥

ମେଷ ମଙ୍ଗଳଙ୍କର, ବୃଷ ଶୁକ୍ରଙ୍କର, ମିଥୁନ ବୁଧଙ୍କର, କର୍କଟ ଚନ୍ଦ୍ରଙ୍କର, ସିଂହ ରବିଙ୍କର, କନ୍ୟା ବୁଧଙ୍କର, ତୁଳା ଶୁକ୍ରଙ୍କର, ବିଛା ମଙ୍ଗଳଙ୍କର, ଧନୁ ବୃହସ୍ପତିଙ୍କର, ମକର ଓ କୁମ୍ଭ ଶନିଙ୍କର, ମୀନ ବୃହସ୍ପତିଙ୍କର ଗୃହ ଅଟେ ।

ମୂଳ ତ୍ରିକୋଣଂ ।

ସିଂହ ବୃଷାଜ ପ୍ରମଦା କାର୍ମୁକ ତୁଲୌଘ କୁମ୍ଭଧରାଃ ।
ସୂର୍ଯ୍ୟାଦୀନାଂ ମୂଳ ତ୍ରିକୋଣ ଭବନାନ୍ୟନୁକ୍ରମଶଃ ॥
ରବି ଭୌମ ଭାର୍ଗବ ଶନୈଶ୍ଚରାଣାଂ ତ୍ରିକୋଣ ଭାଗାଃ ସ୍ୟୁଃ ।
ନଖ ରବି ଦିକ୍ ତିଥି ନଖସ ଙ୍ଖେନ୍ଦୋର୍ଦ୍ଧଗାଂଶକାଃ ସୂଚାନ୍ତ ॥

ରବି ସିଂହ ରାଶିର ୨୦ ଅଂଶ ମଧ୍ୟରେ ଥିଲେ, ଚନ୍ଦ୍ର ବୃଷ ରାଶିର ୩ ଅଂଶଠାରୁ ୧୩ ଅଂଶ ମଧ୍ୟରେ ଥିଲେ, ମଙ୍ଗଳ ମେଷ ରାଶିର ୨୦

ଅଂଶ ମଧ୍ୟରେ ଥିଲେ, ବୁଧ କନ୍ୟା ରାଶିର ୧୫ ଅଂଶଠାରୁ ୧୫ ଅଂଶ ମଧ୍ୟରେ ଥିଲେ, ବୃହସ୍ପତି ଧନୁର ୧୦ ଅଂଶ ମଧ୍ୟରେ ଥିଲେ, ଶୁକ୍ର ତୁଳର ୧୫ ଅଂଶ ମଧ୍ୟରେ ଥିଲେ, ଶନି କୁମ୍ଭର ୨୦ ଅଂଶ ମଧ୍ୟରେ ଥିଲେ ମୂଳ ତ୍ରିକୋଣସ୍ଥ ହୁଅନ୍ତି । ଏହି ଶେଷାଂଶମାନଙ୍କରେ ଗ୍ରହମାନେ ରହିଲେ ସେମାନେ ଠିକ୍ ମୂଳ ତ୍ରିକୋଣସ୍ଥ ହୁଅନ୍ତି ।

## ଉଚ୍ଚ ନୀଚ କଥନଂ ।

ସୂର୍ଯ୍ୟାଦ୍ୟୁଚ୍ଚାନ୍ ଵିଦ୍ଧି ବୃଷ ମୃଗସ୍ତ୍ରୀକୁଳୀରାନ୍ତ୍ୟ ଯୁକ୍କାନ୍ ।
ଦଗ୍ ବହ୍ନ୍ୟଷ୍ଟ ଦ୍ୱୟ୍ର ତଥି ଶରାନ୍ ସପ୍ତବିଂଶଶ୍ଚ ବିଂଶାନ୍ ।
ଅଂଶାନେତାନ୍ ବଦନ୍ତି ଯବନଶ୍ଚାନ୍ତ୍ୟଭୁଙ୍ଗାନ୍ ସୁତୁଙ୍ଗାନ୍ ।
ତାନେବାଂଶାନ୍ତଦନଭବନେଷ୍ୱାହୁ ନୀଚାନ୍ ସୁନୀଚାନ୍ ॥

ରବି ମେଷ ରାଶିର ୧୦ ଅଂଶ ପର୍ଯ୍ୟନ୍ତ ଉଚ୍ଚ । ୧୦ ଅଂଶସ୍ଥ ହେଲେ ପରମୋଚ୍ଚ । ତୁଳାର ୧୦ ଅଂଶ ପର୍ଯ୍ୟନ୍ତ ନୀଚ । ୧୦ ଅଂଶସ୍ଥ ହେଲେ ପରମ ନୀଚ ହୁଏ । ଚନ୍ଦ୍ର ବୃଷର ୩ ଅଂଶ ପର୍ଯ୍ୟନ୍ତ ଉଚ୍ଚ । ତୃତୀୟ ଅଂଶରେ ପରମୋଚ୍ଚ । ବୃଶ୍ଚିକର ୩ ଅଂଶ ପର୍ଯ୍ୟନ୍ତ ନୀଚ । ତୃତୀୟ ଅଂଶରେ ପରମ ନୀଚ । ମଙ୍ଗଳ ମକରର ୨୮ ଅଂଶ ପର୍ଯ୍ୟନ୍ତ ଉଚ୍ଚ । ଅଷ୍ଟାବିଂଶତି ଅଂଶସ୍ଥ ହେଲେ ପରମୋଚ୍ଚ । କର୍କଟରେ ୨୮ ଅଂଶ ପର୍ଯ୍ୟନ୍ତ ନୀଚ । ଅଷ୍ଟାବିଂଶତି ଅଂଶ ପରମ ନୀଚ । ବୁଧ କନ୍ୟାର ୧୫ ଅଂଶ ପର୍ଯ୍ୟନ୍ତ ଉଚ୍ଚ । ପଞ୍ଚଦଶ ଅଂଶରେ ପରମୋଚ୍ଚ । ମୀନର ୧୫ ଅଂଶ ପର୍ଯ୍ୟନ୍ତ ନୀଚ । ପଞ୍ଚଦଶ ଅଂଶରେ ପରମ ନୀଚ । ବୃହସ୍ପତି କର୍କଟର ୫ ଅଂଶ ପର୍ଯ୍ୟନ୍ତ ଉଚ୍ଚ । କର୍କଟର ପଞ୍ଚମାଂଶ ପରମୋଚ୍ଚ । ମକରର ୫ ଅଂଶ ପର୍ଯ୍ୟନ୍ତ ନୀଚ । ମକରର ପଞ୍ଚମାଂଶ ପରମ ନୀଚ । ଶୁକ୍ର ମୀନର ୨୭ ଅଂଶ ପର୍ଯ୍ୟନ୍ତ ଉଚ୍ଚ । ସପ୍ତବିଂଶତି ଅଂଶ ପରମୋଚ୍ଚ । କନ୍ୟାର ୨୭ ଅଂଶ ପର୍ଯ୍ୟନ୍ତ ନୀଚ । ସପ୍ତବିଂଶତି ଅଂଶ ପରମ ନୀଚ । ଶନି ତୁଳର ୨୦ ଅଂଶ

ପର୍ଯ୍ୟନ୍ତ ଉଚ୍ଚ । ବିଂଶତି ଅଂଶରେ ପରମୋଚ୍ଚ । ମେଷର ୨୦ ଅଂଶ ପର୍ଯ୍ୟନ୍ତ ନୀଚ । ମେଷରେ ବିଂଶାଂଶରେ ଶନି ପରମ ନୀଚ ହୁଏ । ଯେ ଗ୍ରହ ଯେ ରାଶିରେ ଯେତେ ଅଂଶରେ ଉଚ୍ଚ ସେହି ଗ୍ରହ ସେହି ରାଶିର ସପ୍ତମରେ ତେତିକି ଅଂଶରେ ନୀଚ ହୁଏ ।

### ଶତ୍ରୁମିତ୍ର କଥନଂ ।

ମିତ୍ରାଣି ସୂର୍ଯ୍ୟାତ୍ ଶଶିଭୌମଜୀବାଃ ସୂର୍ଯ୍ୟେନ୍ଦୁଜୌ ସୂର୍ଯ୍ୟ-
ଶଶାଙ୍କଜୀବାଃ ।
ଆଦିତ୍ୟଶୁକ୍ରୌ ରବିଚନ୍ଦ୍ରଭୌମାଃ ବୁଧାର୍କଜୌ ଚନ୍ଦ୍ରଜଭାର୍ଗବୌ ଚ ॥
ଶିତାସିତୌ ଚନ୍ଦ୍ରମସୋ ନ କଶ୍ଚିତ୍ ବୁଧଃ ଶଶୀ ସୌମ୍ୟସିତୌ ରବୀନ୍ଦୂ ।
ରବୀନ୍ଦୁବକ୍ରା ରବିଜସ୍ୟ ମିତ୍ରାଃ ମିତ୍ରାରିଶେଷାସ୍ତୁ ସମା ପ୍ରଦିଷ୍ଟାଃ ॥

| ଗ୍ରହନାମ | ମିତ୍ର | ଶତ୍ରୁ | ସମ |
|---|---|---|---|
| ରବି | ମଙ୍ଗଳ, ବୃହସ୍ପତି ଚନ୍ଦ୍ର | ଶୁକ୍ର, ଶନି | ବୁଧ |
| ଚନ୍ଦ୍ର | ରବି, ବୁଧ | —— | ବୃହସ୍ପତି, ମଙ୍ଗଳ, ଶନି, ଶୁକ୍ର |
| ମଙ୍ଗଳ | ରବି, ଚନ୍ଦ୍ର, ବୃହସ୍ପତି, | ବୁଧ | ଶନି, ଶୁକ୍ର |
| ବୁଧ | ରବି, ଶୁକ୍ର | ଚନ୍ଦ୍ର | ଶନି, ମଙ୍ଗଳ, ବୃହସ୍ପତି |
| ବୃହସ୍ପତି | ମଙ୍ଗଳ, ଚନ୍ଦ୍ର, ରବି | ଶୁକ୍ର, ବୁଧ | ଶନି |
| ଶୁକ୍ର | ବୁଧ, ଶନି | ରବି, ଚନ୍ଦ୍ର, ମଙ୍ଗଳ | ବୃହସ୍ପତି, |
| ଶନି | ବୁଧ, ଶୁକ୍ର | ରବି, ଚନ୍ଦ୍ର, ମଙ୍ଗଳ | ବୃହସ୍ପତି, |

## ରାହୋଃ ଉଚ୍ଚ ମିତ୍ରାଦି କଥନଂ ।

ଉଚ୍ଚଂ ନୃଯୁଗ୍ମଂ ଘଟଭଂ ତ୍ରିକୋଣଂ କନ୍ୟାଗୃହଂ ଶୁକ୍ରଶନୀଶ୍ଚ ମିତ୍ରେ ।
ସୂର୍ଯ୍ୟଃ ଶଶାଙ୍କୋ ଧରଣୀସୁତଶ୍ଚ ରାହୋରପୂର୍ବାଂଶଗତଃ ପରାଂଶଃ ॥

ରାହୁ ମିଥୁନର ୨୦ ଅଂଶ ପର୍ଯ୍ୟନ୍ତ ଉଚ୍ଚ । ବିଂଶାଂଶ ପରମୋଚ୍ଚ । ଧନୁର ୨୦ ଅଂଶ ଯାଏ ନୀଚ । ବିଂଶାଂଶ ପରମ ନୀଚ । କୁମ୍ଭର ୨୦ ଅଂଶ ପର୍ଯ୍ୟନ୍ତ ମୂଳ ତ୍ରିକୋଣ । କନ୍ୟା ତାହାର ଗୃହ, ଶୁକ୍ର ଓ ଶନି ମିତ୍ର, ରବି ଚନ୍ଦ୍ର ଓ ମଙ୍ଗଳ ଶତ୍ରୁ ଅଟନ୍ତି ।

## କେତୋଃ ଉଚ୍ଚ ମିତ୍ରାଦି କଥନଂ ।

ସିଂହସ୍ତ୍ରିକୋଣଂ ଧନୁରୁଚ୍ଚସଂଜ୍ଞଂ ମୀନୋ ଗୃହଂ ଶୁକ୍ରଶନୀବପକ୍ଷୌ ।
ସୂର୍ଯ୍ୟାରଚନ୍ଦ୍ରାଃ ସୁହୃଦଃ ସମାନୌ ଜ୍ଞାବେନ୍ଦୁଜୌ ଷଟ୍ ଶିଖିନଃ ପରାଂଶାଃ ॥

କେତୁ ଧନୁର ୬ ଅଂଶ ପର୍ଯ୍ୟନ୍ତ ଉଚ୍ଚ । ଷଷ୍ଠାଂଶ ପରମୋଚ୍ଚ । ମିଥୁନର ୬ ଅଂଶ ପର୍ଯ୍ୟନ୍ତ ନୀଚ । ଷଷ୍ଠାଂଶ ପରମ ନୀଚ । ସିଂହର ୬ ଅଂଶ ପର୍ଯ୍ୟନ୍ତ ମୂଳ ତ୍ରିକୋଣ । ରବି ଚନ୍ଦ୍ର ମଙ୍ଗଳ କେତୁର ମିତ୍ର, ଶୁକ୍ର ଓ ଶନି ଶତ୍ରୁ ଅଟନ୍ତି ।

ଗ୍ରହମାନେ ଉଚ୍ଚାଂଶ ଓ ମୂଳତ୍ରିକୋଣାଂଶ ମାନଙ୍କରେ ଥିଲେ ଯଥାକ୍ରମେ ଉଚ୍ଚୋକ୍ତ ଓ ମୂଳତ୍ରିକୋଣୋକ୍ତ ଫଳ ପ୍ରଦାନ କରନ୍ତି । ସେହିପରି ନୀଚାଂଶ ଓ ପରମ ନୀଚାଂଶରେ ଥିଲେ ତଦୁକ୍ତ ଫଳ ପ୍ରଦାନ କରନ୍ତି । ଅଂଶ ନ ଦେଖି କେବଳ ରାଶିଗତ ଫଳ ଦେଖିବା ଅବଧେୟ । ମେଷ ରାଶିର ୧୦ ଅଂଶ ମଧ୍ୟରେ ଥିବା ରବିର ଫଳ ଅପେକ୍ଷା ମେଷର ଦଶାଂଶସ୍ଥ ଫଳ ଅଧିକ; କିନ୍ତୁ ମେଷର ୧୦ ଅଂଶ ଠାରୁ ମେଷର ୩୦ ଅଂଶ ପର୍ଯ୍ୟନ୍ତ ଫଳ ପୂର୍ବାପେକ୍ଷା କମ୍ । ନୀଚରେ ଥିଲେ ଅଶୁଭ ଫଳର ବଳର ମଧ୍ୟ

ଏହି ଅନୁପାତରେ କରାଯାଏ । ଯଥା :—ରବି ଭୁଜର ୧୦ ଅଂଶ ମଧ୍ୟରେ ଥିଲେ ଅତ୍ୟନ୍ତ ଶୁଭ । ଦଶାଂଶସ୍ଥ ଫଳ ଅତ୍ୟନ୍ତ ମନ୍ଦ । ଦଶ ଅଂଶଠାରୁ ୩୦ ଅଂଶ ମଧ୍ୟରେ ଥିଲେ ସାମାନ୍ୟ ଶୁଭଫଳ ପ୍ରଦାନ କରିବେ ।

ତାତ୍କାଳିକ ଶତ୍ରୁମିତ୍ର କଥନଂ ।

ଚତୁର୍ଥଦଶତ୍ରିଲାଭ୍ୟବିଲାଭସ୍ଥାଃ ପରସ୍ପରଂ ।
ତତ୍କାଳମିତ୍ରାଣ୍ୟୁଚସ୍ଥାଃ କେଚିଦ୍ୱୁକ୍ତୋଽନ୍ୟଥା ଭବେୟୁଃ ॥

ଗ୍ରହମାନଙ୍କର ପ୍ରାକୃତିକ ଶତ୍ରୁ, ମିତ୍ରାଦି ଲେଖା ଯାଇ ଅଛି । ସ୍ଥାନ ସ୍ଥିତି ଅନୁସାରେ ମଧ୍ୟ ଗ୍ରହମାନେ ପରସ୍ପର ତାତ୍କାଳିକ ଶତ୍ରୁ, ମିତ୍ର ହୋଇ-ପଡ଼ନ୍ତି । ଗୋଟିଏ ଗ୍ରହଠାରୁ ଅନ୍ୟ ଗୋଟିଏ ଗ୍ରହ ଯଦି ୩ୟ, ୪ର୍ଥ, ୨ୟ ହୋଇଥାଏ ବା ୧୧ଶ ୧୦ମ ୧୨ଶ ହୋଇଥାଏ, ତେବେ ସେହି ଉଭୟ ଗ୍ରହ ପରସ୍ପର ତାତ୍କାଳିକ ମିତ୍ର ହୁଅନ୍ତି । ୫ମ, ୯ମ, ୬ଷ୍ଠ, ୮ମ, ୭ମସ୍ଥ ହେଲେ ପରସ୍ପର ତାତ୍କାଳିକ ଶତ୍ରୁ ହୁଅନ୍ତି । ଯେଉଁ ଗ୍ରହ ଯାହା ସାଙ୍ଗରେ ଥାଏ ସେ ତାହାର ତାତ୍କାଳିକ ଶତ୍ରୁ ହୁଏ । ଗ୍ରହ ଉଚ୍ଚସ୍ଥ ହୋଇଥିବ, ତା ସଙ୍ଗରେ ଅନ୍ୟ ଯେ ଗ୍ରହମାନେ ଥିବେ ସେ ସମସ୍ତେ ସେହି ଉଚ୍ଚସ୍ଥ ଗ୍ରହର ତାତ୍କାଳିକ ମିତ୍ର ହୋଇ ପଡ଼ନ୍ତି ।

ଅଧିମିତ୍ରାଦି କଥନଂ ।

ହିତ ସମ ରିପୁ ସଂଜ୍ଞା ଯେ ନିସର୍ଗେ ନିରୁକ୍ତା ।
ଅଧି ହିତ ହିତମଧ୍ୟାସ୍ତେଽପି ତତ୍କାଳମିତ୍ରୈଃ ॥
ରିପୁ ସମ ସୁହୃଦାଖ୍ୟା ଯେ ନିସର୍ଗେ ପ୍ରଦିଷ୍ଟାଃ ।
ଅଧି ରିପୁ ରିପୁ ମଧ୍ୟାଃ ଶତ୍ରୁଭିସ୍ତିଳ୍ପନୀୟାଃ ॥

ଗ୍ରହ ପ୍ରକୃତ ମିତ୍ର ହୋଇ ପୁଣି ଯେବେ ତାତ୍କାଳିକ ମିତ୍ର ହୁଏ ତେବେ ସେ ଗ୍ରହ ଅଧିମିତ୍ର ହୁଏ । ପ୍ରକୃତ ଶତ୍ରୁ ହୋଇ ତାତ୍କାଳିକ ଶତ୍ରୁ

ହେଲେ ଗ୍ରହ ଅଧିଶତ୍ରୁ ହୁଏ। ଶତ୍ରୁ ହୋଇ ତାହାଙ୍କ ମିତ୍ର ହେଲେ ସମ, ସମ ହୋଇ ତାହାଙ୍କ ମିତ୍ର ହେଲେ ମିତ୍ର; ସମ ହୋଇ ତାହାଙ୍କ ଶତ୍ରୁ ହେଲେ ଶତ୍ରୁ ହୁଏ ।

## ଦୃଷ୍ଟି ବସ୍ତୁରଃ ।

ପାଦୈକଦୃଷ୍ଟିର୍ଦଶମେ ତୃତୀୟେ ଦ୍ୱିପାଦଦୃଷ୍ଟିର୍ନବପଞ୍ଚମେଷୁ ।
ତ୍ରିପାଦଦୃଷ୍ଟିଃଶ୍ଚତୁରଷ୍ଟକେଷୁ ସମ୍ପୂର୍ଣ୍ଣ ଦୃଷ୍ଟିଃ ସମ ସପ୍ତକେ ଷୁ ॥

ଗ୍ରହମାନେ ଯେମାନଙ୍କର ଦଶମ ଓ ତୃତୀୟ ସ୍ଥାନକୁ ପାଦେ ମାତ୍ର ଦେଖନ୍ତି । ନବମ ଓ ପଞ୍ଚମକୁ ଦୁଇପାଦ ( ଅର୍ଦ୍ଧେକ ) ଦେଖନ୍ତି । ଚତୁର୍ଥ ଓ ଅଷ୍ଟମକୁ ତିନପାଦ, ସପ୍ତମକୁ ସମ୍ପୂର୍ଣ୍ଣ ଭବରେ ଦେଖନ୍ତି । ଗ୍ରହ ଯେଉଁ ରାଶିର ଯେତେ ଅଂଶରେ ଥିବ, ତାହାର ଦୃଶ୍ୟ ରାଶିର ସେତିକି ଅଂଶରେ ଥିବା ଗ୍ରହକୁ ସେ ସମ୍ପୂର୍ଣ୍ଣ ଦେଖିବ ।

ଦୃଷ୍ଟିର୍ଜ୍ୟ ଦଶମେ ସୌରୀ ତ୍ରିକୋଣେ ଚ ବୃହସ୍ପତିଃ ।
ଚତୁର୍ଥାଷ୍ଟମୟୋର୍ଭୌମୋ ଶେଷାଃ ସପ୍ତମପଶ୍ଚିତାଃ ॥

ଶନି ଦଶମ ଓ ତୃତୀୟକୁ ପୂର୍ଣ୍ଣମାତ୍ରାରେ, ବୃହସ୍ପତି ନବମକୁ ଓ ପଞ୍ଚମକୁ ପୂର୍ଣ୍ଣ ମାତ୍ରାରେ,ମଙ୍ଗଳ ଚତୁର୍ଥ ଓ ଅଷ୍ଟମକୁ ପୂର୍ଣ୍ଣ ମାତ୍ରାରେ ଦେଖନ୍ତି। ଅନ୍ୟ ସମସ୍ତ ଗ୍ରହମାନେ ଯେମାନଙ୍କର ସପ୍ତମକୁ ପୂର୍ଣ୍ଣରୂପରେ ଦେଖନ୍ତି ।

## ତାଜକୋକ୍ତ ଦୃଷ୍ଟି କଥନଂ

ଦୃଷ୍ଟିଃ ସ୍ୟାନ୍ନବପଞ୍ଚମେ ବଳବତୀ ପ୍ରତ୍ୟକ୍ଷତଃ ସ୍ନେହଦା ।
ପାଦୋନାଖିଳକାର୍ଯ୍ୟସାଧନକରୀ ମେଳାପକାଖ୍ୟୋଚ୍ୟତେ ॥
ଗୁପ୍ତସ୍ନେହକରୀ ତୃତୀୟଭବନେ କାର୍ଯ୍ୟସ୍ୟ ସଂସିଦ୍ଧିଦା ।
ତ୍ରିଂଶୋନା କଥିତା ତୃତୀୟଭବନେ ଷଡ଼ଭାଗଦୃଷ୍ଟିର୍ଭବେତ୍ ॥

ଦୃଷ୍ଟୟଃ ପାଦମିତା ଚତୁର୍ଥଦଶମେ ଗୁପ୍ତାଭିଧାବା ସ୍ମୃତା,
ଅନ୍ୟୋନ୍ୟଂ ଧନସପ୍ତମେ ଯଦି ଭବେତ୍ ପ୍ରତ୍ୟକ୍ଷବୈରା ଖିଳା ।
ଦୃଷ୍ଟଂ ତୃତୀୟଂ ସୁତାଦ୍ୱୟମିଦଂ କାର୍ଯ୍ୟସ୍ୟ ବିଧ୍ୱଂସନଂ ।
ଯଗ୍ରାମାଦି ଜଳପ୍ରଦଂ ଦୃଶ ଇମାଃ ସ୍ୟୁର୍ଦ୍ୱାଦଶାଂଶାନ୍ତରେ ॥
( ତା, ନୀ )

ଯବନେଶ୍ୱରଙ୍କ ମତରେ ଦୃଷ୍ଟି ୪ ଭାଗରେ ବିଭକ୍ତ । (୧) ପ୍ରତ୍ୟକ୍ଷ ସ୍ନେହ (୨) ଗୁପ୍ତସ୍ନେହ (୩) ପ୍ରତ୍ୟକ୍ଷ ବୈର (୪) ଗୁପ୍ତ ବୈର ଦୃଷ୍ଟି । ନବମ ପଞ୍ଚମ ସ୍ଥାନକୁ ଗ୍ରହମାନଙ୍କର ଯେ ଦୃଷ୍ଟି ତାହା ପ୍ରତ୍ୟକ୍ଷ ସ୍ନେହ ଦୃଷ୍ଟି । ଏହା ସର୍ବତୋଭାବରେ ଶୁଭ ଫଳ ଦାୟକ । ତୃତୀୟ ଯେ ଦୃଷ୍ଟି ତାହା ଗୁପ୍ତସ୍ନେହ ଦୃଷ୍ଟି, ତାହା ମଧ୍ୟ କାର୍ଯ୍ୟ ସିଦ୍ଧିକାରକ । ସପ୍ତମକୁ ଯେ ଦୃଷ୍ଟି ତାହା ପ୍ରତ୍ୟକ୍ଷ ବୈର ଦୃଷ୍ଟି । ଏହା କାର୍ଯ୍ୟହାନି କାରକ ଓ ଅନିଷ୍ଟଜନକ । ଦଶମ ଓ ଚତୁର୍ଥକୁ ଯେ ଦୃଷ୍ଟି ତାହାର ନାମ ଗୁପ୍ତ ବୈର । ଏହା ଅଶୁଭ ଫଳଦାୟକ ।

ରାହୋଃ କେତୋର୍ଦୃଷ୍ଟି କଥନଂ

ସୁତମଦନନବାନ୍ତ୍ୟେ ପୂର୍ଣ୍ଣଦୃଷ୍ଟିଃ ସୁବୀରଃ
ସୁଗଲଦଶମଗେହେ ଦୃଷ୍ଟିପାଦଶ୍ଚାର୍ଦ୍ଧଃ ।
ସହଜରିପୁଚତୁର୍ଥେଷ୍ୱଷ୍ଟମେ ଶ୍ଚାର୍ଦ୍ଧଦୃଷ୍ଟିଃ ।
ସ୍ୱ ଭବନମୁପାନ୍ତ୍ୟଂ ନୈବ ଦୃଶ୍ୟଂ ହି ରାହୋଃ ॥ (ନୀ,ତ)

ରାହୁ ତାହାର ପଞ୍ଚମ, ସପ୍ତମ, ନବମ ଓ ଦ୍ୱାଦଶ ସ୍ଥାନକୁ ପୂର୍ଣ୍ଣ ଭାବରେ ଦେଖେ । ଦ୍ୱିତୀୟ ଓ ଦଶମକୁ ତିନପାଦ, ତୃତୀୟ, ଚତୁର୍ଥ, ଷଷ୍ଠ ଓ ଅଷ୍ଟମକୁ ଅର୍ଦ୍ଧ ଦୃଷ୍ଟିରେ ଦେଖେ । ସେ ଥିବା ସ୍ଥାନକୁ ଓ ତାହାର ଏକାଦଶ ସ୍ଥାନକୁ ରାହୁ ଦେଖେ ନାହିଁ ।

## ଗ୍ରହାଣାଂ ଅଙ୍ଗାଧିକାର କଥନଂ

ଶିରଃ ପ୍ରଦେଶେ ବଦନେ ଦନେଶୋ
ବକ୍ଷସ୍ଥଲେ ଗ୍ଳପି ଗଳେ କଳାବାନ୍ ।
ପୃଷ୍ଠୋଦରେ ଭୂତନୟଃ ପ୍ରକୁହଂ
କରେତ ସୌମ୍ୟଶ୍ଚରଣେ ଚ ପାଣୌ ॥

କଟିପ୍ରଦେଶେ ଜଘନେ ଚ ଜୀବଃ
କବିସ୍ତୁ ଗୁହ୍ୟସ୍ଥଳମୁଷ୍କଯୁଗ୍ମେ ।
ଜାନୁପ୍ରଦେଶେ ନଳକଣ୍ଠସୂନୁ
ସ୍ଥାରେଣ ବା ଜନ୍ମନ ଚକ୍ରଖାସ୍ତଂ ॥

ଯଦା ଯଦା ସ୍ୟାତ୍ ପ୍ରତିକୂଳବର୍ତ୍ତୀ
ସ୍ୱାଙ୍ଗେ ସ୍ୱଦୋଷେଣ କରେତ ପୀଡ଼ାଂ ।
ଉଦକ୍ତୁ ପୂର୍ବଂ ପ୍ରବିମୃଶ୍ୟ ସର୍ବଂ
ପ୍ରଶ୍ନ ପ୍ରସୂତ୍ୟାଦଷୁ କଳ୍ପନୀୟଂ ॥

ରବିଙ୍କର ମସ୍ତକ ଓ ମୁଖରେ ଅଧିକାର । ବକ୍ଷ ଓ କଣ୍ଠରେ ଚନ୍ଦ୍ରଙ୍କର, ପୃଷ୍ଠ ଓ ଉଦରରେ ମଙ୍ଗଳଙ୍କର, ହସ୍ତ ଓ ପାଦରେ ବୁଧଙ୍କର, କଟି ଓ ଜଙ୍ଘରେ ବୃହସ୍ପତିଙ୍କର, ମୁଷ୍କ ଓ ଗୁହ୍ୟଦେଶରେ ଶୁକ୍ରଙ୍କର, ଜାନୁ ଓ ଉରୁରେ ଶନିଙ୍କର ଅଧିକାର । ରାହୁ ଓ କେତୁ ଯେଉଁ ଗ୍ରହର ଗୃହରେ ଥିବେ ସେହି ଗ୍ରହର ଯେଉଁ ଅଙ୍ଗରେ ଅଧିକାର ଏମାନଙ୍କର ମଧ୍ୟ ସେହି ଅଙ୍ଗରେ ଅଧିକାର ବୋଲି ଜାଣିବୁ କରିବେ । ଦଶାନ୍ତର୍ଦଶାଦିର ଭୋଗ କାଳରେ ଯେଉଁ ଗ୍ରହମାନେ ଅନିଷ୍ଟକାରକ ସେମାନେ ସେମାନଙ୍କର ଅଧିକାର ଅଙ୍ଗରେ ପୀଡ଼ା କରାଇଥାନ୍ତି ।

## ଗ୍ରହକାରକ ନିର୍ଣ୍ଣୟଃ

ସୂର୍ଯ୍ୟାଦାତ୍ମ-ପିତୃ-ସ୍ୱଭାବ-ନିରୁଜ-ଶାନ୍ତି-ଶ୍ରିୟୋ ଚିନ୍ତୟେତ୍ ।
ଚେତୋ-ବୁଦ୍ଧି-ନୃପପ୍ରସାଦ-ଜନନୀ-ସମ୍ପତ୍କର ଶ୍ଚନ୍ଦ୍ରମାଃ ।
ସତ୍ତ୍ୱଂ ରୋଗ-ଗୁଣା-କୁଜାବନିସୁତାନ୍ ଭ୍ରାତ୍ରାଦୟୋ କାରକାଃ ।
ବିଦ୍ୟା-ବନ୍ଧୁ-ବିବେକ-ମାତୁଲ-ସୁହୃଦ୍-ବାକ୍‌କର୍ମକୃଦ୍-ବୋଧକଃ ॥
ପ୍ରଜ୍ଞା-ବିତ୍ତ-ଶରୀର-ପୁଷ୍ଟି-ତନୟ-ଜ୍ଞାନାନି ବାଗୀଶ୍ୱରାତ୍ ।
ପତ୍ନୀ-ବାହନ-ଭୂଷଣାନି-ମଦନ-ବ୍ୟାପାର-ସୌଖ୍ୟଂ ଭୃଗୋଃ ।
ଆୟୁର୍ଜୀବନ-ମୃତ୍ୟୁକାରଣ-ବିପତ୍-ସମ୍ପତ୍-ପ୍ରଦାତା ଶନିଃ ।
ସର୍ପେଣୈବ ପିତାମହସ୍ତୁ ଶିଖିନାଂ ମାତାମହଂ ଚିନ୍ତୟେତ୍ ।
(ଶ, ହୋ,)

ରବିର କାରକ—ଆତ୍ମା, ପିତା, ଗୁଣ, ନୀରୋଗତା, ଶାନ୍ତି ଓ ଶ୍ରୀ ।
ଚନ୍ଦ୍ରର କାରକ—ଚିତ୍ତ, ବୁଦ୍ଧି. ରାଜପ୍ରସାଦ, ମାତା ଓ ଧନ ।
ମଙ୍ଗଳର କାରକ—ସତ୍ତ୍ୱ, ରୋଗ, ଗୁଣ ଓ ଭ୍ରାତା ।
ବୁଧର କାରକ—ବିଦ୍ୟା, ବନ୍ଧୁ, ବିବେକ, ମାତୁଳ ମିତ୍ର ଓ ବାକ୍‌ଶକ୍ତି ।
ବୃହସ୍ପତିର କାରକ—ବୁଦ୍ଧି, ଧନ, ଦେହ, ପୁଷ୍ଟି, ପୁତ୍ର ଓ ଜ୍ଞାନ ।
ଶୁକ୍ରର କାରକ—ସ୍ତ୍ରୀ, ବାହନ, ଭୂଷଣ, ରତିକ୍ରିୟା, ବ୍ୟବହାର ଓ ସୁଖ ।
ଶନିର କାରକ—ଆୟୁ, ଜୀବନ, ମୃତ୍ୟୁକାରଣ, ସମ୍ପଦ୍ ଓ ବିପଦ୍ ।
ରାହୁର କାରକ—ଯେଉଁ ଗ୍ରହର ଗୃହରେ ତାହାର ସମସ୍ତ ଓ ପିତାମହ ।
କେତୁର କାରକ—ରାହୁପରି ଓ ମାତାମହ ।

ପ୍ରତ୍ୟେକ ଗ୍ରହର କାରକର ସମସ୍ତ ବିଷୟ ଉପରେ ଦିଆଗଲା । ଏହି ସମସ୍ତ ବିଷୟ ଅନେକ ପୁସ୍ତକରୁ ସଂଗ୍ରହ କରାଯାଇଥିବା ଯୋଗେ ଓ ତଦ୍ୱାରା ପାଠକଗଣଙ୍କର କୌଣସି ଉପକାର ନ ଦେଖି ମୂଳ ସଂସ୍କୃତ ଶ୍ଳୋକମାନ ଦିଆଗଲା ନାହିଁ ।

୧ । ରବିର କାରକ—ପିତା, ଆତ୍ମା, ଗୁଣ, ନୀରୋଗତା, ଶାନ୍ତି, ଙ୍କ, ରାଜା, କ୍ଷତ୍ରିୟ ଜାତି, ତାମ୍ରଧାତୁ, ପୁରୁଷ ପୂର୍ବଦିଗ, ନଖ, ଦନ୍ତ, ଚର୍ମ, ସ୍ୱର୍ଣ୍ଣ, ରକ୍ତବର୍ଣ୍ଣ ବସ୍ତ୍ର, ବ୍ୟବହାର ଶାସ୍ତ୍ର । ଶରୀର ସମ୍ବନ୍ଧେ—ମସ୍ତିଷ୍କ, ହୃଦୟ, ଚକ୍ଷୁ, ମୁଖ । ରୋଗ—ହୃତ୍କମ୍ପ, ବଧିରତା, ଜ୍ୱର ଓ ପିତ୍ତାଧିକ ବିକାର ।

୨ । ଚନ୍ଦ୍ରର କାରକ—ଚିତ୍ତ, ବୁଦ୍ଧି, ରାଜପ୍ରସାଦ, ମାତା, ଧନ, ଆମୋଦ, ବୈଶ୍ୟଜାତି, ମଣି ମାଣିକ୍ୟ, ସ୍ତ୍ରୀ,ବାୟୁକୋଣ, ଶୁକ୍ଳବର୍ଣ୍ଣ ପଟ୍ଟବସ୍ତ୍ର, ବୈଦ୍ୟଶାସ୍ତ୍ର । ଶରୀରସମ୍ବନ୍ଧେ—ଗଳା, ଉଦର, ବକ୍ଷ, ମୂତ୍ରାଶୟ । ରୋଗ- ବାତକଫ, ଉଦରାମୟ, ପାଳିଜ୍ୱର ।

୩ । ମଙ୍ଗଳର କାରକ—ସତ୍ତ୍ୱ ଗୁଣ, ଭ୍ରାତା, ପରାକ୍ରମ, କ୍ଷତ୍ରିୟଜାତି, ପୁରୁଷ,ସ୍ୱର୍ଣ୍ଣ, ସେନାପତି, ଦକ୍ଷିଣଦିଗ, ଯୁଦ୍ଧାଦି ବିଦ୍ୟା, ରକ୍ତବର୍ଣ୍ଣ ବସ୍ତ୍ର । ଶରୀର ସମ୍ବନ୍ଧେ—ଦନ୍ତ, ବାମକର୍ଣ୍ଣ, କଣ୍ଠ, ରକ୍ତବାହକା, ଗୁହ୍ୟଦ୍ୱାର । ରୋଗ—ଦନ୍ତଶୂଳ, କର୍ଣ୍ଣରୋଗ, ଦଦ୍ରୁ, ମୂତ୍ରକୃଚ୍ଛ୍ର, ବ୍ରଣ, ଅସ୍ତ୍ରାଘାତ, ପିତ୍ତାଧିକ୍ୟ ଓ ନାନାପ୍ରକାର ଦୂଷିତ ରୋଗ ।

୪ । ବୁଧର କାରକ—ମାତୁଳ, ବିଦ୍ୟା, ବନ୍ଧୁ, ବିବେକ, ମିତ୍ର, ବାକ୍‌ଶକ୍ତି, ଶାନ୍ତି, ଭକ୍ତି, ଜ୍ଞାନ, ଶୂଦ୍ରଜାତି, ମୌକ୍ତିକ, ଉତ୍ତରଦିଗ, ଜ୍ୟୋତିଷ ଓ ଗଣିତାଦି ଶାସ୍ତ୍ର । ଶରୀର ସମ୍ବନ୍ଧେ—ଜିହ୍ୱା, କଣ୍ଠନାଳୀ, ଅନ୍ତର୍ନାଳୀ, ଅଧୋଦେଶ । ରୋଗ—ଦୃଷ୍ଟିହୀନ, ଶିରଃପୀଡ଼ା, ସ୍ମୃତି ଓ ବାକ୍‌ଶକ୍ତି ହୀନତା, ଅସ୍ଥିରତା, ବାତ ପିତ୍ତ କଫାଧିକ୍ୟ ପୀଡ଼ା ।

୫ । ବୃହସ୍ପତିର କାରକ—ବୁଦ୍ଧି, ଧନ, ଶରୀର, ପୁଷ୍ଟି, ଜ୍ଞାନ, ସୁଖ, ପୁତ୍ର, ବ୍ରାହ୍ମଣଜାତି, ରୌପ୍ୟଧାତୁ, ଈଶାନକୋଣ, ମନ୍ତ୍ରଣାଶକ୍ତି, ପୀତବର୍ଣ୍ଣ ପଟ୍ଟବସ୍ତ୍ର, ତର୍କଶାସ୍ତ୍ର । ଶରୀର ସମ୍ବନ୍ଧେ—ଫୁସ୍‌ଫୁସ୍,

ରକ୍ତବାହୁକା, ଦକ୍ଷିଣ ହସ୍ତ । ରୋଗ—କାଶ, ଶ୍ୱାସ, କର୍ଣ୍ଣବେଦନା, ଚାକ୍ଷୁରୋଗ, ଯକୃତ୍‌, ସନ୍ନ୍ୟାସ, ଶ୍ଳେଷ୍ମାଜନିତ ରୋଗ ।

୬ । ଶୁକ୍ରର କାରକ —ସ୍ତ୍ରୀ, ବାହନ, ଭୂଷଣ, ରତିକ୍ରିୟା, ଅଧ୍ୟାପକତ୍ୱ, ପୁଷ୍ପ, ମନ୍ତ୍ରୀତ୍ୱ, କବିତା, ବିଳାସ, ବଶୀକରଣ, ସ୍ତ୍ରୀ, ଅଗ୍ନିକୋଣ ମୁକ୍ତା, ବ୍ରାହ୍ମଣଜାତି, ଶୁକ୍ଳବର୍ଣ୍ଣ ପଟ୍ଟବସ୍ତ୍ର । ବ୍ୟବହାର ଶାସ୍ତ୍ର, ସଙ୍ଗୀତ ଶାସ୍ତ୍ର । ଶରୀର ସମ୍ବନ୍ଧେ—ନାସାରନ୍ଧ୍ର, ବାମହସ୍ତ, ଅଣ୍ଡକୋଷ, ଗୁହ୍ୟ ପ୍ରଦେଶ, ହୃଦୟ । ରୋଗ—ଧାତୁପୀଡ଼ା, ଉପଦଂଶ, ବୀର୍ଯ୍ୟହୀନତା, ବହୁମୂତ୍ର, ଗର୍ଭରୋଗ, ନାନାପ୍ରକାର ଲଜ୍ଜାଜନକ ରୋଗ ଓ ବାତକଫାଧିକ୍ୟ ପୀଡ଼ା ।

୭ । ଶନିର କାରକ—ଆୟୁ, ଜୀବନ, ମୃତ୍ୟୁକାରଣ, ବିପଦ, ସମ୍ପଦ, ଦାସକର୍ମ, ଦୁଃଖ, ପାପକର୍ମ, ପରଚ୍ଛିଦ୍ର, ଅପବାଦ, ନୀଚଜାତି, ନପୁଂସକତ୍ୱ, ଲୌହଧାତୁ, ପଶ୍ଚିମଦିଗ, ଯବାଦି, ଚର୍ମବସ୍ତ୍ର, କୃଷି, କୃଷ୍ଣ ଦ୍ରବ୍ୟ, ତନ୍ତ୍ରଶାସ୍ତ୍ର । ଶରୀର ସମ୍ବନ୍ଧେ—ପ୍ଲୀହା, ଜଙ୍ଘ, ପାଦ, ଜାନୁ । ରୋଗ—ବାତ, ଉଦରାମୟ, ପଦସ୍ଖଳନତା, ଯକ୍ଷ୍ମା ।

୮ । ରାହୁର କାରକ—ଯେଉଁ ଗ୍ରହର ଗୃହରେ ଥିବ ସେହି ଗ୍ରହର ସମସ୍ତ କାରକତ୍ୱ, ନୈର୍‌ଋତଦିଗ, ସୀସକଧାତୁ, ପୁରୁଣା ଚର୍ମବସ୍ତ୍ର, ପିତାମହ ।

୯ । କେତୁର କାରକ—ଗ୍ରହ, ଗୃହାଶ୍ରିତ ଫଳ ( ରାହୁପରି ) ଐଶାନ୍ୟ ଦିଗ, ମିଶ୍ରଧାତୁ, ସୁନ୍ଦର ନୀଳବର୍ଣ୍ଣ ବସ୍ତ୍ର ।

ଉପରେ ଯେଉଁ ପ୍ରତ୍ୟେକ ଗ୍ରହର କାରକ ବିଷୟ ଉଲ୍ଲେଖ କରାଗଲା, ତାହା ଦଶାର ଶୁଭାଶୁଭରେ କପରି ବ୍ୟବହାର କରିବାକୁ ହେବ ତାହା ନିମ୍ନରେ ଦେଖାଇ ଦିଆଗଲା ।

ରବି ଶୁଭ ହୋଇଥିଲେ ତାହାର ଦଶାନ୍ତର୍ଦ୍ଦଶାରେ ରୋଗନାଶ, ସୁଖପ୍ରାପ୍ତି, ରାଜା ଓ କ୍ଷତ୍ରିୟ ଜାତିଠାରୁ ସାହାଯ୍ୟପ୍ରାପ୍ତି ଓ ସେମାନଙ୍କ ହେତୁ ଧନପ୍ରାପ୍ତି, ତାମ୍ରାଦି ନିର୍ମିତ ଦ୍ରବ୍ୟଲାଭ, ପୂର୍ବଦେଶରୁ ବ୍ୟବହାର ସମ୍ପର୍କ ନେଇ ଲାଭ, ପଶ୍ୱାଦି ହେତୁକ ଲାଭ, ହସ୍ତୀଦନ୍ତ, ବ୍ୟାଘ୍ରଚର୍ମ, ସ୍ୱର୍ଣ୍ଣାଦି ଅଳଙ୍କାର ବଣିଜ୍ୟ ହେତୁକ ଲାଭ, ପଟ୍ଟବସ୍ତ୍ରାଦି ଲାଭ କରାଏ ।

ରବି ଅଶୁଭ ହୋଇଥିଲେ ତାହାର ଦଶାନ୍ତର୍ଦ୍ଦଶାରେ ରାଜା ବା ଉପରସ୍ଥ କର୍ମଚାରୀ ହେତୁ ଭୟପ୍ରାପ୍ତି, ପିତାଦି ଗୁରୁବର୍ଗ ସହ କଳହ, ସମ୍ଭବ ହେଲେ ପିତାର ମରଣ, ତାମ୍ରାଦି ଧାତୁ ଦ୍ରବ୍ୟ ହାନି, ପୂର୍ବଦେଶସ୍ଥ ଧନ, ବ୍ୟକ୍ତି ବା ଚତୁଷ୍ପଦାଦି ହାନି, ନୀଚ ବ୍ୟବହାର ଦ୍ୱାରା ଭରଣ ପୋଷଣ କରାଏ । ମସ୍ତିଷ୍କ, ଚକ୍ଷୁ ଓ ମୁଖରେ ପୀଡ଼ା, ହୃତ୍କମ୍ପ, ଜ୍ୱର ବିସୂଚିକା ଓ ସମସ୍ତ ପ୍ରକାର ପିତ୍ତାଧିକ୍ୟ ପୀଡ଼ା କରାଇବ ।

ଏପରି ଅନ୍ୟାନ୍ୟ ସମସ୍ତ ଗ୍ରହଙ୍କର କାରକ ସେମାନଙ୍କର ଶୁଭାଶୁଭ ଫଳରେ ବ୍ୟବହାର କରିବେ ।

### ସାମ୍ନାଦି ଜ୍ଞାନଂ

ସାମ୍ନୋ ଜୀବଃ ସଭୃଗୁତନୟୋ ଦଣ୍ଡନାଥୌ କୁଜାର୍କୌ,
ଦାନେପ୍ୟନ୍ଦୁଃ ଶିଖୀଯମବୁଧାଃ ସାସୁରାଭେଦନାଥାଃ ।
ସ୍ୱୈର୍ଯ୍ୟାପେକ୍ଷୈରୁପଚୟଗତୈର୍ଲଗ୍ନଗୈଃ କେନ୍ଦ୍ରଗୈର୍ବା ।
ତଦ୍ୱତ୍ ସିଦ୍ଧିର୍ଭବତି ତଦହଃ ସ୍ୱାଂଶକୈର୍ବାପି ତେଷାଂ ।(ଜା,ପା,)

ବୃହସ୍ପତି ଓ ଶୁକ୍ର ସାମନୀତିର ଅଧିପତି । କେତୁ, ଶନି, ବୁଧ, ରାହୁ ଭେଦନୀତିର ଅଧିପତି ଅଟନ୍ତି । ଯେଉଁ ଗ୍ରହ ବଳବାନ୍ ହୋଇ କେନ୍ଦ୍ରରେ (ଲଗ୍ନ, ଚତୁର୍ଥ, ସପ୍ତମ, ଦଶମ) ବା ଉପଚୟ (ତୃତୀୟ, ଷଷ୍ଠ,

ନବମ, ଦ୍ୱାଦଶ) ରେ ଥିବେ ଏମା ଯେଉଁ ଗ୍ରହର ନବାଂଶରେ ଜାତକ ଜନ୍ମଗ୍ରହଣ କରିଥିବ, ସେହି ଗ୍ରହର ନୀଚ ତାହାଠାରେ ବିଶେଷଭାବରେ ଥାଏ ।

### ରସାଧିପତି ବର୍ଣ୍ଣନ୍ୟଃ

କଟୁ ଲବଣ ତିକ୍ତ ମିଶ୍ରା ମଧୁରାମ୍ଳୌ ଚ କଷାୟକୋଽର୍କତଃ ।
ଏତେ ରସାଃ ପ୍ରିୟା ଭବନ୍ତି ମୁଖେଽର୍କାଦ୍ୟା ବର୍ତ୍ତମାନାଃ ସନ୍ତଃ ॥

ରବି କଟୁ ରସର, ଚନ୍ଦ୍ର ଲବଣ ରସର, ମଙ୍ଗଳ ତିକ୍ତ ରସର, ବୁଧ ମିଶ୍ର ରସର, ବୃହସ୍ପତି ମଧୁର ରସର, ଶୁକ୍ର ଅମ୍ଳ ରସର ଓ ଶନି କଷାୟ ରସର ଅଧିକାରୀ । ଦ୍ରେକ୍କାଣ ବିଭାଗରେ ଅଙ୍ଗବିଭାଗର ବିଷୟ ଦେଖି ମୁଖ ସ୍ଥାନରେ ଯେ ଗ୍ରହ ଥିବ ଦେଖିବେ, ସେହି ଗ୍ରହର ଯେ ରସ ଜାତକ ସେହି ରସପ୍ରିୟ ହୋଇଥାଏ । ବହୁତ ଗ୍ରହ ଥିଲେ ଯେ ଗ୍ରହ ସେମାନଙ୍କ ମଧ୍ୟରେ ବଳବାନ୍ ତାହାକୁ ଦେଖି ନିଶ୍ଚୟ କରିବେ ।

### ସ୍ଥାନସଂଜ୍ଞା

କେନ୍ଦ୍ରଂ ଚତୁଷ୍ଟୟଂ ଲଗ୍ନାସ୍ତଖମଚତୁର୍ଥାନାଂ ସଂଜ୍ଞା ।
ପଣଫର ଦ୍ୱିତୀୟା ଷ୍ଟମ ପଞ୍ଚମୈକାଦଶଂ ବିଦୁଃ ।
ତୃତୀୟ ଷଷ୍ଠ ନବମ ମନ୍ତ୍ୟଞ୍ଚାପୋକ୍ଲିମଂ ତଥା ।
ଷଷ୍ଠ ତ୍ରିଦଶ ଲାଭଷ୍ଟ ଲଗ୍ନା ଦୁପଚୟ ସଂଜ୍ଞା ।
ପଞ୍ଚମଂ ନବମଂ ସ୍ଥାନଂ ତ୍ରିକୋଣଂ ପରିକୀର୍ତ୍ତିତଂ ॥

ଲଗ୍ନ, ଚତୁର୍ଥ, ସପ୍ତମ ଓ ଦଶମ ସ୍ଥାନକୁ କେନ୍ଦ୍ର, ଚତୁଷ୍ଟୟ ଓ କଣ୍ଟକ କହନ୍ତି । ଦ୍ୱିତୀୟ, ପଞ୍ଚମ, ଅଷ୍ଟମ ଓ ଏକାଦଶକୁ ପଣଫର କହନ୍ତି । ତୃତୀୟ, ଷଷ୍ଠ, ନବମ ଓ ଦ୍ୱାଦଶକୁ ଆପୋକ୍ଲିମ କହନ୍ତି । ତୃତୀୟ ଷଷ୍ଠ, ଦଶମ ଓ ଏକାଦଶକୁ ଉପଚୟ ଏବଂ ନବମ, ପଞ୍ଚମକୁ ତ୍ରିକୋଣ କହନ୍ତି ।

ତନୁର୍ଧନଞ୍ଚ ସହଜୋ ବନ୍ଧୁଃ ପୁତ୍ରୋ ରିପୁସ୍ତଥା ।
ପତ୍ନୀ ନିଧନଃ ଧର୍ମଶ୍ଚ କର୍ମ ସ୍ୱାୟୋ ବ୍ୟୟୋଽପି ଚ ॥
ଏତାନ୍ୟେବ ତନାମାନ୍ୟାତ୍ର ଲଗ୍ନାଦୌ ଚ ବିଚକ୍ଷଣଃ ।
ଏଭିର୍ଦ୍ୱାଦଶଭିର୍ୟୁକ୍ତା କୋଷ୍ଠୀ କାର୍ଯ୍ୟା ସଦୈବ ବୁଧୈଃ ॥

ଲଗ୍ନ, ତାପରେ ଦ୍ୱିତୀୟ ଭାବକୁ ଧନ, ତୃତୀୟ ଭାବକୁ ସହଜ, ଚତୁର୍ଥ ଭାବକୁ ବନ୍ଧୁ, ପଞ୍ଚମ ଭାବକୁ ପୁତ୍ର, ଷଷ୍ଠ ଭାବକୁ ଶତ୍ରୁ, ସପ୍ତମ ଭାବକୁ ପତ୍ନୀ, ଅଷ୍ଟମ ଭାବକୁ ନିଧନ, ନବମ ଭାବକୁ ଧର୍ମ, ଦଶମ ଭାବକୁ କର୍ମ. ଏକାଦଶ ଭାବକୁ ଆୟ ଓ ଦ୍ୱାଦଶ ଭାବକୁ ବ୍ୟୟସ୍ଥାନ କହନ୍ତି । ଏହି ବାରଟି ଭାବ ଓ ଭାବାଧିପତିମାନଙ୍କୁ ନେଇ ଜାତକର ଶୁଭାଶୁଭ କର୍ମର ବିଚାର କରାଯାଏ ।

ପ୍ରଥମୋଽଧ୍ୟାୟଃ ସମାପ୍ତଃ ।



## ଦ୍ୱିତୀୟୋଽଧ୍ୟାୟଃ ।

### ଲଗ୍ନ ବିଚାରଃ

ରାଶୀନାମୁଦୟୋ ଲଗ୍ନଂ ହୋରା ରାଶ୍ୟର୍ଦ୍ଧଲଗ୍ନୟୋଃ ।
(ଶ୍ରୀ, ସା, )

ରାଶିମାନଙ୍କର ପୂର୍ବ କ୍ଷିତିଜରେ ଉଦୟ କାଳର ନାମ ଲଗ୍ନ । ହୋରା ଲଗ୍ନର ଅର୍ଦ୍ଧେକ ।

ଲଗ୍ନମୂଲାଃ କ୍ରିୟାଃ ସର୍ବାଃ ଲଗ୍ନମୂଲଂ ହି ଜାତକଂ ।
ତସ୍ମାଦ୍ଧ୍ରୁବତପାରୋକ୍ଷ୍ଟ ଲଗ୍ନଶୁଦ୍ଧି ଜନ୍ୟାବିତା ।
ତଲ୍ଲଗ୍ନଗୁଣଦୋଷେଣ କାର୍ଯ୍ୟା କାର୍ଯ୍ୟବିଚାରଣା ।

ପ୍ରତ୍ୟେକ କର୍ମ ଲଗ୍ନ ସାପେକ୍ଷ । ଲଗ୍ନ ଆନୟନ ନିମିତ୍ତ ତାତ୍କାଳିକ ସମୟ ଆବଶ୍ୟକ । ଏହି ସମୟ ଜାଣିବା ନିମିତ୍ତ ଅନେକ ଉପାୟ ଅଛି । ଘଣ୍ଟା ଠିକ ଥିଲେ ତାହା ଅତି ଉତ୍କୃଷ୍ଟ ସମୟଜ୍ଞାପକ । ପାଞ୍ଜିରୁ ସୂର୍ଯ୍ୟୋଦୟ ବା ସୂର୍ଯ୍ୟାସ୍ତ କାଳ ଦେଖି ତାହା ତାତ୍କାଳିକ ଘଣ୍ଟା, ମିନିଟରୁ ବାଦ୍ ଦେଇଦେଲେ କେତେବେଳ ବା କେତେ ଘଡ଼ି ହୋଇଅଛି ଜଣାଯିବ । ଘଣ୍ଟାରେ ୧୧ ଘଣ୍ଟା ୨୫ ମିନିଟ ହୋଇଥିବା ସମୟରେ ଜଣେ ଲୋକ ପ୍ରଶ୍ନ କଲେ ବର୍ତ୍ତମାନ ସୂର୍ଯ୍ୟୋଦୟଠାରୁ କେତେ ବେଳ ହେଲା । ପାଞ୍ଜିରୁ ଦେଖାଗଲା, ସେଦିନ ସୂର୍ଯ୍ୟୋଦୟ ୫ ଘଣ୍ଟା ୨୫ ମିନିଟଠାରେ ହୋଇଅଛି । ଏହା ତାତ୍କାଳିକ ସମୟ ୧୧ ଘଣ୍ଟା ୨୫ ମିନିଟରୁ ବାଦ୍ ଦେଇ ଦେଲେ ବାକି ରହିଲା ୬ ଘଣ୍ଟା । ଘଣ୍ଟାକ ୨ ଦଣ୍ଡ ୩୦ ଲିତା, ତେଣୁ ୬ ଘଣ୍ଟାକ ହେଲା ୧୫ ଦଣ୍ଡ । ଅର୍ଥାତ ସେଦିନର ସମୟରୁ ବେଳ ୧୫ ଦଣ୍ଡ ହୋଇଅଛି । ଏଥିରୁ ଜଣାଗଲା ଘଣ୍ଟା ଥିଲେ ବଡ଼ ସୁବିଧା; କିନ୍ତୁ ସମସ୍ତ ସ୍ଥାନରେ ଘଣ୍ଟା ମିଳେ ନାହିଁ । ତେଣୁ ଦିବସରେ ଛାୟାପାଦ ଓ ଶଙ୍କୁଛାୟାରୁ, ରାତିରେ ଷିରୋମଧ୍ୟଗତ ନକ୍ଷତ୍ରମାନଙ୍କରୁ ସମୟ ଜଣାଯାଏ ।

## ସମୟ ଆନୟନଂ

ତତ୍କାଲସ୍ପଷ୍ଟମରଦଣ୍ଡତୋ ଦିନଘଟୀ ହୀନା ଭବେନ୍ମଧ୍ୟପ—
ନ୍ନଧ୍ୟୋନାଙ୍ଗଯୁତାର୍କଦାବତରଣୈଃ କାଳଘ୍ନଘସ୍ରାର୍ଦ୍ଧକଂ ।
ପିଣ୍ଡଂ ତତ୍ପ୍ରବହଜେଦ୍‌ଗତୈଷ୍ୟଘଟିକା ପ୍ରାକ୍ ପଶ୍ଚିମସ୍ଥେ ରବୌ ।
ତତ୍ପିଣ୍ଡଂ ଘଟିବକ୍ରମଙ୍ଗଦଯୁତଂ ମଧ୍ୟଂ ସ୍ୱମିଷ୍ଟାଙ୍ଘ୍ରୟଃ ।

ପରମ ଦିବସ ମାନ ୩୩ ଦଣ୍ଡ ୧୦ ଲିତାରୁ ସେହି ଦିନର ଦିନାର୍ଦ୍ଧ ଯେତେ ତାହାକୁ ଦୁଇଗୁଣ କରି ଫେଡିବେ । ବଳକା ଯାହା ରହିବ

ତାହାର ନାମ ମଧ୍ୟପାଦ । ଛାୟାପାଦ ଯେତେ ହେବ (ଛାୟା ମାପିବା ଲୋକ ସୂର୍ଯ୍ୟ ଯେଉଁ ଦିଗରେ ଥିବେ ତାହାର ବିପରୀତ ଦିଗକୁ ମୁଖ କରି ଠିଆ ହେବେ । ନିଜ ଛାୟାର ଶେଷଭାଗ ଯେଉଁଠାରେ ପଡ଼ିବ ତାହାକୁ ଚିହ୍ନ କରି ଯେଉଁ ପାଦ ପକାଇଥିବେ ତାହାର ଅର୍ଦ୍ଧଠାରୁ ଏକପାଦ ଇତ୍ୟାଦି କ୍ରମେ ମାପି ନେବେ । ପାଦ ନିଅଣ୍ଟ ହେଲେ କେତେ ପାଦ କେତେ ଅଙ୍ଗୁଳି ତାହା ଠିକ୍ କରିବେ) ତହିଁରୁ ମଧ୍ୟପାଦ ଫେଡ଼ିଦେବେ । ପାଦକୁ ଦଣ୍ଡ ଓ ଅଙ୍ଗୁଳିକୁ ୫ ଲିତା ହିସାବରେ ଧରି ନେଇ ଫେଡ଼ିବେ । ବଳକା ଯାହା ରହିଲା ସେଥିରେ ୬ ମିଶାଇବେ । ଏହି ୨ ଦଣ୍ଡ ୯ ଲିତା ଉଭୟରେ ମିଶିବ । (ଛାୟାପାଦ ମଧ୍ୟପାଦ ଅପେକ୍ଷା ନିଅଣ୍ଟ ହେଲେ ପ୍ରଥମେ ଛାୟାପାଦରେ ୨ ଦଣ୍ଡ ଓ ୬ ଲିତା ମିଶିବ) ଯେତେ ଦଣ୍ଡ ଯେତେ ଲିତା ହେବ ସେ ସବୁକୁ ଲିତାରେ ପରିଣତ କରିବେ । ଏହା ହାରକ । ତା ପରେ ସେଦିନର ଦିନାର୍ଦ୍ଧକୁ ୬ରେ ଗୁଣିବେ । ଏହା ହାର୍ଯ୍ୟ । ହାର୍ଯ୍ୟକୁ ହାରକଦ୍ୱାରା ହରଣ କରିବେ । ଯାହା ଲବ୍ଧ ଆସିଲା ତାହା ଦଣ୍ଡ । ଅଂଶକୁ ୬୦ ଦ୍ୱାରା ଗୁଣି ପୁନର୍ବାର ହାରକରେ, ହରଣ କଲେ ଯାହା ଲବ୍ଧ ଆସିବ ତାହା ଲିତା । ପୁନର୍ବାର ଅଂଶକୁ ୬୦ରେ ଗୁଣି ହରଣ କରାଗଲେ ବିଲିତା ଆସିବ । ପୂର୍ବାହ୍ନ ହେଲେ ସେତିକିବେଳ ହୋଇଅଛି ବୋଲି ଠିକ୍ କରିବେ । ଅପରାହ୍ନ ହେଲେ ସୂର୍ଯ୍ୟାସ୍ତକୁ ସେତିକି ବେଳ ବାକି ଅଛି ବୋଲି ଠିକ୍ କରିବେ ।

ଉଦାହରଣ—ଗୋଟିଏ ଦିନର ସକାଳ ବେଳ ଛାୟାମାପ ୮ ପାଦ ୫ ଅଙ୍ଗୁଳି ।

ସେଦିନର ଦିନାର୍ଦ୍ଧ ଦ ୧୬ ଣ୍ଡ ୧୫ ଲିତା ।

ପରମ ଦିବସମାନ ୩୩ ଦଣ୍ଡ ୧୦ ଲିତା ।

(ଦିନମାନ) ଦିନାର୍ଦ୍ଧର ଦୁଇଗୁଣ, ୩୨ ଦଣ୍ଡ ୩୦ ଲିତା (ଫେଡ଼ାଗଲା)

ମଧ୍ୟପାଦ ୦ ଦଣ୍ଡ ୪୦ ଲିତା ।

ଛାୟା ୮ ପାଦ ୫ ଅଙ୍ଗୁଳ ଅର୍ଥାତ୍ ୮ ଦଣ୍ଡ ୨୫ ଲିପ୍ତା । ଏଥିରୁ ମଧ୍ୟପାଦ ଫେଡିଲେ ଅବଶିଷ୍ଟ ରହିଲା ଦ ୭ ଦଣ୍ଡ ୪୫ ଲିପ୍ତା । ଏଥିରେ ୬ ଦଣ୍ଡ ୬ ଲିପ୍ତା ମିଶାଇଲେ ମୋଟ ହେଲା ୧୩ ଦଣ୍ଡ ୫୧ ଲିପ୍ତା । ଏହାକୁ ଲିପ୍ତା କଲେ ହେଲା ୧୩ × ୬୦ + ୫୧ = ୮୩୧ ଲିପ୍ତା (ଏହା ହାରକ) ।

ଦିନାର୍ଦ୍ଧ ୧୬ ଦଣ୍ଡ ୧୫ ଲିପ୍ତାକୁ ୬ରେ ଗୁଣିଲେ ହେଲା— ଦ ୧୬ । ୧୫ × ୬ = ୯୭ ଦଣ୍ଡ ୩୦ ଲିପ୍ତା ବା ୯୭ × ୬୦ + ୩୦ = ୫୮୫୦ ଲିପ୍ତା ( ଏହା ଭାଜ୍ୟ ) ।

```
୮୩୧ ) ୫୮୫୦ ( ୭ ଦଣ୍ଡ
      ୫୮୧୭
      ------
        ୩୩ × ୬୦
      ------
୮୩୧ ) ୧୯୮୦ ( ୨ ଲିପ୍ତା
      ୧୬୬୨
      ------
        ୩୧୮ × ୬୦
      ------
୮୩୧ ) ୧୯୦୮୦ ( ୨୩ ବିଲିପ୍ତା
        ୧୬୬୨
        -----
         ୨୪୬୦
        -----
         ୨୪୯୩
        -----
```

ଲବ୍ଧ ଆସିଲା, ୭ ଦଣ୍ଡ ୨ ଲିପ୍ତା ୨୩ ବିଲିପ୍ତା ।

ଏହାକୁ ଘଣ୍ଟା ମିନିଟରେ ଆଣିବାକୁ ହେଲେ—ସେହିଦିନ ସୂର୍ଯ୍ୟୋଦୟ କାଳ ୫ ଘଣ୍ଟା ୩୦ ମିନିଟ । ଅତେଏବ ଦଣ୍ଡକ ୧ ଘଣ୍ଟା ହିସାବରେ ପୂର୍ବୋକ୍ତ ୭ ଦଣ୍ଡ ୨ ଲିପ୍ତା ୨୩ ବିଲିପ୍ତାକୁ ହେଲା ୨ ଘଣ୍ଟା ୪୮ ମିନିଟ ୫୨ ସେକେଣ୍ଡ । ଏହା ସୂର୍ଯ୍ୟୋଦୟ କାଳ ୫ ଘଣ୍ଟା ୩୦

ମିନିଟରେ ମିଶାଇଲେ ମୋଟ ସମୟ ହେଲା ୮ ଘଣ୍ଟା ୧୮ ମିନିଟ ୩୬ ସେକେଣ୍ଡ ।

ଉପର ଓଳ ହେଲେ—ଦିନମାନ ୩୬ ଦଣ୍ଡ ୩୦ ଲିତାରୁ ୭ ଦଣ୍ଡ ୬ ଲିତା ୨୩ ବିଲିତା ବାଦ୍ ଦେଲେ ବେଳ ଅସିଲା ୨୯ ଦଣ୍ଡ ୨୭ ଲିତା ୩୭ ବିଲିତା । ଘଣ୍ଟାରେ କହିବାକୁ ଗଲେ ୩ଘଣ୍ଟା ୩୭ମିନିଟ ୪୩ ସେକେଣ୍ଡ ।

ଶଙ୍କୁଛାୟା

ଅର୍କାଙ୍ଗୁଳା ବୁ ସଚ୍ୟଗ୍ରା କାଷ୍ଠ ବ୍ୟଙ୍ଗୁଳମୂଳକା ।
ଶଙ୍କୁ ସଞ୍ଜ୍ଞା ଭବେଚ୍ଛୈବ ଚଚ୍ଛାୟା° ପରିକଲ୍ପୟେତ୍ ॥
ମଧ୍ୟାହ୍ନଶ୍ଚାନୈର୍ନିବଦଭ୍ୟସ୍ତୁକ୍ତୈଶ୍ଛାୟାଙ୍ଗୁଳୈର୍ହରେତ୍ ।
ଷଟ୍‌ଗୁଣିତଂ ଦିବାଦଣ୍ଡଂ ଲବ୍ଧଦଣ୍ଡାଦିକଂ ଭବେତ୍ । ଜ୍ୟୋ,ପ୍ର

ଦ୍ୱାଦଶ ଅଙ୍ଗୁଳି ଦୀର୍ଘ ମୂଳ ଦୁଇ ଅଙ୍ଗୁଳି ପରିଧିବିଶିଷ୍ଟ, ଅଗ୍ର-ଆଡ଼କୁ କ୍ରମ ସୂକ୍ଷ୍ମ ହୋଇଥିବା କାଷ୍ଠଖଣ୍ଡର ନାମ ଶଙ୍କୁ । ଏହି ଶଙ୍କୁର ଛାୟା ଯାହା ହେବ, ସେଥିରୁ ସେହି ମାସର ମଧ୍ୟାହ୍ନ ଛାୟା ଫେଡ଼ିଦେବେ । ଫେଡ଼ାଣ ଫଳରେ ୧୨ ମିଶାଇଦେବେ । ଦିନମାନକୁ (ଦିନାର୍ଦ୍ଧର ଦୁଇଗୁଣକୁ) ୬ ରେ ଗୁଣି ଏହି ଛାୟାନ୍ତେକ୍ତ ଫଳରେ ହରିଲେ ଲବ୍ଧ ଯାହା ଆସିବ ତାହା ଦଣ୍ଡ । ଅଂଶକୁ ପୂର୍ବୋକ୍ତ ନିୟମରେ ଗୁଣି କ୍ରମେ, କ୍ରମେ ଲିତା ବିଲିତା ଆଣିବେ । ସକାଳ ଓଳ ହେଲେ ସେତିକ ବେଳ ହୋଇଅଛି ଓ ଉପର ଓଳ ହେଲେ ସୂର୍ଯ୍ୟାସ୍ତକୁ ସେତିକ ସମୟ ବାକି ଅଛି ବୋଲି ଠିକ୍ କରିବେ ।

## ମଧ୍ୟାହ୍ନ ଛାୟା

ଶୂନ୍ୟୈକାଗ୍ନିବାଣେଭ ଦଶୋ ରୁଦ୍ରାତ୍‌କ୍ରମୋତ୍କ୍ରମୈଃ ।
ଆଷାଢ଼ାଦିଷୁ ମାସେଷୁ ଛାୟା ମାଧ୍ୟାହ୍ନିକୀ ଭବେତ୍ ॥ ଜ୍ୟୋ, ପ୍ର,

ମିଥୁନମାସରେ ମଧ୍ୟାହ୍ନ ଛାୟା କିଛି ନାହିଁ । କର୍କଟମାସରେ ୧ ଅଙ୍ଗୁଳ, ସିଂହମାସରେ ୩ ଅଙ୍ଗୁଳ, କନ୍ୟାମାସରେ ୫ ଅଙ୍ଗୁଳ, ତୁଳାମାସରେ ୮ ଅଙ୍ଗୁଳ, ବୃଶ୍ଚିକମାସରେ ୧୦ ଅଙ୍ଗୁଳ, ଧନୁମାସରେ ୧୧ ଅଙ୍ଗୁଳ, ମକରରେ ୧୦ ଅଙ୍ଗୁଳ, କୁମ୍ଭରେ ୮ ଅଙ୍ଗୁଳ, ମୀନରେ ୫ ଅଙ୍ଗୁଳ, ମେଷରେ ୩ ଅଙ୍ଗୁଳ ଓ ବୃଷମାସରେ ମଧ୍ୟାହ୍ନ ଛାୟା ୧ ଅଙ୍ଗୁଳ ହୁଏ । ଉପରୋକ୍ତ ସମସ୍ତ ମଧ୍ୟାହ୍ନ ଛାୟା ସେହି ମାସର ସଂକ୍ରାନ୍ତି ଦିବସର । ମାସ ମଧ୍ୟରେ ଅନ୍ୟାନ୍ୟ ଦିନର ଛାୟା ଅନୁପାତରେ ଠିକ୍ କରିବେ । ଉଦାହରଣ—ପୂର୍ବୋକ୍ତ ଦିନ (ଯେଉଁଦିନ ଛାୟାପାଦ ଅଣାଯାଇଥିଲା)ର ସେହି ସମୟର ଶଙ୍କୁଛାୟା ୧୬ ଅଙ୍ଗୁଳ ୪୦ ବ୍ୟଙ୍ଗୁଳ । (ଅଙ୍ଗୁଳକୁ ୬୦ ବ୍ୟଙ୍ଗୁଳ । ଅଙ୍ଗୁଳକୁ ଦଣ୍ଡ ଓ ବ୍ୟଙ୍ଗୁଳକୁ ଲିପ୍ତା ବୋଲି ନିଆଗଲା ।

ଦିନମାନ ଦ ୧୬।୧୫ × ୨ = ଦ ୩୨।୩୦ ଏହାକୁ ୬ରେ ଗୁଣିଲେ ହେଲା ଦ ୩୨।୩୦ × ୬ = ଦ ୧୯୫।୦ ଏହାକୁ ଲିପ୍ତା କଲେ ହେଲା = ୧୯୫ ଦଣ୍ଡ × ୬୦ = ୧୧୭୦୦ ଲିପ୍ତା । ଏହା ହାର୍ଯ୍ୟ ।

ଶଙ୍କୁଛାୟା ୧୬ ଅଙ୍ଗୁଳ ସେହି ମାସର (ବୃଷମାସର) ମଧ୍ୟାହ୍ନ ଛାୟା ୧ ଅଙ୍ଗୁଳ ବାଦ୍ ଦେଇଦେଲେ ବାକି ରହିଲା ୧୫ ଅଙ୍ଗୁଳ ୪୦ ବ୍ୟଙ୍ଗୁଳ ବା ୧୫ ଦଣ୍ଡ ୪୦ ଲିପ୍ତା । ଏଥିରେ ୧୨ ଦଣ୍ଡ ମିଶାଇଲେ ହେଲା ୨୭ ଦଣ୍ଡ ୪୦ ଲିପ୍ତା । ଏହାକୁ ଲିପ୍ତା କଲେ ହେଲା ୧୬୬୦ ଲିପ୍ତା । ଏହା ହାରକ ।

୧୬୬୦)୧୧୭୦୦(୭ ଦଣ୍ଡ
୧୧୬୨୦
---
୮୦×୬୦
---
୧୬୬୦)୪୮୦୦(୨ ପଳ
୩୩୨୦
---
୧୪୮୦×୬୦
---
୧୬୬୦)୮୮୮୦୦(୫୩ ବିପଳ
୮୩୦୦
---
୫୮୦୦
୪୯୮୦
---
୮୨୦

ଶଙ୍କୁଛାୟା ଅନୁସାରେ ବେଳ ୭ ଦଣ୍ଡ ୨ ପଳ ୫୩ ବିପଳ । ପୂର୍ବରେ ଯେଉଁ ମଧ୍ୟାହ୍ନ ଛାୟା ଅନୁପାତରେ ଆଣିବେ ବୋଲି କୁହାଗଲା, ଯେଉଁ ମାସର ଯେଦିନ ମଧ୍ୟାହ୍ନ ଛାୟା ଆବଶ୍ୟକ ସେହି ମାସର ପରମାସର ସଂକ୍ରାନ୍ତି ଦିନର ମଧ୍ୟାହ୍ନ ଛାୟା ସେହି ମାସ ସଂକ୍ରାନ୍ତିର ମଧ୍ୟାହ୍ନ ଛାୟା ଅପେକ୍ଷା କେତେ ବଢ଼ିଛି ବା କେତେ କମିଛି ଦେଖିବେ । ବଢ଼ିଥିଲେ—ଏତେଦିନରୁ ଯଦି ଏତେ ଅଙ୍ଗୁଳ ବୃଦ୍ଧି, ତେବେ ଭୋଗ ହୋଇଥିବା ଦିନରୁ ବୃଦ୍ଧି କେତେ ? ଯାହା ଆସିବ ତାହା ସେହି ମାସ ସଂକ୍ରାନ୍ତିର ମଧ୍ୟାହ୍ନ ଛାୟାରେ ମିଶାଇଲେ ସେହି ଦିନର ମଧ୍ୟାହ୍ନ ଛାୟା ବାହାର ଆସିବ । କମ ହୋଇଥିଲେ ଏହି ଅନୁପାତରେ ଆଣି ତତ୍‌ମାସର ସଂକ୍ରାନ୍ତି ଦିବସର ମଧ୍ୟାହ୍ନ ଛାୟାରୁ ବାଦ୍ ଦେଇଦେଲେ ବାକି ଯାହା ରହିବ, ତାହା ଅବଶ୍ୟକ ଦିନର ମଧ୍ୟାହ୍ନ ଛାୟା ।

## ନକ୍ଷତ୍ର ଦର୍ଶନ

ରାତ୍ରି କାଳରେ ନକ୍ଷତ୍ରମାନଙ୍କର ଯାମ୍ୟୋତ୍ତର ରେଖାପୂର୍ଣ୍ଣ କାଳକୁ ନେଇ ଲଗ୍ନ ଠିକ୍ କରାଯାଏ । ସୂର୍ଯ୍ୟାସ୍ତ କାଳରେ ଯେଉଁ ଲଗ୍ନକୁ ଯେତେକ ଭୋଗ ହୋଇଥାଏ, ସେହି ଭୋଗ ଘଣ୍ଟାର କାଳକୁ ସମାନ ହେବା ନକ୍ଷତ୍ର ମସ୍ତକ ଦିଗରେ ଆକାଶରେ ଥାଏ । ମହାକବି କାଳିଦାସ ସ୍ୱକୃତ କଣ୍ଠପାଠ୍ୟାରେ ଯେଉଁ ନକ୍ଷତ୍ର ଉଦୟକାଳ ବା ଲଗ୍ନଭୁକ୍ତି ଦେଖାଇ ଅଛନ୍ତି ତାହା ଧାର୍ଯ୍ୟକରଗଲାର । ଯେପରି ଅକ୍ଷାଂଶ ଓ ଅୟନାଂଶକୁ ନେଇ ଲଗ୍ନମାନଙ୍କର ଉଦୟକାଳାନ୍ତର ପ୍ରଭେଦ ହୁଏ, ଶିରୋମଧ୍ୟଗତ ନକ୍ଷତ୍ର-ଠାରୁ ଲଗ୍ନ ଆନୟନ ମଧ୍ୟ ଯେପରି ପ୍ରଭେଦ ହୁଏ । କେଉଁ ନକ୍ଷତ୍ର ମସ୍ତକ ଉପରେ ହେଲେ ବେଳକୁ କେଉଁ ଲଗ୍ନର କେତେ ଭୋଗ ହୁଏ (ଉତ୍କଳରେ) ତାହା ନିମ୍ନରେ ଦର୍ଶାଇ ଦିଆଗଲା । ନକ୍ଷତ୍ରମଣ୍ଡଳ ମଧ୍ୟରେ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର ଥାଏ, ତାହାର ନାମ ସେହି ନକ୍ଷତ୍ରର ଯୋଗତାରା ।

| ନକ୍ଷତ୍ରମାନଙ୍କର ନାମ ଓ ସେମାନଙ୍କର ଆକୃତି | ଉତ୍କଳର ଲଗ୍ନଭୁକ୍ତି । |
| --- | --- |
| ଅଶ୍ୱିନୀ—ଘୋଡ଼ାର ମୁଣ୍ଡପରି ୩ଟି ନକ୍ଷତ୍ର | କର୍କଟ ଲଗ୍ନରୁ ଭୋଗ ୦।୨୭ ଲତା । |
| ଭରଣୀ—ତ୍ରିକୋଣାକାର ୩ଟି ନକ୍ଷତ୍ର | କର୍କଟ ଲଗ୍ନରୁ ଭୋଗ ୪ ଦଣ୍ଡ ୧୭ ଲତା । |
| କୃତ୍ତିକା—ଅଗ୍ନିଶିଖାକାର ୬ଟି ନକ୍ଷତ୍ର | ସିଂହ ଲଗ୍ନରୁ ଭୋଗ ୧ ଦଣ୍ଡ ୨ ଲତା । |
| ରୋହିଣୀ—ଶକଟାକୃତି ୫ଟି ତାରା | ସିଂହ ଲଗ୍ନରୁ ଭୋଗ ୨ ଦଣ୍ଡ ୪୭ ଲତା । |

**ନକ୍ଷତ୍ରମାନଙ୍କର ନାମ ଓ ସେମାନଙ୍କର ଆକୃତି**

ମୃଗଶିରା—ବିରାଡି ଗୋଡପରି ୩ଟି ନକ୍ଷତ୍ର

ଆର୍ଦ୍ରା—ଅତି ଉଜ୍ଜ୍ୱଳ ୧ଟି ନକ୍ଷତ୍ର

ପୁନର୍ବସୁ—ଧନୁ ଆକୃତି ୪ଟି ନକ୍ଷତ୍ର

ପୁଷ୍ୟା—ଖଡ଼ୀଧୂଳିପରି

ଅଶ୍ଳେଷା—କୁକୁର ଲାଙ୍ଗୁଡପରି ୫ଟି ତାରା

ମଘା—ଲଙ୍ଗଳପରି ୫ଟି ନକ୍ଷତ୍ର

ପୂର୍ବାଫାଲ୍ଗୁନୀ—୨ଟି ନକ୍ଷତ୍ର

ଉତ୍ତରାଫାଲ୍ଗୁନୀ—୨ଟି ନକ୍ଷତ୍ର

(ପୂର୍ବୋକ୍ତ ଯାକ ନକ୍ଷତ୍ର ମିଶାଇଲେ ଠିକ୍ ଖଟର ଚାରୋଟି ଖୁରାପରି)

ହସ୍ତା—ହସ୍ତାକୃତି ୫ଟି ତାରା

ଚିତ୍ରା—୧ଟି ନକ୍ଷତ୍ର

ସ୍ୱାତୀ—ରକ୍ତବର୍ଣ୍ଣ ଗୋଟିଏ ଉଜ୍ଜ୍ୱଳ ନକ୍ଷତ୍ର

**ଉତ୍କଳର ଲଗ୍ନଭୁକ୍ତି ।**

କନ୍ୟା ଲଗ୍ନର ଭୋଗ ୨।୨ ଲିତା ।

କନ୍ୟା ଲଗ୍ନରୁ ଭୋଗ ୦।୪୮ ଲିତା

ତୁଳା ଲଗ୍ନରୁ ଭୋଗ ୦।୨ ଲିତା ।

ତୁଳା ଲଗ୍ନରୁ ଭୋଗ ୨ ଦଣ୍ଡ ୨୪ ଲିତା ।

ତୁଳା ଲଗ୍ନରୁ ଭୋଗ ୩ ଦଣ୍ଡ ୪ ଲିତା ।

ବିଛା ଲଗ୍ନରୁ ଭୋଗ ୦।୩୨ ଲିତା ।

ବିଛା ଲଗ୍ନରୁ ଭୋଗ ୩ ଦଣ୍ଡ ୧୭ ଲିତା ।

ବିଛା ଲଗ୍ନରୁ ଭୋଗ ୪ ଦଣ୍ଡ ୪୫ ଲିତା ।

ଧନୁ ଲଗ୍ନର ଭୋଗ ୧ ଦଣ୍ଡ ୨ ଲିତା ।

ଧନୁ ଲଗ୍ନରୁ ଭୋଗ ୩ ଦଣ୍ଡ ୧୮ ଲିତା ।

ମକର ଲଗ୍ନରୁ ଭୋଗ ୧ ଦଣ୍ଡ ୧୨ ଲିତା ।

## ନକ୍ଷତ୍ରମାନଙ୍କର ନାମ ଓ ସେମାନଙ୍କର ଆକୃତି

ବିଶାଖା—ତୋରଣାକୃତି
୫ଟି ନକ୍ଷତ୍ର
ଅନୁରାଧା—ସର୍ପାକୃତି
୭ଟି ନକ୍ଷତ୍ର
ଜ୍ୟେଷ୍ଠା—ବରାହ ଦନ୍ତାକୃତି
୩ଟି ନକ୍ଷତ୍ର
ମୂଳା—ଶଙ୍ଖାକୃତି
୯ଟି ନକ୍ଷତ୍ର
ପୂର୍ବାଷାଢ଼ା—କୁଲାପରି
୮ଟି ନକ୍ଷତ୍ର
ଉତ୍ତରାଷାଢ଼ା—କୁଲାପରି
୯ଟି ନକ୍ଷତ୍ର
ଶ୍ରବଣା—ଶରପରି
୩ଟି ନକ୍ଷତ୍ର
ଧନିଷ୍ଠା—ମର୍ଦ୍ଦଳପରି
୫ଟି ନକ୍ଷତ୍ର
ଶତଭିଷା—ମଣ୍ଡଳାକାର
୧୦୦ଟି ନକ୍ଷତ୍ର
ପୂର୍ବଭାଦ୍ରପଦ—ଖଟପରି
ଦୁଇଟି ନକ୍ଷତ୍ର
ଉତ୍ତରଭାଦ୍ରପଦ—ଖଟପରି
୨ଟି ନକ୍ଷତ୍ର
ରେବତୀ—ମତ୍ସ୍ୟାକୃତି
୩୨ଟି ନକ୍ଷତ୍ର

## ଉତ୍କଳର ଲଗ୍ନଭୁକ୍ତି

ମକର ଲଗ୍ନରୁ ଭୋଗ ୨ଦଣ୍ଡ
୩୧ଲିତା
ମକର ଲଗ୍ନରୁ ଭୋଗ ୪ଦଣ୍ଡ
୨୭ଲିତା
କୁମ୍ଭଲଗ୍ନରୁ ଭୋଗ ୧ଦଣ୍ଡ
୭ଲିତା
କୁମ୍ଭ ଲଗ୍ନରୁ ଭୋଗ ୩ଦଣ୍ଡ
୫୧ଲିତା
ମୀନ ଲଗ୍ନରୁ ଭୋଗ ୧ଦଣ୍ଡ
୨୦ଲିତା
ମୀନ ଲଗ୍ନରୁ ଭୋଗ ୨ଦଣ୍ଡ
୩୨ଲିତା
ମେଷ ଲଗ୍ନରୁ ଭୋଗ ୧ଦଣ୍ଡ
୩୪ଲିତା
ମେଷ ଲଗ୍ନରୁ ଭୋଗ ୩ଦଣ୍ଡ
୪୮ଲିତା
ବୃଷଲଗ୍ନରୁ ଭୋଗ ୪ଦଣ୍ଡ
୪୦ଲିତା
ମିଥୁନ ଲଗ୍ନରୁ ଭୋଗ ୦।
୨୪ଲିତା
ମିଥୁନ ଲଗ୍ନରୁ ଭୋଗ ୨ଦଣ୍ଡ
୫୪ଲିତା
କର୍କଟ ଲଗ୍ନରୁ ଭୋଗ ଦ୦।.
୪୧ଲିତା

## ଲଗ୍ନ ନିରୂପଣଂ

ଲଗ୍ନର ଅର୍ଥ ରାଶିମାନଙ୍କର ପୂର୍ବ କ୍ଷିତିଜର ଉଦୟକାଳ । ସମସ୍ତ ଦେଶରେ ଏକ ସମୟରେ ଏକ ଲଗ୍ନର ଉଦୟ ହୁଏ ନାହିଁ, ତଥା ସମସ୍ତ ସ୍ଥାନରେ ଲଗ୍ନମାନର ପରିମାଣ ସମାନ ନୁହେ । ଅକ୍ଷାଂଶ ପ୍ରଭେଦରେ ଓ ଅୟନାଂଶ ବୃଦ୍ଧି ଓ ହ୍ରାସକୁ ନେଇ ଲଗ୍ନମାନର ହ୍ରାସ ବୃଦ୍ଧି ହୁଏ । କୌଣସି ସ୍ଥୂଳ ଲଗ୍ନମାନକୁ ନେଇ ଜାତକ ପ୍ରସ୍ତୁତ କରିବା ନିତାନ୍ତ ଭୁଲ । ଜନ୍ମସ୍ଥାନର ବା ନିକଟ ସ୍ଥାନର ଅୟନାଂଶ ସଂଶୋଧିତ ଲଗ୍ନମାନକୁ ନେଇ ଜାତକ ପ୍ରସ୍ତୁତ କରିବା ବିଧି । ଏପରି ନ କରି ପାରିଲେ ପଞ୍ଜିକା ବା ପଞ୍ଜିକା ପ୍ରଦତ୍ତ ସ୍ୱଦେଶୀୟ ଲଗ୍ନମାନକୁ ନେଇ ଜାତକ ପ୍ରସ୍ତୁତ କଲେ ତାହା ବେଶୀ କିଛି ଭୁଲ ନୁହେ ।

## ଉଦୟାସ୍ତାଦିଜ୍ଞାନଂ

ଯଦା ମାସସ୍ତଦା ଲଗ୍ନଂ ଯଦାସ୍ଥାନେ ରବୌ ସ୍ଥିତେ ।
ତଦାଦି ସପ୍ତମଂ ଲଗ୍ନମସ୍ତଲଗ୍ନଂ ତଦୁଚ୍ୟତେ ।

ରବି ଯେଉଁ ରାଶିରେ ଥାଏ ରବିର ଉଦୟ ସେହି ରାଶି (ଲଗ୍ନ)ରେ ହୁଏ । ଉଦୟ ଲଗ୍ନର ସପ୍ତମ ଲଗ୍ନରେ ରବି ଅସ୍ତ ହୁଏ ।

## ରବିଭୋଗ ନିର୍ଣ୍ଣୟଃ

ଲଗ୍ନମାନଂ ଦ୍ୱିଗୁଣିତଂ ରବିଭୋଗ୍ୟୋ ଦିନେଦିନେ ।
ଦଣ୍ଡଦ୍ୱିଘ୍ନେ ପଳଞ୍ଚୈବ ପଳଞ୍ଚ ବିପଳଂ ଭବେତ୍ ॥

ଲଗ୍ନମାନକୁ ଦୁଇଗୁଣ କଲେ ଯେତେ ଦଣ୍ଡ ଯେତେ ପଳ ହେବ, ଦଣ୍ଡ ପରିମାଣରେ ପଳ ଓ ପଳ ପରିମାଣରେ ବିପଳ ଉଦୟ ଲଗ୍ନରୁ

ପ୍ରତ୍ୟେକ ରବ୍ୟଂଶ ଭୁକ୍ତି ଭୋଗ କରିବ । ଯେଉଁ ସ୍ଥାନର ମେଷ ଲଗ୍ନର ପରିମାଣ ୪ଦଣ୍ଡ ୧୨ଲିତା ସେହି ସ୍ଥାନରେ ରବି ମେଷର ପ୍ରତ୍ୟେକ ଅଂଶ ଭୋଗ କଲାବେଳେ ମେଷରୁ ୮ ଲିତା ୩୪ ବିଲିତା ହେବ । ଯେଉଁ ରାଶିର ଯେତେ ଅଂଶରେ ସୂର୍ଯ୍ୟ ଅବସ୍ଥାନ କରନ୍ତି ସେହି ଲଗ୍ନର ତେତେ ଅଂଶ ପ୍ରାତଃକାଳରେ ଶେଷ ହୁଏ ।

### ସ୍ଥୂଳ ଲଗ୍ନମାନଂ

ସ୍ୱମୋର୍ବି ବାଣୈର୍ଜିନଧୃସ୍ତିସୁଗ୍ମୈ-
ର୍ବାଣୋଽଷ୍ଟଭିଃ ପଞ୍ଚ ଗଜାନଲୈଶ୍ଚ ।
ପଞ୍ଚେଷୁ ରାମୈର୍ବିଷମୈସ୍ତ୍ୱୋଽଶ୍ଵିଯୁଗ୍ମୈଃ
କ୍ରମୋତ୍କ ମାନ୍ ମେଷତୁଲାଦିମାନଂ ॥

(ଜ୍ୟୋ, ସା,)

ଏହି ନିରୟନ ସ୍ଥୂଳ ଲଗ୍ନମାନ ରାଢ଼ଦେଶୀୟ ଶ୍ରୀନିବାସ ଆଚାର୍ଯ୍ୟ ସମ୍ଭବତଃ ୪୨୧ ଶକାବ୍ଦରେ ନିଷ୍ଟସ୍ଥ କରି ଯାଇଅଛନ୍ତି ।

| | | | | | | | |
|---|---|---|---|---|---|---|---|
| ମେଷ | ଦ ୩।୫୪ | । | ସିଂହ | ଦ ୫।୩୫ | । | ଧନୁ | ଦ ୫।୩୮ |
| ବୃଷ | ଦ ୪।୨୩ | । | କନ୍ୟା | ଦ ୫।୨୨ | । | ମକର | ଦ ୫।୮ |
| ମିଥୁନ | ଦ ୫।୮ | । | ତୁଲା | ଦ ୫।୨୨ | । | କୁମ୍ଭ | ଦ ୪।୨୩ |
| କର୍କଟ | ଦ ୫।୩୮ | । | ବୃଶ୍ଚିକ | ଦ ୫।୩୫ | । | ମୀନ | ଦ ୩।୫୪ |

ବାଲେଶ୍ୱର ଓ ତନ୍ନିକଟ ପଶ୍ଚିମ ସ୍ଥାନମାନଙ୍କର—

| | | | | | | | |
|---|---|---|---|---|---|---|---|
| ମେଷ | ଦ ୪।୧୪ | । | ସିଂହ | ଦ ୫।୨୮ | । | ଧନୁ | ଦ ୫।୧୫ |
| ବୃଷ | ଦ ୪।୪୫ | । | କନ୍ୟା | ଦ ୫।୨୫ | । | ମକର | ଦ ୪।୨୯ |
| ମିଥୁନ | ଦ ୫।୩୪ | । | ତୁଲା | ଦ ୫।୩୫ | । | କୁମ୍ଭ | ଦ ୩।୫୮ |
| କର୍କଟ | ଦ ୫।୩୭ | । | ବଶ୍ଚ | ଦ ୫।୩୯ | । | ମୀନ | ଦ ୩।୫୧ |

### ଯାଜପୁର ଓ ତତ୍ପୂର୍ବ ପଶ୍ଚିମ ସ୍ଥାନମାନଙ୍କର—

| | | | | | |
|---|---|---|---|---|---|
| ମେଷ | ଦ ୪\|୧୪ | ସିଂହ | ଦ ୫\|୨୭ | ଧନୁ | ଦ ୫\|୧୫ |
| ବୃଷ | ଦ ୪\|୫୬ | କନ୍ୟା | ଦ ୫\|୨୪ | ମକର | ଦ ୪\|୩୦ |
| ମିଥୁନ | ଦ ୫\|୩୧ | ତୁଳା | ଦ ୫\|୩୪ | କୁମ୍ଭ | ଦ ୩\|୫୯ |
| କର୍କଟ | ଦ ୫\|୩୭ | ବିଛା | ଦ ୫\|୩୮ | ମୀନ | ଦ ୩\|୫୭ |

### କଟକ ଓ ତତ୍ପୂର୍ବ ପଶ୍ଚିମ ସ୍ଥାନମାନଙ୍କର—

| | | | | | |
|---|---|---|---|---|---|
| ମେଷ | ଦ ୪\|୧୬ | ସିଂହ | ଦ ୫\|୨୭ | ଧନୁ | ଦ ୫\|୧୫ |
| ବୃଷ | ଦ ୪\|୫୬ | କନ୍ୟା | ଦ ୫\|୨୩ | ମକର | ଦ ୪\|୩୩ |
| ମିଥୁନ | ଦ ୫\|୩୧ | ତୁଳା | ଦ ୫\|୩୩ | କୁମ୍ଭ | ଦ ୪\|୦ |
| କର୍କଟ | ଦ ୫\|୩୬ | ବିଛା | ଦ ୫\|୩୮ | ମୀନ | ଦ ୩\|୫୩ |

### ପୁରୀ ଓ ତତ୍ପୂର୍ବ ପଶ୍ଚିମ ସ୍ଥାନମାନଙ୍କର—

| | | | | | |
|---|---|---|---|---|---|
| ମେଷ | ଦ ୪\|୧୭ | ସିଂହ | ଦ ୫\|୨୫ | ଧନୁ | ଦ ୫\|୧୫ |
| ବୃଷ | ଦ ୪\|୫୬ | କନ୍ୟା | ଦ ୫\|୨୨ | ମକର | ଦ ୪\|୩୫ |
| ମିଥୁନ | ଦ ୫\|୨୯ | ତୁଳା | ଦ ୫\|୩୧ | କୁମ୍ଭ | ଦ ୪\|୩ |
| କର୍କଟ | ଦ ୫\|୩୫ | ବିଛା | ଦ ୫\|୩୬ | ମୀନ | ଦ ୩\|୫୬ |

### ଖଲ୍ଲିକୋଟ ଓ ତତ୍ପୂର୍ବ ପଶ୍ଚିମ ସ୍ଥାନମାନଙ୍କର—

| | | | | | |
|---|---|---|---|---|---|
| ମେଷ | ଦ ୪\|୧୮ | ସିଂହ | ଦ ୫\|୨୪ | ଧନୁ | ଦ ୫\|୧୫ |
| ବୃଷ | ଦ ୪\|୫୭ | କନ୍ୟା | ଦ ୫\|୨୦ | ମକର | ଦ ୪\|୩୫ |
| ମିଥୁନ | ଦ ୫\|୨୮ | ତୁଳା | ଦ ୫\|୩୧ | କୁମ୍ଭ | ଦ ୪\|୪ |
| କର୍କଟ | ଦ ୫\|୩୪ | ବିଛା | ଦ ୫\|୩୭ | ମୀନ | ଦ ୩\|୫୭ |

ବ୍ରହ୍ମପୁର ଓ ତତ୍ପୂର୍ବ ପଶ୍ଚିମ ସ୍ଥାନମାନଙ୍କର—

| | | | | | | | | |
|---|---|---|---|---|---|---|---|---|
| ମେଷ | ଦ ୪।୧୯ | । | ବିଛ | ଦ ୫।୨୩ | । | ଧନୁ | ଦ ୫।୧୫ | |
| ବୃଷ | ଦ ୪।୫୭ | । | କନ୍ୟା | ଦ ୫।୧୯ | । | ମକର | ଦ ୪।୩୭ | |
| ମିଥୁନ | ଦ ୫।୨୮ | । | ତୁଲା | ଦ ୫।୩୦ | । | କୁମ୍ଭ | ଦ ୪।୫ | |
| କର୍କଟ | ଦ ୫।୩୩ | । | ସିଂହ | ଦ ୫।୩୭ | । | ମୀନ | ଦ ୩।୫୮ | |

ପାରଳାଖେମୁଣ୍ଡି ଓ ତତ୍ପୂର୍ବ ପଶ୍ଚିମ ସ୍ଥାନମାନଙ୍କର—

| | | | | | | | | |
|---|---|---|---|---|---|---|---|---|
| ମେଷ | ଦ ୪।୨୧ | । | ବିଛ | ଦ ୫।୨୨ | । | ଧନୁ | ଦ ୫୧୪ | |
| ବୃଷ | ଦ ୪।୫୯ | । | କନ୍ୟା | ଦ ୫।୧୮ | । | ମକର | ଦ ୪।୩୭ | |
| ମିଥୁନ | ଦ ୫।୨୯ | । | ତୁଲା | ଦ ୫।୨୮ | । | କୁମ୍ଭ | ଦ ୪।୭ | |
| କର୍କଟ | ଦ ୫।୩୨ | । | ସିଂହ | ଦ ୫।୩୪ | । | ମୀନ | ଦ ୪।୦ | |

### ଲଗ୍ନସ୍ଫୁଟ ପ୍ରଣାଳୀ

ଯସ୍ୟ ଲଗ୍ନସ୍ୟ ଯଦ୍ଭୁକ୍ତଂ ଖାଗ୍ନିଘ୍ନଂ ପିଣ୍ଡମେବ ଯତ୍ ।
ତେନ ଲଗ୍ନଂ ହରେଦ୍ଭାଗଂ ତଦା ଲଗ୍ନସ୍ଫୁଟଂ ଭବେତ୍ ॥

ଲଗ୍ନମାନରୁ ଯାହା ଭୋଗ ହୋଇଥିବ ତାହାକୁ ଲିତା କରି ୩୦ରେ ଗୁଣି ଲଗ୍ନମାନ ଯେତେ ତାହାକୁ ଲିତା କରି ହରଣ କଲେ ଲଗ୍ନସ୍ଫୁଟ ବାହାର ଆସିବ ।

### ଗୋଟିଏ ଜାତକ ଦର୍ଶୟ

୧୮୪୯ ଶକାବ୍ଦ ତୁଳ ୧୫ ଦିନଠାରେ ବେଳ ଦ ୧୫।୫୫ ସମୟରେ ଗୋଟିଏ ବାଳକ ଜନ୍ମହେଲା । ପାଞ୍ଜିରୁ ଦେଖାଗଲା ଯେ ସେଦିନ ଉଦୟକାଳରୁ ତୁଳ ଲଗ୍ନମାନରୁ ୨ଦଣ୍ଡ ୨୮ ଲିତା ଭୋଗ ହୋଇଅଛି ।

ମୋଟ ତୁଳଲଗ୍ନମାନ (ସ୍ୱଦେଶୀୟ) ୫ ଦଣ୍ଡ ୩୧ ପଳରୁ ସୂର୍ଯ୍ୟୋଦୟକାଳର ଭୁକ୍ତି ବାଦ୍ ଦେଇଦେଲେ ଅବଶିଷ୍ଟ ରହିଲା ୩ଦଣ୍ଡ ୩ପଳ ।

ତୁଳଲଗ୍ନ ଦ ୩।୩
ବୃଶ୍ଚଲଗ୍ନ ଦ ୫।୩୬
ଧନୁଲଗ୍ନ ଦ ୫।୧୫

ମୋଟ ଦ ୧୩।୫୪

ଏହାପରେ ମକରଲଗ୍ନ ଦ ୪।୩୫ । ବେଳ ଦ ୧୫।୫ ଠାରେ ଜନ୍ମ ହୋଇଥିବା ହେତୁ ମକରଲଗ୍ନରେ ବାଳକର ଜନ୍ମ ବୋଲି ଜଣାଗଲା । ମକରଲଗ୍ନରୁ ଜନ୍ମକାଳକୁ ଭୋଗ = ଦ ୧୫।୫— ୧୩।୫୪ = ୧ ଦଣ୍ଡ ୧୧ ପଳ । ଏହି ଜାତକର ଲଗ୍ନସ୍ଫୁଟ ଆଣିବାକୁ ହେଲେ ଲଗ୍ନଭୋଗ ୧ ଦଣ୍ଡ ୧୧ ପଳକୁ ପଳ କଲେ ୭୧ ପଳ । ଏହାକୁ ୩୦ରେ ଗୁଣିଲେ ହେଲା ୨୧୩୦ ଏହାକୁ ମକର ଲଗ୍ନମାନ ୨୭୫ପଳରେ ହରଣ କଲେ ଲଗ୍ନସ୍ଫୁଟ ବାହାର ଅସିବ ।

ମକର ଲଗ୍ନମାନ ୨୭୫ ପଳକୁ ୩୦ ଅଂଶ

∴ ମକର ଲଗ୍ନଭୁକ୍ତି ୭୧ ପଳକୁ = $\frac{୭୧ \times ୩୦}{୨୭୫}$ ଅଂଶାଦି

୨୭୫)୨୧୩୦(୭ ଅଂଶ
୧୯୨୫
୨୦୫ × ୬୦
୨୭୫)୧୨୩୦୦(୪୪ କଳା
୧୧୦୦
୧୩୦୦
୧୧୦୦
୨୦୦

୨୦୦ × ୬୦
୨୭୫)୧୨୦୦୦(୪୩ ବିକଳା
୧୧୦୦
୧୦୦୦
୮୨୫
୧୭୫

ଲଗ୍ନସ୍ଫୁଟ ହେଲା ୭ ଅଂଶ ୪୪ କଳା ୪୩ ବିକଳା । ଧନୁଲଗ୍ନ ଭୋଗ ହୋଇ ମକରରୁ ୭ ଅଂଶ ୪୪ କଳା ୪୩ବିକଳା ଭୋଗ ହୋଇ ଅଛି । ଏହାକୁ ଜାତକରେ ୯ସ୍ର (ଧନୁ) ୭ ଅଂଶ ୪୪ କଳା ୪୩ବିକଳା ବୋଲି ଲେଖାଯାଏ ।

## ଷଡ଼୍‌ବର୍ଗ ନିରୂପଣଂ

କ୍ଷେତ୍ରଂ ହୋରା ଦ୍ରେକାଣଂ ଚ ନବାଂଶୋ ଦ୍ୱାଦଶାଂଶକଃ ।
ତ୍ରିଂଶାଂଶଂ କଥିତବର୍ଗୋଽୟଂ ଷାଦସ୍ୟୋ ଯସ୍ୟ ତସ୍ୟ ଚ ॥

ଷଡ଼୍‌ବର୍ଗ ଯଥା :—(୧) କ୍ଷେତ୍ର (୨) ହୋରା (୩) ଦ୍ରେକ୍କାଣ (୪) ନବାଂଶ (୫) ଦ୍ୱାଦଶାଂଶ (୬) ତ୍ରିଂଶାଂଶ ।

ହୋରା ସମଘ୍ନା ତ୍ରିଗୁଣା ଦ୍ରେକାଣା
ଗୋଘ୍ନା ନବାଂଶାଃ ସ୍ୱଗୃହାଦିଲବ୍ଧାଃ ।
ସୂର୍ଯ୍ୟଦ୍ୱାଦଶାଂଶା ଅପି ସୂର୍ଯ୍ୟନିଘ୍ନା
ତ୍ରିଂଶାଂଶକା ଖାଗ୍ନିହୃତାସ୍ତୁ ଶେଷାଃ ।

ହୋରା ଲଗ୍ନର ଅର୍ଦ୍ଧେ ବା ୧୫ ଅଂଶ । ଦ୍ରେକ୍କାଣ ଲଗ୍ନର ତୃତୀୟ ଭାଗେ ବା ୧୦ ଅଂଶ । ନବାଂଶ ଲଗ୍ନର ନଅଭାଗରୁ ଭାଗେ ବା ୩ ଅଂଶ ୨୦ କଳା । ଦ୍ୱାଦଶାଂଶ ଲଗ୍ନର ବାରଭାଗରୁ ଭାଗେ ବା ୨ ଅଂଶ ୩୦ କଳା । ତ୍ରିଂଶାଂଶ ଲଗ୍ନର ୩୦ ଭାଗରୁ ଭାଗେ ବା ୧ ଅଂଶ, ( କେହି ବେଦାଂଶ, ଦଶାଂଶ, ସପ୍ତାଂଶ ଅଣନ୍ତି; ତାହା ଅନାବଶ୍ୟକ ) ।

## କ୍ଷେତ୍ରାଧିପତି କଥନଂ

ଭୌମୋ ବୃଶ୍ଚିକମେଷୟୋଃ ସୁରରିପୋର୍ମୈତ୍ରୀ ତୁଲାୟାଂ ବୃଷେ,
ଚନ୍ଦ୍ରେ ସପ୍ତ ହୟଃ ସୁରେଶ୍ୱରଗୁରୁର୍ଜ୍ଞେୟୋ ଧନୁର୍ମୀନୟୋଃ ।

କନ୍ୟାୟାଂ ମିଥୁନେ ଚ ସୋମତନୟଃ ସୋମଃ ସ୍ୱୟଂ କର୍କଟେ,
କୁମ୍ଭେ ସ୍ୟାନ୍ମକରେ ଚ ସୂର୍ଯ୍ୟତନୟଃ କ୍ଷେତ୍ରାଧିକାରୀ କ୍ରମାତ୍ ॥

ମେଷ ଓ ବୃଶ୍ଚିକ ମଙ୍ଗଳର, ବୃଷ ଓ ତୁଲା ଶୁକ୍ରର, ମିଥୁନ ଓ କନ୍ୟା ବୁଧର, କର୍କଟ ଚନ୍ଦ୍ରର, ସିଂହ ରବିର, ଧନୁ ଓ ମୀନ ବୃହସ୍ପତିର, ମକର ଓ କୁମ୍ଭ ଶନିର ଗୃହ ଅଟେ ।

## ହୋରା ଦ୍ରେକ୍କାଣ ବିଭାଗଃ

ହୋରେ ବିଷମେଽର୍କେନ୍ଦ୍ୱୋ ସମରାଶୌ ଚନ୍ଦ୍ରସୂର୍ଯ୍ୟୟୋଃ କ୍ରମଶଃ ।
ସ୍ୱଗୃହାଦ୍ଦ୍ୱାଦଶଭାଗା ଦ୍ରେକ୍କାଣାଃ ପ୍ରଥମ ପଞ୍ଚ ନବପାନାଂ ॥

ହୋରା— ବିଷମ ରାଶିର ଅଦ୍ୟ ହୋରାଧିପତି ରବି । ଶେଷ ହୋରାର ଅଧିପତି ଚନ୍ଦ୍ର । ସମ ରାଶିର ଅଦ୍ୟ ହୋରାର ଅଧିପତି ଚନ୍ଦ୍ର ଓ ଶେଷ ହୋରାର ଅଧିପତି ରବି ଅଟନ୍ତି ।

ଦ୍ୱାଦଶାଂଶ—ଦ୍ୱାଦଶାଂଶ ଗଣନା ଲଗ୍ନଠାରୁ ୨ ଅଂଶ ୩୦ ହିସାବରେ ଦେଇ ନେବାକୁ ହୁଏ । ଲଗ୍ନାଧିପତି ପ୍ରଥମ ଦ୍ୱାଦଶାଂଶର ଅଧିପତି, ଏହିପରି ଦେଖିନେବେ ।

ଦ୍ରେକ୍କାଣ—କୌଣସି ରାଶିର ଦ୍ରେକ୍କାଣାଧିପତି ଠିକ୍ କରିବାକୁ ହେଲେ ପ୍ରଥମ ଦ୍ରେକ୍କାଣ ବା ପ୍ରଥମ ୧୦ ଅଂଶର ଅଧିପତି ସେହି ରାଶିର ଅଧିପତି ଗ୍ରହ ହୁଏ । ୧୦ ଅଂଶ ଠାରୁ ୨୦ ଅଂଶ ପର୍ଯ୍ୟନ୍ତର ଅଧିପତି ସେହି ରାଶିର ପଞ୍ଚମ ସ୍ଥାନର ଅଧିପତି । ଏହା ଦ୍ୱିତୀୟ ଦ୍ରେକ୍କାଣ । ୨୦ ଅଂଶଠାରୁ ୩୦ ଅଂଶ ପର୍ଯ୍ୟନ୍ତର ଅଧିପତି ସେହି ରାଶିର ନବମ ସ୍ଥାନର ଅଧିପତି ଗ୍ରହ । ଏହା ତୃତୀୟ ଦ୍ରେକ୍କାଣ ।

## ନବାଂଶ ନିରୂପଣଂ

ଚରାଣାଂ ସନ୍ଧିକୋଣାନାଂ ତତ୍ତଦାଦ୍ୟା ନବାଂଶକାଃ ।
ରାଶୀନାଂ ସ୍ୱନବାଂଶୋ ଯଃ ସବର୍ଗୋତ୍ତମ ସଂଜ୍ଞକଃ ॥
ଚରାଣାଂ ପ୍ରଥମେ ଅଂଶେ ସ୍ଥିରାଣାଂ ନବମେନ ତୁ ।
ଦ୍ୱିସ୍ୱଭାବେ ଭବେତ୍ ପଞ୍ଚ ସ୍ୟାଦନ୍ତ୍ୟୋ ଯସ୍ୟ ତସ୍ୟ ଚ ॥

ନବାଂଶାଧିପତି ନିଶ୍ଚୟ କରିବାକୁ ହେଲେ ଚର ରାଶିମାନଙ୍କର ସେହି ରାଶିଠାରୁ, ସ୍ଥିର ରାଶିମାନଙ୍କର ସେହି ରାଶିର ନବମରୁ, ଦ୍ୱିସ୍ୱଭାବ ରାଶିମାନଙ୍କର ସେହି ରାଶିର ପଞ୍ଚମରୁ ପ୍ରତ୍ୟେକ ରାଶିରେ ୩ ଅଂଶ ୨୦ କଳା ହିସାବରେ ଦେଇ ନେଲେ ଯେଉଁ ରାଶିରେ ଲଗ୍ନସ୍ଫୁଟାଂଶ ଶେଷ ହେବ ସେହି ଗ୍ରହର ନବାଂଶରେ ଜାତକ ଜନ୍ମଗ୍ରହଣ କରିଅଛି ବୋଲି ନିଶ୍ଚୟ କରିବେ ।

ଯଥା—ମେଷ, ସିଂହ, ଧନୁରାଶିର ନବାଂଶାଧିପତି ମେଷଠାରୁ; ବୃଷ, କନ୍ୟା, ମକରର ନବାଂଶାଧିପତି ମକରଠାରୁ; ତୁଳା, ମିଥୁନ, କୁମ୍ଭର ନବାଂଶାଧିପତି ତୁଳାଠାରୁ; କର୍କଟ, ବୃଶ୍ଚିକ, ମୀନର ନବାଂଶାଧିପତି କର୍କଟଠାରୁ ଗଣନା ଆରମ୍ଭ କରିଯାଏ ।

## ତ୍ରିଶାଂଶ କଥନଂ

ତ୍ରିଂଶାଂଶେଶାସ୍ତୁ ବିଷମେ କୁଜାର୍କିଜ୍ୟଜ୍ଞଭାର୍ଗବାଃ ।
ପଞ୍ଚ ପଞ୍ଚାଷ୍ଟ ସପ୍ତାଖ୍ୟା ବାଣା ବ୍ୟତ୍ୟୟତଃ ସମେ ॥

ତ୍ରିଂଶାଂଶ ବିଭାଗରେ ବିଷମ ରାଶିର ପ୍ରଥମ ୫ ଅଂଶପର୍ଯ୍ୟନ୍ତ ମଙ୍ଗଳ ଅଧିପତି, ୫ ଅଂଶଠାରୁ ୧୦ ଅଂଶପର୍ଯ୍ୟନ୍ତ ଶନି ଅଧିପତି, ୧୦ ଅଂଶଠାରୁ ୧୮ ଅଂଶପର୍ଯ୍ୟନ୍ତ ବୃହସ୍ପତି, ୧୮ ଅଂଶଠାରୁ ୨୫

ଅଂଶପର୍ଯ୍ୟନ୍ତ ଅଧିପତି ବୁଧ, ୨୫ ଅଂଶଠାରୁ ୩୦ ଅଂଶପର୍ଯ୍ୟନ୍ତ ଅଧିପତି ଶୁକ୍ର ଅଟନ୍ତି ।

ସମ ରାଶିର ପ୍ରଥମ ୫ ଅଂଶପର୍ଯ୍ୟନ୍ତ ଶୁକ୍ର, ୫ ଅଂଶଠାରୁ ୧୨ ଅଂଶ ପର୍ଯ୍ୟନ୍ତ ବୁଧ, ୧୨ ଅଂଶଠାରୁ ୨୦ ଅଂଶପର୍ଯ୍ୟନ୍ତ ବୃହସ୍ପତି, ୨୦ ଅଂଶଠାରୁ ୨୫ ଅଂଶପର୍ଯ୍ୟନ୍ତ ଶନି ଓ ୨୫ ଅଂଶଠାରୁ ୩୦ ଅଂଶ ପର୍ଯ୍ୟନ୍ତ ମଙ୍ଗଳ ଅଧିପତି ଅଟନ୍ତି ।

## ଷଡ୍‌ବର୍ଗ ଫଳଂ

ସୌମ୍ୟଗ୍ରହସ୍ୟ ବର୍ଗେ ଜାତଃ ସୁଖଧୀରବଣିତରୂପଗୁଣଃ ।
ଧୀଧର୍ମଖ୍ୟାତଯୁତୋ ବିଦ୍ୱାନ୍ ଦୀର୍ଘାୟୁରତିସୁଭଗଃ ॥

ଶୁଭ ଗ୍ରହର କ୍ଷେତ୍ରାଦିରେ ( ଅନ୍ତତଃ ଗ୍ରହଶ୍ରେଷ୍ଠ ବର୍ଗରେ ) ଜନ୍ମ ହେଲେ ଜାତକ ସୁଖୀ, ଧୀର, ସୁନ୍ଦର, ବୁଦ୍ଧିମାନ୍, ଧାର୍ମିକ, ପ୍ରଖ୍ୟାତନାମା, ବିଦ୍ୱାନ୍ ଓ ଦୀର୍ଘାୟୁ ହୁଏ ।

ଲଗ୍ନର ଯେପରି ଷଡ୍‌ବର୍ଗ ନିଷ୍ପନ୍ନ କରାଗଲା, ସେହିପରି ଗ୍ରହର ରାଶି ଭୋଗାଂଶ ଦେଖିକରୁ ସେ ଗ୍ରହ କାହାର ହୋରାରେ, କାହାର ଦ୍ରେଷ୍କାଣରେ, କାହାର ନବାଂଶରେ, କାହାର ଦ୍ୱାଦଶାଂଶରେ ଓ କାହାର ତ୍ରିଂଶାଂଶରେ ଅଛି ତାହା ଠିକ୍ କରିବେ । ଗ୍ରହ ଶୁଭ ବର୍ଗଗତ ହେଲେ ଶୁଭ ଫଳ ଓ ଅଶୁଭ ବର୍ଗଗତ ହେଲେ ଅଶୁଭ ଫଳଦାୟକ ହୁଏ ।

### ପୂର୍ବୋକ୍ତ ଜାତକର ଷଡ୍‌ବର୍ଗ ଆନୟନ

(୧) କ୍ଷେତ୍ର—ମକର ଲଗ୍ନଜାତ ହେବୁ କ୍ଷେତ୍ରାଧିପତି ଶନି ।

(୨) ହୋରା—ସମରାଶିର ପ୍ରଥମ ୧୫ ଅଂଶ ମଧ୍ୟରେ ଜାତକର ଜନ୍ମ ହେବୁ ଚନ୍ଦ୍ର ହୋରାରେ ଜାତକ ଜନ୍ମଗ୍ରହଣ କରିଅଛି ।

(୩) ଦ୍ରେକ୍କାଣ—ଲଗ୍ନସ୍ଫୁଟ ୧୦ ଅଂଶ ମଧ୍ୟରେ ହୋଇଥିବାରୁ ଜାତକ ପ୍ରଥମ ଦ୍ରେକ୍କାଣରେ ଜନ୍ମଗ୍ରହଣ କରିଅଛି । ମକର-ରାଶ୍ୟଧିପ ଶନି ଦ୍ରେକ୍କାଣାଧିପତି ।

(୪) ନବାଂଶ—ଚରଲଗ୍ନ ( ମକର )ରେ ଜନ୍ମ ହୋଇଥିବା ହେତୁ ନବାଂଶ ମକର ରାଶିଠାରୁ ଗଣନା କରାଗଲା । ମକରରେ ୩ ଅଂଶ ୨୦ କଳା, କୁମ୍ଭରେ ୩ ଅଂଶ ୨୦ କଳା ଦେଲେ ଅଂଶସ୍ଫୁଟ ମୀନରେ ଶେଷ ହେଲା । ମୀନ-ରାଶ୍ୟଧିପତି ବୃହସ୍ପତି ନବାଂଶାଧିପତି ହେଲେ ।

(୫) ଦ୍ୱାଦଶାଂଶ—ମକରଠାରୁ ଆରମ୍ଭ କରି ୨ ଅଂଶ ୩୦ କଳା ହିସାବରେ ଦେଇ ଦେଲେ ମେଷର ସ୍ଫୁଟାଂଶ ଶେଷ ହେଲା; ତେଣୁ ମେଷରାଶ୍ୟଧିପ ମଙ୍ଗଳ ଦ୍ୱାଦଶାଂଶାଧିପତି ଅଟନ୍ତି ।

(୬) ତ୍ରିଂଶାଂଶ—ସମ ରାଶିର ୫ ଅଂଶଠାରୁ ୧୨ ଅଂଶ ମଧ୍ୟରେ ଜାତକ ଜନ୍ମ ହୋଇଥିବା ହେତୁ ବୁଧ ତ୍ରିଂଶାଂଶାଧିପତି ଅଟନ୍ତି ।

ଷଡ଼୍ ବର୍ଗ ଆନୟନ ପରେ ହୋରା ଲଗ୍ନସ୍ଫୁଟ ନିଶ୍ଚୟ କରିବେ । ଏଥିରୁ ରବିସ୍ଫୁଟ ଆବଶ୍ୟକ ହେତୁ ଗ୍ରହସ୍ଫୁଟ ପ୍ରଥମେ ଲେଖାଯିବ ।

## ଗ୍ରହସ୍ଫୁଟ ବଲ୍ଲରଃ

ଜ୍ୟୋତିଷିମାନେ ସାଧାରଣରେ ଗ୍ରହ କେଉଁ ରାଶିର କେଉଁ ନକ୍ଷତ୍ରରେ ଅଛି କେବଳ ଠିକ୍ କରନ୍ତି । କିନ୍ତୁ ଗ୍ରହସ୍ଫୁଟାଂଶ ନ ଜାଣିଲେ ଗ୍ରହର ବଳ ଆଦୌ ଜଣାଯାଏ ନାହିଁ । ତେଣୁ ଗ୍ରହସ୍ଫୁଟ ଜାଣିବା ଅତ୍ୟାବଶ୍ୟକ । ପାଞ୍ଜିରେ ପଞ୍ଚାଙ୍ଗସ୍ଫୁଟ ଦିଆ ଯାଇଥାଏ । ପୂର୍ବ ପଞ୍ଚାଙ୍ଗ-

ସ୍ଫୁଟକୁ ପରପଞ୍ଚାଙ୍ଗସ୍ଫୁଟ କେତେ ପ୍ରଭେଦ ଦେଖି ତାହାକୁ ୧୫ରେ ହରଣ କରିବେ । ୧୫ରେ ହରଣ କରିବା କାରଣ ଏହି ଯେ ପଞ୍ଚାଙ୍ଗସ୍ଫୁଟ ୧୫ ଦିନକୁ କରାଯାଇ ଥାଏ । ୧୫ରେ ହରଣ କଲେ ଯାହା ଆସିଲା ତାହା ଗ୍ରହର ଦୈନିକଗତି । ଅବଶ୍ୟକକାଳକୁ ଯେତେଦିନ ଯେତେ ଦଣ୍ଡ ହୋଇଥିବ ତେତେଦିନ ତେତେଦଣ୍ଡର ଗ୍ରହଗତି ଆଣି ପୂର୍ବ ପଞ୍ଚାଙ୍ଗସ୍ଫୁଟରେ ମିଶାଇବେ । ଏହିପରି ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନିଙ୍କର ସ୍ଫୁଟ ବାହାରି ଆସିବ । ରାହୁ ଓ କେତୁଙ୍କର ପୂର୍ବପରି ଗତି ଆଣିବେ । ଏମାନଙ୍କର ସ୍ଫୁଟାଂଶ ଆଣିବାରେ ଏତିକି ପ୍ରଭେଦ ଯେ ପୂର୍ବ ପଞ୍ଚାଙ୍ଗସ୍ଫୁଟରୁ ପର ପଞ୍ଚାଙ୍ଗସ୍ଫୁଟ ବାଦ୍ ଦେଇ ଯାହା ରହିବ ତାକୁ ପୂର୍ବୋକ୍ତ ଦିନରେ ହରଣ କରି ଦୈନିକ ସ୍ଫୁଟ ଆଣିବେ । ଏହିପରି ଅବଶ୍ୟକୀୟ କାଳକୁ ଆଣି ପୂର୍ବ ପଞ୍ଚାଙ୍ଗସ୍ଫୁଟରୁ ବାଦ୍ ଦେଇ ଦେଲେ ଅବଶ୍ୟକୀୟ କାଳର ଠିକ୍ ଗ୍ରହସ୍ଫୁଟ ବାହାରିଆସେ । ରବି, ଚନ୍ଦ୍ରଙ୍କର ଦୈନିକ ସୂର୍ଯ୍ୟୋଦୟ କାଳକୁ ଅଂଶସ୍ଫୁଟାଦି ପଞ୍ଜିକାରେ ଦିଆ ଯାଇଥାଏ । ପରଦିନ ସୂର୍ଯ୍ୟୋଦୟ କାଳର ଗ୍ରହସ୍ଫୁଟରୁ ତାହା ବାଦ୍ ଦେଇ ଦେଲେ ୬୦ ଦଣ୍ଡକୁ ସେମାନଙ୍କର ଗତି ଆସିଲା । ଅବଶ୍ୟକକାଳକୁ ସୂର୍ଯ୍ୟୋଦୟ ଠାରୁ ଯେତିକି ସମୟ ଭୋଗ ହୋଇଥିବ ସେତିକିବେଳକୁ ଗତି କେତେ ତାହା ଆଣି ସୂର୍ଯ୍ୟୋଦୟ କାଳର ଗ୍ରହସ୍ଫୁଟରେ ମିଶାଇଦେଲେ ରବି ଚନ୍ଦ୍ରଙ୍କର ଅଂଶସ୍ଫୁଟ ବାହାରିଆସିବ ।

ପୂର୍ବୋକ୍ତ ଜାତକର ଜନ୍ମ ୧୮୪୯ ଶକାବ୍ଦ ତୁଳା ୧୫ ଦିନଠାରେ । ତୁଳା ୯ ଦିନର ପଞ୍ଚାଙ୍ଗସ୍ଫୁଟ ପଞ୍ଜିକାରେ ଦିଆଯାଇଅଛି ।

ମଙ୍ଗଳସ୍ଫୁଟ ରା ୭-୬-୨୭-୨୧-୭

ପର ପଞ୍ଚାଙ୍ଗସ୍ଫୁଟ ତୁଳା ୨୪ ଦିନକୁ କରାଯାଇ ଅଛି । ସେହି ଦିନର ମଙ୍ଗଳସ୍ଫୁଟ ରା ୭-୧୨-[illegible]-୨-୭ । ତୁଳା ୨୪ ଦିନର ମଙ୍ଗଳ

ପଞ୍ଚାଙ୍ଗସ୍ଫୁଟରୁ ଭୁଲା ୯ ଦିନର ମଙ୍ଗଳ ପଞ୍ଚାଙ୍ଗସ୍ଫୁଟ ବାଦ୍ ଦେଇଦେଲେ ରହିଲା ରା ୦-୧୦-୮-୩୯ । ଏହା ମଙ୍ଗଳର ୧୫ ଦିନର ଗତି । ତାହାକୁ ୧୫ରେ ହରଣ କଲେ ମଙ୍ଗଳର ଦୈନିକ ଗତି ବାହାରି ଆସିଲା । ଦୈନିକ ଗତି ରା ୦-୦-୨୩-୨୮ । ଜନ୍ମକାଳକୁ ପଞ୍ଚାଙ୍ଗସ୍ଫୁଟ ଦିବସ-ଠାରୁ ହେଲା ୭ ଦିନ ୧୫ ଦଣ୍ଡ ୫ ଲିତା । ଏହି ଉପରୋକ୍ତ କାଳକୁ ମଙ୍ଗଳର ଗତି ହେଲା ରା ୦-୪-୩୧-୪୮ । ଏହି ଗତି ପୂର୍ବ ପଞ୍ଚାଙ୍ଗ-ସ୍ଫୁଟରେ ମିଶାଇ ଦିଅଗଲା । ମଙ୍ଗଳର ସ୍ଫୁଟାଂଶ ଆସିଲା ରା ୭ ଣ ୧୦ ଅଂଶ ୫୯ କଳା ୯ ବିକଳା । ଏହିପରି ବୁଧ, ବୃହସ୍ପତି, ଶୁକ୍ର ଓ ଶନିଙ୍କର ଆଣିବେ ।

ରବିସ୍ଫୁଟ—ଭୁଲା ୧୫ ଦିନର ଉଦୟକାଳକୁ ରବିସ୍ଫୁଟ ରା ୭-୧୩-୨୫-୭ ପରଦିନର ରବିସ୍ଫୁଟ ରା ୭-୧୪-୩୫-୯ । ରବିର ଦୈନିକ ଭୋଗାଂଶ ରା ୦-୧-୦-୩ । ୬୦ ଦଣ୍ଡକୁ ରବିଭୋଗ ୧ ଅଂଶ ୦ କଳା ୩ ବିକଳା ହେଲେ ୧ ଦଣ୍ଡକୁ ରବିଭୋଗ ପ୍ରାୟ ୧ କଳା ।

∴ ୧୫ ଦଣ୍ଡ ୫ ଲିତାକୁ ରବିଭୋଗ ୧୫ କଳା ୫ ବିକଳା । ଉଦୟକାଳର ରବିସ୍ଫୁଟରେ ଏହି ଭୋଗକଳାଦି ମିଶାଇବାରେ ହେଲା ରା ୬-୧୩-୫୦-୧୧ । ଏହା ତାତ୍କାଳିକ ରବିସ୍ଫୁଟ । ଚନ୍ଦ୍ରସ୍ଫୁଟ ମଧ୍ୟ ଏପରି ଆଣାଯିବ ।

ରାହୁସ୍ଫୁଟ—ଭୁଲା ୯ ଦିନର ରାହୁସ୍ଫୁଟ ରା ୧-୨୮-୧୫-୫୪ । ଭୁଲା ୨୪ ଦିନର ରାହୁସ୍ଫୁଟ ରା ୧-୨୭-୨୮-୧୩ । ରାହୁର ୧୫ ଦିନରେ ପୃଷ୍ଠ ଦିଗକୁ ଗତି ରା ୦-୦-୪୭-୧୧ । ରାହୁର ଦୈନିକ ପୃଷ୍ଠଗତି ରା ୦-୦-୩-୧ । ୭ ଦିନ ୧୫ ଦଣ୍ଡ ୫ ଲିତାକୁ ଗତି ରା ୦-୦-୧୮-୨୧ । ରାହୁର ପୂର୍ବ ପଞ୍ଚାଙ୍ଗସ୍ଫୁଟରୁ ଏହା ବାଦ୍ ଦେଲେ ରାହୁର ତାତ୍କାଳିକ ସ୍ଫୁଟ ହେଲା ରା ୧-୨୭-୫୭-୩ । କେତୁର ସ୍ଫୁଟ ମଧ୍ୟ ଏହିପରି ।

ଗ୍ରହର ନକ୍ଷତ୍ର ଭୋଗ ଆଣିବା ଅତ୍ୟନ୍ତ ସହଜ । ଫଳାନ୍ତଚକ୍ରରେ ଗ୍ରହର ନକ୍ଷତ୍ରଚଳନ ସ୍ପଷ୍ଟଭାବେ ଲେଖାଯାଇ ଥାଏ । ଜନ୍ମକାଳ ପର୍ଯ୍ୟନ୍ତ ଯେଉଁ ଯେଉଁ ଗ୍ରହର ଚଳନ ଅଛି, ସେମାନେ କେଉଁ ନକ୍ଷତ୍ରର କେଉଁ ରାଶିରେ ଅଛନ୍ତି ତାହା ଲେଖିବେ । ସେହି ଦିନର ନକ୍ଷତ୍ର ( ଜନ୍ମକାଳୀନ ) ଯାହା ଚନ୍ଦ୍ର ସେହି ନକ୍ଷତ୍ରରେ ଥିବାର ଲେଖିବେ । ଯେଉଁ ଯେଉଁ ଗ୍ରହମାନଙ୍କର ସେହି ମାସ ମଧ୍ୟରେ ଚଳନ ନାହିଁ ସେହି ଗ୍ରହମାନେ ଫଳାନ୍ତଚକ୍ରରେ ଯେଉଁ ରାଶିର ଯେଉଁ ନକ୍ଷତ୍ରରେ ଥିବେ ତାହା ଲେଖିବେ ।

## ହୋରା ଲଗ୍ନସ୍ଫୁଟ କଥନଂ

ହୋରା-ଲଗ୍ନସ୍ଫୁଟ ଆୟୁର୍ଦାୟ ସାଧନ ନିମନ୍ତେ ଅତି ଆବଶ୍ୟକ । ହୋରା-ଲଗ୍ନ କଣ ? ଏଥିରେ ୨ ଦଣ୍ଡ ୩୦ ପଳକୁ ଏକରାଶି ବୋଲି କୁହାଯାଏ । ଜନ୍ମ ସମୟକୁ ଦିନ ବା ରାତ୍ରି ଯେତେ ଦଣ୍ଡ ହୋଇଥିବ ତାହାକୁ ପୂର୍ବୋକ୍ତ ରାଶିମାନଙ୍କରେ ହରଣ କରିବେ । ହରଣ କଲେ ଯାହା ଲବ୍ଧ ଆସିବ ତାହା ରାଶି । ଅଂଶକୁ ୩୦ରେ ଗୁଣି ରାଶିମାନଙ୍କରେ ହରଣ କଲେ କଳା ବିକଳାଦି ଆସିବ । ବିଷମ ରାଶିରେ ଏହି ସ୍ଫୁଟ ହେଲେ ତାହା ସହିତ ରବିସ୍ଫୁଟ ଏବଂ ସମ ରାଶିରେ ଆସିଲେ ତାହା ସହିତ ଲଗ୍ନସ୍ଫୁଟ ଯୋଗ କରିବେ । ଏହି ଯୋଗଫଳ ୧୨ରୁ ଅଧିକ ହେଲେ ୧୨ ଫେଡି ଦେବେ । ଯାହା ଆସିବ ତାହା ହୋରା-ଲଗ୍ନସ୍ଫୁଟ ।

## ପୂର୍ବୋକ୍ତ ଜାତକର ହୋରା-ଲଗ୍ନସ୍ଫୁଟ

ଜନ୍ମକାଳକୁ ବେଳ ୧୫ ଦଣ୍ଡ ୫ ପଳ । ଏହାକୁ ପଳ କଲେ ହେଲା ୯୦୫ ପଳ । ଏହାକୁ ହୋରା ରାଶିମାନ ୨ ଦଣ୍ଡ ୩୦ ପଳ ବା ୧୫୦ ପଳରେ ହରଣ କଲେ ଲବ୍ଧ ଆସିଲା—୬ ରାଶି ୧ ଅଂଶ ।

୧୫୦ )୯୦୫( ୬
୯୦୦
―――
୫ × ୩୦
―――
୧୫୦ )୧୫୦( ୧
୧୫୦
―――

ହୋରାଲଗ୍ନ କନ୍ୟା ଭୋଗ କରି ତୁଲାର ୧ ଅଂଶ ଭୋଗ କରିଅଛି । ଏହା ବିଷମ ରାଶିସ୍ଫୁଟ ହେତୁ ଏଥିରେ ରବିସ୍ଫୁଟ ମିଶାଯିବ । ମିଶାଣ ଫଳ ହେଲା ୧୨ ରାଶି ୧୪ ଅଂଶ ୫୦ କଳା ୫୧ ବିକଳା । ଯୋଗଫଳ ୧୨ରୁ ଅଧିକ ହେବା ହେତୁ ଏଥିରୁ ୧୨ ବାଦ୍ ଦେଇ ଦେଲେ ହୋରା-ଲଗ୍ନସ୍ଫୁଟ ବାହାରି ଆସିଲା । ହୋରା-ଲଗ୍ନସ୍ଫୁଟ ରା ୦।୧୪।୫୦।୫୧ ।

( ଉପରେ ଯେଉଁ ଗ୍ରହସ୍ଫୁଟ, ଲଗ୍ନସ୍ଫୁଟ ଓ ହୋରା-ଲଗ୍ନସ୍ଫୁଟ ଲେଖା ଗଲା ସେହି ସମସ୍ତର ଅଂଶ ଓ କଳାଦି ଗଣିଲେ ଯଥେଷ୍ଟ । )

## ଦଶା ନିର୍ଣ୍ଣୟଃ

ଦଶାବିଭାଗ ସାଧାରଣରେ ଦୁଇପ୍ରକାର । (୧) ବିଂଶୋତ୍ତରୀ, (୨) ଅଷ୍ଟୋତ୍ତରୀ । ବିଂଶୋତ୍ତରୀ ଦଶାକୁ କେହି କେହି କେରଳ ଦଶା ବୋଲି କହନ୍ତି । କେଉଁ ଦଶାରେ କାହାର ଅଧିକାର ତାହା ପରାଶର, ଯବନେଶ୍ୱରାଦି ଜ୍ୟୋତିଃଶାସ୍ତ୍ର ପ୍ରବର୍ତ୍ତକଗଣ ଠିକ୍ କରି ଯାଇଅଛନ୍ତି ।

ଦଶାପ୍ୟଷ୍ଟୋତ୍ତରୀ ଶୁକ୍ଳେ କୃଷ୍ଣେ ବିଂଶୋତ୍ତରୀ ସ୍ମୃତା ।
ଗଣନୀୟା ଦଶା ସୁଜ୍ଞୈର୍ଯବନେଶ୍ୱରସମ୍ମତା ॥ (ଜ୍ୟୋ, ସୁ)

ଶୁକ୍ଳ ପକ୍ଷରେ ଅଷ୍ଟୋତ୍ତରୀ ଓ କୃଷ୍ଣପକ୍ଷରେ ବିଂଶୋତ୍ତରୀ ଦଶା ଗଣନା କରିବା ବିଧି ବୋଲି ଯବନେଶ୍ୱରଙ୍କର ମତ ।

କୃଷ୍ଣପକ୍ଷେ ଦିବାଜନ୍ମ ଶୁକ୍ଲପକ୍ଷେ ଯଦା ନିଶି ।
ବିଂଶୋତ୍ତରୀ ଦଶା ତସ୍ୟ ଶୁଭାଶୁଭଫଳପ୍ରଦା ॥ (ଜ୍ୟୋ, ପ୍ର)

କୃଷ୍ଣପକ୍ଷରେ ଦିବସ ଜନ୍ମ ଓ ଶୁକ୍ଳ ପକ୍ଷରେ ରାତ୍ରି ଜନ୍ମ ବ୍ୟକ୍ତିର ଜନ୍ମଦଶା ବିଂଶୋତ୍ତରୀ ମତରେ, କୃଷ୍ଣପକ୍ଷରେ ରାତ୍ରି ଜନ୍ମ ଓ ଶୁକ୍ଳପକ୍ଷରେ ଦିବସ ଜନ୍ମ ବ୍ୟକ୍ତିର ଜନ୍ମଦଶା ଅଷ୍ଟୋତ୍ତରୀ ମତରେ ଗଣନା କରିବା ବିଧି । ସାଧାରଣରେ ବଙ୍ଗଦେଶରେ ଅଷ୍ଟୋତ୍ତରୀ ଏବଂ ଉତ୍କଳ ଓ ଅନ୍ୟ ପ୍ରଦେଶରେ ବିଂଶୋତ୍ତରୀ ବିଶେଷ ଭାବେ ପ୍ରଚଳିତ ।

ବିଂଶୋତ୍ତରୀ ଦଶା ବିସ୍ତରଃ

ଇନ ଶଶୀ କୁଜ ରାହୁ ଜୀବ ମନ୍ଦ ଜ୍ଞ କେତୁ ।
ଭୃଗୁଜ ଇତି ନବାନାଂ କୃତ୍ତିକାଦି କ୍ରମେଣ ॥

କେରଳ ବା ବିଂଶୋତ୍ତରୀ ମତରେ ୯ଟି ଦଶା, (୧) ରବି (୨) ଚନ୍ଦ୍ର (୩) ମଙ୍ଗଳ (୪) ରାହୁ (୫) ବୃହସ୍ପତି (୬) ଶନି (୭) ବୁଧ (୮) କେତୁ (୯) ଶୁକ୍ର ।

କୃତ୍ତିକା, ଉତ୍ତରଫାଲ୍ଗୁନୀ, ଉତ୍ତରଷାଢ଼ା ନକ୍ଷତ୍ର ଜାତ ବ୍ୟକ୍ତିର ଜନ୍ମଦଶା ରବି ।

ରୋହିଣୀ, ହସ୍ତା, ଶ୍ରବଣା ନକ୍ଷତ୍ର ଜାତ ବ୍ୟକ୍ତିର ଜନ୍ମଦଶା ଚନ୍ଦ୍ର ।

ମୃଗଶିରା, ଚିତ୍ରା, ଧନିଷ୍ଠା ନକ୍ଷତ୍ର ଜାତ ବ୍ୟକ୍ତିର ଜନ୍ମଦଶା ମଙ୍ଗଳ ।

ଆର୍ଦ୍ରା, ସ୍ୱାତି, ଶତଭିଷା ନକ୍ଷତ୍ର ଜାତ ବ୍ୟକ୍ତିର ଜନ୍ମଦଶା ରାହୁ ।

ପୁନର୍ବସୁ, ବିଶାଖା, ପୂର୍ବଭାଦ୍ରପଦ ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ବୃହସ୍ପତି ।

ପୁଷ୍ୟା ଅନୁରାଧା; ଉତ୍ତର ଭାଦ୍ରପଦ ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ଶନି । ଅଶ୍ଳେଷା, ଜ୍ୟେଷ୍ଠା, ରେବତୀ ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ବୁଧ । ମଘା, ମୂଳା, ଅଶ୍ୱିନୀ ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା କେତୁ । ପୂର୍ବାଫାଲ୍‌ଗୁନୀ, ପୂର୍ବାଷାଢ଼ା ଓ ଦ୍ୱିଜାନକ୍ଷତ୍ର ଜାତ ବ୍ୟକ୍ତିର ଜନ୍ମଦଶା ଶୁକ୍ର ।

### ବିଂଶୋତ୍ତରୀ ଦଶା ପରମାଣଂ

ରସ ଦଶ ଗିରି ଧୃତ୍ୟାଗୃଧୀଂ ବିଂଶୋନ ସପ୍ତ—
ଦଶ ମୁନି ନଖସଂଖ୍ୟା ସୂର୍ଯ୍ୟଦଶା ମାନବାନାଂ ॥

ରବି ଦଶା ୬ ବର୍ଷ, ଚନ୍ଦ୍ର ୧୦ ବର୍ଷ, ମଙ୍ଗଳ ୭ ବର୍ଷ, ରାହୁ ୧୮ ବର୍ଷ, ବୃହସ୍ପତି ୧୬ ବର୍ଷ, ଶନି ୧୯ ବର୍ଷ, ବୁଧ ୧୭ ବର୍ଷ, କେତୁ ୭ ବର୍ଷ, ଶୁକ୍ର ୨୦ ବର୍ଷ, ମୋଟ ୧୨୦ ବର୍ଷ ।

### ଅଷ୍ଟୋତ୍ତରୀ ଦଶା ନିର୍ଣ୍ଣୟଃ

କୃତ୍ତିକାଦତ୍ରୟେ ସୂର୍ଯ୍ୟଃ ଶଶୀ ରୌଦ୍ରଚତୁଷ୍ଟୟେ ।
ମଘାଦ୍ୱିତୟେ ଭୌମୋ ବୁଧୋ ହସ୍ତାଚତୁଷ୍ଟୟେ ॥
ଅନୁରାଧାତ୍ରୟେ ଶୌରିଃ ଗୁରୁଃ ପୂର୍ବାଚତୁଷ୍ଟୟେ ।
ଧନିଷ୍ଠାଦିତ୍ରୟେ ରାହୁଃ ଶୁକ୍ରଃ ଶେଷଚତୁଷ୍ଟୟେ ॥

କୃତ୍ତିକା, ରୋହିଣୀ, ମୃଗଶିରା ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ରବି । ଆର୍ଦ୍ରା, ପୁନର୍ବସୁ, ପୁଷ୍ୟା, ଅଶ୍ଳେଷା ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ଚନ୍ଦ୍ର । ମଘା, ପୂର୍ବାଫାଲ୍‌ଗୁନୀ, ଉତ୍ତରାଫାଲ୍‌ଗୁନୀ ନକ୍ଷତ୍ରଜାତ

ବ୍ୟକ୍ତିର ଜନ୍ମଦଶା ମଙ୍ଗଳ । ହସ୍ତା, ଚିତ୍ରା, ସ୍ୱାତୀ, ବିଶାଖା ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ବୁଧ । ଅନୁରାଧା, ଜ୍ୟେଷ୍ଠା ମୂଳା ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ଶନି । ପୂର୍ବାଷାଢ଼ା, ଉତ୍ତରଷାଢ଼ା, ଅଭିଜିତ୍, ଶ୍ରବଣା ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ବୃହସ୍ପତି । ଧନିଷ୍ଠା, ଶତଭିଷା, ପୂର୍ବଭାଦ୍ରପଦ ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ରାହୁ । ଉତ୍ତରଭାଦ୍ରପଦ, ରେବତୀ, ଅଶ୍ୱିନୀ, ଭରଣୀ ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ଶୁକ୍ର । ( ଉତ୍ତରାଷାଢ଼ାର ଶେଷ ୧୫ ଦଣ୍ଡ ଓ ଶ୍ରବଣାର ଆଦ୍ୟ ୪ ଘଡ଼ୀ ମିଶି ଅଭିଜିତ୍ ହୁଏ । )

## ଅଷ୍ଟୋତ୍ତରୀ ଦଶା ପରିମାଣ

ଷଟ୍ ସୂର୍ଯ୍ୟସ୍ୟ ଦଶା ପ୍ରୋକ୍ତା ଶଶିନୋ ଦଶପଞ୍ଚ ଚ ।
ଅଷ୍ଟାବଙ୍ଗାରକେ ପ୍ରୋକ୍ତା ବୁଧେ ସପ୍ତଦଶ ସ୍ମୃତାଃ ॥
ଶନୈଶ୍ଚରେ ଦଶ ପ୍ରୋକ୍ତା ଗୁରୋରେକୋନବିଂଶତିଃ ।
ରାହୋର୍ଦ୍ୱାଦଶବର୍ଷାଣି ଭୃଗୋରପ୍ୟେକବିଂଶତିଃ ॥

ଅଷ୍ଟୋତ୍ତରୀ ମତରେ ରବିଦଶା ୬ ବର୍ଷ । ଚନ୍ଦ୍ର ୧୫ ବର୍ଷ । ମଙ୍ଗଳ ୮ ବର୍ଷ । ବୁଧ ୧୭ ବର୍ଷ । ଶନି ୧୦ ବର୍ଷ । ବୃହସ୍ପତି ୧୯ ବର୍ଷ । ରାହୁ ୧୨ ବର୍ଷ । ଶୁକ୍ର ୨୧ ବର୍ଷ । ମୋଟ ସର୍ବ ୧୦୮ ବର୍ଷ ।

## ବିଂଶୋତ୍ତରୀ ଦଶାଭୋଗ ଆନୟନ

ଗତପୂର୍ବାଦି ଦଣ୍ଡଞ୍ଚ ଭୁକ୍ତାଦ୍ୟନ୍ତଂ ବିଯୋଜୟେତ୍ ।
ଇଷ୍ଟନାଡ଼ୀବିହୀନସ୍ୟ ଶେଷଭୁକ୍ତାଦିକଂ ଭବେତ୍ ।

ଘଟାଡ଼ଘ୍ନେତ୍ ଦଶାବର୍ଷଂ ଭୁକ୍ତାଦ୍ୟନ୍ତେନ ଭାବୟେତ୍ ।
ଲବ୍ଧମଙ୍କଂ ସମଂ ଜ୍ଞେୟଂ ଶେଷଂ ମାସାଦିକାଡ଼ିକଂ ॥

ନକ୍ଷତ୍ର ପୂର୍ବାପର ସମସ୍ତ ଯେତେ ହେବ, ସେହି ସମସ୍ତକୁ ଲିପ୍ତା କରି ରଖିବେ । ଜନ୍ମ କାଳକୁ ସେହି ନକ୍ଷତ୍ରରୁ ଯାହା ଭୋଗ ହୋଇଥିବ ତାହାକୁ ଲିପ୍ତା କରିବେ । ସେହି ନକ୍ଷତ୍ରକୁ ବ ଦଶା ହେବ ଓ ତାହା କେତେ ବର୍ଷ ଦେଖିବେ ।

ନକ୍ଷତ୍ରର ପୂର୍ବାପର ଏତେ ଲିପ୍ତାକୁ ଜନ୍ମଦଶା ଏତେବର୍ଷ । ତେବେ ଭୋଗ ନକ୍ଷତ୍ର ଏତେ ଲିପ୍ତାକୁ ଜନ୍ମଦଶା ଭୋଗ କେତେ ? ଏହି ତ୍ରୟ-ରାଶିକ ଅନୁପାତରେ ଗର୍ଭଭୁକ୍ତି ଆସେ ମୋଟ ଦଶାବର୍ଷରୁ ବାଦ୍ ଦେଇଦେଲେ ଜନ୍ମଦଶା ଅବଶିଷ୍ଟ କେତେ ଭୋଗ କରିବାକୁ ଅଛି ବାହାର ଆସିବ ।

ପୂର୍ବୋକ୍ତ ଜାତକର ବିଂଶୋତ୍ତରୀ ମତରେ ଦଶାଶେଷ ଜଣାଯିବ । ବାଳକର ଯେଉଁଦିନ ଜନ୍ମ, ପଞ୍ଜିକାରେ ସେହିଦିନ ଲେଖା ଅଛି "ମୂଳା ୨ ଦଣ୍ଡ ୫୧ ଲିପ୍ତା । ଅହୋରାତ୍ର ୬୦ ଦଣ୍ଡରୁ ଏହା ବାଦ୍ ଦେଲେ ସେଦିନ ପୂର୍ବାଷାଢ଼ା ନକ୍ଷତ୍ରର ଭୋଗ ୫୭ ଦଣ୍ଡ ୧୯ ଲିପ୍ତା ବୋଲି ଜଣାଗଲା । ତା ପରଦିନକୁ ପୂର୍ବାଷାଢ଼ା ନକ୍ଷତ୍ର ଅଛି ୬ ଦଣ୍ଡ ୫ ଲିପ୍ତା । ପୂର୍ବାଷାଢ଼ା ନକ୍ଷତ୍ରର ପୂର୍ବାପର ହେଲା ୬୩ ଦଣ୍ଡ ୨୪ ଲିପ୍ତା ଜନ୍ମ ସମୟକୁ ଗତ ହୋଇଥିଲା ୧୫ ଦଣ୍ଡ ୫ ଲିପ୍ତା । ଏଥିରୁ ମୂଳା ନକ୍ଷତ୍ରର ୨ ଦଣ୍ଡ ୫୧ ଲିପ୍ତା ଫେଡିଦେଲେ ବାକି ରହିଲା ୧୨ ଦଣ୍ଡ ୨୪ ଲିପ୍ତା । ଏହି ୧୨ ଦଣ୍ଡ ୨୪ ଲିପ୍ତା ପୂର୍ବାଷାଢ଼ାର ଭୋଗ । ପୂର୍ବାଷାଢ଼ା ନକ୍ଷତ୍ରଜାତ ବ୍ୟକ୍ତିର ଜନ୍ମଦଶା ଶୁକ୍ର । ଏହାର ପରିମାଣ ୨୦ ବର୍ଷ ।

ପୂର୍ବାଷାଢ଼ା ନକ୍ଷତ୍ର ପୂର୍ବାପର ୬୩ ଦଣ୍ଡ ୨୪ ଲିପ୍ତା ବା ୩୮୦୪ ଲିପ୍ତାକୁ ୨୦ ବର୍ଷ । ନକ୍ଷତ୍ର ଭୋଗ ୧୨ ଦଣ୍ଡ ୨୪ ଲିପ୍ତା ବା ୭୪୪ ଲିପ୍ତାକୁ ଶୁକ୍ରଭୋଗ ?

$$= \frac{୭୪୪ \times ୨୦}{୩୮୦୪} \text{ବର୍ଷ} = \frac{୧୪୮୮୦}{୩୮୦୪}$$

୩୮୦୪ ) ୧୪୮୮୦ ( ୩ ବର୍ଷ
୧୧୪୧୨
୩୪୬୮×୧୨
୩୮୦୪ ) ୪୧୬୧୬ ( ୧୦ ମାସ
୩୮୦୪୦
୩୫୭୬×୩୦
୩୮୦୪ ) ୧୦୭୨୮୦ ( ୨୮ ଦିନ
୭୬୦୮
୩୧୨୦୦
୩୦୪୩୨
୭୬୮×୬୦
୩୮୦୪ ) ୪୬୦୮୦ ( ୧୨ ଦଣ୍ଡ
୩୮୦୪
୮୦୪୦
୭୬୦୮
୪୩୨×୬୦
୩୮୦୪ ) ୨୫୯୨୦ ( ୬ ଲିପ୍ତା-ପ୍ରାପ୍ତ ୭ ଲିପ୍ତା
୨୨୮୨୪
୩୦୯୬

ଜନ୍ମକାଳକୁ ଶୁକ୍ରଦଶା ଗର୍ଭିପାତ ଭୋଗ ବ ୩-୧୦-୨୮-୧୨-୭ ଲିପ୍ତା । ଶୁକ୍ର ସ୍ଥୂଳ ୨୦ ବର୍ଷରୁ ଗର୍ଭଭୁକ୍ତ ବାଦ୍ ଦେଇଦେଲେ ଅବଶିଷ୍ଟ ଭୋଗ ଦେବାକୁ ଅଛି ବ ୧୬-୧-୧-୪୭-୫୩ ଲିପ୍ତା ।

## ଅଷ୍ଟୋତ୍ତରୀ ଦଶାଭୋଗ ଆନୟନ ।

ଏଥିରେ ବିଂଶୋତ୍ତରୀ ପରି ଗୋଟିଏ ନକ୍ଷତ୍ରକୁ ପୂର୍ଣ୍ଣଦଶା ଭୋଗ ହୁଏ ନାହିଁ । ରବିର ପ୍ରତ୍ୟେକ ନକ୍ଷତ୍ରରେ ଭୋଗ ୨ ବର୍ଷ, ଚନ୍ଦ୍ରର ୩ ବର୍ଷ ୯ ମାସ, ମଙ୍ଗଳର ୨ ବର୍ଷ ୮ ମାସ, ବୁଧର ୪ ବର୍ଷ ୩ ମାସ, ଶନିର ୩ ବର୍ଷ ୪ ମାସ, ବୃହସ୍ପତିର ପ୍ରତି ନକ୍ଷତ୍ରରେ ୪ ବର୍ଷ ୯ ମାସ, ମଧ୍ୟରେ ପୂର୍ବାଷାଢାରେ ୪ ବର୍ଷ ୯ ମାସ, ଉତ୍ତରାଷାଢାରେ ୭ ବର୍ଷ ୧ ମାସ ୧୫ ଦିନ ଏବଂ ଶ୍ରବଣା ନକ୍ଷତ୍ରରେ ୭ ବର୍ଷ ୧ ମାସ ୧୫ ଦିନ ବୃହସ୍ପତିର ଭୋଗ । ରାହୁର ପ୍ରତି ନକ୍ଷତ୍ରରେ ୪ ବର୍ଷ, ଶୁକ୍ରର ପ୍ରତି ନକ୍ଷତ୍ରରେ ଭୋଗ ୫ ବର୍ଷ ୩ ମାସ ।

କୃତ୍ତିକା ନକ୍ଷତ୍ରରେ ଗୋଟିଏ ବାଳକ ଜନ୍ମ ହେଲା । କୃତ୍ତିକା ନକ୍ଷତ୍ରର ପୂର୍ବାପର ହେଲା ୬୫ ଦଣ୍ଡ ୧୦ ପଳ । ଜନ୍ମକାଳକୁ ନକ୍ଷତ୍ର ଭୋଗ ୬ ଦଣ୍ଡ ୩୧ ପଳ । କୃତ୍ତିକା ନକ୍ଷତ୍ରକୁ ରବିଭୋଗ ୨ ବର୍ଷ ।

କୃତ୍ତିକା ନକ୍ଷତ୍ର ୩୯୧୦ ପଳକୁ ରବି ୨ ବର୍ଷ

କୃତ୍ତିକା ନକ୍ଷତ୍ର ଭୋଗ ୩୯୧ ପଳକୁ ରବିଭୋଗ $=\frac{୩୯୧ \times ୨}{୩୯୧୦}$ ବର୍ଷ $=$ ୧ ମାସ ୧୨ ଦିନ ।

```
          ୭୮୨ ବର୍ଷ × ୧୨
୩୯୧୦ ) ୯୩୮୪ ( ୨ ମାସ
          ୭୮୨୦
          ୧୫୬୪ × ୩୦
୩୯୧୦ ) ୪୬୯୨୦ ( ୧୨ ଦିନ
          ୩୯୧୦
          ୭୮୨୦
          ୭୮୨୦
```

ରବିସ୍ଥିତ ୧ ବର୍ଷ ୯ ମାସ ୧୮ ଦିନ । ଏହାର ଅନ୍ୟ ଦୁଇ ନକ୍ଷତ୍ରର ଅବଶିଷ୍ଟ ୪ ବର୍ଷ । ମୋଟ ରବିସ୍ଥିତ ୫ ବର୍ଷ ୧ ମାସ ୧୮ ଦିନ ।

## ନକ୍ଷତ୍ରରୁ ନାମ ଜାଣିବା ନିୟମ

ନକ୍ଷତ୍ରର କେଉଁ ପାଦରେ ଜନ୍ମ ହେଲେ ବାଳକର ଜାତକ ନାମର ଆଦ୍ୟ ଅକ୍ଷର କଣ ହେବ ତାହା ତଳେ ଦର୍ଶାଗଲା ।

| | ଅଶ୍ୱିନୀ | ଭରଣୀ | କୃତ୍ତିକା | ରୋହିଣୀ | ମୃଗଶିର | ଆର୍ଦ୍ରା | ପୁନର୍ବସୁ |
|---|---|---|---|---|---|---|---|
| ୧ମ ପାଦ | ଚୁ | ଲି | ଅ(ମେ) | ଓ | ବେ | କୁ | କେ |
| ୨ୟ ପାଦ | ଚେ | ଲୁ | ଇ | ବ | ବୋ(ବୃ) | ଘ | କୋ |
| ୩ୟ ପାଦ | ଚୋ | ଲେ | ଉ | ବି | କ | ଙ | ହ(ହି) |
| ୪ର୍ଥ ପାଦ | ଲ | ଲୋ | ଏ | ବୁ | କି | ଛ | ହି |

| | ପୁଷ୍ୟା | ଅଶ୍ଳେଷା | ମଘା | ପୂଃ ଫାଲ୍‌ଗୁନୀ | ଉଃ ଫାଲ୍‌ଗୁନୀ | ହସ୍ତା | ଚିତ୍ରା |
|---|---|---|---|---|---|---|---|
| ୧ମ ପାଦ | ହୁ | ଡ | ମ | ମୋ | ଟେ(ସ୍ତିଂ) | ପୁ | ପେ |
| ୨ୟ ପାଦ | ହେ | ଡୁ | ମି | ଟ | ଟୋ | ଷ | ପୋ |
| ୩ୟ ପାଦ | ହୋ | ଡେ | ମୁ | ଟି | ପ | ଣ | ର |
| ୪ର୍ଥ ପାଦ | ଡ | ଡୋ(କ) | ମେ | ଟୁ | ପି | ଠ | ରି |

| | ସ୍ୱାତୀ | ବିଶାଖା | ଅନୁରାଧା | ଜ୍ୟେଷ୍ଠା | ମୂଳା | ପୂର୍ବାଷାଢ଼ା | ଉତ୍ତରଷାଢ଼ା |
|---|---|---|---|---|---|---|---|
| ୧ମ ପାଦ | ରୁ | ତି | ନ | ନୋ | ଯେ | ଭୁ | ଭେ(ଧେ) |
| ୨ୟ ପାଦ | ରେ | ତୁ | ନି | ଯ | ଯୋ | ଧ | ଭୋ |
| ୩ୟ ପାଦ | ରୋ | ତେ(ତୁ) | ନୁ | ଯି | ଭ | ଫ | ଜ |
| ୪ର୍ଥ ପାଦ | ତ | ତୋ | ନେ | ଯୁ(ବୁ) | ଭି | ଢ | ଜି |

| | ଅଭି-ଜିତ୍ | ଶ୍ରବଣା | ଧନିଷ୍ଠା | ଶତଭିଷା | ପୂର୍ବଭାଦ୍ର-ପଦ | ଉତ୍ତର ଭାଦ୍ର | ରେବତୀ |
|---|---|---|---|---|---|---|---|
| ୧ମ ପାଦ | ଜୁ | ଖି | ଗ | ଗୋ | ସେ | ଦୁ | ଦେ |
| ୨ୟ ପାଦ | ଜେ | ଖୁ | ଗି(ମ) | ସ | ସୋ | ଝ | ଦୋ |
| ୩ୟ ପାଦ | ଜୋ | ଖେ | ଗୁ | ସି | ଦ(ରୁ) | ଞ | ଚ |
| ୪ର୍ଥ ପାଦ | ଖ | ଖୋ | ଗେ | ସୁ | ଦି | ଥ | ଚି |

## ଜାତକ ଲିଖନଂ

ଶ୍ରୀ ଶୁଭମସ୍ତୁ । ଶ୍ରୀ ସୂର୍ଯ୍ୟାୟ ନମଃ

ଆଦିତ୍ୟାଦି ଗ୍ରହାଃ ସର୍ବେ ନକ୍ଷତ୍ରାଣି ଚ ରାଶୟଃ ।
ଦୀର୍ଘମାୟୁଃ ପ୍ରୟଚ୍ଛନ୍ତୁ ଯସ୍ୟୈଷା ଜନ୍ମପତ୍ରିକା ॥

ଯା ପୂର୍ବକର୍ମପ୍ରଭବସ୍ୟ ପତ୍ରୀ କର୍ତ୍ତୁର୍ଲଲାଟେ ଲିଖିତା ବିଧାତ୍ରା ।
ତାଂ ଜନ୍ମପତ୍ରୀଂ ପ୍ରକଟୀକରୋମି ଦୀପୋ ଯଥା ଦ୍ରବ୍ୟମିବାନ୍ଧକାରେ ॥

ସ୍ୱସ୍ତ୍ୟସ୍ତୁ । ବୀର ଶ୍ରୀ ଗଜପତି ଗୌଡ଼େଶ୍ୱର ନବକୋଟି କର୍ଣ୍ଣାଟୋ-ତ୍କଳବର୍ଗେଶ୍ୱର ବୀରାଧି ବୀରବର ପ୍ରତାପ ଶ୍ରୀ ରାମଚନ୍ଦ୍ର ଦେବ ମହାରାଜସ୍ୟ ସମାଙ୍କେ ( ୩ ଅଙ୍କ ) ଶ୍ରୀମନ୍ନୃପେନ୍ଦ୍ରମଣ୍ଡଳୀମଣ୍ଡନଶକଭୂପସ୍ୟ ଗ୍ରହଦେବୋ-ତ୍ତର ଅଷ୍ଟାଦଶ ଶତ ପରିମିତେବ୍ଦେ ( ୧୮୪୯ ) ରବୌ ତୁଳାରାଶି ପ୍ରବେଶାଦାରଭ୍ୟ ପଞ୍ଚଦଶ ଦିବସେ ( ତୁଳା ୧୫ ଦିନ ) ଚାନ୍ଦ୍ରମାନେନ କାର୍ତ୍ତିକ ଶୁକ୍ଳ ପଞ୍ଚମୀ ସୋମବାରେ ସୂର୍ଯ୍ୟୋଦୟାଦିଷ୍ଟଘଟିକା ପଞ୍ଚ-ଲପ୍ତୋତ୍ତର ପଞ୍ଚଦଶଘଟୀ ସମ୍ପୂର୍ଣ୍ଣେ ଅୟନାଂଶସଂଶୋଧିତ ବିଶୁଦ୍ଧ ମକରଲଗ୍ନେ, ଲଗ୍ନଭୁକ୍ତି ଦ ୧।୧୧ ପ୍ରତି ଲଗ୍ନସ୍ଫୁଟ ରାଶ୍ୟାଦିଃ ରା ୯।୦୭।୪୪।୪୩ ପ୍ରତି ଶନୈଶ୍ଚରକ୍ଷେତ୍ରେ, ଚନ୍ଦ୍ରହୋରାୟାଂ ମକରରାଶ୍ୟଧିପ ଶନୈଶ୍ଚର ଦ୍ରେକ୍କାଣେ, ମୀନରାଶ୍ୟଧିପ ଗୁରୁନବାଂଶେ, ମେଷରାଶ୍ୟଧିପ କୁଜ-ଦ୍ୱାଦଶାଂଶେ, ବୁଧ ତ୍ରିଂଶାଂଶେ ଏବଂବିଧୌ ଷଡ୍‌ବର୍ଗେ ଶୁଭଦୃଷ୍ଟୌ ଶ୍ରୀମଜ୍ଜଗନ୍ନାଥପାଦାରବିନ୍ଦ ସେବାତତ୍ପର ଅମୁକସ୍ୟ ( ନାମ ) ସ୍ୱଧର୍ମପତ୍ନ୍ୟାଃ ଗର୍ଭାମ୍ବୁଧେଃ ଅମୁମହଶସ୍ୟକ ତରଙ୍ଗ ପ୍ରତି ପୁତ୍ର ଜନ୍ମ ଶୁଭ । ଅସ୍ୟ ରାଶିନକ୍ଷତ୍ର ପୂର୍ବାଷାଢା ଧନୁ । ଜାତକ ନାମ ଭୁବନେଶ୍ୱର । ଶବ୍ଦାନାମ :—ଯଥାରୁଚି । ନକ୍ଷତ୍ରସ୍ୟ ପୂର୍ବାପର ଦଣ୍ଡାଦି ୬୩।୨୪ ଋକ୍ଷଭୁକ୍ତି ଦ ୧୬।୨୪ ଋକ୍ଷଶେଷସ୍ଥିତ ଦଣ୍ଡାଦି ୫୧ । ବିଂଶୋତ୍ତରୀ ମତାନୁସାରେଣ ଶୁକ୍ର-ମହାଦଶାୟାଃ ଗର୍ଭଭୁକ୍ତି ବର୍ଷାଦି ୩।୧୦।୨୮।୧୬।୭ ଶେଷସ୍ଥିତ ବର୍ଷାଦି ୧୬।୧।୧।୩୭।୫୩ । ଅସ୍ୟ ଜାତକସ୍ୟ ଶିଶୁରଷ୍ଟାଦିକଂ ବର୍ଷାବଧିସ୍ତୁ । ଏତଦ୍‌ବିଷୟେ ଶାନ୍ତି କରଣୀୟା ।

ଅୟନାଂଶ ୧୦ ୨୨।୫୮।୪।୧୬।୨୪

ଶକାବ୍ଦାଃ ୧୮୪୬।୧୫।୧୫।୫ ।

ହୋରାଲଗ୍ନଷ୍ଟାଃ ରା୦।୧୪।୪୨।୨୯ ।

—ଜାତକଚକ୍ର—

| | | |
|---|---|---|
| ରା ୦ | ହୋ ଲ | ବୃ • |
| ୦ | ୧୯ ୯ | ଲ |
| ଶୁ ୦ | ର-ମ ବୁ | ଚ କେ |

ବୁଜ ୧୫ ଭୁବନ ସୋମବାର
ପଞ୍ଚମୀ ଦ ୪।୧୩
ମୂଳାନକ୍ଷତ୍ର ଦ ୨।୪୧
ଧନୂ ଦ ୭୦
ସୁକର୍ମା ଦ ୩୦।୪୮
ବାଳବ ଦ ୪।୧୩
ଦନାର୍ଦ୍ଧ ଦ ୧୪।୪୮

ଗ୍ରହସ୍ଫୁଟ

ରବି ରା୭-୧୩-୫୦ ୧୧
ଚନ୍ଦ୍ର ରା୮-୧୫-୫୨
ମଙ୍ଗଳ ରା୭-୧୦-୫୯
ବୁଧ ରା୭-୨୯-୫୩ ବକ୍ର
ବୃହସ୍ପତି ରା୧୧-୦-୩୧ ବକ୍ର
ଶୁକ୍ର ରା୪-୨୯-୩୭
ଶନି ରା୭-୧୩-୧୩
ରାହୁ ରା୧-୨୭-୫୩
କେତୁ ରା୭-୨୭-୫୩

ରବି ସ୍ୱାତୀତୁଳରେ, ପୂର୍ବାଷାଢ଼ା ଧନୁରେ ମଙ୍ଗଳ ସ୍ୱାତୀତୁଳରେ, ବୁଧ ବିଶାଖାତୁଳରେ (ବ) ବୃହସ୍ପତି ପୂର୍ବଭାଦ୍ରପଦ ମୀନରେ (ବ) ଶୁକ୍ର ଉତ୍ତରଫାଲ୍ଗୁନୀ କନ୍ୟାରେ, ଶନି ଅନୁରାଧା-ବିଛାରେ, ରାହୁ ମୃଗଶିରା ବୃଷରେ ଓ କେତୁ ଜ୍ୟେଷ୍ଠାବିଛାରେ ଅଛନ୍ତି ।

ଶ୍ରୀ ଶୁଭମସ୍ତୁ

ଜାତକଚକ୍ରରେ ଗ୍ରହମାନଙ୍କର **ଆଦ୍ୟ ଅକ୍ଷର** ଯଥା—ରବିକୁ 'ର' ଇତ୍ୟାଦିକ୍ରମେ ଲଗ୍ନକୁ 'ଲ' ଓ ହୋରାଲଗ୍ନକୁ 'ହୋଲ' ବୋଲି ଲେଖାଯାଏ ।

—ଦ୍ୱିତୀୟୋଽଧ୍ୟାୟଃ ସମାପ୍ତଃ—



# ତୃତୀୟୋଽଧ୍ୟାୟଃ

## ଶିଶୁରିଷ୍ଟ ପ୍ରକରଣଂ ।

ଚତୁର୍ବିଂଶତିବର୍ଷାଣି ଯାବଦ୍ ଗଚ୍ଛନ୍ତି ଜନ୍ମିନଃ ।
ଜନ୍ମାରିଷ୍ଟନ୍ତୁ ତାବଦ୍‌ସ୍ୟାତ୍ ଆୟୁର୍ଦାୟଂ ନ ଚିନ୍ତୟେତ୍ ॥

ଜାତକର ୨୪ ବର୍ଷ ପର୍ଯ୍ୟନ୍ତ ଜନ୍ମାରିଷ୍ଟ ରହେ, ଅତଏବ ସେ ପର୍ଯ୍ୟନ୍ତ ଆୟୁର୍ଦାୟ ଚିନ୍ତାକରିବା ଅନାବଶ୍ୟକ ।

### ଋଷ୍ଟ ବିଭାଗଃ

ଆଦ୍ୱାଦଶାବ୍ଦାଜ୍ଜନ୍ତୁନାମାୟୁର୍ଜ୍ଞାତୁଂ ନ ଶକ୍ୟତେ ।
ଜପ ହୋମ ଚିକିତ୍ସାଦ୍ୟୈର୍ବାଲରକ୍ଷାଂ ତୁ କାରୟେତ୍ ।
ପିତୃଦୋର୍ଦୋଷୈର୍ମ୍ରିୟନ୍ତେ କେଚିତ୍ କେଚିଦ୍‌ବାଲଗ୍ରହୈରପି ।
ଅପରେ ରିଷ୍ଟଯୋଗାଚ୍ଚ ତ୍ରିବିଧା ବାଲମୃତ୍ୟବଃ ॥ (ସ.ଚି)

୧୨ ବର୍ଷ ପର୍ଯ୍ୟନ୍ତ ବାଳକର ଆୟୁଷ ନିଶ୍ଚୟ କରିବା କଠିନ। କାରଣ ବାଳକମାନଙ୍କର ମୃତ୍ୟୁ ତିନିପ୍ରକାରରେ ଘଟିଥାଏ । କେହିମାନେ ପିତୃ ମାତୃ କର୍ମଦୋଷରୁ, କେହିମାନେ ଗ୍ରହବଳରୁ, କେହିମାନେ ଶିଶୁରିଷ୍ଟବଳରୁ କାଳମୁଖରେ ପତିତ ହୁଅନ୍ତି; ତେଣୁ ବାଲ୍ୟ ସମୟରେ ଜପ ହୋମାଦିଦ୍ୱାରା ଗ୍ରହଶାନ୍ତି ଓ ଉପଯୁକ୍ତ ଚିକିତ୍ସା ବିଧାନ କରି ବାଳକଙ୍କୁ ରକ୍ଷା କରିବାକୁ ହେବ ।

ଜନ୍ମମାଲୋକ୍ତା ଗ୍ରହାରିଷ୍ଟାଃ

ଗ୍ରହାରିଷ୍ଟଂ

ପାପାଃ ତ୍ରିକୋଣକେନ୍ଦ୍ରେଷୁ ସୌମ୍ୟାଃ ଷଷ୍ଠାଷ୍ଟମବ୍ୟୟଗତାଶ୍ଚେତ୍ ।
ଦୃଷ୍ଟୈର୍ବାଦୟେ ପ୍ରସୂତଃ ସଦ୍ୟଃ ପ୍ରାଣାଂସ୍ତ୍ୟଜତି ଜନ୍ତୁଃ ॥

ପାପଗ୍ରହମାନେ ଲଗ୍ନ, ଚତୁର୍ଥ, ପଞ୍ଚମ, ସପ୍ତମ, ନବମ, ଦଶମରେ ଥିଲେ; ଶୁଭ ଗ୍ରହମାନେ ଷଷ୍ଠ, ଅଷ୍ଟମ, ଦ୍ୱାଦଶରେ ଥିଲେ; ସୂର୍ଯ୍ୟୋଦୟ ସମୟରେ ବାଳକ ଜନ୍ମହେଲେ ତତ୍‌କ୍ଷଣାତ୍ ମରିଯାଏ ।

### ଚନ୍ଦ୍ରରିଷ୍ଟଂ

ଷଷ୍ଠାଷ୍ଟରନ୍ଧ୍ରଗଶ୍ଚନ୍ଦ୍ରଃ କରୈଶ୍ଚ ସନ୍ତ୍ୱ ୱୀକ୍ଷିତଃ ।
ଜାତସ୍ୟ ମୃତ୍ୟୁଦଃ ସଦ୍ୟ ସ୍ତ୍ୱଷ୍ଟବର୍ଷେ ଶୁଭେକ୍ଷିତଃ ॥

ଷଷ୍ଠ, ଅଷ୍ଟମ, ଦ୍ୱାଦଶସ୍ଥ ଚନ୍ଦ୍ର ପାପଯୁକ୍ତ ବା ପାପଦୃଷ୍ଟ ହେଲେ ଜାତକ ଅତ୍ୟଳ୍ପ ସମୟ ମଧ୍ୟରେ ମରିଯାଏ । ଏହି ଚନ୍ଦ୍ର କ୍ଷୀଣ ବା ନିର୍ବଳ ହୋଇଥିଲେ ବାଳକର ସଦ୍ୟ ମୃତ୍ୟୁ ହୁଏ । ଏହିପରି ଥିବା ଚନ୍ଦ୍ରଙ୍କୁ ଶୁଭଗ୍ରହମାନେ ଦେଖୁଥିଲେ ଆଠବର୍ଷଠାରେ ବାଳକର ମୃତ୍ୟୁ ହୁଏ ।

### ମଙ୍ଗଳରିଷ୍ଟଂ

ଭୌମେ ବିଲଗ୍ନ ଶୁଭଦୈରଦୃଷ୍ଟଃ ଷଷ୍ଠାଷ୍ଟନେମ ବାର୍କସୁତେନ ଯୁକ୍ତଃ ।
ସଦ୍ୟଃ ଶିଶୁଂ ହନ୍ତି ବଦେନ୍ମୁନୀନ୍ଦ୍ରଃ ସ୍ଥରେ ଯମାରୌନ ଶୁଭେକ୍ଷିତୌତ ॥

ମଙ୍ଗଳ ଶୁଭଗ୍ରହ କର୍ତ୍ତୃକ ଦୃଷ୍ଟ ନ ହୋଇ ଲଗ୍ନସ୍ଥ ହେଲେ ବା ଶନିଯୁକ୍ତ ହୋଇ ଷଷ୍ଠ, ଅଷ୍ଟମ, ଦ୍ୱାଦଶ ବା ସପ୍ତମରେ ରହିଲେ ବାଳକର ମୃତ୍ୟୁ ଘଟେ ।

### ବୁଧରିଷ୍ଟଂ

କର୍କଟଧାମନ୍ତ ଶଶିଜଃ ଷଷ୍ଠାଷ୍ଟମଗଣୋ ଗୋଜାତ ଲଗାତ୍ ।
ଚନ୍ଦ୍ରେଣ ଦୃଷ୍ଟମୂର୍ତ୍ତିଃ ବର୍ଷଚତୁଷ୍କେଣ ମାରୟତ ॥

ଧନୁ କନ୍ୟା କୁମ୍ଭ ଲଗ୍ନଜାତ ବାଳକର କର୍କଟସ୍ଥ ବୁଧ ଚନ୍ଦ୍ରଦୃଷ୍ଟ ହେଲେ ଚାରି ବର୍ଷଠାରେ ମୃତ୍ୟୁ ହୁଏ ।

### ବୃହସ୍ପତିରିଷ୍ଟଂ

ବୃହସ୍ପତିର୍ଭୌମଗୃହେଽଷ୍ଟମସ୍ଥଃ ସୂର୍ଯ୍ୟେନ୍ଦୁଭୌମାର୍କଜଦୃଷ୍ଟମୂର୍ତ୍ତିଃ ।
ବର୍ଷୈସ୍ତ୍ରିଭିର୍ଭାର୍ଗବଦୃଷ୍ଟି ହୀନୋ ଲୋକାନ୍ତରଂ ପ୍ରାପୟତି ପ୍ରସୂତଂ ॥

ବୃହସ୍ପତି ବା ମେଷ ବୃଶ୍ଚିକ ରାଶିରେ ଥିବେ, କନ୍ୟା ବା ମୀନ ଲଗ୍ନ ହୋଇଥିବ ବୃହସ୍ପତିଙ୍କୁ ରବି, ପାପଚନ୍ଦ୍ର, ମଙ୍ଗଳ, ଶନି ଏମାନେ ଦେଖୁଥିବେ ଏପରି ହେଲେ ତିନି ବର୍ଷଠାରେ ଜାତକର ମୃତ୍ୟୁ ଘଟେ । ଶୁକ୍ର ବୃହସ୍ପତିଙ୍କୁ ଦେଖୁଥିଲେ ରିଷ୍ଟଭଙ୍ଗ ହୁଏ ।

### ଶୁକ୍ରରିଷ୍ଟଂ

ରବିଶଶୀ ଭବନେ ଶୁକ୍ରୋ ଦ୍ୱାଦଶ ଷଷ୍ଠ ରନ୍ଧ୍ରଗୋଽଶୁଭୈଃ ସର୍ବୈଃ ।
ଦୃଷ୍ଟଃ କରୋତି ମରଣଂ ଷଡ୍ଭିର୍ବର୍ଷୈଃ କମିହ ଜାତକଂ ।

ସିଂହ ବା କର୍କଟରେ ଶୁକ୍ର ଥାଇ ଲଗ୍ନଠାରୁ ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ ଏବଂ ଶୁକ୍ରଙ୍କୁ ପାପଗ୍ରହମାନେ ଦେଖୁଥିଲେ ବାଳକର ମୃତ୍ୟୁ ଛଅ ବର୍ଷଠାରେ ହୁଏ ।

### ଶନିରିଷ୍ଟଂ

ମାରୟତି ଷୋଡଶାହାତ ଶନୈଶ୍ଚରଃ ପାପସାକ୍ଷିତୋ ଲଗ୍ନେ ।
ସଯୁକ୍ତୋ ମାସେନ ବର୍ଷାତ୍ତୁ ବସ୍ତୁ ମାରୟତି ॥

ଶନି ପାପଗ୍ରହ ଦୃଷ୍ଟ ହୋଇ ଲଗ୍ନରେ ଥିଲେ ବାଳକକୁ ୧୬ ଦିନରେ, ପାପଗ୍ରହ ଯୁକ୍ତ ହୋଇଥିଲେ ୧୬ ମାସରେ, ପାପଗ୍ରହ ଯୁକ୍ତ ବା ଦୃଷ୍ଟ ନ ହେଲେ ୧୬ ବର୍ଷରେ ଜାତକ ମରେ ।

ତୁଲା କୋଦଣ୍ଡ ମୀନସ୍ଥୋ ଲଗ୍ନଗଶ୍ଚ ଶନୈଶ୍ଚରଃ ।
କରୋତି ବିପୁଲଂ ଭାଗ୍ୟଂ ଅନ୍ୟରାଶୌ ଗତାୟୁଷଃ ॥

ତୁଲା, ଧନୁ, ମୀନ ଲଗ୍ନସ୍ଥ ଶନି ଦୋଷକାରକ ହେଲେ ମଧ୍ୟ ମାରେ ନାହିଁ । ଶୁଭକାରକ ହେଲେ ଭାଗ୍ୟବୃଦ୍ଧି କରାଏ । ଅନ୍ୟ ରାଶିଗତ ଲଗ୍ନସ୍ଥ ଶନି ମାରକ ହୁଏ ।

ଅନ୍ୟଚ—ସ୍ୱର୍ଚ୍ଚୋ ସ୍ୱକୀୟଭବନେ କ୍ଷିତିପାଲତୁଲ୍ୟୋ
ଲଗ୍ନେର୍କଜେ ଭବତି ଦେଶପୁରାଧିନାଥଃ ।
ଶେଷେଷୁ ଦୁଃଖଗଦପୀଡ଼ିତ ଏବ ବାଲ୍ୟେ
ଦାରିଦ୍ର୍ୟ କାମବଶଗୋ ମଲିନୋଽଲସଶ୍ଚ ॥ ଜ୍ୟୋ, ଅ

ତୁଲା, ଧନୁ, ମକର, କୁମ୍ଭ ବା ମୀନ ଲଗ୍ନସ୍ଥ ଶନି ଦେଶ, ଗ୍ରାମାଦିପ୍ରଭୁ କରାଏ । ଅନ୍ୟ ରାଶିଗତ ଲଗ୍ନସ୍ଥ ଶନି ବାଲ୍ୟରୋଗୀ କରାଏ, ଶରୀର କ୍ଷୀଣ କରାଏ, ବାଳକ ଦରିଦ୍ର କାମାର୍ତ୍ତ, ମଳିନବେଶଧାରୀ ଓ ଅଳସୁଆ ହୁଏ ।

ସନ୍ତୁଷ୍ଟଂ

ରନ୍ଧ୍ରସ୍ଥଳ୍ପଷ୍ଟମସ୍ଥୋ ମରଣାୟ ବୀକ୍ଷିତୋ ଭବତି ପାପୈଃ ।
ବର୍ଷୈ ର୍ଦ୍ଦଦନ୍ତ ଦଶଭିଃ ଷୋଡ଼ଶଭିଃ କେଚଦାଗୃହୀୟାଃ ॥
ପଞ୍ଚମ ନବମ କୋଦୟକୁତହିତଜ୍ଞୋ ରଚଂ ହରତି ସଦ୍ୟଃ ।
ପାପୈର୍ଦ୍ଦୃଶ୍ୟମାଣଃ ସପ୍ତମଦିନୈ ସ୍ତି ଚୈବଷୈଃ ॥

ଚନ୍ଦ୍ର ପାପଗ୍ରହମାନଙ୍କ ସହିତ ଯୁକ୍ତ ହୋଇ କିମ୍ବା ସେମାନଙ୍କ କର୍ତ୍ତୃକ ଦୃଷ୍ଟ ହୋଇ କେନ୍ଦ୍ର ସ୍ଥାନରେ ରହିଲେ ୧୦ ବର୍ଷରେ କିମ୍ବା ୧୬ ବର୍ଷଠାରେ ବାଳକର ମୃତ୍ୟୁ ଘଟେ । ପାପଦୃଷ୍ଟ ଚନ୍ଦ୍ର କୁମ୍ଭ, ସିଂହ ବା ବୃଶ୍ଚିକ ଲଗ୍ନସ୍ଥ ହେଲେ ସପ୍ତମ ବର୍ଷରେ ଜାତକର ମରଣ ହୁଏ ।

### କେତୁବିଷ୍ଟଂ

କେତୁର୍ଯସ୍ମିନ୍ନୃକ୍ଷେଽଭ୍ୟୁଦିତ ସ୍ତସ୍ମିନ୍ ପ୍ରସୂୟତେ ଜନ୍ତୁଃ ।
ରୌଦ୍ରେ ସର୍ପ ମୂହୂର୍ତ୍ତେ ବା ପ୍ରାଣୈଃ ସନ୍ତ୍ୟଜ୍ୟତେ ଶୀଘ୍ରଂ ॥

କେତୁ ଯେଉଁ ନକ୍ଷତ୍ରରେ ଥିବେ ସେହି ନକ୍ଷତ୍ରରେ ବାଳକ ଜନ୍ମ ହେଲେ ଓ ଜନ୍ମ ମୁହୂର୍ତ୍ତ ଅର୍ଦ୍ରା ବା ଅଶ୍ଳେଷା ହୋଇଥିଲେ ବାଳକ ମରିଯାଏ । ଦିନକୁ ୧୫ ଭାଗ କରାଯାଇ ଅଛି । ରାତିକୁ ମଧ୍ୟ ୧୫ ଭାଗ କରାଯାଇ ଅଛି । ପ୍ରତ୍ୟେକ ଭାଗର ନାମ ମୁହୂର୍ତ୍ତ । ଦିବସରେ ପ୍ରଥମ ମୁହୂର୍ତ୍ତ ଆର୍ଦ୍ରାର ଓ ଦ୍ୱିତୀୟ ମୁହୂର୍ତ୍ତ ଅଶ୍ଳେଷାର ଅଟେ । ରାତିରେ ସେପରି ପ୍ରଥମ ମୁହୂର୍ତ୍ତ ଅର୍ଦ୍ରାର ଅଟେ । ରାତିରେ ଅଶ୍ଳେଷାର ମୁହୂର୍ତ୍ତ ନାହିଁ ।

### ବିବିଧ ରିଷ୍ଟଯୋଗାଃ ।

ରିପୁବ୍ୟୟଗତୈଃ ପାପୈର୍ଯଦି ବା ଧନମୃତ୍ୟୁଗୈଃ ॥
ଲଗ୍ନେ ବା ପାପମଧ୍ୟସ୍ଥେ ଦ୍ୟୂନେ ବା ମୃତ୍ୟୁମାପ୍ନୁୟାତ୍ ॥

ପାପଗ୍ରହମାନେ ୬ଷ୍ଠ, ୨ୟ, ୮ମ, ୧୨ଶରେ ଥିଲେ ବା ଲଗ୍ନ ଓ ସପ୍ତମ ପାପ ମଧ୍ୟଗତ ହେଲେ ବାଳକର ମୃତ୍ୟୁ ଘଟେ ।

ଚନ୍ଦ୍ରଃ ଶନିକୁଜୌ ଲଗ୍ନେ ନବମେ ଧିସ୍ତଗେ ଯଦା ।
ଜୀବୋ ଲଗ୍ନମନାଲୋକ ତସ୍ୟ ଜାତସ୍ୟ କିଂ ଫଳଂ ॥

୮ ମ୍ରେ ପାପଚନ୍ଦ୍ର, ଷଷ୍ଠ ଓ ମଙ୍ଗଳ ଥିଲେ, ନବମରେ ରବି ଥିଲେ, ବୃହସ୍ପତି ଲଗ୍ନକୁ ଦେଖୁ ନ ଥିଲେ ବାଳକର ଜନ୍ମ ନଷ୍ଟପ୍ରୟୋଜନ ଅର୍ଥାତ୍ ସେ ମରିଯିବ ।

ଜୀବେ ବିଲଗ୍ନେ ମିଥୁନେ ତୁଳାୟାଂ ଶୁକ୍ରେଣ ଯୁକ୍ତେ ଶଶିସୂନୁନାପି
ପାପୈର୍ଦୃଷ୍ଟେ ମୃତ୍ୟୁଗଶିଶ୍ଚ ଚେତ୍ତଦା ଜୀବେଦ୍ବର୍ଷଂ ଶୃଷ୍ଟମଂ ଚୈବ ବାଳଃ ॥
ଜ୍ୟୋ,ପ୍ର ।

ବୃହସ୍ପତି ମିଥୁନ ଲଗ୍ନରେ ଥାଇ ଶୁକ୍ରଯୁକ୍ତ ହେଲେ ବା ତୁଳା ଲଗ୍ନରେ ଥାଇ ବୁଧ ଯୁକ୍ତ ହେଲେ ବା ଅଷ୍ଟମରେ ଥାଇ ପାପଦୃଷ୍ଟ ହେଲେ ଅଷ୍ଟମ ବର୍ଷରେ ଜାତକ ମରେ ।

## ପାପଯୁତ ଚନ୍ଦ୍ରରିଷ୍ଟଂ

ଯୁତ ମଦନ ନବାନ୍ତ୍ୟ ଲଗ୍ନରନ୍ଧ୍ରେଷ୍ୱଶୁଭଯୁତୋ ମରଣାୟ ଶୀତରଶ୍ମିଃ ।
ଭୃଗୁସୁତ ଶଶିପୁତ୍ରଦେବପୂଜ୍ୟୈର୍ୟଦି ବଳଭିର୍ନଯୁତୋଽବଲୋକିତୋ ବା

ପାପଯୁକ୍ତ ଚନ୍ଦ୍ର ପଞ୍ଚମ, ସପ୍ତମ, ନବମ, ଦ୍ୱାଦଶ ଲଗ୍ନ ବା ଅଷ୍ଟମ ସ୍ଥାନରେ ଥିଲେ ବଳବାନ୍ ବୃହସ୍ପତି, ବୁଧ, ଶୁକ୍ରଙ୍କ ସହ ଯୁକ୍ତ ବା ଏମାନଙ୍କ କର୍ତ୍ତୃକ ଦୃଷ୍ଟି ହୋଇ ନ ଥିଲେ ବାଳକର ମୃତ୍ୟୁ ଘଟେ ।

## ପାପମଧ୍ୟଗଚନ୍ଦ୍ରରିଷ୍ଟଂ

ଦ୍ୟୂନ ଚତୁରସ୍ର ଯଷ୍ଟେ ପାପଦ୍ୱୟମଧ୍ୟଗେ ଶଶିନ ଜାତଃ ।
ବିଲୟଂ ପ୍ରୟାତି ନିୟତଂ ଦେବୈରପି ରକ୍ଷିତୋ ବାଳଃ ॥

ପାପ ମଧ୍ୟଗତ ଚନ୍ଦ୍ର ଲଗ୍ନର ୭ମ, ୪ର୍ଥ, ୮ମ ସ୍ଥାନରେ ଥିଲେ ବାଳକର ମୃତ୍ୟୁ ଅନିବାର୍ଯ୍ୟ ।

## କ୍ଷୀଣଚନ୍ଦ୍ରରିଷ୍ଟଂ

କ୍ଷୀଣେ ଶଶିନି ବିଲଗ୍ନେ ପାପୈଃ କେନ୍ଦ୍ରେଷୁମୂର୍ତ୍ତିସଂସ୍ଥୈର୍ବା ।
ଭବତି ବିପତ୍ତିରବଶ୍ୟଂ ଯବନାଧିପତେର୍ମତଞ୍ଚୈତତ୍ ॥

ପାପଗ୍ରହମାନେ କେନ୍ଦ୍ର ବା ଅଷ୍ଟମରେ ଥିଲେ, କ୍ଷୀଣଚନ୍ଦ୍ର ଲଗ୍ନସ୍ଥ ହେଲେ, ବାଳକର ବିପତ୍ତି ଘଟେ ବୋଲି ଯବନେଶ୍ୱରଙ୍କର ମତ । ଉପରୋକ୍ତ ସମସ୍ତ ଚନ୍ଦ୍ରରିଷ୍ଟ କାଳ ଏକବର୍ଷ ପର୍ଯ୍ୟନ୍ତ ।

## ଅଂଶ ବିଶେଷସ୍ଥ ଚନ୍ଦ୍ରରିଷ୍ଟଂ

ମାତଙ୍ଗୈର୍ନବଭିଶ୍ଚ ସମନସ୍ସୁକୈର୍ନେତ୍ରାଶ୍ୱିଭିଃ ଶାୟକୈ—
ରେକୋନାମୃଧିଭିସ୍ତ୍ରିଲୋଚନମିତୈର୍ଦ୍ଧ୍ୟା ଚ ବଂଶୋନ୍ମିତୈଃ ।
ରୁଦ୍ରୈର୍ଦ୍ଦିଗ୍‌ଭିରଳ୍‌ବୈର୍ଘଟିଦହଭବେନ୍ନେଷାଦ୍‌ସଂସ୍ଥୋବିଧୁଃ ।
ଇତ୍ୟୈର୍ଭାଗସମୈଃ କରୋତି ନିଧନଂ କାଲୋଽଯମବ୍ଦୋଦିତଃ ॥

ଶ, ଦ୍ରୋ ।

ଚନ୍ଦ୍ର ମେଷ ରାଶିର ୮ ଅଂଶରେ ଥିଲେ ରିଷ୍ଟ ହୁଏ । ରିଷ୍ଟକାଳ ୮ମ ବର୍ଷ । ସେହିପରି ବୃଷର ୯ ଅଂଶରେ, ମିଥୁନରେ ୨୩ ଅଂଶରେ, କର୍କଟରେ ୨୨ ଅଂଶରେ, ସିଂହର ୫ ଅଂଶରେ, କନ୍ୟାର ୧ ଅଂଶରେ ତୁଳାର ୪ ଅଂଶରେ, ବୃଶ୍ଚିକର ୨୩ ଅଂଶରେ, ଧନୁର ୧୮ ଅଂଶରେ, ମକରର ୨୦ ଅଂଶରେ, କୁମ୍ଭର ୨୧ ଅଂଶରେ ଓ ମୀନର ୧୦ ଅଂଶରେ ଥିଲେ ଅଂଶ ପରିମାଣ ବର୍ଷରେ ଚନ୍ଦ୍ର ରିଷ୍ଟଦାୟକ ହୁଏ ।

## ତିଥି ନକ୍ଷତ୍ରଯୋଗରିଷ୍ଟଂ

ପୂର୍ବାପଦ୍ମ୍ୟୁତ୍ତରାଷାଢ଼ା ନବମ୍ୟାଂ କୃତ୍ତିକା ଯଦା ।
ପୂର୍ବଭାଦ୍ରପଦାଷ୍ଟମ୍ୟାମେକାଦଶ୍ୟାଞ୍ଚ ରୋହିଣୀ

ଦ୍ୱାଦଶ୍ୟାନ୍ତୁ ସଦାଶ୍ଳେଷା ତ୍ରୟୋଦଶ୍ୟାଂ ସଦା ମଘା ।
ଏଭିର୍ନାତୋ ନ ଜୀବେତ୍ ଯଦି ଶକ୍ରସମୋ ଭବେତ୍ ॥
(ଜ୍ୟୋ, ପ୍ର,)

ପ୍ରତିପଦାରେ ଉତ୍ତରାଷାଢା, ନବମୀରେ କୃତ୍ତିକା, ଅଷ୍ଟମୀରେ ପୂର୍ବଭାଦ୍ରପଦ, ଏକାଦଶୀରେ ରୋହିଣୀ, ଦ୍ୱାଦଶୀରେ ଅଶ୍ଳେଷା, ତ୍ରୟୋଦଶୀରେ ମଘା ଏପରି ଯୋଗ ହୋଇଥିଲେ ଏହି ଏହି ଦିବସଜାତ ବାଳକ ବଞ୍ଚିବା କଷ୍ଟକର ।

ଦ୍ରେକ୍କାଣ ରିଷ୍ଟଂ

ଲଗ୍ନେ ଯେ ଦ୍ରେକ୍କାଣା ନିଗଡ଼ାହିବିହଙ୍ଗମପାଶଧରସଂଜ୍ଞାଃ ।
ମରଣାୟ ସପ୍ତବର୍ଷୈଃ କ୍ରୂରଯୁତା ନ ଶୁଭଦୃଷ୍ଟାଃ ॥

ମୀନ ଓ କର୍କଟର ଶେଷ ଦ୍ରେକ୍କାଣ, ବୃଶ୍ଚିକର ପ୍ରଥମ ଓ ଦ୍ୱିତୀୟ ଦ୍ରେକ୍କାଣକୁ ଯଥାକ୍ରମେ ନିଗଡ଼ ଓ ସର୍ପ ଦ୍ରେକ୍କାଣ ବୋଲିଯାଏ । ତୁଳର ଦ୍ୱିତୀୟ ଓ ତୃତୀୟ, ସିଂହର ତୃତୀୟ ଓ କୁମ୍ଭର ପ୍ରଥମ ଦ୍ରେକ୍କାଣକୁ ପକ୍ଷୀ ଦ୍ରେକ୍କାଣ ବୋଲିଯାଏ । ବୃଷର ପ୍ରଥମ, ମକରର ପ୍ରଥମ ଓ ତୃତୀୟ ଦ୍ରେକ୍କାଣକୁ ପାଶଧର ଦ୍ରେକ୍କାଣ ବୋଲିଯାଏ । ଉପରୋକ୍ତ ଦ୍ରେକ୍କାଣମାନଙ୍କରେ ଜନ୍ମ ହେଲେ ଓ ଏହି ଏହି ଦ୍ରେକ୍କାଣମାନେ ପାପଗ୍ରହ ଯୁକ୍ତ ହୋଇ ସେହିମାନଙ୍କର ଅଧିପତିକର୍ତ୍ତୃକ ଦୃଷ୍ଟ ନ ହେଲେ ଜାତକର ମୃତ୍ୟୁ ଘଟେ ।

ଦ୍ରେକ୍କାଣ ବିଶେଷ ରିଷ୍ଟଂ

ମେଷର ଦ୍ୱିତୀୟ ବା ବୃଷର ପ୍ରଥମ ଦ୍ରେକ୍କାଣରେ ଜନ୍ମ ହେଲେ ଜାତକ ୭ ବର୍ଷ ଯାଏ ମୃତ୍ୟୁଯୋଗ ଯୁକ୍ତ ହୁଏ । ବୃଷର ଦ୍ୱିତୀୟ ଦ୍ରେକ୍କାଣ ମୃତ୍ୟୁତୁଲ୍ୟ ପୀଡ଼ା ଦାୟକରେ । ତୃତୀୟ ଦ୍ରେକ୍କାଣରେ ଜନ୍ମହେଲେ ୬ମାସ

ପର୍ଯ୍ୟନ୍ତ ପୀଡ଼ା ହୁଏ । ମିଥୁନର ପ୍ରଥମ ଦ୍ରେକ୍କାଣରେ ଜାତ ବାଳକ ୬ମାସ ପର୍ଯ୍ୟନ୍ତ ପୀଡ଼ିତ ହୁଏ । ଦ୍ୱିତୀୟ ଦ୍ରେକ୍କାଣଜାତ ବାଳକ ୩ ବର୍ଷ ୬ ମାସ ପର୍ଯ୍ୟନ୍ତ କଷ୍ଟ ଭୋଗକରେ । ତୃତୀୟ ଦ୍ରେକ୍କାଣରେ ଜନ୍ମ ହେଲେ ଚତୁର୍ଥ ବର୍ଷରେ ମାରକ ତୁଲ୍ୟ ପୀଡ଼ା ହୁଏ । କର୍କଟରେ ପ୍ରଥମ ଦ୍ରେକ୍କାଣରେ ଜନ୍ମ ହେଲେ ବାଳକ ୬ ବର୍ଷ ଯାଏ ରୁଗ୍ଣ ହୁଏ । ଦ୍ୱିତୀୟ ଦ୍ରେକ୍କାଣରେ ୭ ବର୍ଷ ଯାଏ ରୋଗୀ ହୁଏ । ସିଂହର ପ୍ରଥମ ଦ୍ରେକ୍କାଣରେ ଜନ୍ମ ହେଲେ ୬ ମାସ ପର୍ଯ୍ୟନ୍ତ ପୀଡ଼ା ହୁଏ । ଦ୍ୱିତୀୟ ଦ୍ରେକକାଣଜାତ ବାଳକ ୭ ବର୍ଷ ପର୍ଯ୍ୟନ୍ତ ବ୍ରଣରୋଗାକ୍ରାନ୍ତ ହୁଏ । ତୁଳର ପ୍ରଥମ ଦ୍ରେକ୍କାଣଜାତ ବାଳକ ୩ୟ ଓ ୯ମ ମାସରେ ଶୂଳରୋଗାକ୍ରାନ୍ତ ହୁଏ । ୨ ବର୍ଷ ୬ ମାସଠାରେ ମୃତ୍ୟୁ-ତୁଲ୍ୟ ପୀଡ଼ା ହୁଏ । ବୃଶ୍ଚିକର ପ୍ରଥମ ଦ୍ରେକ୍କାଣରେ ଜନ୍ମ ହେଲେ [illegible]ବର୍ଷ ଯାଏ ରୋଗୀ ହୁଏ । ଧନୁର ପ୍ରଥମ ଦ୍ରେକ୍କାଣ ଜାତକକୁ ୨[illegible]ଦିନରେ ପୀଡ଼ା ହୁଏ । ୧ ବର୍ଷ ୧୦ ମାସଠାରେ ମାରକତୁଲ୍ୟ ପୀଡ଼ା ଭୋଗକରେ । ଦ୍ୱିତୀୟ ଦ୍ରେକ୍କାଣଜାତ ବାଳକର ୧୨ ବର୍ଷ ପର୍ଯ୍ୟନ୍ତ ପୀଡ଼ା ହୁଏ । ତୃତୀୟ ଦ୍ରେକ୍କାଣରେ ଚତୁର୍ଥ ବର୍ଷରେ ମାରକତୁଲ୍ୟ ପୀଡ଼ା ହୁଏ । ମକରର ପ୍ରଥମ ଦ୍ରେକ୍କାଣଜାତ ବାଳକ ୧ ବର୍ଷ ପର୍ଯ୍ୟନ୍ତ ରୁଗ୍ଣ ହୁଏ । ଦ୍ୱିତୀୟ ଦ୍ରେକ୍କାଣଜାତ ବାଳକ ୨ୟ ବର୍ଷରେ ପୀଡିତ ହୁଏ । ତୃତୀୟ ଦ୍ରେକ୍କାଣରେ ଜାତ ହେଲେ ବାଳକର ପିତୃପୀଡ଼ା ହୁଏ । କୁମ୍ଭର ପ୍ରଥମ ଦ୍ରେକ୍କାଣରେ ୧୦ ମାସ ଯାଏ, ଦ୍ୱିତୀୟ ଦ୍ରେକାଣରେ ୬ ମାସ ଓ ତୃତୀୟ ଦ୍ରେକ୍କାଣଜାତ ବାଳକ ୨ ବର୍ଷ ପର୍ଯ୍ୟନ୍ତ ରୋଗୀ ହୁଏ । ଦ୍ରେକ୍କାଣରେ ଅଧିପତି ଶୁଭଗ୍ରହ ହୋଇ ଦ୍ରେକ୍କାଣକୁ ଦେଖୁଥିଲେ ଉପରୋକ୍ତ ସମସ୍ତ ଦ୍ରେକ୍କାଣରିଷ୍ଟ ଭଙ୍ଗ ହୁଏ । (ଜ୍ୟୋ, ସୂ,)

### ଲଗ୍ନାଧିପ ଓ ଜନ୍ମାଧିପ ରିଷ୍ଟଂ

ଲଗ୍ନାଧିପଜନ୍ମପତୀ ଷଷ୍ଠାଷ୍ଟମ ରିଫ ଗୌ ପ୍ରସବକାଳେ ।
ଅସ୍ତମିତୌ ମରଣକରୌ ଯଦିପ୍ରମିତୈର୍ବଦେଦ୍‌ବର୍ଷୈଃ ॥

ଲଗ୍ନାଧିପତି ଓ ଜନ୍ମରାଶିର ଅଧିପତି ଷଷ୍ଠ, ଅଷ୍ଟମ ତଥା ଦ୍ୱାଦଶରେ ଥିଲେ ନଭୂ ବା ଅସ୍ତମିତ ହୋଇଥିଲେ ଏହିମାନେ ଯେଉଁ ଯେଉଁ ସ୍ଥିତିରେ ଥିବେ ସେହି ସେହି ଗଣି ସଂଖ୍ୟକ ବର୍ଷରେ ଜାତକର ମୃତ୍ୟୁ ଘଟେ (ମେଷରେ ଥିଲେ ବର୍ଷକଠାରେ-କ୍ରମେ)

## ଅଷ୍ଟମସ୍ଥ ପାପଗ୍ରହାରିଷ୍ଟଂ

ଏକ ପାପୋଷ୍ଟମଗଃ ଶତ୍ରୁଗେହୀ ଶତ୍ରୁଖିଷିତୋ ବର୍ଷାନ୍ତ୍ ।
ମାରୟତି ନରଂ ପ୍ରସୂତଂ ସୁଧାରସେ ଯେନ ପିତୋଽପି ॥

ପାପଗ୍ରହ ଅଷ୍ଟମସ୍ଥ ହୋଇ ଶତ୍ରୁଗୃହରେ ଥିଲେ ଓ ଶତ୍ରୁଗ୍ରହ ତାକୁ ଦେଖୁଥିଲେ ବର୍ଷକଠାରେ ଜାତକ ମରେ ।

## ଅଷ୍ଟମାଧିପସ୍ଥିତାରିଷ୍ଟଂ

ଗୋମେଷସିଂହେ ଦଶମେ କୁଳୀରେ
କୀଟାଖ୍ୟଗେ ମୀନମୃଗେ ଚତୁର୍ଥେ ।
ତୁଳାବଳାଖ୍ୟଧଟେ ନୟୁଗ୍ମେ
ଲଗ୍ନେ ସ୍ଥିତେ ମୃତ୍ୟୁପତୌ ତ ଋଷ୍ଟଂ ॥

ବୃଷ, ମେଷ ଓ ସିଂହ ଲଗ୍ନଜାତ ବ୍ୟକ୍ତିର ଅଷ୍ଟମାଧିପ ଦଶମରେ ଥିଲେ ଋଷ୍ଟ ହୁଏ । କର୍କଟ ଓ ବୃଶ୍ଚିକ ଲଗ୍ନଜାତ ବ୍ୟକ୍ତିର ଅଷ୍ଟମାଧିପତି ସପ୍ତମରେ ଥିଲେ ଋଷ୍ଟ ହୁଏ । ମକର ଓ ମୀନ ଲଗ୍ନଜାତ ବ୍ୟକ୍ତିର ଅଷ୍ଟମାଧିପତି ଚତୁର୍ଥରେ ଥିଲେ ଋଷ୍ଟ ହୁଏ । ତୁଳା, କନ୍ୟା, ଧନୁ, କୁମ୍ଭ ଓ ମିଥୁନ ଲଗ୍ନଜାତ ବ୍ୟକ୍ତିମାନଙ୍କର ଅଷ୍ଟମାଧିପତି ଲଗ୍ନରେ ଥିଲେ ଋଷ୍ଟ ହୁଏ ।

## ଶିଶୁପତାକା ଚକ୍ରଂ

ତିର୍ଯ୍ୟଗୂର୍ଦ୍ଧ୍ୱଗତା ରେଖାସ୍ତିସ୍ରୋ ଦେୟାଃ ପତାକୟା ।
ସୂତାଃ କାର୍ଯ୍ୟାର୍ବେଧବଦା ସର୍ବସଙ୍ଗତରେଖୟା ॥
ଦକ୍ଷସ୍ତମ୍ଭୋର୍ଦ୍ଧ୍ୱଗତରେଖାତୋ ବାମଂ ମେଷାଦ୍ୟରାଶୟଃ ।
ପଞ୍ଚାଷ୍ଟ ଯୁଗ୍ମ ଦଂଶାଷ୍ଟ ଷଡ୍‌ରସେନ୍ଦ୍ରାଗ୍ନି ସାଗରାଃ ॥
କର୍କଟାନ୍ମୀନପର୍ଯ୍ୟନ୍ତମଙ୍କାନ୍‌ଦେୟା ଯଥାକ୍ରମଂ ।
ବାଲସ୍ୟ ଜନ୍ମକାଳୀନଗ୍ରହ ଲଗ୍ନମଜାଦିଷୁ ॥
ବିନ୍ୟସ୍ୟ ଚକ୍ରମ୍ବେଦ୍ ପ୍ରାଜ୍ଞଃ ଶୁଭାଶୁଭ ଯଥାକ୍ରମଂ ।
ଶୁଭଦଣ୍ଡ ଯୋଗବେଧୈର୍ଲଗ୍ନାଦ୍‌ବାଲସ୍ୟ ଶୋଭନଂ ।
ପାପଦଣ୍ଡ ଯୋଗବେଧୈ ରାଶ୍ୟଙ୍କାଦ୍ରିଷ୍ଟି କାଲବର୍ତ୍ତ ॥ ଜା, ଚ,

ପତାକାଚକ୍ର ଲେଖିବା ନିୟମ—ପୂର୍ବ ପଶ୍ଚିମ କରି ତିନୋଟି ରେଖା ପକାଇ ତା ଉପରେ ଉତ୍ତର ଦକ୍ଷିଣ କରି ସିଧାସିଧେ ତିନୋଟି ରେଖା ପକାଇବେ । ଊର୍ଦ୍ଧ୍ୱ କରି ପକାଇଥିବା ତିନୋଟି ରେଖାର ବାମାବର୍ତ୍ତରେ ମେଷାଦି କ୍ରମେ ରାଶିମାନଙ୍କର ନାମ ନିର୍ଦ୍ଦେଶ କରିବେ । ତାପରେ କର୍କଟରେ ୫, ସିଂହରେ ୮, କନ୍ୟାରେ ୨, ତୁଳାରେ ୧୦, ବିଛାରେ ୬, ଧନୁରେ ୧୦, ମକରରେ ୧୪, କୁମ୍ଭରେ ୩, ଓ ମୀନରେ ୪ ଅଙ୍କ ଲେଖିବେ । ଗ୍ରହମାନେ ଲଗ୍ନଚକ୍ରରେ ଯେ ଯେଉଁରାଶିରେ ଥିବେ ତାହାଙ୍କୁ ସେହି ସେହି ରାଶିରେ ଲେଖିବେ । ତାପରେ କେଉଁ ଗ୍ରହ କାହା ସହିତ ବେଧ ହେଲା ଦେଖି ଫଳାଫଳ ନିର୍ଣ୍ଣୟ କରିବେ ।

ଶୁଭଗ୍ରହ ବେଧରେ ଶୁଭଦଣ୍ଡରେ ଜନ୍ମିଲେ ବାଳକର ଶୁଭ ହୁଏ । ପାପ ଦଣ୍ଡରେ ପାପଗ୍ରହ ବେଧ ହେଲେ ରାଶିଚିହ୍ନିତ ଅଙ୍କସଂଖ୍ୟା ଦେଖି

ବାଳକର ରିଷ୍ଟ ନିଶ୍ଚୟ କରିବେ । ଜନ୍ମରେ ପତାକୀଚକ୍ର ଦେଖିଯାଇ ପୂର୍ବୋକ୍ତ ଜାତକର ଗ୍ରହସ୍ଫୁଟ ଦିଆଗଲା ।




### ବେଧ ନିର୍ଣ୍ଣୟଃ

କର୍କି ମୀନଧନୁର୍ଭ୍ୟାଞ୍ଚ ବୃଷେଃ କୀଟଘଟେନ ଚ ।
ସ୍ତ୍ରିୟା ସ୍ତ୍ରୀଳମୃଗାଭ୍ୟାଞ୍ଚ ଘଟେ ମୀନେନ କନ୍ୟୟା ॥
ବୃଶ୍ଚିକେ କଲଶେ ଚୈବ ପଞ୍ଚାସ୍ୟେ କଲଶେ ତଥା ।
ଧନୁଷୋର୍ମୃଗକର୍କିଭ୍ୟାଂ ମକରେ ଧନୁଷା ସ୍ତ୍ରିୟାଃ ॥
ଘଟସ୍ୟ କୀଟସିଂହାଭ୍ୟାଂ ମିଳନଂ କଥିତଂ ବୁଧୈଃ ।
ମୀନେ କର୍କିତୁଲାଭ୍ୟାଞ୍ଚ ମୀନସ୍ତ୍ରୀ ଧନୁଷା ତ୍ୱଜେ ॥
ତୁଲାକର୍କିମୃଗୈର୍ଦ୍ୱନ୍ଦ୍ୱେ ବୃଷକୀଟଘଟୈର୍ବୃଷେ ।
ସିଂହବଦ୍‌ବେଧ ଏତେଷୁ ବାମ ସମ୍ମୁଖ ଦକ୍ଷିଣେ ॥

କର୍କଟର ମୀନ ଓ ଧନୁର ସହିତ, ସିଂହର ବୃଷ ଓ କୁମ୍ଭର ସହିତ, କନ୍ୟାର ତୁଳା ଓ ମକରର ସହିତ, ତୁଳାର ମୀନ ଓ କନ୍ୟାର

ସହିତ, ବୃଶ୍ଚିକର ସିଂହ ଓ କୁମ୍ଭର ସହିତ, ଧନୁର ମକର ଓ କର୍କଟର ସହିତ, କୁମ୍ଭର ସିଂହ ଓ ବୃଶ୍ଚିକର ସହିତ, ମୀନର କର୍କଟ ଓ ତୁଳାର ସହିତ, ମେଷର ମୀନ, କନ୍ୟା ଓ ଧନୁର ସହିତ, ବୃଷର ସିଂହ, କୁମ୍ଭ ଓ ବଛର ସହିତ, ମିଥୁନର କର୍କଟ, ତୁଳା ଓ ମକରର ସହିତ ବେଧ ହୁଏ ।

## ବେଧାଙ୍କନିର୍ଣ୍ଣୟଃ

ଏକୋନବିଂଶତିଃ କର୍କେ ସିଂହେ ସପ୍ତଦଶୈବ ତୁ ।
ଷଟ୍‌ବିଂଶଦବଲାୟାଞ୍ଚ ଷଡ଼୍‌ବିଂଶତ୍ତୁଲାଧରେ ॥
ବୃଶ୍ଚିକେ ସିଂହବଜ୍ଜ୍ଞେୟ ମୂନତ୍ରିଂଶଚ୍ଛରାସନେ ।
ଷଡ଼୍‌ବିଂଶ ମକରେ ଜ୍ଞେୟଂ କୁମ୍ଭେ ସପ୍ତଦଶ ସ୍ମୃତାଃ ॥
ନବଯୁଗ୍ମେ ତଥା ମୀନେ ମେଷେ ଷଡ଼୍‌ଦଶଭିସ୍ତଥା ॥
ବୃଷଭେ ଚ ଯଥା ସିଂହେ ଯୁଗ୍ମେଽଙ୍କହରଲୋଚନେ ।
ନିତସ୍ଥାଙ୍କାଖ୍ୟସ୍ଥଂ ସଂଖ୍ୟା ଦିନ ମାସାଦି ନିର୍ଣ୍ଣୟେ ।
ଏକାଙ୍କାଦ୍ ଦ୍ୱିଗୁଣାଙ୍କାଦ୍‌ବା କ୍ୱଚିଦ୍ ଦୃଷ୍ଟଦ୍ୟ ସମ୍ଭବଃ ॥

କର୍କଟ ରାଶିର ବେଧାଙ୍କ ସଂଖ୍ୟା ୧୯, ସିଂହର ବେଧାଙ୍କ ସଂଖ୍ୟା ୧୭, ଏହାପରେ କନ୍ୟାର ୨୬, ତୁଳାର ୨୬, ବଛର ୧୭, ଧନୁର ୨୯, ମକରର ୨୬, କୁମ୍ଭର ୧୭, ମୀନର ୨୯, ମେଷର ୧୬, ବୃଷର ୧୭, ମିଥୁନର ବେଧାଙ୍କ ୨୯ ହୁଏ । ଯେଉଁ ରାଶିରେ ବେଧ ହୁଏ, ସେହି ବେଧ ଗ୍ରହର ବଳାବଳକୁ ନେଇ ସେହି ସଂଖ୍ୟକ ଦିନ, ମାସ କିମ୍ବା ବର୍ଷରେ ପତାକୀରଷ୍ଟ ହୁଏ ।

## ରିଷ୍ଟକାଳ

ବଳେଽଧିକେ ଦିନଂ ମଧ୍ୟେ ମାସେଽଧିକେ ଚ ହାୟନଂ ।
ଲଗ୍ନସ୍ୟ ଦକ୍ଷିଣେ ବାମେ ସମ୍ମୁଖେ ଗ୍ରହସଂସ୍ଥିତେ ॥

ପାପଗ୍ରହମାନେ ବଳବାନ୍ ହୋଇ ବେଧ ହେଲେ ଗ୍ରୀଷିର ବେଧାଙ୍କ ସଂଖ୍ୟକ ଦିବସରେ, ମଧ୍ୟବଳ ହେଲେ ସେହି ସଂଖ୍ୟକ ମାସରେ ହୀନବଳ ହେଲେ ସେହି ସଂଖ୍ୟକ ବର୍ଷରେ ଋଷ୍ଟକାରକ ହୁଅନ୍ତି ।

ପୂର୍ବୋକ୍ତ ଜାତକର ବୃଷ ଓ ବୃଶ୍ଚିକରେ ପାପଗ୍ରହ ଥିବା ହେତୁ ପତାକାରିଷ୍ଟ ହେଲା । ବୃଶ୍ଚିକର ବେଧାଙ୍କ ସଂଖ୍ୟା ୧୭ । ଏହି ସଂଖ୍ୟକ ବର୍ଷରେ ଜାତକର ପତାକାରିଷ୍ଟ ସମ୍ଭବ ହେଲା । କାରଣ ବେଧଗ୍ରହ-ମାନେ ହୀନବଳ । ଏହାପରେ ବାଳକ କେଉଁ ଗ୍ରହର ଯାମାର୍ଦ୍ଧରେ ଜନ୍ମ ହୋଇଅଛି ଠିକ କରି କାହାର ଦଣ୍ଡରେ ଜନ୍ମ ହୋଇଅଛି ଦେଖିବେ ।

## ଯାମାର୍ଦ୍ଧାଧିପତି ନିରୂପଣଂ

ବାରେଶାଦର୍ଦ୍ଧଯାମେଷୁ ସ୍ୱର୍ଯ୍ୟହ୍ନୋଃ ପଞ୍ଚଷଟ୍ କ୍ରମାତ୍ ।
ଅଧିପାଃ ସ୍ୟୁର୍ଗ୍ରହାସ୍ତେଷ ଯଥାର୍କାଦ୍ୟେ ଭବନ୍ତି ହି ॥
ରବୀନ୍ଦୋର୍ନ୍ନ୍ଦୁଭୂସୂନ୍ନାଜ ଶନଙ୍କରବୟୋ ଦିଶି ।
ରବି ଶୁକ୍ରଜ୍ଞ ଗୁର୍ବୀଶ ଶମୀଜ୍ୟକୁଜବିସ୍ୱଗାଃ ।
ଦିନେ ଦୃଷ୍ଟ୍ୟଃ ପରେଷ୍ୱେବଂ ତଦାଧିଷାଶ୍ଚରୁଗ୍ରହାଃ ।

ଦିନମାନକୁ ଭାଗ କଲେ ଯାହା ଲବ୍ଧ ଆସେ ତାହାର ନାମ ଯାମାର୍ଦ୍ଧ । ଏହି ଯାମାର୍ଦ୍ଧକୁ ୪ ଭାଗ କଲେ ପ୍ରତ୍ୟେକ ଭାଗର ନାମ ଦଣ୍ଡ । ରାତ୍ରିମାନକୁ ମଧ୍ୟ ଏହିପରି ଭାଗ କରାଯାଇ ଦଣ୍ଡ ଅଣାଯାଇ ପାରେ । ଯେଉଁ ଗ୍ରହର ବାର ସେ ଗ୍ରହ ସେହି ବାରର ଦିନ ଓ ରାତ୍ରିର ପ୍ରଥମ ଯାମାର୍ଦ୍ଧର ଅଧିପତି । ତାହାର ୫ମ ଗ୍ରହ ସେହି ଦିନର ଦ୍ୱିତୀୟ ଯାମାର୍ଦ୍ଧର ଅଧିପତି । ଦ୍ୱିତୀୟ ଯାମାର୍ଦ୍ଧ ଅଧିପତିର ୫ମ ଗ୍ରହ ତୃତୀୟ

ଯାମାର୍ଦ୍ଧର ଅଧିପତି । ତୃତୀୟ ଯାମାର୍ଦ୍ଧ ଅଧିପତିର ୫ମ ଗ୍ରହ ଚତୁର୍ଥ ଯାମାର୍ଦ୍ଧର ଅଧିପତି ।

ରବିରେ ବାରାଧିପ ପ୍ରଥମ ଯାମାର୍ଦ୍ଧର ଅଧିପତି, ତାହାର ଷଷ୍ଠ ଗ୍ରହ ଦ୍ୱିତୀୟ ଯାମାର୍ଦ୍ଧର ଅଧିପତି, ଏହାଠାରୁ ଷଷ୍ଠଗ୍ରହ ତୃତୀୟ ଯାମାର୍ଦ୍ଧର ଅଧିପତି, ତୃତୀୟ ଯାମାର୍ଦ୍ଧର ଷଷ୍ଠ ଗ୍ରହ ଚତୁର୍ଥ ଯାମାର୍ଦ୍ଧାଧିପତି ଅଟେ । ଏଥିରେ ଗ୍ରହଗଣନାରେ ରାହୁ କେତୁଙ୍କୁ ଧରାଯାଏ ନାହିଁ । ପାଠକ-ବର୍ଗଙ୍କର ସୁବିଧା ନିମନ୍ତେ ଦିବା ଓ ରାତ୍ରିର ଯାମାର୍ଦ୍ଧାଧିପତି ନିମ୍ନରେ ଦିଆଗଲା ।

### ଦିବାଯାମାର୍ଦ୍ଧାଧିପତି ନିର୍ଣ୍ଣୟଃ

| ବାରନାମ | ୧ମ | ୨ୟ | ୩ୟ | ୪ର୍ଥ | ୫ମ | ୬ଷ୍ଠ | ୭ମ | ୮ମ |
|---|---|---|---|---|---|---|---|---|
| ରବି | ର | ଶୁ | ବୁ | ଚ | ଶ | ବୃ | ମ | ର |
| ସୋମ | ଚ | ଶ | ବୃ | ମ | ର | ଶୁ | ବୁ | ଚ |
| ମଙ୍ଗଳ | ମ | ର | ଶୁ | ବୁ | ଚ | ଶ | ବୃ | ମ |
| ବୁଧ | ବୁ | ଚ | ଶ | ବୃ | ମ | ର | ଶୁ | ବୁ |
| ଗୁରୁ | ବୃ | ମ | ର | ଶୁ | ବୁ | ଚ | ଶ | ବୃ |
| ଶୁକ୍ର | ଶୁ | ବୁ | ଚ | ଶ | ବୃ | ମ | ର | ଶୁ |
| ଶନି | ଶ | ବୃ | ମ | ର | ଶୁ | ବୁ | ଚ | ଶ |

## ରବିଯାମାର୍ଦ୍ଧାଧିପତି ନିର୍ଣ୍ଣୟଃ

| ବାରନାମ | ୧ମ | ୨ୟ | ୩ୟ | ୪ର୍ଥ | ୫ମ | ୬ଷ୍ଠ | ୭ମ | ୮ମ |
|---|---|---|---|---|---|---|---|---|
| ରବି | ର | ବୃ | ଚ | ଶୁ | ମ | ଶ | ବୁ | ର |
| ସୋମ | ଚ | ଶୁ | ମ | ଶ | ବୃ | ର | ବୁ | ଚ |
| ମଙ୍ଗଳ | ମ | ଶ | ବୁ | ର | ବୃ | ଚ | ଶୁ | ମ |
| ବୁଧ | ବୁ | ର | ବୃ | ଚ | ଶୁ | ମ | ଶ | ବୁ |
| ଗୁରୁ | ବୃ | ଚ | ଶୁ | ମ | ଶ | ବୁ | ର | ବୃ |
| ଶୁକ୍ର | ଶୁ | ମ | ଶ | ବୁ | ର | ବୃ | ଚ | ଶୁ |
| ଶନି | ଶ | ବୁ | ର | ବୃ | ଚ | ଶୁ | ମ | ଶ |

## ଦିବାଦଣ୍ଡାଧିପତି ନିର୍ଣ୍ଣୟଃ

ଯାମାର୍ଦ୍ଧାଧିପସଂଖ୍ୟାତୋ ଦ୍ୱିତୀୟସ୍ତୁ ତଦର୍ଦ୍ଧତଃ ।
ତଦର୍ଦ୍ଧା ତୁ ତୃତୀୟଃ ସ୍ୟାତ୍ତଦର୍ଦ୍ଧା ଚ ତୁରୀୟକଃ ।
ଅଙ୍କାଧିକେ ତୁ ଗନ୍ତୁଃ ସ୍ୟାତ୍ତଦଙ୍କୋ ବସୁସଂଖ୍ୟକଃ ।
ଲଗ୍ନାଙ୍କସ୍ୟ ପରିତ୍ୟାଗେ ଦିବାଦଣ୍ଡାଧିପା ଯଥା ॥

ଦିବାଭାଗରେ ଯାମାର୍ଦ୍ଧର ଅଧିପତି ଯେଉଁ ଗ୍ରହ ହେବ ସେ ପ୍ରଥମ ଦଣ୍ଡର ଅଧିପତି । ପ୍ରଥମ ଦଣ୍ଡାଧିପ ଗ୍ରହସଂଖ୍ୟାର ଅର୍ଦ୍ଧେକ ଯେ ଗ୍ରହ ସେ ଦ୍ୱିତୀୟ ଦଣ୍ଡର ଅଧିପତି । ଦ୍ୱିତୀୟ ଦଣ୍ଡାଧିପ ଗ୍ରହସଂଖ୍ୟାର ଅର୍ଦ୍ଧେକ ସଂଖ୍ୟା ଯେ ଗ୍ରହ ସେ ତୃତୀୟ ଦଣ୍ଡର ଅଧିପତି । ତୃତୀୟ ଦଣ୍ଡାଧିପ ଗ୍ରହସଂଖ୍ୟାର ଅର୍ଦ୍ଧେକ ସଂଖ୍ୟକ ଯେ ଗ୍ରହ ସେ ଚତୁର୍ଥ

ଦଣ୍ଡର ଅଧିପତି । ଯେଉଁ ଅଙ୍କସଂଖ୍ୟା ଦେଢ, ଅଢେଇ, ସାଢେ ତିନି ଏପରି ଆସିବ, ସେହି ସେହି ସ୍ଥାନମାନଙ୍କରେ ଯଥାକ୍ରମେ ଦୁଇ, ତିନି ଓ ଚାରି ଗ୍ରହଣ କରିବେ । ଯେଉଁ ସ୍ଥାନର ଅଙ୍କସଂଖ୍ୟା ଗଣିବାରେ ଅଭାବ ହେବ ସେହି ସ୍ଥାନରେ ରାହୁର ସଂଖ୍ୟା ୮ ବୋଲି ଗ୍ରହଣ କରିବେ ।

ରାତ୍ରିଦଣ୍ଡାଧିପତି ନିର୍ଣ୍ଣୟଃ ।

ଯସ୍ୟାର୍ଦ୍ଧଯାମସ୍ତସ୍ୟୈବ ପ୍ରାଗ୍‌ଦଣ୍ଡଃ ସମୁଦାହୃତଃ ।
ଷଟ୍‌ଷଟ୍ ପରସ୍ତୁ ଦଣ୍ଡାଶ୍ଚ ପ୍ରାପ୍ନୋ ରାତ୍ରୌ ମତାସ୍ତଥା ॥

ରାତ୍ରିରେ ଯାମାର୍ଦ୍ଧ ଅଧିପତି ଯେ ଗ୍ରହ ସେହି ଗ୍ରହ ପ୍ରଥମ ଦଣ୍ଡର ଅଧିପତି ଏହାର ଷଷ୍ଠଗ୍ରହ ଦ୍ୱିତୀୟ ଦଣ୍ଡାଧିପତି, ଏହାଠାରୁ ଷଷ୍ଠଗ୍ରହ ତୃତୀୟ ଦଣ୍ଡାଧିପତି ଓ ଏହାର ଷଷ୍ଠଗ୍ରହ ଚତୁର୍ଥ ଦଣ୍ଡର ଅଧିପତି ହେବ ।

| | ଦିବାଦଣ୍ଡାଧିପତି | | | | ରାତ୍ରିଦଣ୍ଡାଧିପତି | | | |
|---|---|---|---|---|---|---|---|---|
| ଯାମାର୍ଦ୍ଧାଧିପ ନାମ | ୧ମ | ୨ୟ | ୩ୟ | ୪ର୍ଥ | ୧ମ | ୨ୟ | ୩ୟ | ୪ର୍ଥ |
| ରବି | ର | ରାହୁ | ବୁ | ଚ | ର | ଶୁ | ବୁ | ଚ |
| ଚନ୍ଦ୍ର | ଚ | ର | ରା | ବୁ | ଚ | ଶ | ବୃ | ମ |
| ମଙ୍ଗଳ | ମ | ର | ରା | ବୁ | ମ | ର | ଶୁ | ବୃ |
| ବୁଧ | ବୁ | ଚ | ର | ରା | ବୁ | ଚ | ଶ | ବୃ |
| ଗୁରୁ | ବୃ | ଚ | ର | ରା | ବୃ | ମ | ର | ଶୁ |
| ଶୁକ୍ର | ଶୁ | ମ | ର | ରା | ଶୁ | ବୁ | ଚ | ଶ |
| ଶନି | ଶ | ମ | ଛ | ରା | ଶ | ବୃ | ମ | ର |

ପଚାଙ୍କାରିଷ୍ଟ ଭଙ୍ଗଃ

ବାରାଧିପସ୍ୟ ଦଣ୍ଡେ ତୁ ଯଦ ବେଧୋଽପି ଜାୟତେ ।
ବାଲସ୍ୟ କୁଶଲଂ ତଦ ଇତ୍ୟକ୍ତଂ ବ୍ରହ୍ମଯାମଲେ ॥

ପୂର୍ବେ କୁହାଯାଇ ଅଛି ଅଶୁଭ ଗ୍ରହ ବେଧ ହୋଇଥିଲେ ଓ ଅଶୁଭ ଦଣ୍ଡରେ ବାଳକ ଜନ୍ମ ହେଲେ ଋଷ୍ଟି ହୁଏ । ପୂର୍ବୋକ୍ତ ଜାତକର ଜନ୍ମ ସୋମବାର ଦିବସର ୭ମ ଯାମାର୍ଦ୍ଧର ଦ୍ୱିତୀୟ ଦଣ୍ଡରେ, ବାକ୍ଷ ଦଣ୍ଡାଧିପ । ପାପଦଣ୍ଡରେ ଜନ୍ମ ହେତୁ ବାଲ୍ୟାରିଷ୍ଟ ସମ୍ଭବନ୍ତି ।

## ଗଣ୍ଡାରିଷ୍ଟ ବିଚାରଃ

ଗଣ୍ଡନକ୍ଷତ୍ରାଃ

ଅଶ୍ୱିନୀମଘମୂଲାନାଂ ତିସ୍ରୋ ଗଣ୍ଡାଦ୍ୟନାଡିକାଃ ।
ଅନ୍ତ୍ୟଃ ପୌଷ୍ଣୋରଗେନ୍ଦ୍ରାଣାଂ ପଞ୍ଚୈବ ଘଟିକା ଜଗୁଃ ॥

ଅଶ୍ୱିନୀ, ମଘା ଓ ମୂଳା ଏହି ନକ୍ଷତ୍ରମାନଙ୍କର ଆଦ୍ୟ ତିନିଦଣ୍ଡ, ଅଶ୍ଳେଷା ପୁଣି ଜ୍ୟେଷ୍ଠାର ଶେଷ ପାଞ୍ଚଦଣ୍ଡମାନ ଗଣ୍ଡ ମୁହୂର୍ତ୍ତି ଅଟେ ।

ଗଣ୍ଡକାଲଃ

ମୂଲେନ୍ଦ୍ରୟୋର୍ଦ୍ଦିବାଗଣ୍ଡୋ ରାତ୍ରୌ ଚ ମଘସର୍ପୟୋଃ ।
ସନ୍ଧ୍ୟାଦ୍ୱୟେଽଶ୍ୱିରେବତ୍ୟା ଏତତ୍ ଗଣ୍ଡସ୍ୟ ଲକ୍ଷଣଂ ॥

ମୂଳା ଓ ଜ୍ୟେଷ୍ଠା ଏମାନଙ୍କର ଗଣ୍ଡ ଦଣ୍ଡମାନଙ୍କରେ ଦିବାଭାଗରେ ଜନ୍ମହେଲେ ଦୋଷ, ମଘା ଓ ଅଶ୍ଳେଷାର ଗଣ୍ଡ ଦଣ୍ଡମାନ ରାତ୍ରିଦୋଷ,

ଅଶ୍ୱିନୀ ଓ ରେବତୀ ନକ୍ଷତ୍ରର ଗଣ୍ଡଦୋଷମାନ ଯଥାକ୍ରମେ ପ୍ରାତଃକାଳ ଓ ସନ୍ଧ୍ୟାକାଳରେ ହୁଏ ।

ତ୍ରିବିଧ ଗଣ୍ଡକଥନଂ

ସନ୍ଧ୍ୟାସନ୍ଧି ଦିବାରାତ୍ରେ ଗଣ୍ଡଯୋଗୋଦ୍ଭବଃ ଶିଶୁଃ ।
ଆତ୍ମାନଂ ମାତରଂ ତାତଂ ହନ୍ତହନ୍ତି ଯଥାକ୍ରମଂ ॥

ସନ୍ଧ୍ୟାକାଳର ଗଣ୍ଡଦୋଷରେ ବାଳକର ମୃତ୍ୟୁ, ରାତ୍ରି ଗଣ୍ଡ ଦୋଷରେ ମାତା ଓ ଦିବା ଗଣ୍ଡଦୋଷରେ ପିତାର ମୃତ୍ୟୁ ହୁଏ ।

ଗଣ୍ଡ ସମୟ ନିରୂପଣଂ

ସାର୍ଦ୍ଧବର୍ଷଦ୍ୱୟଂ ଜ୍ଞେୟଂ ରେବତୀଗଣ୍ଡସମ୍ଭବଃ ।
ଅଶ୍ୱିନ୍ୟାଂ ଦଶମାସାଶ୍ଚ ଜ୍ୟେଷ୍ଠାୟାଂ ସାର୍ଦ୍ଧବତ୍ସରଂ ॥
ମୂଳାୟାଂ ବର୍ଷଷଟ୍କଂ ଚ ମଘାୟାଂ ଚ ଚତୁର୍ଥକଂ ।
ଅଶ୍ଳେଷାୟାଂ ଭବେଦ୍‌ବର୍ଷୋ ଗଣ୍ଡକାଳସ୍ୟ ସମ୍ଭବଃ ॥ ଜ୍ୟୋଃତ୍ରଃ

ରେବତୀ ନକ୍ଷତ୍ରର ଗଣ୍ଡଦୋଷ ହେଲେ ସେହି ଦୋଷ ଅଢ଼େଇ ବର୍ଷ ପର୍ଯ୍ୟନ୍ତ ରହେ । ଅଶ୍ୱିନୀର ୧୦ ମାସ, ଜ୍ୟେଷ୍ଠାର ଦେଢ଼ ବର୍ଷ, ମୂଳାର ୬ ବର୍ଷ, ମଘାର ୪ ବର୍ଷ ଓ ଅଶ୍ଳେଷା ନକ୍ଷତ୍ରର ଗଣ୍ଡକାଳ ୧ବର୍ଷ ପର୍ଯ୍ୟନ୍ତ ରହେ ।

ଗଣ୍ଡାରିଷ୍ଟଭଙ୍ଗଃ

ଦିବା ଜାତା ତୁ ଯା କନ୍ୟା ନିଶି ଜାତାସ୍ତୁ ଯଃ ପୁମାନ୍ ।
ନୋଭୟୋର୍ଗଣ୍ଡଦୋଷଃ ସ୍ୟାନ୍ମାତଲୋ ହନ୍ତି ପଙ୍କତଂ ॥

ଦିବାଜାତ କନ୍ୟାକୁ ବା ରାତ୍ରିଜାତ ପୁରୁଷକୁ ଗଣ୍ଡଦୋଷ ଲାଗେ-ନାହିଁ । ଯେପରି ପର୍ବତ ପର୍ବତର କଷ୍ଟ ସହ୍ୟ କରି ନ ପାରେ ।

## ଗଣ୍ଡଦୋଷଶାନ୍ତିଃ

କୁଙ୍କୁମଂ ଚନ୍ଦନଂ କୁଷ୍ଠଂ ଗୋରୋଚନମଥାପି ବା ।
ଘୃତେ ନୈବାଦ୍ୟୁତଂ କୁର୍ଯ୍ୟାଚ୍ଚତୁର୍ଭିଃ କଳଶୈର୍ବୁଧଃ ॥
ସହସ୍ରାକ୍ଷେଣ ମନ୍ତ୍ରେଣ ବାଳକଂ ସ୍ନାପୟେତ୍ତତଃ ।
ପିତୃଯୁକ୍ତଂ ଦିବାଜାତଂ ମାତୃଯୁକ୍ତଂ ଚ ଶର୍ବିଜଂ ॥
ସ୍ନାପୟେତ୍ ପିତୃମାତୃଭ୍ୟାଂ ସନ୍ଧ୍ୟୟୋରୁଭୟୋରପି ।
କାଂସ୍ୟପାତ୍ରଂ ଘୃତୈଃ ପୂର୍ଣ୍ଣଂ ଗଣ୍ଡଦୋଷୋପଶାନ୍ତୟେ ॥
ଦଦ୍ୟାଦ୍ଧେନୁଂ ହିରଣ୍ୟଞ୍ଚ ଗ୍ରହାଂଶ୍ଚାପି ପ୍ରପୂଜୟେତ ।
ଯଦ ଜୀବତି ଗଣ୍ଡାନ୍ତେ କଲ୍ୟାଣପୂର୍ଣ୍ଣୋ ଭବେଦ୍ଧ୍ରୁବଂ ॥

କୁଙ୍କୁମ, ଚନ୍ଦନ, କୁଡ଼ ଓ ଗୋରୋଚନାକୁ ଏକତ୍ର ଘିଅ ମିଶାଇ ଚାରୋଟି କଳସରେ ପକାଇ ସମସ୍ତ କଳସ ଜଳପୂର୍ଣ୍ଣ କରିବେ । ଏହି କଳସସ୍ଥ ଜଳଦ୍ୱାରା ବାଳକକୁ ସହସ୍ରାକ୍ଷ ମନ୍ତ୍ରରେ ସ୍ନାନ କରାଇବେ ।

## ସହସ୍ରାକ୍ଷ ମନ୍ତ୍ରଃ

ଓଁ ସହସ୍ରାକ୍ଷେଣ ଶତ ଶାରଦେନ ଶତାୟୁଷା ହବିଷା ହାର୍ଷମେନଂ । ଶତଂ ଯଥେମଂ ଶରଦୋ ନୟାତୀନ୍ଦ୍ରୋ ବିଶ୍ୱସ୍ୟ ଦୁରିତସ୍ୟ ପାରଂ ଶତଞ୍ଜୀବଶରଦୋ ବର୍ଦ୍ଧମାନଃ ॥ ଶତଂ ହେମନ୍ତାନ୍ ଶତମୁପଶାନ୍ତାଂ ଶତମିନ୍ଦ୍ରାଗ୍ନୀ ସବିତା ବୃହସ୍ପତିଃ । ଶତାୟୁଷା ହବିଷେମଂ ପୁନର୍ଦ୍ଦୁଃ ॥ ଅଦ୍ଭ୍ୟା ବିଶନ୍ତୁ । ବଦନ୍ତୁ । ପୁନର୍ଗାଃ ପୁନର୍ଦ୍ଦତଃ । ସର୍ବାଙ୍ଗୀଂ ସର୍ବଂ ତେ ଚକ୍ଷୁଃ ସର୍ବମାୟୁଶ୍ଚ ତେ ବିଦଂ ॥ ଶତମାନାସ୍ତୁ

ଅମୃଷ୍ଟାମଃ ଶତାୟୁର୍ବୈ ପୁରୁଷଃ । ଶତବୀର୍ଯ୍ୟଃ ଶତେନ୍ଦ୍ରିୟଃ ଆୟୁଷ୍ୟ ଏବୈନଂ ତଦ୍ ବୀର୍ଯ୍ୟମିନ୍ଦ୍ରିୟେ ଦଧାତୁ ।

ବାଳକଙ୍କୁ ସ୍ନାନ କରାଇଲା ପରେ ସମ୍ପଞ୍ଚଶ୍ଚକ ପଳ ପରିମାଣର ଘୋଡ଼ଏ କାଂସ୍ୟପାତ୍ର ଘୃତପୂର୍ଣ୍ଣ କରି ଗାଈ ଓ ସ୍ୱର୍ଣ୍ଣ ସହିତରେ ଦାନ କରିବେ ଓ ଗ୍ରହପୂଜା କରିବେ । ସ୍ନାନର ବିଶେଷ ବିଧି ଏହି ଯେ ଦିବା-ଗଣ୍ଡଜାତ ବାଳକଙ୍କୁ ପିତାର ସହିତ, ରାତ୍ରିଗଣ୍ଡଜାତ ବାଳକଙ୍କୁ ମାତାର ସହିତ ଉପରୋକ୍ତ ଅଭିମନ୍ତ୍ରିତ ଜଳରେ ସ୍ନାନ କରାଇବେ ।

କାଂସ୍ୟପାତ୍ର ପରିମାଣଂ ରାଜମାର୍ତ୍ତଣ୍ଡେ :—

କାଂସ୍ୟପାତ୍ରଂ ପ୍ରକୁର୍ବୀତ ପଲୈଃ ଷୋଡ଼ଶଭିର୍ବୁଧଃ ।
ଅଷ୍ଟାଭିର୍ବା ଚତୁର୍ଭିର୍ବା ଦ୍ୱାଭ୍ୟାଂ ବା ଶୋଭନଂ ସମଂ ॥

## ମାତୃରିଷ୍ଟଂ

ଲଗ୍ନାଚ୍ଚତୁର୍ଥଗଃ ପାପୋ ଯଦି ସ୍ୟାତ୍ ବଲବତ୍ତରଃ ।
ତଦା ମାତୃବଧଂ କୁର୍ଯ୍ୟାତ୍ ତତ୍କେନ୍ଦ୍ରେ ନୃପଗେ ଯଦି ॥

ଲଗ୍ନର ଚତୁର୍ଥରେ ପାପଗ୍ରହ ବଳବାନ୍ ହୋଇ ଥିଲେ ଓ ଏହି ପାପଗ୍ରହର କେନ୍ଦ୍ରରେ ଅନ୍ୟ କୌଣସି ପାପଗ୍ରହ ଥିଲେ ମାତୃରିଷ୍ଟ ହୁଏ ।

କେନ୍ଦ୍ରତ୍ରିକୋଣଗଃ ପାପୋ ମାତୃହା ସପ୍ତବାସରାତ୍ ।
ସପାପାଦ୍ ଭାର୍ଗବାତ୍ ପାପୋ ହିବୁକେ ମାତୃନାଶକୃତ୍ ॥

କେନ୍ଦ୍ର, ତ୍ରିକୋଣରେ ପାପଗ୍ରହମାନେ ଥିଲେ ଏକ ସପ୍ତାହ-ମଧ୍ୟରେ ମାତୃବିଯୋଗ ହୁଏ । ପାପଯୁକ୍ତ ଶୁକ୍ରର ଚତୁର୍ଥରେ ପାପଗ୍ରହ ଥିଲେ ମାତୃରିଷ୍ଟ ହୁଏ ।

ଚନ୍ଦ୍ରମା ଯଦ ପାପଜନ ବସ୍ତ୍ରେଣୈବ ହ ଖଣ୍ଡିତଃ ।
ମାତୃନାଶୋ ଭବେତ୍ତସ୍ୟ ଷଷ୍ଠେ ପାପୋ ଭବେଦ୍ ଯଦ ॥

ଉକ୍ତୋକ୍ତ ପାପଗ୍ରହ ଚନ୍ଦ୍ରଙ୍କୁ ଦେଖୁଲେ ଓ ଷଷ୍ଠରେ ପାପଗ୍ରହ ଥିଲେ ମାତୃନାଶ ହୁଏ ।

ଉଚ୍ଚସ୍ଥୋ ବା ଚ ନୀଚସ୍ଥୋ ସପ୍ତମସ୍ଥୋ ଯଦା ରବିଃ ।
ତଦା ଜାତୋ ନହନ୍ତ୍ୟାଶୁ ମାତରଂ ନାତ୍ର ସଂଶୟଃ ॥

ରବି ସପ୍ତମରେ ଉଚ୍ଚ ହୋଇ ବା ନୀଚ ହୋଇଥିଲେ ମାତାର ବିନାଶ ହୁଏ ।

ଲଗ୍ନସ୍ଥାନେ ଯଦା ଜୀବୋ ଧନସ୍ଥାନେ ଶନୈଶ୍ଚରଃ ।
ରାହୁଶ୍ଚ ସହଜସ୍ଥାନେ ମାତା ତସ୍ୟ ନ ଜୀବତି ॥

ଲଗ୍ନରେ ବୃହସ୍ପତି, ଦ୍ୱିତୀୟରେ ଶନି ଓ ତୃତୀୟରେ ରାହୁ ଥିଲେ ମାତାର ମୃତ୍ୟୁ ଘଟେ ।

ସିଂହେ ଭୌମୋ ଧଟେ ସୌରିଃ କନ୍ୟାୟାଂ ଚ ଯଦା ଶିତଃ ।
ମିଥୁନେ ଚ ଯଦା ରାହୁର୍ଜନନୀ ତସ୍ୟ ନଶ୍ୟତି ॥

ସିଂହରେ ମଙ୍ଗଳ, ତୁଳାରେ ଶନି, କନ୍ୟାରେ ଶୁକ୍ର ଓ ମିଥୁନରେ ରାହୁ ଥିଲେ ମାତୃବିୟୋଗ ହୁଏ ।

ଷଷ୍ଠାଷ୍ଟମଗତଶ୍ଚନ୍ଦ୍ରୋ ଭୌମୋ ବା ସପ୍ତମେ ଯଦ ।
ତଦା ମାତୁର୍ବିନାଶଃ ସ୍ୟାତ୍ ସପ୍ତାହାନ୍ନାତ୍ର ସଂଶୟଃ ॥

ଚନ୍ଦ୍ର ଷଷ୍ଠ ବା ଅଷ୍ଟମରେ ଥିଲେ ଓ ମଙ୍ଗଳ ସପ୍ତମରେ ଥିଲେ ସପ୍ତାହ ମଧ୍ୟରେ ମାତୃରିଷ୍ଟ ହୁଏ ।

## ପିତୃରିଷ୍ଟଂ

କର୍ମସ୍ଥାନେ ସ୍ଥିତଃ ସୌରିଃ ଷଷ୍ଠସ୍ଥାନେ ଚ ଚନ୍ଦ୍ରମାଃ ।
କୁଜେ ଚ ସପ୍ତମସ୍ଥାନେ ମ୍ରିୟତେ ପିତୃସଜ୍ଞକଃ ॥

ଶନି ଦଶମରେ, ଚନ୍ଦ୍ର ଷଷ୍ଠରେ, ମଙ୍ଗଳ ସପ୍ତମରେ ଥିଲେ ପିତୃରିଷ୍ଟ ହୁଏ ।

ତମୋଦ୍ଧା ଯଦ ଆପେନ ଦଯ୍ୟେଣୈବ ହ୍ୟ ସାକ୍ଷିତଃ ।
ଶୁଭୈରଯୁତ ଦୃଷ୍ଟଶ୍ଚ ନିଶ୍ଚୁରପିତ୍ୟକ୍ତମାଦଶେତ୍ ॥

ରବି ଯଦି ଉନୋଚ୍ଚ ପାପ ଗ୍ରହ କର୍ତ୍ତୃକ ଦୃଷ୍ଟ ହେଉଥିବେ ଓ ରବିଙ୍କ ସହିତ ଶୁଭ ଗ୍ରହ ନ ଥିବେ ବା ରବିଙ୍କୁ ଶୁଭ ଗ୍ରହ ଦେଖୁ ନ ଥିବେ ତେବେ ପିତୃରିଷ୍ଟ ହୁଏ ।

ନବମୈକାଦଶସ୍ଥାନେ ଶନିଭୌମୌ ଯଦା ସ୍ଥିତୌ ।
ରାହୁଣା ସଯୁତୌ ତସ୍ୟ ଜନକସ୍ୟ ମୃତ୍ୟୁଂ ବଦେତ୍ ॥

ଶନି ବା ମଙ୍ଗଳ ରାହୁସହିତ ଯୁକ୍ତ ହୋଇ ନବମ ବା ଏକାଦଶରେ ଥିଲେ ପିତାର ମରଣ ହୁଏ ।

ସୂର୍ଯ୍ୟାତ୍ ସପ୍ତମେ ସ୍ଥାନେ ସୌରଭୌମୌ ଯଦା ସ୍ଥିତୌ ।
ତଦା ପିତୃବଧୋ ଜ୍ଞେୟସ୍ତସ୍ୟୋର୍ମଧ୍ୟେଽଥବା ରବିଃ ॥

ରବିଙ୍କର ସପ୍ତମରେ ମଙ୍ଗଳ ଓ ଶନି ଥିଲେ, କିମ୍ବା ମଙ୍ଗଳ ଶନିଙ୍କର ମଧ୍ୟରେ ରବି ଥିଲେ ପିତାର ମୃତ୍ୟୁ ହୁଏ ।

ରିପୁସ୍ଥାନେ ଯଦା ଚନ୍ଦ୍ରଃ ଲଗ୍ନସ୍ଥାନେ ଶନୈଶ୍ଚରଃ ।
କୁଜଶ୍ଚ ସପ୍ତମସ୍ଥାନେ ପିତା ତସ୍ୟ ନ ଜୀବତି ॥

ଚନ୍ଦ୍ର ଷଷ୍ଠରେ, ଶନି ଲଗ୍ନରେ ଓ ମଙ୍ଗଳ ସପ୍ତମରେ ଥିଲେ ପିତୃରିଷ୍ଟ ହୁଏ ।

କୃଜେନ ସଂଯୁତୋ ଭାନୁଃ ସୌରିଣା ଯଦି ବୀକ୍ଷିତଃ ।
ପିତୃର୍ନିଧନକର୍ତ୍ତା ଯୋଗସ୍ତୟୋର୍ମଧ୍ୟେଽଥବା ରବିଃ ॥

ରବି ସହିତ ମଙ୍ଗଳ ଯୁକ୍ତ ହୋଇ ଶନିଦ୍ୱାରା ଦୃଷ୍ଟ ହେଉଥିଲେ ବା ଶନି ମଙ୍ଗଳ ମଧ୍ୟରେ ରବି ଥିଲେ ପିତୃନାଶ ହୁଏ ।

ମାତୃହା ପିତୃହା ଯୋଗଃ

ଲଗ୍ନାଚ୍ଚତୁର୍ଥେ ରବିଜୋଽଥ ଭୌମଃ
କର୍ମସ୍ଥିତୋ ମାତୃବିୟୋଗଦୁଃଖଂ ।
ଦଦାତି ଶୀଘ୍ରଂ ଖଳୁ ସପ୍ତମେ ଚ
ତାତସ୍ୟ ମୃତ୍ୟୁଂ ଯଦି ଲଗ୍ନସଂସ୍ଥଃ ॥

ଲଗ୍ନର ଚତୁର୍ଥରେ ଶନି ଏବଂ ଦଶମରେ ମଙ୍ଗଳ ଥିଲେ ମାତୃରିଷ୍ଟ ହୁଏ । ଚତୁର୍ଥରେ ଶନି ଓ ସପ୍ତମରେ ମଙ୍ଗଳ ଥିଲେ ମାତୃରିଷ୍ଟ ହୁଏ । ଚତୁର୍ଥରେ ଶନି ଓ ଲଗ୍ନରେ ମଙ୍ଗଳ ଥିଲେ ପିତୃରିଷ୍ଟ ହୁଏ ।

ରିଷ୍ଟଂ ସମାପ୍ତଂ ।



## ରିଷ୍ଟଭଙ୍ଗ ପ୍ରକରଣଂ

ଏକୋଽପି କେନ୍ଦ୍ରଭବନେ ନବପଞ୍ଚମେ ବା
ସମ୍ୟକ୍ସ୍ଥିତଃ ଖରମରୀଚିକୃତାଦରସ୍ତୁ ।
ଦୂରଂ ଭବେତ୍ ଦୋଷସମୂହଦୁଷ୍ଟଂ ଶୁଭଂ ପ୍ରସୂତଂ
ଦୀର୍ଘାୟୁଷଂ ଜଗତସ୍ୱେତବଦ୍ଧ୍ୟଂ କରୋତି ॥

ଯେଉଁ ଗ୍ରହ ଉଜ୍ଜ୍ୱଳ କିରଣାବଳୀଦ୍ୱାରା ଚତୁର୍ଦ୍ଦିଗ ସମୁଦ୍ଭାସିତ କରୁଥିବ ଅର୍ଥାତ୍ ଯାହାଠାରେ ଅସ୍ତାଦି କୌଣସି ଦୋଷ ନ ଥିବ ଏପରି ଗୋଟିଏ ଶୁଭଗ୍ରହ ଯଦି କେନ୍ଦ୍ର ବା ତ୍ରିକୋଣରେ ଥିବ ତେବେ ସେହି ବାଳକ ସମସ୍ତ ରୋଗମୁକ୍ତ ହୋଇ ଚିରାୟୁ ହୁଏ ।

ଲଗ୍ନସ୍ଥିତୋ ଦେବଗୁରୁର୍ବିଶେଷାନ୍ତ
ଖେଟାନ୍ନିହନ୍ୟାଦ୍ବବଲାଂସ୍ତଥୈବ ।
ଏକୋଽପି ବାଲେନ୍ଦୁଧରପ୍ରଣାମଃ
ସମସ୍ତ ପାପଂ ଶମୟେତ୍ତୁ ତଥୈବ ॥

ସ, ତ,

ବୃହସ୍ପତି ବଳବାନ୍ ହୋଇ ଲଗ୍ନସ୍ଥ ହେଲେ ଅନ୍ୟାନ୍ୟ ଗ୍ରହମାନଙ୍କର ଦୁର୍ବଳତା ବିନାଶ କରେ । ଶିବଙ୍କ ଆରାଧନା ଦ୍ୱାରା ଯେପରି ସମସ୍ତ ପାପ ଖଣ୍ଡନ ହୁଏ, ବୃହସ୍ପତି ସେହିପରି ଜାତକର ସମସ୍ତ ରିଷ୍ଟ ଖଣ୍ଡନ କରନ୍ତି ।

ତ୍ରିଷଡ଼େକାଦଶେ ସୂର୍ଯ୍ୟଃ ତ୍ରିଷଡ଼େକାଦଶେ ଶନିଃ ।
ତ୍ରିଷଡ଼େକାଦଶେ ରାହୁଃ ସର୍ବାରିଷ୍ଟଂ ବିନଶ୍ୟତି ॥

ତୃତୀୟ, ଷଷ୍ଠ ବା ଏକାଦଶରେ ରବି, ଶନି କିମ୍ବା ରାହୁ ଥିଲେ ସମସ୍ତ ରିଷ୍ଟ ଭଙ୍ଗ ହୁଏ ।

ମନ୍ଦେନ ସନ୍ଧୃତୋ ଗୁରୁଃ ସିଂହଲଗ୍ନେ ଯଦା ଭବେତ୍ ।
ତଦା ଜାତୋ ଭବେଦ୍ଭୂପଃ ଶିଶୁରିଷ୍ଟସ୍ୟ କା କଥା ॥

ସିଂହ ଲଗ୍ନସ୍ଥ ଗୁରୁ ଯୁକ୍ତ ଶନି ସମସ୍ତ ରିଷ୍ଟ ଖଣ୍ଡନ କରି ଜାତକକୁ ରାଜା କରାନ୍ତି ।

ଗୁରୁଭୌମୌ ଯଦା ଯୁକ୍ତୌ ଗୁରୁଦୃଷ୍ଟୋଽଥବା କୁଜଃ ।
ହତ୍ୱାରିଷ୍ଟମଶେଷଞ୍ଚ ଜନନ୍ୟାଃ ଶୁଭକୃଦ୍ଭବେତ୍ ॥

ବୃହସ୍ପତି ଓ ମଙ୍ଗଳ ଏକତ୍ରରେ ଥିଲେ କିମ୍ବା ମଙ୍ଗଳକୁ ବୃହସ୍ପତି ଦେଖୁଥିଲେ ରିଷ୍ଟଭଙ୍ଗ ହୁଏ । ଏହି ଯୋଗ ମାତାର ମଙ୍ଗଳ କରାଏ ।

ପକ୍ଷେ ସିତେ ଭବତି ଜନ୍ମ ଯଦି କ୍ଷପାୟାଂ
କୃଷ୍ଣେଽଥ ବାହ୍ନି ଶୁଭାଶୁଭଦୃଷ୍ଟମୂର୍ତ୍ତିଃ ।
ତଂ ଚନ୍ଦ୍ରମା ରିପୁବିନାଶଗତୋଽପି ଯତ୍ନା-
ଦାପତ୍ସୁ ରକ୍ଷତି ପିତେବ ଶିଶୁଂ ନ ହନ୍ତି ।

ଶୁକ୍ଲପକ୍ଷରେ ରାତ୍ରି ଜନ୍ମ ଓ କୃଷ୍ଣ ପକ୍ଷରେ ଦିବା ଜନ୍ମ ବ୍ୟକ୍ତିର ଷଷ୍ଠାଷ୍ଟମସ୍ଥ ଚନ୍ଦ୍ର 'ପିତା ପୁତ୍ରକୁ ରକ୍ଷା କଲା ପରି' ସେହି ବାଳକକୁ ରକ୍ଷା କରନ୍ତି ।

ଚତୁର୍ଥେ ଦଶମେ ପାପଃ ସୌମ୍ୟମଧ୍ୟେ ଯଦା ଭବେତ୍ ।
ପିତୁଃ ସୌଖ୍ୟକରୋ ଯୋଗଃ ଶୁଭୈଃ କେନ୍ଦ୍ରତ୍ରିକୋଣଗୈଃ ॥

ଚତୁର୍ଥ ଓ ଦଶମରେ ପାପଗ୍ରହ ଥିଲେ ଏବଂ ସେମାନେ ଯଦି ଶୁଭଗ୍ରହ ମାନଙ୍କର ମଧ୍ୟବର୍ତ୍ତୀ ହୋଇଥାନ୍ତି, ତେବେ ବାଳକର ଓ ତଦୀୟ ପିତାର ସୁଖବୃଦ୍ଧି କରାନ୍ତି ।

ଅଜବୃଷଭକର୍କିଣି ଲଗ୍ନେ ରକ୍ଷତ ରାହୁଃ ସମସ୍ତାରିଷ୍ଟେଭ୍ୟଃ ।
ପୃଥ୍ୱୀପତିଃ ପ୍ରସନ୍ନଃ କୃତାପରାଧଂ ଯଥା ପୁରୁଷଂ ॥

ମେଷ, ବୃଷ ଓ କର୍କଟ ଲଗ୍ନସ୍ଥ ରାହୁ ସମସ୍ତ ଅରିଷ୍ଟମାନଙ୍କୁ ବିନାଶ କରେ । ରାଜାର ପ୍ରସନ୍ନରେ ଅପରାଧୀର ସମସ୍ତ ଦୋଷ ଯେପରି କ୍ଷମା କରାଯାଏ ।

ଏକ ଏବ ବିଲଗ୍ନେଶଃ କେନ୍ଦ୍ରସଂସ୍ଥୋ ବଳାନ୍ୱିତଃ ।
ଅରିଷ୍ଟଂ ନିଖିଳଂ ହନ୍ତି ପିନାକୀ ତ୍ରିପୁରଂ ଯଥା ॥

ଲଗ୍ନାଧିପତି ବଳବାନ୍ ହୋଇ କେନ୍ଦ୍ରରେ ଥିଲେ ମହାଦେବ ତ୍ରିପୁରାସୁରଙ୍କୁ ନାଶ କଲା ପରି ସେ ସମସ୍ତ ଅରିଷ୍ଟମାନଙ୍କୁ ବିନାଶ କରେ ।

ଦିବା ସୂର୍ଯ୍ୟୋ ନିଶି ଶଶୀ ଲଗ୍ନାଦେକାଦଶେ ସ୍ଥିତଃ ।
କୋଟିଦୋଷଂ ନିହନ୍ତ୍ୟାଶୁ ଗର୍ଗସ୍ୟ ବଚନଂ ଯଥା ॥

ଜା. ତ,

ଦିବା ଜାତ ବାଳକର ଏକାଦଶରେ ରବି, ରାତ୍ରି ଜନ୍ମ ବାଳକର ଏକାଦଶରେ ଚନ୍ଦ୍ର ଥିଲେ ସମସ୍ତ ଅରିଷ୍ଟ ବିନାଶ ହୁଏ ବୋଲି ଗର୍ଗଙ୍କର ମତ ।

ଶୁକ୍ଳପକ୍ଷେ କ୍ଷପାଜନ୍ମ ଲଗ୍ନେ ସୌମ୍ୟନିରୀକ୍ଷିତେ ।
ବିପରୀତଂ କୃଷ୍ଣପକ୍ଷେ ତଦା ରିଷ୍ଟଂ ନ ଜାୟତେ ॥

ଶୁକ୍ଳପକ୍ଷରେ ରାତ୍ରି ଜନ୍ମ ବାଳକର ଲଗ୍ନକୁ ଶୁଭଗ୍ରହ, ଦିବା ଜାତର ଲଗ୍ନକୁ ପାପଗ୍ରହ, କୃଷ୍ଣପକ୍ଷ ଦିବସ ଜାତର ଲଗ୍ନକୁ ଶୁଭଗ୍ରହ ଓ ରାତ୍ରି ଜାତର ଲଗ୍ନକୁ ପାପଗ୍ରହ ଦେଖିଲେ ଅରିଷ୍ଟଭଙ୍ଗ ହୁଏ ।

ସ୍ୱୋଚ୍ଚସ୍ଥଃ ସ୍ୱତ୍ରିକୋଣେଽପି ବା ସ୍ୱସୁହୃଦାଂ ବର୍ଗେଽପି ସୌମ୍ୟେଽପିବା
ସମ୍ପୂର୍ଣ୍ଣଃ ଶୁଭବୀକ୍ଷିତଃ ଶଶଧରୋ ବର୍ଗେ ସ୍ୱକୀୟେଽପିବା ।
ଶତ୍ରୂଣାମବଲୋକନେନ ରହିତଃ ପାପୈରଯୁକ୍ତେ ସ୍ଥିତେ
ରିଷ୍ଟିଂ ହନ୍ତି ସୁଦୁସ୍ତରଂ ଦିନପତିଃ ପ୍ରାଲେୟସଙ୍ଘଂ ଯଥା ॥

ଚନ୍ଦ୍ର ପାପଗ୍ରହ ଯୋଗ ରହିତ, ଶତ୍ରୁ ଓ ପାପଦୃଷ୍ଟି ବିବର୍ଜିତ, ଶୁଭଦୃଷ୍ଟ, ପୂର୍ଣ୍ଣକଳାବିଶିଷ୍ଟ, ଉଚ୍ଚସ୍ଥ, ସ୍ୱଗୃହସ୍ଥ କିମ୍ବା ମିତ୍ରବର୍ଗସ୍ଥ, ଶୁଭ-ବର୍ଗସ୍ଥ ବା ନିଜ ବର୍ଗସ୍ଥ ହେଲେ କୁଜ୍ଝଟିକା ଯେଣେ ବିନାଶକ ରବି ପରି ସମସ୍ତ ରିଷ୍ଟମାନଙ୍କୁ ବିନାଶ କରେ ।

ଜନ୍ମବିଧି ପରିଶିଷ୍ଟଃ

ଏକଦ୍ୱାରଂ ସ୍ଥିରେ ଲଗ୍ନେ ଦ୍ୱିର୍ଦ୍ୱାରଂ ଦ୍ୱିସ୍ୱଭାବକେ ।
ବହୁଦ୍ୱାରଂ ଚରେ ଲଗ୍ନେ ସୂତିକା ଭବନସ୍ୟ ଚ ॥

ସ୍ଥିର ଲଗ୍ନଜାତ ବାଳକର ଜନ୍ମଗୃହର ଦ୍ୱାର ଗୋଟିଏ, ଦ୍ୱାତ୍ମିକ ଲଗ୍ନରେ ଯୋଡ଼ିଏ, ଚରଲଗ୍ନରେ ବହୁତ ଦ୍ୱାର ଥାଏ ।

ମସ୍ତକଲକ୍ଷଣଂ

ଲଗ୍ନେ ଦିଗ୍‌ବଦନେ ଚତୁଷ୍ଟେ ଗୃହଦ୍ୱାରଂଶକେ ଭବେତ୍ ।
ତଚ୍ଛିରୋ ବା ଶିଶୁର୍ଜାତ ଇତି ସନ୍ମୁନି ସମ୍ମତଂ ।

ଲଗ୍ନରେ ଯେ ଗ୍ରହ ଥିବ ତାହାର ଯେ ଦିଗ କିମ୍ବା ଲଗ୍ନାଧିପତିର ଯେ ଦିଗ ସେ ଦିଗକୁ ଦ୍ୱାର ଥାଏ ଓ ବାଳକର ମସ୍ତକ ଜନ୍ମକାଳରେ ସେହି ଦିଗକୁ ହୋଇଥାଏ ।

## ଧାତ୍ରୀଜ୍ଞାନଂ

ଯୁଗ୍ମାଯୁଗ୍ମ ଲଗ୍ନବଶାତ୍ ପ୍ରସବସ୍ୟ ଚ କାରଣୀ ।
ସଧବା ବିଧବା ଜ୍ଞେୟା କ୍ରମାତ୍ ଖଳୁ ବିଚକ୍ଷଣୈଃ ॥

ଯୁଗ୍ମ ଲଗ୍ନରେ ଜନ୍ମ ହେଲେ ପ୍ରସୂତିର ନିକଟରେ ସଧବା ଧାତ୍ରୀ ଥିବେ । ଅଯୁଗ୍ମ ଲଗ୍ନ ହେଲେ ବିଧବା ଧାତ୍ରୀ ଥିବେ । ଯୁଗ୍ମ ଲଗ୍ନ ହୋଇ ପାପଗ୍ରହ ଦେଖୁଥିଲେ ଧାତ୍ରୀ ବିଧବା ଓ ଅଯୁଗ୍ମ ଲଗ୍ନ ହୋଇ ଶୁଭଗ୍ରହ ଦେଖୁଥିଲେ ଧାତ୍ରୀ ସଧବା ବୋଲି ଠିକ୍ କରିବେ । ଶୁଭାଶୁଭ ଉଭୟ ଗ୍ରହମାନଙ୍କର ଦୃଷ୍ଟି ଥିଲେ ଉଭୟ ପ୍ରକାର ଧାତ୍ରୀ ଥିବେ ।

## ଦୀପଜ୍ଞାନଂ

ଲଗ୍ନେ ଚରେ ପାଣିଗତାଃ ପ୍ରଦୀପାଃ ସ୍ଥିରେ ସ୍ଥିତାଃ ପୂର୍ବଦିଶି ସ୍ଥିତାଶ୍ଚ ।
ଅଥ ଦ୍ୱିଭାବେ ଯଦି ଜନ୍ମକାଳେ ତଦା ପ୍ରଦୀପୋ ନହି ମନ୍ଦିରେ ଚ ॥

ଚର ଲଗ୍ନ ହୋଇଥିଲେ କେହି କେହି ଦୀପ ହାତରେ ଧରି ଠିଆ ହୋଇଥିବେ । ସ୍ଥିର ଲଗ୍ନ ହେଲେ ଲଗ୍ନର ଦିଗ ଅନୁସାରେ ଦୀପ ଥୁଆ ହୋଇ ଥିବାର ଜାଣିବ । ଦ୍ୱିସ୍ୱଭାବ ଲଗ୍ନ ହେଲେ ଦୀପ ନ ଥିବାର ଠିକ୍ କରିବ ।

## ବ୍ରଣାଦିଜ୍ଞାନଂ

କଂଦୃକ୍ଶ୍ରୋତ୍ର-ନସା-କପୋଲହନବୋ ବକ୍ତ୍ରଞ୍ଚ ହୋରାଦୟ-
ସ୍ତେକଣ୍ଠାଂଶକବାହୁପାର୍ଶ୍ୱହୃଦୟକ୍ରୋଡାନି ନାଭିସ୍ତତଃ ।
ବସ୍ତି ଶିଶ୍ନଗୁଦେ ତତଶ୍ଚ ବୃଷଣାବୂରୂ ତତୋ ଜାନୁନୀ
ଜଙ୍ଘାଙ୍ଘ୍ରୀଂ ତ୍ୟୁଭୟତ୍ର ବାମ ମୁଦିତୈର୍ଦ୍ଦୃକ୍କାଣଭାଗୈସ୍ତ୍ରିଧା ॥

ଦ୍ରେକ୍କାଣକୁ ନେଇ ଶରୀର ବିଭାଗ କରାଯାଇ ଅଛି । ଲଗ୍ନର ପ୍ରଥମ ଦ୍ରେକ୍କାଣରେ ଜନ୍ମ ହେଲେ ଲଗ୍ନ ତାହାର ମସ୍ତକ, ଦ୍ୱିତୀୟ ଦକ୍ଷିଣ ଚକ୍ଷୁ, ଦ୍ୱାଦଶ ବାମଚକ୍ଷୁ, ତୃତୀୟ ଦକ୍ଷିଣ କର୍ଣ୍ଣ, ଏକାଦଶ ବାମକର୍ଣ୍ଣ, ଚତୁର୍ଥ ନାସିକାର ଦକ୍ଷିଣପୁଡ଼ା, ଦଶମ ବାମପୁଡ଼ା, ପଞ୍ଚମ ଦକ୍ଷିଣ ଗାଲ, ନବମ ବାମ ଗାଲ, ଷଷ୍ଠ ଦକ୍ଷିଣ ଗଣ୍ଡ, ଅଷ୍ଟମ ବାମ ଗଣ୍ଡ ଏବ ସପ୍ତମ ସ୍ଥାନ ତାହାର ମୁଖ ଅଟେ ।

ଦ୍ୱିତୀୟ ଦ୍ରେକ୍କାଣରେ ଜନ୍ମ ହେଲେ ଲଗ୍ନ କଣ୍ଠ, ଦ୍ୱିତୀୟ ଦକ୍ଷିଣ ସ୍କନ୍ଧ, ଦ୍ୱାଦଶ ବାମ ସ୍କନ୍ଧ, ତୃତୀୟ ଦକ୍ଷିଣ ବାହୁ, ଏକାଦଶ ବାମ-ବାହୁ, ଚତୁର୍ଥ ଦକ୍ଷିଣ ପାର୍ଶ୍ୱ, ଦଶମ ବାମ ପାର୍ଶ୍ୱ, ପଞ୍ଚମ ଦକ୍ଷିଣ ବକ୍ଷସ୍ଥଳ, ନବମ ବାମ ବକ୍ଷସ୍ଥଳ, ଷଷ୍ଠ ଦକ୍ଷିଣ କ୍ରୋଡ଼, ଅଷ୍ଟମ ବାମ କ୍ରୋଡ଼ ଓ ସପ୍ତମ ସ୍ଥାନ ତାହାର ନାଭି ଅଟେ ।

ତୃତୀୟ ଦ୍ରେକ୍କାଣରେ ଜନ୍ମ ହେଲେ ଲଗ୍ନ ତାହାର ତଳପେଟ, ଦ୍ୱିତୀୟ ଶିଶ୍ନ, ଦ୍ୱାଦଶ ଗୁହ୍ୟଦେଶ, ତୃତୀୟ ଦକ୍ଷିଣ ଖାଳକୋଷ, ଏକାଦଶ ବାମ ଖାଳକୋଷ, ଚତୁର୍ଥ ଦକ୍ଷିଣ ଉରୁ, ଦଶମ ବାମ ଉରୁ, ପଞ୍ଚମ ଦକ୍ଷିଣ ଜାନୁ, ନବମ ବାମ ଜାନୁ, ଷଷ୍ଠ ଦକ୍ଷିଣ ଜଙ୍ଘ, ଅଷ୍ଟମ ବାମ ଜଙ୍ଘ ଏବ ସପ୍ତମ ସ୍ଥାନ ପଦଯୁଗଳ ସ୍ୱରୂପ କଳ୍ପନା କରିବେ । ସ୍ଥାନ ବିଶେଷରେ ଗ୍ରହଯୁକ୍ତରେ କପର ବ୍ରଣ, କ୍ଷତ, ତିଳ ଓ ମଶକାଦି ଚିହ୍ନ ଥାଏ ଲେଖାଯିବ ।

ତସ୍ମିନ୍ ପାପଯୁତେ ବ୍ରଣଂ ଶୁଭଯୁତେ ସୌମ୍ୟଂ ହି ଲକ୍ଷ୍ମାଦିଶେତ୍ ।
ସ୍ୱର୍କ୍ଷାଂଶେ ସ୍ଥିରସଂଯୁତେଷୁ ସହଜଃ ସ୍ୟାଦନ୍ୟଥାଗନ୍ତୁକଃ ।
ମନ୍ଦେଽଶ୍ମାଽନିଲଜୋଗ୍ନିଶସ୍ତ୍ରବିଷଜୋ ଭୌମେ ବୁଧେ ଭୂଭବଃ
ସୂର୍ଯ୍ୟେ କାଷ୍ଠଚତୁଷ୍ପଦେନ ହିମଗୌ ଶୃଙ୍ଗ୍ୟବ୍ଜଜୋଽନ୍ୟୈଃ ଶୁଭଃ ॥

ପ୍ରଥମେ ଜାତକ ଯେଉଁ ଦ୍ରେକ୍କାଣରେ ଜନ୍ମ ହୋଇଅଛି ତାହା ଦେଖିବେ । ତାପରେ କେଉଁ କେଉଁ ସ୍ଥାନରେ ପାପଗ୍ରହ ଅଛନ୍ତି ଦେଖି ସେହି ସେହି ସ୍ଥାନକୁ ଜାତକର କେଉଁ କେଉଁ ଅଂଶ ଠିକ୍ କରି ସେହି ସ୍ଥାନମାନଙ୍କରେ ବ୍ରଣାଦି ଚିହ୍ନ ଥିବାର କହିବେ । ଶୁଭଗ୍ରହ ଯୁକ୍ତରେ ସେହି ସେହି ସ୍ଥାନମାନଙ୍କରେ ତିଳ ମଶକାଦି ଚିହ୍ନ ଅଛି ବୋଲି କହିବେ । ପାପଗ୍ରହମାନେ ସ୍ଥିର ରାଶିରେ ବା ସେମାନଙ୍କର ଗୃହରେ ଥିଲେ ଜନ୍ମରୁ ବ୍ରଣାଦି ଚିହ୍ନ ଥାଏ । ଅନ୍ୟ ଗୃହମାନଙ୍କରେ ଥିଲେ ସେହି ସେହି ଗ୍ରହମାନଙ୍କର ଦଶାନ୍ତର୍ଦ୍ଦଶାରେ ବ୍ରଣ ଓ କ୍ଷତାଦି ଚିହ୍ନମାନ ସେହି ସେହି ଅଙ୍ଗରେ ହେବ ବୋଲି କହିବେ । ଶନି ଯୁକ୍ତରେ ବାତାଦି ରୋଗ ହେତୁ ବା ପାଷାଣ ଆଘାତ ହେତୁ, ମଙ୍ଗଳ ଯୁକ୍ତରେ ଅଗ୍ନି, ଶସ୍ତ୍ର ଓ ବିଷହେତୁକ, ବୁଧ ଯୁକ୍ତରେ ଭୂମିରେ ପତନ ହେତୁ, ରବି ଯୁକ୍ତରେ କାଷ୍ଠାଦିର ଆଘାତ ହେତୁ, ଚନ୍ଦ୍ର ଯୁକ୍ତରେ ଶୃଙ୍ଗୀ ବା ଜଳଚର ଜୀବହେତୁକ ବ୍ରଣକ୍ଷତାଦି ଚିହ୍ନ ହୁଏ ।

### ପିତୃବିଦେଶସ୍ଥଜ୍ଞାନଂ

ବାଚ୍ୟଂ ଶିରୋର୍କେନ୍ଦୁ ପିତୁଃ ପରୋକ୍ଷଂ
କ୍ଷପାକରେ ପଶ୍ୟତି ନୈବ ଲଗ୍ନଂ ।
ଚରସ୍ଥିତେଽର୍କେଽଷ୍ଟମଧର୍ମଗେ ବା
ଜାତଃ ପରୋକ୍ଷେ ପିତରୀତି ବାଚ୍ୟଂ ॥
ଲଗ୍ନସ୍ଥିତେ ବା ଧନନାଥସୂନୌ
ଯାମିତ୍ରସଂସ୍ଥେଽପ୍ୟଥବା ମହୀଜେ ।
ଚନ୍ଦ୍ରେ ଚ ଶୁକ୍ରେନ୍ଦୁଜମଧ୍ୟଗେ ବା
ବିଦେଶସଂସ୍ଥେ ପିତରି ପ୍ରଜାତଃ ॥

ଶଃ ହୋଃ

ଜନ୍ମ ଲଗ୍ନକୁ ଚନ୍ଦ୍ରର ଦୃଷ୍ଟି ନ ଥିଲେ ପିତାର ପରୋକ୍ଷରେ ବାଳକର ଜନ୍ମ ହୁଏ । ଲଗ୍ନର ଅଷ୍ଟମ ବା ନବମ ସ୍ଥାନ ଚରରାଶି ହୋଇଥିବ, ସେଥିରେ ରବି ଥିବ, ତେବେ ପିତାର ପରୋକ୍ଷରେ ବାଳକର ଜନ୍ମ ହୁଏ । ଲଗ୍ନରେ ଶନି ବା ସପ୍ତମରେ ମଙ୍ଗଳ ଥିଲେ କିମ୍ବା ଚନ୍ଦ୍ର, ଶୁକ୍ର ଓ ବୁଧର ମଧ୍ୟବର୍ତ୍ତୀ ହେଲେ ପିତାର ବିଦେଶ ସ୍ଥିତି ସମୟରେ ବାଳକ ଜନ୍ମ ହୁଏ ।

## ଜାରଜଯୋଗଃ

ନ ଲଗ୍ନମିନ୍ଦୁଞ୍ଚ ଗୁରୁର୍ନିରୀକ୍ଷତେ ନ ବା ଶଶାଙ୍କଂ ରବିଣା ସମନ୍ୱିତଂ
ସପାପକୋଽର୍କେଣ ଯୁତୋଽଥବା ଶଶୀ ପରେଣ ଜାତଂ ପ୍ରବଦନ୍ତି
ନିଶ୍ଚୟାତ୍ ॥

ଲଗ୍ନ ଓ ଚନ୍ଦ୍ରର ପ୍ରତି ବୃହସ୍ପତିର ଦୃଷ୍ଟି ନ ଥିଲେ କିମ୍ବା ରବିଯୁକ୍ତ ଚନ୍ଦ୍ର ପ୍ରତି ବୃହସ୍ପତିର ଦୃଷ୍ଟି ନ ଥିଲେ ଅଥବା ପାପଯୁକ୍ତ ଚନ୍ଦ୍ର ରବିଯୁକ୍ତ ହେଲେ ଜାତକ ଜାରଜ ବୋଲି ଜଣା ଯାଏ ।

ଭଗ୍ନ ପାଦର୍କ୍ଷସଂଯୋଗାଦ୍ ଦ୍ୱିତୀୟା ଦ୍ୱାଦଶୀ ଯଦି ।
ସପ୍ତମୀ ଶ୍ୟର୍କ ମନ୍ଦାରେ ଜାୟତେ ଜାରଜୋ ଧ୍ରୁବଂ ॥

ରବି, ଶନି ବା ମଙ୍ଗଳବାରରେ ଦ୍ୱିତୀୟା, ସପ୍ତମୀ ଓ ଦ୍ୱାଦଶୀ ତିଥିରେ ଯଦି ଭଗ୍ନପାଦ ନକ୍ଷତ୍ର ହୋଇଥାଏ ତେବେ ଏହି ଦିବସଜାତ ବାଳକମାନଙ୍କୁ ଜାରଜ କହନ୍ତି । ଭଗ୍ନପାଦ ନକ୍ଷତ୍ର ଯଥା :—କୃତ୍ତିକା, ପୁନର୍ବସୁ, ଉତ୍ତରଫାଲ୍‌ଗୁନୀ ବିଶାଖା, ଉତ୍ତରାଷାଢ଼ା ଓ ପୂର୍ବଭାଦ୍ରପଦ ।

ଜାରଯୋଗଭଙ୍ଗଃ

ଗୁରୁକ୍ଷେତ୍ରଗତେ ଚନ୍ଦ୍ରେ ତଦ୍‌ଯୁକ୍ତେ ସ୍ୱାନ୍ୟବେଶ୍ମନ ।
ତଦ୍ଦ୍ରେକାଣ ନବାଂଶେ ବା ଜାୟତେ ନ ପରେଣ ସଃ ॥

ଚନ୍ଦ୍ର ଧନୁ ବା ମୀନରେ ଥିଲେ କୋଚେତ୍ ବୃହସ୍ପତିଙ୍କ ସଙ୍ଗରେ ଥିଲେ ବା ବୃହସ୍ପତିଙ୍କର ଦ୍ରେକାଣରେ ବ ନବାଂଶରେ ଥିଲେ ଜାତକ ପରଜାତ ନୁହେ ।

ଗ୍ରହବଲ ବିଷୟଃ

ସ୍ୱୋଚ୍ଚେ ସ୍ଥିତା ଶ୍ରେଷ୍ଠବଲା ଭବନ୍ତି
ମୂଳ ତ୍ରିକୋଣେ ସ୍ୱଗୃହେ ଚ ମଧ୍ୟାଃ ।
ଉଷ୍ଣେକ୍ଷିତା ମିତ୍ରଗୃହାଶ୍ରିତା ବା,
ବୀର୍ଯ୍ୟଂ ତଦାଳ୍ପଂ ସମୁପାବଦନ୍ତି ॥

ଗ୍ରହ ଉଚ୍ଚରେ ଥିଲେ ଶ୍ରେଷ୍ଠବଳୀ, ମୂଳ ତ୍ରିକୋଣ ବା ସ୍ୱଗୃହରେ ମଧ୍ୟବଳୀ, ମିତ୍ରଦୃଷ୍ଟ, ମିତ୍ରଗୃହଗତ ହେଲେ ସ୍ୱଳ୍ପବଳୀ ହୁଏ ।

ଚେଷ୍ଟାବଲମାହ:—

ନର ଯୁବତି ତୁଳାଙ୍ଗାଃ ସନ୍ନିଷଟ୍କେ ମୃଗାଦୌ
ଶଶିରପି ଶଶିକାଦୌ ଚନ୍ଦ୍ରଜସ୍ତୂଭୟସ୍ଥଃ ।
ବିପୁଳ କିରଣ ଯୁକ୍ତାଃ ବକ୍ରିଣଃ ସୂର୍ଯ୍ୟମୁକ୍ତାଃ
ଶଶି ଯୁତ ଜୟୁପଶାନଟେଷ୍ଟସ୍ୟ ବୀର୍ଯ୍ୟବନ୍ତଃ ॥

ମକର, କୁମ୍ଭ, ମୀନ, ମେଷ, ବୃଷ, ମିଥୁନ ଏହି ଛଗୋଟି ରାଶିରେ ରବି, ମଙ୍ଗଳ, ବୃହସ୍ପତି, ଚନ୍ଦ୍ର, ଶୁକ୍ର ଏମାନେ ରହିଲେ ଚେଷ୍ଟା ବଲଯୁକ୍ତ

ହୁଅନ୍ତି । କର୍କଟ, ସିଂହ, କନ୍ୟା, ତୁଳା, ବୃଶ୍ଚ, ଧନୁ ଏହି ରାଶିମାନଙ୍କରେ ଶନି ଥିଲେ ଚେଷ୍ଟା ବଳଯୁକ୍ତ ହୁଏ । ବୁଧ ସମସ୍ତ ସ୍ଥାନରେ ଚେଷ୍ଟାବଳ-ଯୁକ୍ତ । ଯେଉଁ ଗ୍ରହମାନେ ବକ୍ରଯୁକ୍ତ ହୋଇ ନ ଥିବେ, ଚନ୍ଦ୍ରଙ୍କ ସହ ଯୁକ୍ତ ହୋଇଥିବେ ବା ଉତ୍ତମ କିରଣଯୁକ୍ତ ହୋଇଥିବେ ସେମାନେ ଚେଷ୍ଟାବଳଯୁକ୍ତ ହେବେ ।

## କାଳବଳମାହ

ଶନିଶୁକ୍ରକୁଜେନ୍ଦୁଜ୍ଞ ଗୁରବଃ ଶିଶିରାଦିଷୁ,
ଭବନ୍ତି କାଳବଳିନଃ ଗ୍ରୀଷ୍ମେ ସୂର୍ଯ୍ୟସ୍ତଥୈବ ଚ ।

ଶନି ଶିଶିର ଋତୁରେ, ଶୁକ୍ର ବସନ୍ତ ଋତୁରେ, ମଙ୍ଗଳ ଓ ରବି ଗ୍ରୀଷ୍ମ ଋତୁରେ ଚନ୍ଦ୍ର ବର୍ଷା ଋତୁରେ, ବୁଧ ଶରତ୍ ଋତୁରେ ଓ ବୃହସ୍ପତି ହେମନ୍ତ ଋତୁରେ ବଳବାନ୍ । ଜାତକ ଯେଉଁ ଋତୁରେ ଜନ୍ମଗ୍ରହଣ କରି-ଥିବ, ସେହିଋତୁରେ ଯେ ଗ୍ରହ ବଳବାନ୍ ସେ ଗ୍ରହ ତାହାର ଦଶାନ୍ତ-ର୍ଦ୍ଦଶାରେ ଶୁଭଫଳ ପ୍ରଦାନ କରିବ ।

ନିଶି ଶଶିକୁଜସୌରାଃ ସର୍ବଦା ଜ୍ଞୋ ହ୍ନି ଚାନ୍ୟେ
ବହୁଳସିତଗତାଃ ସ୍ୟୁଃ କ୍ରୂରସୌମ୍ୟା କ୍ରମେଣ ।
ଅୟନ ଦିବସ ହୋରା ମାସପୈଃ କାଲବୀର୍ଯ୍ୟଂ
ଶକୁବୁଗୁଶୁ ଚ ଯାଦ୍ୟା ବୃଦ୍ଧିତୋ ବୀର୍ଯ୍ୟବନ୍ତଃ ॥ ବୃଃଜାଃ

ରାତ୍ରିଜନ୍ମ ବ୍ୟକ୍ତିର ଚନ୍ଦ୍ର, ମଙ୍ଗଳ ଶନି; ଦିବାଜନ୍ମ ବ୍ୟକ୍ତିର ରବି, ବୁଧ, ବୃହସ୍ପତି, ଶୁକ୍ର ଏମାନେ କାଳବଳଯୁକ୍ତ ହୁଅନ୍ତି । କୃଷ୍ଣ ପକ୍ଷରେ ପାପଗ୍ରହ ଓ ଶୁକ୍ଲ ପକ୍ଷରେ ଶୁଭଗ୍ରହମାନେ ବଳବାନ୍ । ବର୍ଷର ଅଧିପତି ବାରର ଅଧିପତି ( ବାରାଧିପର ଯାମାର୍ଦ୍ଧକାଳ ପର୍ଯ୍ୟନ୍ତ ) ମାସାଧିପତି

ଲଗ୍ନାଧିପଙ୍କ ଏହମାନେ କାଳବଳଯୁକ୍ତ ହୁଅନ୍ତି । ଶନି ଅପେକ୍ଷା ମଙ୍ଗଳ ତା ଅପେକ୍ଷା ବୁଧ, ତା ଅପେକ୍ଷା ବୃହସ୍ପତି, ତା ଅପେକ୍ଷା ଶୁକ୍ର ଓ ତା ଅପେକ୍ଷା ଚନ୍ଦ୍ର କ୍ରମରେ କାଳବଳଯୁକ୍ତ ହୁଅନ୍ତି ।

### ଚନ୍ଦ୍ରବଳଜ୍ଞାନଂ

ମାସେ ତୁ ଶୁକ୍ଳ ପ୍ରତିପତ୍ପ୍ରବୃତ୍ତେ ପୂର୍ବେ ଶଶୀ ମଧ୍ୟବଲୋ ଦଶାହେ ।
ଶ୍ରେଷ୍ଠୋ ଦ୍ୱିତୀୟେଽଲ୍ପବଲସ୍ତୃତୀୟେ ସୌମ୍ୟେକ୍ଷିତୋ ବଲବାନ୍—
ସଦୈବ ॥

ଶୁକ୍ଳ ପ୍ରତିପଦ୍‌ଠାରୁ ଆରମ୍ଭ କରି ଦଶମୀପର୍ଯ୍ୟନ୍ତ ଚନ୍ଦ୍ରର ବଳ ମଧ୍ୟମ, ଶୁକ୍ଳ ଦଶମୀଠାରୁ କୃଷ୍ଣ ପଞ୍ଚମୀ ପର୍ଯ୍ୟନ୍ତ ବଳ ଉତ୍ତମ, କୃଷ୍ଣ ପଞ୍ଚମୀ ଠାରୁ ଅମାବାସ୍ୟା ପର୍ଯ୍ୟନ୍ତ ବଳହୀନ ହୁଏ । ଶୁଭଗ୍ରହ ଦୃଷ୍ଟିରେ ଥିଲେ ଚନ୍ଦ୍ର ସର୍ବଦା ବଳବାନ୍ ହୁଏ ।

### ଦିଗ୍‌ବଳଜ୍ଞାନଂ

ଲଗ୍ନେ ସୌମ୍ୟସୁରାଚାର୍ଯ୍ୟୌ କୁଜାର୍କୌ ଦଶମେ ତଥା ।
ଦ୍ୟୂନେ ସୌରି ଚତୁର୍ଥେ ତୁ ଶିତେନ୍ଦୂ ଦିଗ୍‌ବଳାନ୍ୱିତୌ ॥

ଲଗ୍ନସ୍ଥ ବୁଧ ଓ ବୃହସ୍ପତି ପୂର୍ବଦିଗ୍‌ବଳୀ, ଦଶମସ୍ଥ ରବି ଓ ମଙ୍ଗଳ ଦକ୍ଷିଣ ଦିଗ୍‌ବଳୀ, ସପ୍ତମସ୍ଥ ଶନି ପଶ୍ଚିମ ଦିଗ୍‌ବଳୀ, ଚତୁର୍ଥସ୍ଥ ଚନ୍ଦ୍ର ଓ ଶୁକ୍ର ଉତ୍ତର ଦିଗ୍‌ବଳୀ ଅଟନ୍ତି । ଯେଉଁ ସ୍ଥାନରେ ଥିଲେ ଯେ ଦିଗରେ ଗ୍ରହ ବଳବାନ୍ ବୋଲି କୁହାଗଲା ତାହାର ଦଶାନ୍ତର୍ଦଶାରେ ଶୁଭ ହୋଇ-ଥିଲେ ସେହି ଦିଗରୁ ଧନଲାଭ କରାଇଥାଏ ।

### ଷଡ଼୍‌ଭାବ ନିର୍ଣ୍ଣୟଃ

ଲଜ୍ଜିତୋ ଗର୍ବିତଶ୍ଚୈବ କ୍ଷୁଧିତସ୍ତୃଷିତସ୍ତଥା ।
ମୁଦିତଃ କ୍ଷୋଭିତଶ୍ଚୈବ ଗ୍ରହଭାବା ପ୍ରକୀର୍ତ୍ତିତାଃ ॥

ଲଜ୍ଜିତ, ଗର୍ବିତ, କ୍ଷୁଧିତ, ତୃଷିତ, ମୁଦିତ, କ୍ଷୋଭିତ ଏହି ଛଅ ଭାବକୁ ନେଇ ଗ୍ରହମାନଙ୍କର ଶୁଭାଶୁଭ ବିଚାର କରାଯାଏ ।

### ଲଜ୍ଜିତ ଗ୍ରହଃ

ପୁତ୍ରଗେହଗତଃ ଖେଟଃ ରାହୁକେତ୍ୱୋର୍ଯୁତୋଽପି ବା ।
ରବିମନ୍ଦକୁଜୈର୍ଯୁକ୍ତୋ ଲଜ୍ଜିତୋ ଗ୍ରହ ଏବ ଚ ॥

ଯେଉଁ ଗ୍ରହ ପଞ୍ଚମରେ ଥାଇ ରାହୁ, କେତୁ, ରବି ଶନି ବା ମଙ୍ଗଳ ସହ ଯୁକ୍ତ ହୋଇଥିବ, ସେ ଗ୍ରହ ଲଜ୍ଜିତ ଅଟେ ।

### ଗର୍ବିତ ଗ୍ରହଃ

ତୁଙ୍ଗସ୍ଥାନଂ ସ୍ଥିତୋଽପି ସ୍ୟାତ୍ ତ୍ରିକୋଣେଽପି ଭବେତ୍ ପୁନଃ
ଗର୍ବିତଃ ସ ନିଗଦିତୋ ମୁନିଭିଃ କୃତନିଶ୍ଚୟଃ ॥

ଯେଉଁ ଗ୍ରହ ଉଚ୍ଚ ହୋଇଥିବ ବା ମୂଳ ତ୍ରିକୋଣରେ ଥିବ ସେ ଗ୍ରହ ଗର୍ବିତ ଗ୍ରହ ବୋଲି ମୁନିଗଣ ନିଶ୍ଚୟ କରିଅଛନ୍ତି ।

### କ୍ଷୁଧିତ ଗ୍ରହଃ

ଶତ୍ରୁଗେହୀ ରିପୁଯୁତଃ ଶତ୍ରୁଦୃଷ୍ଟୋ ଭବେଦ୍ ଯଦି ।
କ୍ଷୁଧିତଃ ସ ଚ ବିଜ୍ଞେୟଃ ଶନିଯୁକ୍ତୋ ଯଥା ତଥା ॥

ଯେଉଁ ଗ୍ରହ ଶତ୍ରୁ ଗୃହରେ ଥାଏ କିମ୍ବା ଶତ୍ରୁ ଯୁକ୍ତ ହୁଏ କିମ୍ବା ଶତ୍ରୁ ଗ୍ରହ କର୍ତ୍ତୃକ ଦୃଷ୍ଟ ହୁଏ କିମ୍ବା ଖଳ ସହିତ ଯୁକ୍ତ ହୁଏ ସେହି ଗ୍ରହ କ୍ଷୁଧିତ ।

### ତୃଷିତ ଗ୍ରହଃ

ଜଳରାଶୌ ସ୍ଥିତଃ ଖେଟଃ ଶତ୍ରୁଣା ସ୍ୱବଲୋକିତଃ ।
ଶୁଭଗ୍ରହା ନପଶ୍ୟନ୍ତି ତୃଷିତଃ ସ ଉଦାହୃତଃ ॥

ଯେଉଁ ଗ୍ରହ କର୍କଟ, ମକର, କୁମ୍ଭ ବା ମୀନ ସ୍ଥିତ ହୋଇ ଶତ୍ରୁ ଗ୍ରହ କର୍ତ୍ତୃକ ଦୃଷ୍ଟ ହୁଏ ତାହାଙ୍କୁ ଶୁଭ ଗ୍ରହମାନେ ଯଦି ଦେଖନ୍ତି ନାହିଁ ସେହି ଗ୍ରହ ତୃଷିତ ଅଟେ ।

### ମୁଦିତ ଗ୍ରହଃ

ମିତ୍ରଗେହେ ମିତ୍ରଯୁକ୍ତୋ ମିତ୍ରେଣ ସ୍ୱବଲୋକିତଃ ।
ଗୁରୁଣା ସହିତୋ ଯସ୍ତୁ ମୁଦିତଃ ସଃ ପ୍ରକୀର୍ତ୍ତିତଃ ॥

ଯେଉଁ ଗ୍ରହ ମିତ୍ର ଗୃହରେ ଥାଏ କିମ୍ବା ମିତ୍ର ଯୁକ୍ତ ହୋଇଥାଏ ଅଥବା ମିତ୍ର ଗ୍ରହ କର୍ତ୍ତୃକ ଦୃଷ୍ଟ ହେଉଥାଏ କିମ୍ବା ବୃହସ୍ପତି ଯୁକ୍ତ ହୋଇଥାଏ, ସେହି ଗ୍ରହକୁ ମୁଦିତ କହନ୍ତି ।

### କ୍ଷୁଭିତ ଗ୍ରହଃ

ରବିଣା ସହିତୋ ଯସ୍ତୁ ପାପାଃ ପଶ୍ୟନ୍ତି ସର୍ବଦା ।
କ୍ଷୁଭିତଂ ତଂ ବିଜାନୀୟାତ୍ ଶତ୍ରୁଣା ଯଦି ବୀକ୍ଷିତଃ ।

ଯେଉଁ ଗ୍ରହ ଶତ୍ରୁ ସହିତରେ ଥାଇ ପାପଗ୍ରହ ଦ୍ୱାରା ଓ ତାହାର ଶତ୍ରୁ ଦ୍ୱାରା ଦୃଷ୍ଟ ହେବ ସେହି ଗ୍ରହ କ୍ଷୁଭିତ ଅଟେ ।

ଏହି ଯେ ଛଗୋଟି ଭାବ ଲେଖାଗଲା ସେଥି ମଧ୍ୟରୁ ମୁଦିତ ଓ ଗର୍ବିତ ଏହି ଦୁଇଭାବରେ ଥିବା ଗ୍ରହମାନେ ଯେଉଁ ଯେଉଁ ଭାବରେ ଥିବେ ସେହି ସେହି ଭାବମାନଙ୍କର ଶୁଭ ହେବ ଓ ସେହି ସେହି ଗ୍ରହମାନେ ସେମାନଙ୍କର ଦଶାନ୍ତର୍ଦଶାରେ ଶୁଭଫଳ ପ୍ରଦାନ କରିବେ । ଲଜ୍ଜିତ, କ୍ଷୁଧିତ, ତୃଷିତ ବା କ୍ଷୁଭିତ ଭାବରେ ଯେ ଗ୍ରହମାନେ ଥିବେ ସେମାନେ ଯେଉଁ ଯେଉଁ ଭାବରେ ଥିବେ ସେହି ସେହି ଭାବମାନଙ୍କର ବିନାଶ କରିବେ ଓ ଦଶାନ୍ତର୍ଦଶାରେ ଅଶୁଭ ଫଳ ପ୍ରଦାନ କରିବେ ।

### ଶୟନାଦି ଦ୍ୱାଦଶାବସ୍ଥା ବିଚାରଃ

ଯସ୍ମିନ୍ନୃକ୍ଷେ ସ୍ଥିତଃ ଖେଟସ୍ତେନ ତଂ ପରିପୂରୟେତ୍ ।
ଅଂଶାଙ୍କୈଃ ପୁନରାପୂର୍ଯ୍ୟ ସ୍ୱନକ୍ଷତ୍ରଂ ନିୟୋଜୟେତ୍ ।
ଜାତଦଣ୍ଡଂ ଜାତଲଗ୍ନଂ ତଦୈକ୍ୟଂ ଭାନୁଭିର୍ହରେତ୍ ॥

ଗ୍ରହ ଯେଉଁ ରାଶିରେ ଥିବ ସେହି ରାଶିର ଅଙ୍କକୁ ଗ୍ରହର ଅଙ୍କ ଦ୍ୱାରା ଗୁଣି ଗ୍ରହ ସେହି ରାଶିର ଯେତେ ଅଂଶ ଭୋଗ କରିଥିବ ଓ ସେହି ଅଂଶଦ୍ୱାରା ତାକୁ ପୁନଶ୍ଚ ଗୁଣିବେ । ଏହି ଗୁଣିତାଙ୍କରେ ସେହି ଗ୍ରହର ଜନ୍ମ ନକ୍ଷତ୍ର ଅଙ୍କ ମିଶାଇବେ । ଜନ୍ମ ସମୟ ଯେତେ ଦଣ୍ଡ ରାତ୍ରି ବା ଯେତେ ଦଣ୍ଡ ଦିନ ହୋଇଥିବ ତାହାର ସଂଖ୍ୟା ମିଶାଇବେ । ଯେଉଁ ଲଗ୍ନରେ ବାଳକର ଜନ୍ମ ତାହା ମଧ୍ୟ ମିଶାଇବେ । ଏହି ଉପରୋକ୍ତ ମିଶାଣ ଫଳକୁ ୧୨ ରେ ହରଣ କରିବେ । ଅଂଶ ଯାହା ରହିବ ସେଥିରୁ ଅବସ୍ଥା ବିଚାର କରିବେ ।

## ଗ୍ରହଜାତନକ୍ଷତ୍ରଂ

ବିଶାଖାକଲଚୋତ୍ତ୍ଯାନ ବୈଷ୍ଣବଂ ଭଗଦୈବତଂ ।
ପୁଷ୍ୟାପୌଷ୍ଣୋ ଯମଃ ସର୍ପୋ ଜନ୍ମର୍କ୍ଷାର୍ଣ୍ୟର୍କତଃ କ୍ରମାତ୍ ॥

ରବିର ବିଶାଖା, ଚନ୍ଦ୍ରର କୃତ୍ତିକା, ମଙ୍ଗଳର ପୂର୍ବାଷାଢ଼ା, ବୁଧର ଶ୍ରବଣା, ବୃହସ୍ପତିର ପୂର୍ବାଫାଲ୍ଗୁନୀ, ଶୁକ୍ରର ପୁଷ୍ୟା, ଶନିର ରେବତୀ, ରାହୁର ଭରଣୀ ଓ କେତୁର ଅଶ୍ଳେଷା ଜନ୍ମ ନକ୍ଷତ୍ର ଅଟେ ।

## ଦ୍ୱାଦଶ ଅବସ୍ଥା

ଶୟନଂ ଚୋପବେଶଞ୍ଚ ନେତ୍ରପାଣିଃ ପ୍ରକାଶନଂ ।
ଗମନଂ ଗମନେଚ୍ଛା ଚ ସଭାସ୍ଥାଂ ବସତିସ୍ତଥା ।
ଆଗମନଂ ଭୋଜନଞ୍ଚ ନୃତ୍ୟଲିପ୍ସା ଚ କୌତୁକଂ ।
ନିଦ୍ରା ଗ୍ରହାଣାଂ ଚେଷ୍ଟା ହି ଗଦିତାଃ ପୂର୍ବ ପଣ୍ଡିତୈଃ ॥

ପୂର୍ବୋକ୍ତ ମିଶ୍ରଣ ଅଙ୍କକୁ ୧୨ରେ ହରଣ କଲେ ୧ ଯଦି ଅଂଶ ରହେ, ତେବେ ସେହି ଗ୍ରହ ଶୟନାବସ୍ଥାରେ ଥିବାର ଠିକ କରିବେ । ୨ ରହିଲେ ଉପବେଶନ, ୩ ରହିଲେ ନେତ୍ରପାଣି, ୪ ରହିଲେ ପ୍ରକାଶନ, ୫ ରହିଲେ ଗମନ, ୬ ରହିଲେ ଗମନେଚ୍ଛା, ୭ ରହିଲେ ସଭାସ୍ଥ, ୮ ରହିଲେ ଅଗମନ, ୯ ରହିଲେ ଭୋଜନ, ୧୦ ରହିଲେ ନୃତ୍ୟଲିପ୍ସା, ୧୧ ରହିଲେ କୌତୁକ ଓ ଅଂଶ ନ ରହି ଛିଡ଼ିଗଲେ ଗ୍ରହ ନିଦ୍ରାବସ୍ଥାରେ ଅଛି ବୋଲି ଜାଣିବେ ।

ଉଦାହରଣ :—୧ ନମ୍ବର ଜାତକ ( ପୂର୍ବୋକ୍ତ ) ର ରବିର ଅବସ୍ଥା କଣ ?

ରବି ତୁଳାରେ ଅଛି । ତୁଳାରାଶିର ସଂଖ୍ୟା=୨
ଗ୍ରହ (ରବିର) ଅଙ୍କ=୧

ରାଶି ସଂଖ୍ୟାକୁ ଗ୍ରହ ସଂଖ୍ୟାରେ ଗୁଣିବାରୁ ହେଲା ୨×୧=୨

ତୁଳାରାଶିର ୧୪ ଅଂଶ ରବି ଭୋଗ କରୁଅଛି । ପୂର୍ବୋକ୍ତ ଗୁଣିତାଙ୍କ ୨କୁ ଏହି ଅଂଶ ସଂଖ୍ୟାରେ ଗୁଣିବାରୁ ହେଲା ୨×୧୪ =୨୮ । ଗ୍ରହର ଜନ୍ମନକ୍ଷତ୍ର ସଂଖ୍ୟା ୧୬ । ଜନ୍ମକାଳୀନ ବେଳ ୧୫ ଦଣ୍ଡ ଅତୀତ ୧୬ ଦଣ୍ଡରୁ ଭୋଗ ଜାତ ଲଗ୍ନ ସଂଖ୍ୟା ୧୦ ; ଏ ସମସ୍ତ ପୂର୍ବୋକ୍ତ ଗୁଣିତାଙ୍କ ୨୮ ରେ ମିଶାଇବାରୁ ହେଲା ୨୮+୧୬+୧୬ +୧୦=୧୮୦, ଏହାକୁ ୧୨ ରେ ହରଣ କରିବାରୁ ଲବ୍ଧ ଆସିଲା ୧୧, ଅଂଶ ରହିଲା ୮ । ଅଂଶରୁ ଅବସ୍ଥା ଜଣାଯାଏ । ୮ ରହିବା ହେତୁ ରବି ଆଗମନ ଅବସ୍ଥାରେ ଥିବା ଜଣାଗଲା ।

ଶୁଭାଶୁଭ ଅବସ୍ଥା ନିର୍ଣ୍ଣୟଃ

ରବି :—ଉପବେଶନ, ପ୍ରକାଶନ, ସଭାସ୍ଥ, ନୃତ୍ୟଲିପ୍ସା, କୌତୁକ ।

ଚନ୍ଦ୍ର :—ପ୍ରକାଶନ, ଗମନେଚ୍ଛା, ସଭାସ୍ଥ, ଆଗମନ, ଭୋଜନ, ନୃତ୍ୟଲିପ୍ସା, କୌତୁକ ।

ମଙ୍ଗଳ :—ନେତ୍ରପାଣି (୧୦ମ ଛଡ଼ା) ସଭାସ୍ଥ (୭ମ ଓ ୨ମ ଛଡ଼ା) ଭୋଜନ, ନୃତ୍ୟଲିପ୍ସା କୌତୁକ ।

ବୁଧ :—ଉପବେଶନ, ପ୍ରକାଶନ, ନୃତ୍ୟଲିପ୍ସା ।

ବୃହସ୍ପତି :—ପ୍ରକାଶନ, ଗମନେଚ୍ଛା, ଆଗମନ, ଭୋଜନ, ନୃତ୍ୟଲିପ୍ସା, କୌତୁକ ।

ଶୁକ୍ର :—ଶୟନ, ନେତ୍ରପାଣି (୧୦ମ ଛଡ଼ା) ପ୍ରକାଶନ, ସଭାସ୍ଥ, ଭୋଜନ, ନୃତ୍ୟଲିପ୍ସା, କୌତୁକ ।

ଶନି :—ନେତ୍ରପାଣି, ପ୍ରକାଶନ, ଗମନେଚ୍ଛ, କୌତୁକ ।

ରାହୁ :—ଶୟନ, ପ୍ରକାଶନ, ଗମନେଚ୍ଛା, ସଭାସ୍ଥ, କୌତୁକ, ନିଦ୍ରା ।

କେତୁ :—ଶୟନ, ପ୍ରକାଶନ, ଗମନେଚ୍ଛା, ସଭାସ୍ଥ, କୌତୁକ, ନିଦ୍ରା ।

ଉପରେ ଯେଉଁ ଗ୍ରହ ନିକଟରେ ଯେଉଁ ଅବସ୍ଥା ଲେଖାଗଲା, ସେହି ଗ୍ରହ ସେହି ଅବସ୍ଥାରେ ଥିଲେ ଶୁଭ ଫଳ ପ୍ରଦାନ କରିବ । ଅନ୍ୟ ଯେ ଅବସ୍ଥାରେ ଥିଲେ ଅଶୁଭ ଫଳ ପ୍ରଦାନ କରିବ ।

ଭାବାଧିପତି ବଳଲକ୍ଷଣମାହ—

ଯଦ୍ଭାବନାଥୋ ରିପୁରନ୍ଧ୍ରରିଫେ
ଦୁଃସ୍ଥାନପୋ ଯଦ୍ଭବନସ୍ଥିତୋ ବା ।
ତଦ୍ଭାବନାଶଂ କଥୟନ୍ତି ତଜ୍ଜ୍ଞାଃ
ଶୁଭେକ୍ଷିତେ ତଦ୍ଭବନସ୍ୟ ସୌଖ୍ୟଂ ॥

ଯେଉଁ ଭାବର ଅଧିପତିମାନେ ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିବେ, ପୁଣି ଷଷ୍ଠ, ଅଷ୍ଟମ, ଦ୍ୱାଦଶର ଅଧିପତିମାନେ ଯେଉଁ ଭାବମାନଙ୍କରେ ଥିବେ, ସେହି ଭାବମାନଙ୍କୁ ବିନାଶ କରିବେ । କିନ୍ତୁ ଏହିମାନେ ଯଦି ଶୁଭ ଗ୍ରହମାନଙ୍କର ଦୃଷ୍ଟିରେ ଥିବେ, ତେବେ ଅଶୁଭ ଫଳ ପ୍ରଦାନ କରିବେ ନାହିଁ ।

ଷଷ୍ଠସ୍ଥୋ ରିପୁଗେହସ୍ଥଃ ଖେଟୋ ଭବବିନାଶକଃ ।
ମୂଳସ୍ୱତୁଙ୍ଗମିତ୍ରସ୍ଥୋ ଭାବବୃଦ୍ଧିକରୋ ଭବେତ୍ ॥

ପା, ଜା,

ଯେଉଁ ଭାବର ଅଧିପତି ହେଉ ନୀଚରେ ଥିଲେ କିମ୍ବା ଶତ୍ରୁଗୃହରେ ଥିଲେ ସେହି ଭାବବିନାଶ କରିବ । ଉଚ୍ଚରେ, ମିତ୍ରଗୃହରେ ବା ସ୍ୱଗୃହରେ ଥିଲେ ଭାବର ଶୁଭଫଳକୁ ବୃଦ୍ଧି କରିବେ ।

ନାଶସ୍ଥାନଗତୋ ଢବାକରକରେରି ଲୁପ୍ତସ୍ତୁ ସଦାଶିପଃ ।
ତଦ୍ଭାବସ୍ୟ ବିନାଶନଂ ଯଦି ଭବେ ସୌମ୍ୟୈରଯୁକ୍ତେକ୍ଷିତଃ ॥

ସ, ଚ,

ଯେ ଭାବର ଅଧିପତି ଅଷ୍ଟମରେ ଥିବେ କିମ୍ବା ଅସ୍ତ ହୋଇଥିବେ ଓ ଶୁଭଗ୍ରହ ତାହାଙ୍କ ସହ ଯୁକ୍ତ ବା ତାହାଙ୍କୁ ଦେଖୁ ନ ଥିବେ ସେହିପରି ଭାବର ବିନାଶ ହୁଏ ।

ଭାବେଶାକ୍ରାନ୍ତରାଶୀଶଃ ଦୁଃସ୍ଥେ ଭାବସ୍ୟ ଦୁର୍ବଳଂ ।
ସ୍ୱୋଚ୍ଚମିତ୍ରସ୍ୱରାଶିସ୍ଥେ ଭାବପୁଷ୍ଟିଂ ବଦେଦ୍‌ବୁଧଃ ॥

ଜା, ସ,

ଯେ ଭାବର ସ୍ୱାମୀ ଯେଉଁ ଗ୍ରହର ଗୃହରେ ଥିବ; ସେହି ଗ୍ରହ ଯଦି ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିବ; ତେବେ ସେହି ଭାବର ବିନାଶ ଘଟିବ । ଯଦି ଗୃହସ୍ୱାମୀ ଉଚ୍ଚସ୍ଥ, ମିତ୍ରକ୍ଷେତ୍ରସ୍ଥ ବା ସ୍ୱଗୃହସ୍ଥ ହୋଇଥିବେ, ତେବେ ସେହି ଭାବର ବୃଦ୍ଧି ହେବ ।

ଭାବାଂଶତୁଲ୍ୟା ଖଗାସ୍ତୁ ବର୍ତ୍ତିମାନୋ
ଭାବୋତ୍‌ଥଂ ପୂର୍ଣ୍ଣଫଳଂ ଦଧନ୍ତେ ।
ଭାବୋନକେ ବୃଦ୍ଧ୍ୟଧିକେ ଚ ଖେଟେ
ତ୍ରୈରାଶିକେନାସ୍ୟ ଫଳଂ ପ୍ରକଲ୍ପ୍ୟଂ ।

ଯେ ଭାବର ଭାବସ୍ଫୁଟ ଯାହା ହେବ, ସେହି ଭାବରେ ଥିବା ଗ୍ରହସ୍ଫୁଟ ସେତିକ ହେଲେ ଗ୍ରହ ଭାବୋକ୍ତ ଫଳ ଶୁଭ ହେଉ ବା ଅଶୁଭ ହେଉ ପୂର୍ଣ୍ଣମାତ୍ରାରେ ପ୍ରଦାନ କରିବ । ଗ୍ରହସ୍ଫୁଟ ଭାବସ୍ଫୁଟ ଅପେକ୍ଷା କମ୍ ହେଲେ ଅନୁପାତରେ ଫଳର ସାମାନ୍ୟ ଊଣା; ଏହି ସ୍ଫୁଟ ଅଧିକ ହେଲେ ଅନୁପାତରେ ଫଳ ବିଶେଷ କମ୍ ବୋଲି ନିଶ୍ଚୟ କରିବେ । ମନେକର, ଗୋଟିଏ ଜାତକର ଲଗ୍ନସ୍ଫୁଟ ହେଲା କର୍କଟର ୧୫ ଅଂଶରେ । ଶୁକ୍ର ଲଗ୍ନରେ ଅଛନ୍ତି । ଶୁକ୍ରସ୍ଫୁଟ ମଧ୍ୟ କର୍କଟର ୧୫ ଅଂଶରେ ହେଲା; ଏଥିରୁ ଜଣାଗଲା ଶୁକ୍ର ଲଗ୍ନସ୍ଥ ଫଳ ଏହି ଜାତକକୁ ପୂର୍ଣ୍ଣମାତ୍ରାରେ ପ୍ରଦାନ କରିବ । ଏହି ଶୁକ୍ରସ୍ଫୁଟ ଯଦି ଲଗ୍ନସ୍ଫୁଟ ଅପେକ୍ଷା କମ୍ ହୁଅନ୍ତା, ତେବେ ଶୁକ୍ର ଲଗ୍ନୋକ୍ତ ଫଳ ସାମାନ୍ୟ ନ୍ୟୂନ ଭାବେ ପ୍ରଦାନ କରନ୍ତା । ଏହି ସ୍ଫୁଟ ଅଧିକ ହୋଇଥିଲେ କ୍ରମେ କ୍ରମେ ଏହି ଫଳ ଅତ୍ୟନ୍ତ ନ୍ୟୂନ ହୋଇ ପଡ଼ନ୍ତା ।

ଲଗ୍ନସ୍ଫୁଟ ଯାହା ହେବ ତ ସେଥିରେ ୧ ରାଶି ଯୋଗ କଲେ ଧନଭାବସ୍ଫୁଟ ବାହାରି ଆସିବ । ଏହିପରି କ୍ରମେ କ୍ରମେ ୧ ରାଶି ଯୋଗ କରି ଚଳ ନେଲେ ଦ୍ୱାଦଶ ଭାବସ୍ଫୁଟ ମୋଟାମୋଟି ବାହାରି ଆସିବ ।

ନ ଦିଶନ୍ତି ଶୁଭଂ ନୃଣାଂ ସୌମ୍ୟାଃ କେନ୍ଦ୍ରାଧିପା ଯଦି ।
କ୍ରୂରାଶ୍ଚେଦଶୁଭଂ ହ୍ୟେତେ ପ୍ରବଲାଶ୍ଚୋତ୍ତରୋତ୍ତରାଃ ॥
କେ, ବ,

ଶୁଭ ଗ୍ରହମାନେ କେନ୍ଦ୍ରାଧିପତି ହେଲେ ଶୁଭ ଫଳ ପ୍ରଦାନ କରନ୍ତି ନାହିଁ । ପାପ ଗ୍ରହମାନେ କେନ୍ଦ୍ରାଧିପତି ହେଲେ ଶୁଭଫଳ ପ୍ରଦାନ କରନ୍ତି ।

ଭାଗ୍ୟବ୍ୟୟାଧିପତ୍ୟେନ ରନ୍ଧ୍ରେଶୋ ନ ଶୁଭପ୍ରଦଃ ।
ସ ଏବ ଶୁଭସନ୍ଧାତା ଲଗ୍ନାଧୀଶୋଽପି ଚେତ୍ସ୍ୱୟଂ ॥
କେ, ବ,

ଅଷ୍ଟମାଧିପତି ଶୁଭଫଳ ପ୍ରଦାନ କରେ ନାହିଁ । ସେହି ଅଷ୍ଟମାଧି-ପତି ଯଦି ଲଗ୍ନାଧିପତି ହୋଇଥାଏ ତେବେ ଶୁଭଫଳ ପ୍ରଦାନ କରେ । ମେଷ ଲଗ୍ନକୁ ଲଗ୍ନ ଅଷ୍ଟମାଧିପତି ମଙ୍ଗଳ ଓ ତୁଲାଲଗ୍ନକୁ ଲଗ୍ନ ଅଷ୍ଟମାଧି-ପତି ଶୁକ୍ର ଶୁଭଫଳ ପ୍ରଦାନ କରନ୍ତି ।

କେନ୍ଦ୍ରାଧିପତ୍ୟଦୋଷସ୍ତୁ ବଲବାନ୍ ଗୁରୁଶୁକ୍ରୟୋଃ ।
ମାରକତ୍ୱେ ପି ଚ ତୟୋର୍ମାରକସ୍ଥାନ ସଂସ୍ଥିତଃ ॥
ବୁଧସ୍ତଦନୁ ଚନ୍ଦ୍ରୋଽପି ଭବେତ୍ତଦନୁ ତଦ୍ୱିଧଃ ।
ନ ରନ୍ଧ୍ରେଶତ୍ୱଦୋଷସ୍ତୁ ସୂର୍ଯ୍ୟାଚନ୍ଦ୍ରମସୋ ଭବେତ୍ ॥
କେ, ବ,

ବୁଧ, ବୃହସ୍ପତି, ଚନ୍ଦ୍ର, ଶୁକ୍ର ଏମାନଙ୍କର କେନ୍ଦ୍ରାଧିପତିତ୍ୱ ଅଶୁଭ । କେନ୍ଦ୍ରାଧିପତି ହୋଇ ମାରକ ସ୍ଥାନରେ ଥିଲେ ଏମାନେ ମାରକ । ରବି ଓ ଚନ୍ଦ୍ରଙ୍କଠାରେ ଅଷ୍ଟମାଧିପତିତ୍ୱ ଦୋଷ ନାହିଁ ।

ଧର୍ମକର୍ମାଧିନେତାରୌ ରନ୍ଧ୍ରଲାଭାଧିପୌ ଯଦି ।
ତୟୋଃ ସମ୍ବନ୍ଧମାତ୍ରେଣ ନ ଯୋଗଂ ଲଭତେ ନରଃ ॥
କେ, ବ,

ଗୋଟିଏ ଗ୍ରହ ଯଦି ୮ମ ଓ ୯ମ ଭାବଦ୍ୱୟର ଅଧିପତି ହୋଇ-ଥିବ ଅଥବା ୧୦ମ ଓ ୧୧ଶ ଭାବର ଅଧିପତି ହୋଇଥିବ, ତେବେ ସେହି ଗ୍ରହ ସେହି ଲଗ୍ନଜାତ ବ୍ୟକ୍ତିମାନଙ୍କୁ ଶୁଭଫଳ ପ୍ରଦାନ କରିବ ନାହିଁ । ଯଥା :—ମିଥୁନ ଲଗ୍ନ ଓ ମେଷଲଗ୍ନ ଜାତ ବ୍ୟକ୍ତିମାନଙ୍କୁ ଶନି ଉତ୍କୃଷ୍ଟ ଫଳ ପ୍ରଦାନ କରି ନ ପାରେ ।

ଭାଗ୍ୟେଶଃ ସର୍ବଦା ସୌମ୍ୟଃ ନ କ୍ରୂରଃ ଫଳଦାୟକଃ ।
ସୁଖାଧୀଶୋଽପି ଶୁଭଦଃ କ୍ରୂରୋଽପି ସୁଖଦଃ ସ୍ମୃତଃ ॥

ପଞ୍ଚମ ଓ ନବମାଧିପତିମାନେ କୌଣସି ଅଶୁଭଭାବରେ ଥିଲେ ମଧ୍ୟ ପ୍ରାୟ ଶୁଭଫଳ ଦିଅନ୍ତି ।

ସର୍ବେ ତ୍ରିକୋଣନେତାରୋ ଗ୍ରହାଃ ଶୁଭଫଳପ୍ରଦାଃ ।
ପତୟସ୍ତ୍ରିଷଡାୟାନାଂ ଯଦି ପାପଫଳପ୍ରଦାଃ ॥

ତ୍ରିକୋଣାଧିପତିମାନେ ଶୁଭଫଳ ପ୍ରଦାନ କରନ୍ତି । ଯଦି ସେମାନେ ପାପଯୁକ୍ତ ହୋଇ ନ ଥାନ୍ତି ବା ତୃତୀୟ, ଷଷ୍ଠ, ଏକାଦଶର ଅଧିପତି ହୋଇ ନ ଥାନ୍ତି ।

କୁଜସ୍ୟ କର୍ମନେତୃତ୍ୱ ପ୍ରଯୁକ୍ତ ଶୁଭକାରିତା ।
ତ୍ରିକୋଣସ୍ୟାପି ନେତୃତ୍ୱେ ନକର୍ମେଶତ୍ୱମାତ୍ରତଃ ॥

ମଙ୍ଗଳ ତ୍ରିକୋଣାଧିପତି ହୋଇ କର୍ମାଧିପତି ହେଲେ ଶୁଭଫଳ ପ୍ରଦାନ କରେ । କେବଳ କର୍ମାଧିପତି ହେଲେ ଶୁଭଫଳ ପ୍ରଦାନ କରେ ନାହିଁ । କର୍କଟ ଲଗ୍ନକୁ ମଙ୍ଗଳ ୫ମ ଓ ଦଶମାଧିପତି ହେବାରୁ ଶୁଭଫଳ ପ୍ରଦାନ କରେ । କୁମ୍ଭ ଲଗ୍ନକୁ ଦଶମାଧିପତି ହେଲେ ସୁଦ୍ଧା ତ୍ରିକୋଣାଧିପତି ନ ହୋଇ ତୃତୀୟାଧିପତି ହେବାରୁ ଶୁଭଫଳ ଦେଇ ନ ପାରେ ।

ଯେ ଯେ ଗ୍ରହାଃ ଧର୍ମପବୁଦ୍ଧିପାଭ୍ୟାଂ
ଦୃଷ୍ଟାଶ୍ଚ ଯୁକ୍ତାଶ୍ଚ ବହୁପ୍ରଦାସ୍ତେ ।
ରନ୍ଧ୍ରେଶ୍ୱରବ୍ୟୟପୈର୍ୟୁତାଶ୍ଚ-
ଲ୍ଲୋକପ୍ରଦା ମାରକନାୟକେନ ॥

ଯେଉଁ ଯେଉଁ ଗ୍ରହମାନେ ନବମ ପଞ୍ଚମାଧିପତି ସହିତ ଯୁକ୍ତ ବା ସେମାନଙ୍କ କର୍ତ୍ତୃକ ଦୃଷ୍ଟ ହେଉଥାନ୍ତି ସେମାନେ ବିଶେଷ ଲାଭ କରନ୍ତି ।

ଷଷ୍ଠ, ଅଷ୍ଟମ, ବ୍ୟୟାଧିପତିମାନଙ୍କ ସହ କମ୍ବା ମାରକ ଗ୍ରହ ସଙ୍ଗେ ଯୁକ୍ତ ହେଲେ ଅଶୁଭଫଳ ପ୍ରଦାନ କରନ୍ତି ।

ଶୁଭାଶୁଭସ୍ଥାନଗମାନପସ୍ୟ
ତଥୈବମାନାର୍ଥ ସୁତାସ୍ତଗସ୍ୟ ।
ଦଶା ନୃଣାଂ ସୌଖ୍ୟକରୀ ଭବେୟୁଃ
ସୁଖେଶଯୁକ୍ତସ୍ୟ ଚ ମାନପସ୍ୟ ॥

ସ, ର,

ପଞ୍ଚମ, ନବମ ଓ ଦଶମାଧିପତି ଗ୍ରହର ଦଶାମାନେ ଶୁଭଫଳ ଦଅନ୍ତି । ଲଗ୍ନସ୍ଥ ଓ ଧନସ୍ଥାନସ୍ଥ ଗ୍ରହ ଦଶା ଓ ଚତୁର୍ଥସ୍ଥାନାଧିପ ଯୁକ୍ତ ଦଶମାଧିପତିର ଦଶାମାନେ ସାଧାରଣରେ ଶୁଭଫଳ ପ୍ରଦାନ କରନ୍ତି ।

କେଉଁ ଲଗ୍ନକୁ କେଉଁ ଗ୍ରହମାନେ ଶୁଭ ଫଳଦାୟକ ଏବଂ କେଉଁମାନେ ମାରକାଦ ଅଶୁଭ ଫଳଦାୟକ ଲେଖା ଗଲା :—

ମେଷଲଗ୍ନଜାତାନାଂ ଶୁଭାଶୁଭଗ୍ରହନିରୂପଣମାହ—

ମନ୍ଦସୌମ୍ୟଶିତାଃ ପାପାଃ ଶୁଭୌ ଗୁରୁଦିବାକରୌ ।
ନ ଶୁଭଂ ଯୋଗମାତ୍ରେଣ ପ୍ରଭବେତ୍ ଶନିଜୀବୟୋଃ ॥
ପରତନ୍ତ୍ରେଣ ଜୀବସ୍ୟ ପାପକର୍ମାଽପି ନିଶ୍ଚିତଂ ।
କବିଃ ସାକ୍ଷାନ୍ନିହନ୍ତାସ୍ୟାନ୍ମାରକତ୍ୱେନ ଲକ୍ଷିତଃ ॥
ସଂଘାତସ୍ୟୋ ନହନ୍ତାରେ ଭବେୟୁଃ ପାପିନୋ ଗ୍ରହାଃ ।
ଶୁଭାଶୁଭଫଳାନ୍ୟେବ ଜ୍ଞାତବ୍ୟାନି ବିପ୍ରୋଭବେ ॥

### ବୃଷସ୍ୟ

ଜୀବଶୁକ୍ରେନ୍ଦବଃ ପାପାଃ ଶୁଭୌ ଶନିଖଣିସୁତୌ ।
ରାଜଯୋଗକରଃ ସାକ୍ଷାଦେକ ଏବ ରବେଃ ସୁତଃ ॥
ଜୀବାଦୟୋ ଗ୍ରହାଃ ପାପା ସନ୍ତି ମାରକଲକ୍ଷଣାଃ ।
ବୁଧୈସ୍ତୁ ଫଳାନ୍ୟେବଂ ଜ୍ଞେୟାନି ବୃଷଜନ୍ମନଃ ॥

### ମିଥୁନସ୍ୟ

ଭୌମଜୀବାରୁଣାଃ ପାପାଃ ଏକ ଏବ କବିଃ ଶୁଭଃ ।
ଶନୈଶ୍ଚରେଣ ଜୀବସ୍ୟ ଯୋଗୋ ମେଷଭବୋ ଯଥା ।
ନାହଂ ଶଶୀ ହନ୍ତ୍ୟାସ୍ୟାଦୃକ୍ଷିସ୍ଥାପ ନଷ୍ଟଲଂ ।
ଜ୍ଞାତବ୍ୟାନି ଦନେଶସ୍ୟ ଫଳାନ୍ୟେତାନି ସୂରିଭିଃ ॥

### କର୍କଟସ୍ୟ

ଭାର୍ଗବେନ୍ଦୁସୁତୌ ପାପୌ ଭୂସୁତାଙ୍ଗିରସୌ ଶୁଭୌ ।
ଏକ ଏବ ଗ୍ରହଃ ସାକ୍ଷାଦ୍ଭୂସୁତୋ ଯୋଗକାରକଃ ।
ହନ୍ତ୍ୟା ରବିକୋଽନ୍ୟେ ତୁ ମାଦନୋ ମାରକାହ୍ୱୟାଃ ।
କୁଳୀରସମ୍ଭବସ୍ୟେବଂ ଫଳାନ୍ୟୂହ୍ୟାନି ସୂରିଭିଃ ॥

### ସିଂହସ୍ୟ

ରୌହିଣେୟଶିତୌ ପାପୌ କୁଜ ଏବ ଶୁଭପ୍ରଦଃ ।
ପ୍ରଭବେଦ୍ଯୋଗମାତ୍ରେଣ ନ ଶୁଭଂ କୁଜଶୁକ୍ରୟୋଃ ॥
ଘ୍ନନ୍ତି ସୌମ୍ୟାଦୟଃ ପାପାଃ ମାରକ ହେନଲକ୍ଷିତଃ ।
ଏବଂ ଫଳାନି ବେଦ୍ୟାନି ସିଂହେ ଯସ୍ୟ ଜନୁର୍ଭବେତ୍ ॥

## କନ୍ୟାୟାଃ

କୁଜଜୀବେନ୍ଦବଃ ପାପା ଏକ ଏବ ଭୃଗୁଃ ଶୁଭଃ ।
ଭାର୍ଗବେନ୍ଦୁସୁତାବେବଂ ଭବେତାଂ ଯୋଗକାରକୌ ॥
ନହନ୍ତା କବିରନ୍ୟେ ତୁ ମାରକାସ୍ତୁ କୁଜାଦୟଃ ।
ପ୍ରତୀକ୍ଷେତ ଫଲାନ୍ୟୁହ୍ୟାନ୍ୟେବଂ କନ୍ୟାଭବେ ବୁଧୈଃ ॥

## ତୁଲାୟାଃ

ଜୀବାର୍କମହୀଜାଃ ପାପାଃ ଶନୈଶ୍ଚରବୁଧୌ ଶୁଭୌ ।
ଭବେତାଂ ରାଜଯୋଗସ୍ୟ କାରକୌ ଚନ୍ଦ୍ରଚନ୍ଦ୍ରଜୌ ।
କୁଜୋ ନହନ୍ତି ପାପାନ ପରେ ମାରକଲକ୍ଷଣାଃ ।
ନହନ୍ତାରଃ ଫଲାନ୍ୟେବ କାବ୍ୟେନ ତୁ ତୁଲାଭୁବଃ ॥

## ବୃଶ୍ଚିକସ୍ୟ

ସୌମ୍ୟଭୌମାଶିତାଃ ପାପାଃ ଶୁଭୌ ଗୁରୁନିଶାକରୌ ।
ସୂର୍ଯ୍ୟଚନ୍ଦ୍ରମସାବେବଂ ଭବେତାଂ ଯୋଗକାରକୌ ॥
ଜୀବୋ ନ ହନ୍ତା ସୌମ୍ୟାଦ୍ୟା ହନ୍ତାରୋ ମାରକାହ୍ୱୟାଃ ।
ତତ୍ତତ୍ଫଲାନି ବଜ୍ଞେୟାନ୍ୟେବଂ ବୃଶ୍ଚିକଜନ୍ମନଃ ॥

## ଧନୁଷଃ

ଏକ ଏବ କବିଃ ପାପଃ ଶୁଭୌ ସୌମ୍ୟଦିବାକରୌ ।
ଯୋଗୋ ଭାସ୍କରସୌମ୍ୟାଭ୍ୟାଂ ନହନ୍ତାଂଶୁମତଃ ସୁତଃ ।
ପ୍ରତିଶୁକ୍ରାଦୟଃ ପାପା ମାରକତ୍ୱେନ ଲକ୍ଷିତାଃ ।
ଜ୍ଞାତବ୍ୟାନି ଫଲାନ୍ୟେବଂ ଚାପଜସ୍ୟ ମନୀଷିଭିଃ ॥

### ମକରସ୍ୟ

କୁଜଜୀବେନ୍ଦବଃ ପାପାଃ ଶୁଭୌ ଭାର୍ଗବଚନ୍ଦ୍ରଜୌ ।
ସ୍ୱୟଂ ଚୈବ ନିହନ୍ତା ସ୍ୟାନ୍ମନ୍ଦୋ ଭୌମାଦୟଃ ପରେ ।
ତତ୍କ୍ଷଣନିହନ୍ତାରଃ କବିରେକସ୍ତୁ ଯୋଗକୃତ୍ ।
ତବ୍ୟାନି ଫଳାନ୍ୟେବଂ ବୁଧୈର୍ମୃଗଜନ୍ମନଃ ॥

### କୁମ୍ଭସ୍ୟ

ଜୀବଚନ୍ଦ୍ରକୁଜାଃ ପାପା ଏକୋ ଦୈତ୍ୟଗୁରୁଃ ଶୁଭଃ ।
ରାଜଯୋଗକରସ୍ତେ ଭୌମଃ କବଶ୍ଚୈବ ବୃହସ୍ପତିଃ ।
ନିହନ୍ତା ପୂନ୍ତ ଭୌମାଦ୍ୟା ମାରକତ୍ୱେନ ଲକ୍ଷିତାଃ ।
ଏବମେବ ଫଳାନ୍ୟୂହ୍ୟାନ୍ୟେତାନି ଘଟଜନ୍ମନଃ ॥

### ମୀନସ୍ୟ

ମନ୍ଦଶୁକ୍ରାଂଶୁମତ୍ସୌମ୍ୟାଃ ପାପାଃ ଭୌମବିଧୂ ଶୁଭୌ ।
ମହୀସୁତଗୁରୁ ଯୋଗ କାରକୌ ନୈବ ଭୂସୁତଃ ।
ମାରକାଃ କାରକା ସ୍ୱାସ୍ୟ ମନ୍ଦଜ୍ଞୌ ପୁନ୍ତ ପାପିନଃ ।
ଇତ୍ୟୂହ୍ୟାନି ଫଳାନ୍ୟେବଂ ବୁଧୈସ୍ତୁ ମୀନଜନ୍ମନଃ ॥

ଉପରେ ଦ୍ୱାଦଶ ଲଗ୍ନଜାତ ବ୍ୟକ୍ତିମାନଙ୍କର ସାଧାରଣରେ ଭାବାଧିପତିଙ୍କୁ ନେଇ କେଏ ଯୋଗକାରକ, କେଏ ଅଶୁଭ ଫଳଦାୟକ ଓ କେଏ ମାରକ ଦେଖାଇ ଦିଆଗଲା । ଅପରପୃଷ୍ଠାସ୍ଥ ଟେବଲ୍‌ରେ ତାହାର ଭାବ ଦେଖନ୍ତୁ—

| ଲଗ୍ନ | ଯୋଗକାରକ | ଅଶୁଭ ଫଳଦାୟକ | ଶୁଭଦାୟକ | ମାରକ |
|---|---|---|---|---|
| ମେଷ | ବୃହସ୍ପତି | ବୃହସ୍ପତି ଓ ଶନିଙ୍କ ଯୋଗ | ରବି | ଶୁକ୍ର |
| ବୃଷ | ଶନି | ବୃହସ୍ପତି, ଶୁକ୍ର, ଚନ୍ଦ୍ର | ଶନି, ବୁଧ | ବୃହସ୍ପତି, ଚନ୍ଦ୍ର |
| ମିଥୁନ | ଶନିସହ ବୃହସ୍ପତି | ମଙ୍ଗଳ, ବୃହସ୍ପତି, ରବି | ଶୁକ୍ର | ମଙ୍ଗଳ, ରବି |
| କର୍କଟ | ମଙ୍ଗଳ | ଶୁକ୍ର, ବୁଧ | ମଙ୍ଗଳ, ବୃହସ୍ପତି | ଶନି |
| ସିଂହ | କେନ୍ଦ୍ର ନୁହେ | ବୁଧ, ଶୁକ୍ର | ମଙ୍ଗଳ | ବୁଧ, ଶୁକ୍ର |
| କନ୍ୟା | ଶୁକ୍ର, ବୁଧ | ମଙ୍ଗଳ, ବୃହସ୍ପତି, ଚନ୍ଦ୍ର | ଶୁକ୍ର | ବୃହସ୍ପତି, ଚନ୍ଦ୍ର, ମଙ୍ଗଳ |
| ତୁଳା | ବୁଧ | ରବି, ମଙ୍ଗଳ, ବୃହସ୍ପତି | ବୁଧ, ଚନ୍ଦ୍ର | ମଙ୍ଗଳ |
| ବିଚ୍ଛା | ରବି, ଚନ୍ଦ୍ର | ବୁଧ, ମଙ୍ଗଳ, ଶନି | ବୃହସ୍ପତି, ଚନ୍ଦ୍ର | ବୁଧ |
| ଧନୁ | ରବି, ବୁଧ | ଶୁକ୍ର | ବୁଧ, ରବି | ଶୁକ୍ର, ଶନି |
| ମକର | କେନ୍ଦ୍ର ନୁହେ | ମଙ୍ଗଳ, ବୃହସ୍ପତି, ଚନ୍ଦ୍ର | ଶୁକ୍ର, ବୁଧ | ଶନି, ମଙ୍ଗଳ |
| କୁମ୍ଭ | ମଙ୍ଗଳ (ସାମାନ୍ୟଭାବେ) | ବୃହସ୍ପତି, ଚନ୍ଦ୍ର, ମଙ୍ଗଳ | ଶୁକ୍ର | ବୃହସ୍ପତି, ମଙ୍ଗଳ |
| ମୀନ | ମଙ୍ଗଳ | ଶନି, ଶୁକ୍ର, ରବି, ବୁଧ | ଚନ୍ଦ୍ର, ମଙ୍ଗଳ | ଶନି, ବୁଧ |

ଏକୋ ଦ୍ୱିସପ୍ତମସ୍ଥାନନାଥକଃ ଯଦି ସୌଖ୍ୟଗଃ ।
ତେନ ଯୁକ୍ତଦଶା ଜ୍ଞେୟା ଶୁଭଂ ପ୍ରାପ୍ନୁମିଚ୍ଛତିଣଃ ॥

ଗୋଟିଏ ଗ୍ରହ ଯଦି ଦ୍ୱିତୀୟ ଓ ସପ୍ତମର ଅଧିପତି ହୋଇ ଚତୁର୍ଥରେ ଥିବ, ତେବେ ସେହି ଗ୍ରହ ଶୁଭ ଫଳ ପ୍ରଦାନ କରିବ । ମେଷ ଲଗ୍ନକୁ କର୍କଟସ୍ଥ ଶୁକ୍ର ଓ ତୁଳା ଲଗ୍ନକୁ ମକରସ୍ଥ ମଙ୍ଗଳ ଶୁଭ ଫଳ-ଦାୟକ ।

ପରସ୍ପର ସ୍ଥାନଦ୍ୱେତୋଙ୍ଖାଧକତା

କ୍ରମାଚ୍ଚରଗ ଦ୍ୱିଶରୀରଭଜାମୁପାନ୍ତ୍ୟଧର୍ମ୍ମସୁରଗାସ୍ତଗଣାଃ ।
ଖଗାଂଶୁ ମାନ୍ଦସ୍ଥିତ ରାଶିନାଥାଃ ଅତୀବବାଧାକରଖେଚରାଃସ୍ୟୁଃ ॥

ମେଷ, କର୍କଟ, ତୁଳା ଓ ମକର ଲଗ୍ନକୁ ଏକାଦଶସ୍ଥ ଗ୍ରହ; ବୃଷ, ସିଂହ, ବିଛା ଓ କୁମ୍ଭ ଲଗ୍ନକୁ ନବମସ୍ଥ ଗ୍ରହ; ମିଥୁନ, କନ୍ୟା, ଧନୁ ଓ ମୀନ ଲଗ୍ନକୁ ସପ୍ତମସ୍ଥ ଗ୍ରହ ଅଶୁଭ ଫଳଦାୟକ । ରବିଯୁକ୍ତ ଗ୍ରହ ଓ ମାନ୍ଦି ଯେ ରାଶିରେ ଥିବ ସେହି ରାଶ୍ୟଧିପତି ମଧ୍ୟ ଅଶୁଭ ଫଳ ପ୍ରଦାନ କରେ ।

ବାଳାଦି ପଞ୍ଚାବସ୍ଥା

ବାଲୋରସାଂଶୈରସମେ ପ୍ରଦିଷ୍ଟସ୍ତତଃ କୁମାରେ ହି ଯୁବାଥ ବୃଦ୍ଧଃ ।
ମୃତଃ କ୍ରମାଦୁତ୍କ୍ରମତଃ ସମର୍କ୍ଷେ ବାଳାଦ୍ୟବସ୍ଥା କଥିତା ଗ୍ରହାଣାଂ ॥

ସମ ରାଶିରେ ପ୍ରଥମ ୬ ଅଂଶରେ ଗ୍ରହ ଥିଲେ ବାଳକ, ୬ ଅଂଶଠାରୁ ୧୨ ଅଂଶ ପର୍ଯ୍ୟନ୍ତ କୁମାର, ୧୨ ଅଂଶଠାରୁ ୧୮ ଅଂଶ ପର୍ଯ୍ୟନ୍ତ ଯୁବା, ୧୮ ଅଂଶଠାରୁ ୨୪ ଅଂଶ ପର୍ଯ୍ୟନ୍ତ ବୃଦ୍ଧ,

୨୪ ଅଂଶ ଠାରୁ ୩୦ ଅଂଶ ମଧ୍ୟରେ ଥିଲେ ମୃତ ହୁଏ । ବିଷମ ରାଶିରେ ଏହାର ବିପରୀତ ହୁଏ । ସେଥିରେ ପ୍ରଥମ ୬ ଅଂଶରେ ଗ୍ରହ ଥିଲେ ମୃତ, ସେଠାରୁ ୧୨ ଅଂଶ ପର୍ଯ୍ୟନ୍ତ ବୃଦ୍ଧ, ସେଠାରୁ ୧୮ ଅଂଶ ପର୍ଯ୍ୟନ୍ତ ଯୁବା, ସେଠାରୁ ୨୪ ଅଂଶ ପର୍ଯ୍ୟନ୍ତ କୁମାର, ସେଠାରୁ ୩୦ ଅଂଶ ପର୍ଯ୍ୟନ୍ତ ଗ୍ରହ ଥିଲେ ବାଳକ ଅବସ୍ଥାରେ ଥାଏ ।

ବାଲାଦ୍ୟବସ୍ଥା ଫଳଂ

ଫଳଂ ତୁ କିଞ୍ଚିତ୍ପ୍ରଦଦାତି ବାଲଃ—
ସ୍ତାର୍ଦ୍ଧଂ କୁମାରୋ ଯଚ୍ଛତେ ଚ ପୁଂସାଂ ।
ଯୁବା ସମଗ୍ରଂ ଖଚରୋଽଥ ବୃଦ୍ଧଃ
ଫଳଂ ଚ ଦୁଷ୍ଟଂ ମରଣଂ ମୃତାଖ୍ୟଃ ॥

ବାଲ ଗ୍ରହର ଫଳ ଅତ୍ୟଳ୍ପ, କୁମାର ଅର୍ଦ୍ଧେକ, ଯୁବା ସମଗ୍ର, ବୃଦ୍ଧ ଅତି ସାମାନ୍ୟ ଓ ମୃତ ଗ୍ରହ ଅଦୌ ଶୁଭ ଫଳ ଦେଇ ନ ପାରେ ।

ବର୍ଗିଣସ୍ତୁ ମହାବୀର୍ଯ୍ୟାଃ ଶୁଭା ରାଜ୍ୟପ୍ରଦା ଗ୍ରହାଃ ।
ପାପା ବ୍ୟସନଦାଃ ପୁଂସାଂ କୁର୍ବନ୍ତି ଚ ବୃଥାଟନଂ ॥

ଶୁଭ ଗ୍ରହମାନେ ବର୍ଗୀ ହେଲେ ରାଜ୍ୟପ୍ରଦ ( ସୁଖୈଶ୍ୱର୍ଯ୍ୟ-ପ୍ରଦ ) ହୁଅନ୍ତି । ପାପ ଗ୍ରହମାନେ ବର୍ଗୀ ହେଲେ ବ୍ୟସନାସକ୍ତ ଓ ବୃଥା ଭ୍ରମଣ କରନ୍ତି ।

ଫଳ ବିଷୟର କ୍ରମଂ

ଆଦୌ ଭାବଫଳଂ ପ୍ରୋକ୍ତଂ ସ୍ଥାନଦୃଷ୍ଟିସ୍ତତଃ ପରଂ ।
ଯୁକ୍ତସମ୍ବନ୍ଧଯୋସ୍ତଦ୍ଧ ଅଂଶୋତ୍ଥଭାବଫଳଂ ତତଃ ॥

ଗ୍ରହମାନଙ୍କର ଶୁଭାଶୁଭ ଜାଣିବା ନିମିତ୍ତ ଛଅଗୋଟି ବିଷୟର ବିଚାର କରାଯାଏ ।

(୧) ଭାବ ବିଚାର :—କେଉଁ ଭାବର ଅଧିପତି କେଉଁ ଭାବରେ ଅଛି । ତାହା ଶୁଭ କିମ୍ବା ଅଶୁଭ ଦେଖିବେ, ଏହା ସମସ୍ତ ଫଳଁର ଅର୍ଦ୍ଧେକ ।

(୨) ସ୍ଥାନ ବିଚାର :—ଗ୍ରହ ଯେଉଁ ସ୍ଥାନରେ ଅଛି, ତାହା ତାହାର ଉଚ୍ଚକ୍ଷେତ୍ର କି ନୀଚକ୍ଷେତ୍ର କି ମିତ୍ରକ୍ଷେତ୍ର କି ଶତ୍ରୁକ୍ଷେତ୍ର ଏହାର ଶୁଭାଶୁଭ ଦେଖିବେ, ଏହା ସମଗ୍ର ଫଳର ଏକ ଚତୁର୍ଥାଂଶ ।

(୩) ଦୃଷ୍ଟି ବିଚାର :—ଗ୍ରହକୁ କେଉଁମାନେ ଦେଖୁଅଛନ୍ତି, ସେହି ଦୃଷ୍ଟି ଶୁଭ କିମ୍ବା ଅଶୁଭ ତାହାର ବିଚାର କରିବେ ।

(୪) ଯୁକ୍ତ ବିଚାର :—ଗ୍ରହସହ ଅନ୍ୟ କେଉଁ ଗ୍ରହ ଥିଲେ ତାହାର ଯୋଗ କିପରି ଶୁଭ ବା ଅଶୁଭ ତାହାର ବିଚାର କରିବେ ।

(୫) ସମ୍ବନ୍ଧ ବିଚାର :—କାଳବଳ, ଦିଗ୍‌ବଳ ଇତ୍ୟାଦିର ବିଚାର କରି ଶୁଭାଶୁଭ ନିଶ୍ଚୟ କରିବେ ଓ ଗ୍ରହ ଯୋଗ, ମାରକ, ସମ୍ବନ୍ଧ ଓ ଯୁକ୍ତ ଦେଖିବେ ।

(୬) ଅଂଶୋଦ୍ଭବ ଫଳ :—ଅବସ୍ଥାଦିର ବିଚାର କରି ଶୁଭାଶୁଭ ନିଶ୍ଚୟ କରିବେ । ଉପରୋକ୍ତ ଦୃଷ୍ଟି, ଯୁକ୍ତ, ସମ୍ବନ୍ଧ ଓ ଅବସ୍ଥାଦି ସମସ୍ତର ବିଚାର ସମସ୍ତ ଫଳରୁ ଏକ ଚତୁର୍ଥାଂଶ । ଏହି ସମସ୍ତ ଦେଖି ଗ୍ରହଟି କେତେ ପରିମାଣରେ ଶୁଭ,କେତେ ପରିମାଣରେ ଅଶୁଭ ତାହା ବିଚାର କରି ଶୁଭାଶୁଭ ଫଳ କହିବେ ।

## ରାଶିଜାତଫଳଂ

ଅସ୍ଥିରବିଭୂତିମିତ୍ରଂ ଚଲମଟନଂ ସ୍ଖଲିତନିୟମମପି ଚରଭେ ।
ତଦ୍ୱିପରୀତଂ ସ୍ଥିରେ କ୍ଷମାନ୍ୱିତଂ ଦୀର୍ଘସୂତ୍ରଞ୍ଚ ।
ଦ୍ୱିଶରୀରେ ତ୍ୟାଗଯୁତଂ କୃତଜ୍ଞମୁତ୍ସାହିନଞ୍ଚ ବିବିଧଚେଷ୍ଟଂ ॥୧॥

ଚରରାଶିଜାତ ବ୍ୟକ୍ତିମାନଙ୍କର ଧନ, ଐଶ୍ୱର୍ଯ୍ୟ, ମିତ୍ରତା ସ୍ଥାୟୀ ହୁଏ ନାହିଁ । ସେମାନଙ୍କର ଗତି ଚଞ୍ଚଳ ଓ ସେମାନେ ନିୟମ ଲଙ୍ଘନକାରୀ । ସ୍ଥିର ରାଶିଜାତ ବ୍ୟକ୍ତିମାନଙ୍କର ସ୍ଥିରସୌଭାଗ୍ୟ, ସ୍ଥିରମିତ୍ର, ସେମାନେ ଦୀର୍ଘସୂତ୍ରୀ, କ୍ଷମାଶୀଳ ଓ ଧୀର ଗମନଶୀଳ ଅଟନ୍ତି । ଦ୍ୱାତ୍ମିକରାଶିଜାତ ବ୍ୟକ୍ତିମାନେ ତ୍ୟାଗଶୀଳ, କୃତଜ୍ଞ, ଉତ୍ସାହଯୁକ୍ତ ଓ ସକଳ କାର୍ଯ୍ୟରେ ଚେଷ୍ଟାପରାୟଣ ହୁଅନ୍ତି ।

## ନକ୍ଷତ୍ରଜାତଫଳଂ

ଶତାନଳା-ଦିତ୍ୟ-ବିଶାଖା ମୈତ୍ର-ଶକ୍ରୋଦ୍ଭବା ମିଶ୍ରଗୁଣାଃ ପ୍ରଦିଷ୍ଟାଃ ।
ଶିବା-ଜ-ହସ୍ତା-ହି ଭବାଜଘନ୍ୟାଃ ଶେଷୋଦ୍ଭବା ସତ୍ପୁରୁଷା ଭବନ୍ତି ॥

ଶତଭିଷା, କୃତ୍ତିକା, ପୁନର୍ବସୁ, ବିଶାଖା, ଅନୁରାଧା ଓ ଜ୍ୟେଷ୍ଠା ନକ୍ଷତ୍ରଜାତ ବ୍ୟକ୍ତିଗଣ ମିଶ୍ରଗୁଣ ଯୁକ୍ତ; ଆର୍ଦ୍ରା, ରୋହିଣୀ ହସ୍ତା ଓ ଅଶ୍ଳେଷା ନକ୍ଷତ୍ରଜାତ ବ୍ୟକ୍ତିଗଣ ମନ୍ଦଚରିତ୍ରବିଶିଷ୍ଟ ଏବଂ ଅନ୍ୟାନ୍ୟ ନକ୍ଷତ୍ରଜାତ ବ୍ୟକ୍ତିଗଣ ସତ୍ପୁରୁଷ ହୁଅନ୍ତି ।

ତୃତୀୟୋଽଧ୍ୟାୟଃ ସମାପ୍ତଃ ।

---

# ଚତୁର୍ଥୋଽଧ୍ୟାୟଃ

## ଦୃଷ୍ଟିଫଳ ବର୍ଣ୍ଣନଃ

ବୃହସ୍ପତିଃ ପଶ୍ୟତି ଜନ୍ମରାଶିଂ କୃତ୍ସ୍ନ ନ ଭଶାଦ୍ଭୃତମାଚରନ୍ତି ।
ପଶ୍ୟନ୍ତି ଯଦ୍ୱୈବ ପତଙ୍ଗିଣାଂ ପତନ୍ତି ଦ୍ୱୈବ ସର୍ପା ହତବୀର୍ଯ୍ୟଦର୍ପାଃ ।

ବୃହସ୍ପତି ଲଗ୍ନକୁ ଦେଖୁଥିଲେ ଅନ୍ୟାନ୍ୟ ଗ୍ରହମାନଙ୍କର ଲଗ୍ନପ୍ରତି ଯେ ଅଶୁଭ ଦୃଷ୍ଟି ଥାଏ ତାହା ବିନଷ୍ଟ ହୁଏ । ଯେପରି କି ଗରୁଡ଼ ଭୟରେ ସର୍ପମାନେ ଦୁର୍ବଳ ହୋଇପଡ଼ନ୍ତି ।

କ୍ରୋଧଣପାପରତା କୃତଘ୍ନଃ ପ୍ରବାସୀ ଚପଳସ୍ତଥା ।
ତସ୍କରଶ୍ଚ ରୁକ୍ଷମୂର୍ତ୍ତିଶ୍ଚ ପାପଦୃଷ୍ଟ୍ୟା ଭବେନ୍ନରଃ । ଜାଃ ତଃ ।

ଯେଉଁ ବ୍ୟକ୍ତିର ଜାତଲଗ୍ନକୁ ରବି, ମଙ୍ଗଳ, ଶନି କିମ୍ବା ରାହୁ ଦେଖନ୍ତି, ସେ ବ୍ୟକ୍ତି କ୍ରୋଧୀ, ପାପୀ, ନୀଚକର୍ମାସକ୍ତ, ପ୍ରବାସୀ ଚପଳ, ଚୌର ଓ ରୁକ୍ଷଶରୀର ହୁଏ ।

ଶାନ୍ତାତ୍ମା ଚିରଜୀବୀ ଚ ସୁଶୀଳୋଽପି ବହୁପ୍ରଜଃ ।
ଶୋଭନାଙ୍ଗୋ ମହାପ୍ରାଜ୍ଞଃ ଚନ୍ଦ୍ରଦୃଷ୍ଟ୍ୟା ଭବେନ୍ନରଃ ।

ଯେଉଁ ବ୍ୟକ୍ତିର ଲଗ୍ନକୁ ଚନ୍ଦ୍ର ଦେଖନ୍ତି ସେ ବ୍ୟକ୍ତି ଶାନ୍ତସ୍ୱଭାବବିଶିଷ୍ଟ ଦୀର୍ଘଜୀବୀ, ସୁଶୀଳ, ସନ୍ତାନଯୁକ୍ତ ଓ ସୁନ୍ଦରଶରୀର ହୁଏ ।

ଭୂପତେଶ୍ଚ ବୁଦ୍ଧିଶରୀରବେତ୍ତା ଶାସ୍ତ୍ରସ୍ୟ କାବ୍ୟସ୍ୟ ଗଣିତଜ୍ଞଃ ।
ଅତିଚତୁରୋ ମଧୁରବାକ୍ୟଃ ସ ଭବତି ସବଳୋ ବୁଧେନ ଦୃଷ୍ଟଃ ।

ଯେଉଁ ବ୍ୟକ୍ତିର ଲଗ୍ନକୁ ବଳବାନ୍ ବୁଧ ଦେଖନ୍ତି ସେ ବ୍ୟକ୍ତି ବୁଦ୍ଧିମାନ୍, କାବ୍ୟ ଓ ଗଣିତ ଶାସ୍ତ୍ର ପ୍ରବୀଣ ଏବଂ ମଧୁରଭାଷୀ ହୁଏ ।

ଯଂ ପଶ୍ୟତି ଭୃଗୁତନୟୋ ଜନ୍ମସମୟେ କଟାକ୍ଷମାତ୍ରେଣ ।
ସୋଽଭିକୁଲାଚଲକୁଲଜଃ କୁଲହୀନୋଽପି କୁଲଜଃ ସ୍ୟାତ୍ ॥

ଯେଉଁ ବ୍ୟକ୍ତିର ଲଗ୍ନକୁ ଶୁକ୍ର ଦେଖନ୍ତି ସେ ବ୍ୟକ୍ତି ଶତ୍ରୁଜନାଶକାରୀ ଏବ ଅକୁଳୀନ ହୋଇଥିଲେ ମଧ୍ୟ କୁଳୀନ ହୁଏ ।

### ରବିପ୍ରତି ଗ୍ରହଦୃଷ୍ଟି ଫଳଂ

ଚନ୍ଦ୍ରେଣ ଦୃଷ୍ଟେ ଖଲୁ ଚଣ୍ଡରଶ୍ମୌ
ଭୋଗୀ ଧନୀ ସର୍ବଜନାନୁରାଗୀ ।
ସ୍ୟାଦ୍ରୂପବାନ୍ ଗର୍ବିତଧୀଃ ପ୍ରଜାତଃ
ପୁତ୍ରୈଃ କଲତ୍ରୈରପି ସଂଯୁତଶ୍ଚ ॥

ଯେଉଁ ବ୍ୟକ୍ତିର ଜାତକରେ ରବିଙ୍କୁ ଚନ୍ଦ୍ର ଦେଖନ୍ତି, ସେହି ବ୍ୟକ୍ତି ଧନୀ, ଭୋଗୀ, ସର୍ବଜନପ୍ରିୟ, ରୂପବାନ୍, ଗର୍ବିତବୁଦ୍ଧି ଓ ପୁତ୍ରକଳତ୍ରାଦି ଯୁକ୍ତ ହୁଏ ।

ମନ୍ତ୍ରେଣ ଯୁକ୍ତୋ ବ୍ରତଦକ୍ଷବୁଦ୍ଧିଃ
କ୍ଷ୍ମାପାଳପୂଜ୍ୟୋ ଧନବାନ୍ ସଦାସ୍ୟା ।
ଯୁତଃ ସୁପୁତ୍ରୈରପି କାମିନୀଭି--
ର୍ଦୃଷ୍ଟେ ରବୌ ବାକ୍ପତିନା ଚ ଜାତଃ ॥

ରବିଙ୍କୁ ବୃହସ୍ପତି ଦେଖିଲେ ଜାତକ ମନ୍ତ୍ରଜ୍ଞ, ବ୍ରତନିଷ୍ଠ, ରାଜପୂଜ୍ୟ, ଧନୀ, ବହୁପୁତ୍ର ଯୁକ୍ତ ଏବ ବହୁ ସ୍ତ୍ରୀ ରମଣ କରେ ।

### ଚନ୍ଦ୍ରପ୍ରତି ଗ୍ରହଦୃଷ୍ଟି ଫଳଂ

ଧନାଢ୍ୟ ପୂର୍ଣ୍ଣାଙ୍ଗ ମନ୍ତ୍ରଯୁକ୍ତଃ
ପ୍ରିୟୋ ଜନାନାଂ ହୃଦୟପ୍ରମୋଦ ।

ଦେବଦ୍ୱିଜାରାଧନକର୍ମଶୀଲୋ
ଭବସ୍ସିତା ଚନ୍ଦ୍ରମସି ପ୍ରଦୃଷ୍ଟେ ॥

ଚନ୍ଦ୍ରକୁ ରବି ଦେଖିଲେ ଜାତକ ଧନବାନ୍, ପୁତ୍ରଯୁକ୍ତ, ମନ୍ଦଙ୍କ, ପ୍ରିୟ ବ୍ୟକ୍ତିର ହୃଦୟାନନ୍ଦକାରୀ, ଦେବବ୍ରାହ୍ମଣସେବୀ ଓ କର୍ମଶୀଳ ହୁଏ ।

ଶଶିନ ଚ କୁଜଦୃଷ୍ଟେ ଗୋଧନୈର୍ବଲ୍ଲଭଃ ସ୍ୟାତ୍
ସକଳଗୁଣନିଧାନଃ ସର୍ବଶାସ୍ତ୍ରାର୍ଥବେତ୍ତା ॥

ଚନ୍ଦ୍ରକୁ ମଙ୍ଗଳର ଦୃଷ୍ଟି ଥିଲେ ସେ ବ୍ୟକ୍ତି ଗୋଧନଯୁକ୍ତ, ଗୁଣବାନ୍ ଓ ସମସ୍ତ ଶାସ୍ତ୍ର ପାରଦର୍ଶୀ ହୁଏ ।

ଶାସ୍ତ୍ରାର୍ଥବେତ୍ତା ନୃପପୂଜିତଶ୍ଚ
ବିଦ୍ୱାନ୍ ସୁବାକ୍ୟଃ ଶଶିସୂନୁଦୃଷ୍ଟେ ।

ଚନ୍ଦ୍ରକୁ ବୁଧ ଦେଖୁଥିଲେ ଜାତକ ଶାସ୍ତ୍ରତତ୍ତ୍ୱବେତ୍ତା, ରାଜପୂଜ୍ୟ, ବିଦ୍ୟାବନ୍ତ ଓ ଉତ୍ତମ ବାକ୍ୟଯୁକ୍ତ ହୁଏ ।

ସକଳ ବସୁନିହନ୍ତା ସର୍ବସୌଭାଗ୍ୟଭୋକ୍ତା
ସକଳଗୁଣନିଧାନଃ ସର୍ବଲୋକାଭିପୂଜ୍ୟଃ ।
ସକଳକଲୁଷହୀନଃ ସର୍ବବିଦ୍ୟାସୁମେଧଃ ।
ଭବତି ବିପୁଲଲକ୍ଷ୍ମୀ ର୍ଜୀବଦୃଷ୍ଟେ ହିମାଂଶୌ ॥

ଚନ୍ଦ୍ରକୁ ବୃହସ୍ପତି ଦେଖିଲେ ଜାତକ ଶତ୍ରୁଘାତୀ, ସୌଭାଗ୍ୟଶାଳୀ ଗୁଣବାନ୍, ସକଳ ଲୋକପୂଜ୍ୟ, ପାପହୀନ, ସମସ୍ତ ବିଦ୍ୟାବିଶାରଦ ଓ ଐଶ୍ୱର୍ଯ୍ୟଶାଳୀ ହୁଏ ।

ଶୀତାଧିକଃ ଶ୍ୟାମତନୁଃ କଫାତ୍ମା
ନାନାମତଃ ପ୍ରେମପରେ ଗୁଣୀ ଚ ॥

ଚନ୍ଦ୍ରକୁ ଶୁକ୍ର ଦେଖିଲେ ଜାତକ ଶୀତପୀଡ଼ିତ, ଶ୍ୟାମବର୍ଣ୍ଣବିଶିଷ୍ଟ, କଫାଧିକଦେହୀ, ଉଦ୍‌ବିଗ୍ନମନା, ପ୍ରେମିକ ଓ ଗୁଣବାନ୍ ହୁଏ ।

## ମଙ୍ଗଳ ପ୍ରତି ଗ୍ରହଦୃଷ୍ଟି ଫଳଂ

ଗ୍ରାମାଧିପାଳୋ ନଗରାଧିପୋ ବା
ସ୍କନ୍ଧାଧିରୂଢୋ ଗଜବାଜିବାନାଂ ।
ଭୌମଂ ସଦା ପଶ୍ୟତି ଚଣ୍ଡରଶ୍ମି-
ସ୍ତଦା ନରଃ ସର୍ବସୁଖୈରୁପେତଃ ॥

ମଙ୍ଗଳକୁ ରବି ଦେଖିଲେ ଜାତକ ଗ୍ରାମ ବା ନଗରାଧିପ ହୁଏ । ସେ ବ୍ୟକ୍ତି ହସ୍ତୀ ଅଶ୍ୱାଦି ଯାନରେ ଗମନାଗମନ କରେ ଓ ସୁଖୀ ହୁଏ ।

ନୃପାନ୍ତକୋ ନାଟ୍ୟଯୁତୋଽଭିମାନୀ
ମାୟାଯୁତୋ ବୈରିକୃତାଭିତପ୍ତଃ ।
ଭୂପୋପମଃ ସର୍ବଜନସ୍ତୁପାପଃ
ସୌମ୍ୟୈରଯୁକ୍ତଃ ସୁଭଗୋଽତିଲକ୍ଷ୍ମ୍ୟା ॥

ମଙ୍ଗଳକୁ ବୁଧ ଦେଖିଲେ ଜାତକ ନୃପରକ୍ଷୀ, ନାଟ୍ୟପ୍ରିୟ, ଅଭିମାନୀ, ମାୟାବୀ ଓ ଶତ୍ରୁକର୍ତ୍ତୃକ ପୀଡ଼ିତ ହୁଏ । ବୃହସ୍ପତି ଦେଖିଲେ ଜାତକ ରାଜତୁଲ୍ୟ ଓ ନିଷ୍ପାପୀ ହୁଏ । ଏହି ମଙ୍ଗଳ ସହ ଶୁଭଗ୍ରହ ନ ଥିଲେ ବୃହସ୍ପତିର ଦୃଷ୍ଟି ବିଶେଷ ଶୁଭ କରାଏ ।

ସମ୍ମାନସୌଖ୍ୟାଦିଗୁଣୈରୁପେତଃ
ସ୍ୱକର୍ମଶାଳୀ ସୁରତୋପଭୋଗୀ ।

ମଙ୍ଗଳକୁ ଶୁକ୍ର ଦେଖୁଥିଲେ ଜାତକ ସମ୍ମାନଯୁକ୍ତ, ସୌଖ୍ୟାଦିଭାଗୀ ଗୁଣବାନ୍, ଉତ୍ତମକର୍ମକର୍ତ୍ତା ଓ କାମାର୍ତ୍ତ ହୁଏ ।

ବୁଧ ଗ୍ରହଦୃଷ୍ଟି ଫଳଂ

ନାନାରୁଜାର୍ତ୍ତୋ ବହୁମନ୍ଦବକ୍ତା
କ୍ରୂରସ୍ୱଭାବଃ ସାଧୁ ଜନାଶକାସ୍ତ ।
ମନ୍ତ୍ରାନୁରକ୍ତୋଽପ୍ୟତିଥିପ୍ରଯୁକ୍ତଃ
ବଦ୍ୟାସୁତାଦୌ ବହୁ ଭାଗଶାଳୀ ॥

ବୁଧକୁ ମଙ୍ଗଳ ଦେଖୁଲେ ଜାତକ ନାନାପ୍ରକାର ରୋଗପୀଡ଼ିତ, ମନ୍ଦଭାଷୀ, କ୍ରୂର ଓ ସାଧୂନିନ୍ଦା ହୁଏ । ଶୁକ୍ର ଦେଖୁଲେ ମନ୍ତ୍ରଜ୍ଞ, ଅତିଥି-ସେବାତତ୍ପର, ବଦ୍ୱାନ୍, ପୁତ୍ର ଓ ଧନାଦି ଯୁକ୍ତ ହୁଏ ।

ଦୃଶ୍ୟତେ ଯୁଜ୍ୟତେ ବାପି ଚନ୍ଦ୍ରଜେନ ବୃହସ୍ପତିଃ ।
ଶିରସା ଶାସନଂ ତସ୍ୟ ଧାରୟନ୍ତି ନୃପାସ୍ତଦା ॥
ସ, ଚ,

ବୁଧକୁ ବୃହସ୍ପତି ଦେଖିଲେ ବା ତା ସହିତ ଯୁକ୍ତ ହେଲେ ଜାତକର ଆଦେଶ ରାଜାମାନେ ଶିରୋଧାର୍ଯ୍ୟ କରନ୍ତି ।

ବୃହସ୍ପତି ପ୍ରତି ଗ୍ରହଦୃଷ୍ଟି ଫଳଂ ।

ପ୍ରଚଣ୍ଡଚଣ୍ଡୋଦ୍ୟତକର୍ମଶାଳୀ
ଆଳସ୍ୟଭୂତୋ,ନସ୍ୱତୋ ମନୁଷ୍ୟଃ ।

ନରେନ୍ଦ୍ରମାନ୍ୟୋ ମତିମାନ୍ ସୁକର୍ମା
ଚନ୍ଦ୍ରେଣ ଦୃଷ୍ଟେ ସୁରରାଜପୂଜ୍ୟଃ ।

ବୃହସ୍ପତିକୁ ରବି ଦେଖିଲେ ଜାତକ ଉଗ୍ର ସ୍ୱଭାବବିଶିଷ୍ଟ, ଦୁଷ୍ଟ, କର୍ମଶୀଳ ଓ ଅଲସୁଅ ହୁଏ । ଚନ୍ଦ୍ର ଦେଖିଲେ ଉତ୍ତମ କର୍ମକର୍ତ୍ତା, ରାଜପୂଜ୍ୟ ଓ ବୁଦ୍ଧିମାନ୍ ହୁଏ ।

ନରେନ୍ଦ୍ରପୂଜ୍ୟଃ ସୁଖବାନ୍ ସୁଦାତା
ପ୍ରଚଣ୍ଡମୂର୍ତ୍ତିର୍ଧନଭାଜନଞ୍ଚ ।
ଲଭେ ଧନାନାଂ ବିବିଧପ୍ରକାରୈଃ
ଖରୌଷ୍ଟ୍ରଦନ୍ତାବଲଭାଜନଞ୍ଚ ॥

ବୃହସ୍ପତିକୁ ମଙ୍ଗଳ ଦେଖିଲେ ଜାତକ ରାଜପୂଜ୍ୟ, ସୁଖୀ, ଦାତା, କ୍ରୋଧୀ ଓ ଧନୀ ହୁଏ । ଶନି ଦେଖିଲେ ଗର୍ଦ୍ଦଭ, ଉଷ୍ଟ୍ର ଓ ହସ୍ତୀର ବିକ୍ରୟାଦି ଦ୍ୱାରା ଓ ନାନା ପ୍ରକାର ଉପାୟରେ ଧନଲାଭ କରେ ।

ଶୁକ୍ର ସ୍ଥିତ ଗ୍ରହଦୃଷ୍ଟି ଫଳଂ ।

କ୍ଷୀଣଃ କଫାଢ୍ୟା ନଖଦନ୍ତରୋଗୀ
ଗର୍ଭପ୍ରପୀଡା ଅଦ୍ଭୁତଂ ସଦା ସ୍ୟାତ୍ ।

ଶୁକ୍ରକୁ ଚନ୍ଦ୍ର ଦେଖିଲେ ଜାତକ କ୍ଷୀଣଶରୀର, ଶ୍ଳେଷ୍ମାଧିକ, ନଖ-ଦନ୍ତ-ରୋଗୀ ଉଦରପୀଡ଼ାଯୁକ୍ତ ହୁଏ ।

ସୁନ୍ଦୈଃ କଳତ୍ରୈର୍ବହୁଭିଃ ସମେତୋ
ଭୌମେନ ଦୃଷ୍ଟେ ଭୃଗୁବଂଶଜାତଃ ॥

ଶୁକ୍ରକୁ ମଙ୍ଗଳ ଦେଖିଲେ ଜାତକ ବନ୍ଧୁପୂଜ୍ୟ ଓ କଳତ୍ରଯୁକ୍ତ ହୁଏ ।

ମେଧାନ୍ୱିତୋ ମନ୍ତ୍ରବିଶେଷବୁଦ୍ଧି-
ର୍ନରେନ୍ଦ୍ରମାନ୍ୟୋ ଦ୍ୱିଜଦେବଭକ୍ତଃ ।
ଅମାତ୍ୟଧର୍ମୌଽପି ନରସ୍ତଥା ସ୍ୟାତ୍
ଶିତୋଽପି ଦୃଷ୍ଟୋ ଗୁରୁଣା ଯଦା ସ୍ୟାତ୍ ॥

ଶୁକ୍ରକୁ ବୃହସ୍ପତି ଦେଖିଲେ ଜାତକ ମେଧାବୀ, ମନ୍ତ୍ରଜ୍ଞ, ରାଜମାନ୍ୟ, ଧାର୍ମିକ, ଦେବବ୍ରାହ୍ମଣ ଅନୁରକ୍ତ ଓ ମନ୍ତ୍ରଣାଶକ୍ତି ସମ୍ପନ୍ନ ହୁଏ ।

ଶନି ପ୍ରତି ଗ୍ରହଦୃଷ୍ଟି ଫଳଂ

ନରସ୍ତୁ ସର୍ମୂର୍ତ୍ତିଧନୈର୍ବିହୀନଃ
ନରେନ୍ଦ୍ରଃ ସର୍ବଗୁଣୈର୍ବିଶିଷ୍ଟଃ ।
ଖ୍ୟାତଃ ପୃଥିବ୍ୟାଂ ବହୁସୌଖ୍ୟଭାଗୀ
ଶୁକ୍ରେଣ ଦୃଷ୍ଟୋ ରବିଜଃ ପ୍ରଜାତଃ ॥

ଶନିକୁ ରବି ଦେଖୁଥିଲେ ଜାତକ ନିର୍ଦ୍ଧନ ହୁଏ । ବୃହସ୍ପତି ଦେଖୁଥିଲେ ଗୁଣବାନ୍ ଓ ଧନବାନ୍ ହୁଏ । ଶୁକ୍ର ଦେଖୁଥିଲେ ଜାତକ ପ୍ରଖ୍ୟାତନାମା ଓ ସକଳ ସୁଖ ଭୋଗ କରେ ।

ସମସ୍ତ ଗ୍ରହଦୃଷ୍ଟ ଲଗ୍ନଫଳଂ

ସର୍ବେଽପ୍ୟାକାଶଗା ବା ଉଦୟମଥ ତଦା ଦୈବଯୋଗେନ ଦୃଷ୍ଟଂ
ପଶ୍ୟନ୍ତି ସ୍ଥାନମାନଂ ଦଦତି ଗୁଣଚୟଂ ସ୍ୱଜଲକ୍ଷ୍ମୀଂ ତନୁଜାନ୍ ।
ବନ୍ଧୂଂ ପତ୍ନୀଂ ମନୋଜ୍ଞାଂ ମୃଦୁ ମଧୁରବଚଃ ସତ୍କୁଳୀନାଞ୍ଚ ସର୍ବାଂ
ଖ୍ୟାତିଃ ପ୍ରୀତିଂ ସୁପୁଷ୍ଟାଂ ମରଣମିହ ଶୁଭଂ ଜାହ୍ନବୀବାରିମଧ୍ୟେ ॥

ସମସ୍ତ ଗ୍ରହମାନେ ଯଦି ଲଗ୍ନକୁ ଦେଖନ୍ତି, ତେବେ ଜାତକ ଧନବାନ୍, ମାନୀ, ସୁଖୀ, ପୁତ୍ରବାନ୍, ବନ୍ଧୁଯୁକ୍ତ, ମନୋଜ୍ଞ, ମୃଦୁଭାଷୀ, ଉତ୍ତମ ବଂଶଜାତ ତନୟାଯୁକ୍ତ, ରାଜପୂଜ୍ୟ ଓ ପୁଷ୍ପଦେହୀ ହୁଏ । ଶେଷରେ ତାହାର ସଙ୍ଗାପ୍ରାପ୍ତି ଘଟେ ।

ଅନ୍ୟଚ୍ଚ—ଲଗ୍ନେ ସର୍ବଗ୍ରହୈର୍ଦୃଷ୍ଟେ ନୃପତୁଲ୍ୟୋଽଥବା ଭବେତ୍ ।
ଶୁଭକ୍ଷେତ୍ରେ ତ୍ୱିଦଂ ବାଚ୍ୟଂ ପାପକ୍ଷେତ୍ରେ ଋଷ୍ଟିବର୍ଜିତଂ ॥
ଜା, ସ,

ଲଗ୍ନ ଶୁଭଗ୍ରହର କ୍ଷେତ୍ରରେ ହୋଇଥିଲେ, ତାହାକୁ ସମସ୍ତ ଗ୍ରହ ଦେଖୁଥିଲେ ଜାତକ ରାଜାତୁଲ୍ୟ ହୁଏ । ଲଗ୍ନ ପାପଗ୍ରହ କ୍ଷେତ୍ରରେ ହୋଇ ସମସ୍ତ ଗ୍ରହ ଦେଖିଲେ ଜାତକର ସମସ୍ତ ଋଷ୍ଟ ନାଶ ହୁଏ ।

### ସମସ୍ତ ଗ୍ରହଦୃଷ୍ଟ ଚନ୍ଦ୍ର ଫଳଂ

କୁମୁଦଗଣବନ୍ଧୌ ଶାକ୍ଷ୍ୟମାଣୈଃ ସମସ୍ତୈ--
ର୍ଗଗନଚଲନବାସୀ ଦୀର୍ଘଜୀବୀ ବଳାଢ୍ୟୀ ।
ଫଲମଶୁଭ ସମସ୍ତଂ ଯାତି କେମଦ୍ରୁମୋକ୍ତଂ
ଭବତି ମନୁଜନାଥଃ ସାର୍ବଭୌମୋ ଜଡ଼ାରଃ ॥

ସମସ୍ତ ଗ୍ରହ ଚନ୍ଦ୍ରଙ୍କୁ ଦେଖିଲେ ଜାତକ ଦୀର୍ଘଜୀବୀ, ବଳାଢ୍ୟ, ରାଜତୁଲ୍ୟ ଓ ଶତ୍ରୁହନ୍ତା ହୁଏ । କେମଦ୍ରୁମ ଯୋଗୋକ୍ତ ସମସ୍ତ ଅଶୁଭ ଫଳ ନାଶ ହୁଏ । (କେମଦ୍ରୁମ ଯୋଗ କ'ଣ ଚନ୍ଦ୍ରଯୋଗ ବିଷୟରେ ଦେଖ )

ଦୃଷ୍ଟି ସମ୍ବନ୍ଧରେ ବିଶେଷ ବିଧି ଏହି ଯେ ସମସ୍ତ ସ୍ଥାନରେ ପୂର୍ଣ୍ଣଦୃଷ୍ଟି ଗ୍ରହଣ କରିବେ । ସପ୍ତମସ୍ଥ ଯେ ଦୃଷ୍ଟି ତାହା ଅଂଶ ଦେଖି ଠିକ୍ କରିବେ ।

ଯଥା :—ମଙ୍ଗଳ ତୁଳାର ୧୬ ଅଂଶରେ ଅଛି । ରବି ମେଷର ୧୬ ଅଂଶରେ ଅଛି । ତେବେ ଉଭୟେ ଉଭୟଙ୍କୁ ସମ୍ପୂର୍ଣ୍ଣ ଭାବେ ଦେଖିବେ । ଅଂଶ ପ୍ରଭେଦ ଥିଲେ ଅନୁପାତରେ ଜାଣିବେ । ଶୁଭଗ୍ରହମାନେ ଦେଖୁଥିଲେ ଶୁଭ ଓ ଅଶୁଭ ଗ୍ରହମାନଙ୍କ ଦୃଷ୍ଟି ସର୍ବଦା ଦୋଷକାରକ ବୋଲି ଜାଣିବେ । ଅଶୁଭ ଗ୍ରହର ଗୃହସ୍ଥ ଲଗ୍ନକୁ ବା ଗ୍ରହକୁ ସେହି ଅଶୁଭ ଗ୍ରହ ଦେଖିବା ଅଶୁଭ ନୁହେ । ଚନ୍ଦ୍ର ସମ୍ବନ୍ଧରେ ଏହା ଅଦ୍ଭୁତ ଶୁଭକାରକ, ଯଥା :—ଶନିର ଚନ୍ଦ୍ରକୁ ଦେଖିବା ଅଶୁଭକାରକ; ମାତ୍ର ମକର ବା କୁମ୍ଭରାଶିସ୍ଥ ଚନ୍ଦ୍ରକୁ ଶନି ଦେଖିବା ଅତ୍ୟନ୍ତ ଶୁଭକାରକ ।

———

## ଗ୍ରହ ଯୋଗଫଳ ନିରୂପଣଂ

ଶ୍ଲାଘ୍ୟଃ ସୁଖୀ ସର୍ବଜନେନ ପୂଜ୍ୟଃ
ସୌମ୍ୟେନ ଯୁକ୍ତୋ ହି ଭବେଚ୍ଚ ଦାତା ।
ଉଚ୍ଚୈର୍ଯଦା ଯୋଗମୁପୈତି ଭାନୁଃ
ସୌମ୍ୟେନ ଯୁକ୍ତୋ ହି ଭବେଦ୍‌ଗୁଣଜ୍ଞଃ ।
ସ୍ୱସ୍ଥାନଧିଷ୍ଣ୍ୟୈକଗୃହେ ଗୁରୁଶ୍ଚ
ଯଦା ତଦା କର୍ମୀ ଭବେଚ୍ଚ ଦକ୍ଷଃ
ଧନ୍ୟୋ ଧନୀ କାନ୍ତନିଧିର୍ଜଗତ୍ୟାଂ
ବାଗ୍ମୀ ଚ ସଜାଳଜନଶଉନ୍ନାତ୍ରୀ ॥

ଜା, ଚ,

ବୁଧ ଓ ରବି ମେଷରାଶିରେ ଏକତ୍ର ଯୋଗ ହେଲେ ଜାତ ବ୍ୟକ୍ତି ପ୍ରଶଂସନୀୟ, ସର୍ବଲୋକର ପୂଜ୍ୟ ଓ ଗୁଣଜ୍ଞ ହୁଏ । ଅନ୍ୟ ରାଶିରେ ଯୋଗ ହେଲେ ଏହା ସାମାନ୍ୟ ଫଳଦାୟକ ହୁଏ । କେରଳସାର ମତରେ ମେଷ ଓ ସିଂହରାଶିସ୍ଥ ରବିବୁଧ ଯୋଗ ହେଲେ ଜାତକ ସାଧୁ ଓ ବନ୍ଧୁ

ପୋଷକ ହୁଏ । ରବି ବୃହସ୍ପତି ଏକ ରାଶିସ୍ଥ ହେଲେ ଜାତକ କାର୍ଯ୍ୟଦକ୍ଷ, ସୁବୃତ, ଧନଧାନ୍ୟଯୁକ୍ତ, ସୁନ୍ଦର ବକ୍ତା ଓ ସଜ୍ଜନ ଚିତ୍ତରଞ୍ଜକ ହୁଏ ।

ଶୁକ୍ରେଣ ସୂର୍ଯ୍ୟେ ଯଦି ଚୈକରାଶୌ
ଦୁରାସ୍ୟଃ କୁତ୍ସିତମୂର୍ତ୍ତିବେଷଃ ।
କୁଚେଲଧାରୀ ଚ ତଥା କୁଭାର୍ଯ୍ୟଃ
କୁବୁଦ୍ଧିଯୁକ୍ତୋ କୃଷ୍ଟକର୍ମକର୍ତ୍ତା ॥
ଆର୍କ୍ୟଯୁତେନା ଯଦି ତାତଯୁକ୍ତୋ
ଭବେନ୍ନରୋ ତସ୍କରବୁଦ୍ଧିଯୁକ୍ତଃ ।
ଧନେନ-ହୀନଶ୍ଚ ଜନନିନ୍ଦକଶ୍ଚ
କ୍ରୋଧୀ ଚ ଦୁଃଖୀ ଚ ଗଦାନ୍ୱିତଃ ସ୍ୟାତ୍ ॥

ରବି ଶୁକ୍ରଯୁକ୍ତ ହେଲେ ଜାତକ କୁରୂପ, କୁବସ୍ତ୍ରଧାରୀ, କୁତ୍ସିତ-ସ୍ତ୍ରୀଯୁକ୍ତ, ଓ କପଟୀ ହୁଏ । ରବି ଶନିଯୁକ୍ତ ହେଲେ ଜାତକ ଚୋର, ଧନଯୁକ୍ତ, ପରନିନ୍ଦକ, କ୍ରୋଧୀ ଦୁଃଖଯୁକ୍ତ ଓ ରୋଗାର୍ତ୍ତ ହୁଏ ।

ସଦ୍‌ଗୁଣାନ୍ୱିତୋ ଦାତା ସୁଖୀ ଶୂରଶ୍ଚ ପଣ୍ଡିତଃ ।
ଜାତୋ ଭୌମ ଶଶିସଂଯୋଗେ ଭବେନ୍ନୀତାନ ଚ ଧ୍ରୁବଂ ॥

ଚନ୍ଦ୍ର ମଙ୍ଗଳ ଏକରାଶିସ୍ଥ ହେଲେ ଜାତକ ସଦ୍‌ଗୁଣାନ୍ୱିତ, ଦାତା, ସୁଖୀ, ବଳବାନ୍ ଓ ବିଦ୍ୱାନ ହୁଏ ।

ରୂପବାନଧନୋଽକାର୍ଯ୍ୟଃ ପାପପଥେ ରତଃ ସଦା ।
ନରଃ ସୌମ୍ୟେନ ଯୋଗସ୍ଥ ନିନ୍ଦାବାଦୋ ଚ ତତ୍ପରଃ ॥

ବୁଧ ମଙ୍ଗଳ ଏକରାଶିସ୍ଥ ହେଲେ ଜାତକ ରୂପବାନ୍, ବୁଦ୍ଧିମାନ୍, ପାପକର୍ମୀ ଓ ପରନିନ୍ଦକ ହୁଏ । ବୃହଜ୍ଜାତକ ମତରେ ଜାତକ ନାନା-ଉପାୟରେ ଧନାର୍ଜ୍ଜନ କରେ ।

ସ ଶ୍ରୀମାନ୍ କାନ୍ତିସଂଯୁକ୍ତଶ୍ଚ ସ ସାଧୁଃ ପଣ୍ଡିତଃ ସୁଖୀ ।
ଜନାନନ୍ଦକରଶ୍ଚୈବ ଜାତ୍ୟଂ ଗୁରୁଚନ୍ଦ୍ରସମାଗମେ ॥

ବୃହସ୍ପତି ଚନ୍ଦ୍ରଯୁକ୍ତ ହେଲେ ଜାତକ ଲକ୍ଷ୍ମୀଯୁକ୍ତ, ସାଧୁ, ଜ୍ଞାନୀ, ସୁଖୀ ଓ ସର୍ବଲୋକଙ୍କର ଆନନ୍ଦ ସମ୍ପାଦନକାରୀ ହୁଏ । ଏହି ଯୋଗ ବୃଷ, କର୍କଟ, ଧନୁ ବା ମୀନରେ ହୋଇଥିଲେ ବିଶେଷ ଶୁଭ ହୋଇଥାଏ ।

ଜାତ୍ୟଂ ସ୍ତ୍ରୀବଲ୍ଲଭଃ ଶୂରଃ ସର୍ବଶାସ୍ତ୍ରେଷୁ ପାରଗଃ ।
ହେମାଲଙ୍କାରଯୁକ୍ତଶ୍ଚ ଭୃଗୁଚନ୍ଦ୍ରସମାଗମେ ॥

ଶୁକ୍ର ଚନ୍ଦ୍ରଯୁକ୍ତ ହେଲେ ଜାତକ ସ୍ତ୍ରୀବଲ୍ଲଭ ଶୌର୍ଯ୍ୟଶାଳୀ, ସର୍ବ ଶାସ୍ତ୍ରପାରଗ ଓ ସ୍ୱର୍ଣ୍ଣାଲଙ୍କାରଯୁକ୍ତ ହୁଏ ।

ଶନିଚନ୍ଦ୍ରସମାଯୁକ୍ତୋ ଧନବାନ୍ ପଣ୍ଡିତୋ ଭବେତ୍ ।
କ୍ରୂରଃ ପୈଶୁନ୍ୟକାରୀ ଚ ପରନିନ୍ଦାପରଃ ସଦା ।
ତୁଳା ମକର କୁମ୍ଭେଷୁ ବିଶେଷ ଫଳଦୋ ଭବେତ୍ ॥

ଶନି ଚନ୍ଦ୍ରଯୁକ୍ତ ହେଲେ ଜାତକ ଧନବାନ୍, ବିଦ୍ୱାନ୍, କ୍ରୂର ଓ ହିଂସ୍ରକ ହୁଏ । ଏହି ଯୋଗ ତୁଳା, ମକର, କୁମ୍ଭରେ ହେଲେ ବିଶେଷ ଶୁଭ ହୁଏ ।

ପୁଣ୍ୟାର୍ଥନିରତଶ୍ଚୈବ ଦେବବ୍ରାହ୍ମଣପୂଜକଃ ।
ଅଳ୍ପପ୍ରଜାଢ୍ୟଶ୍ଚୈବ ଯୋଗେ ଚ ଶନିଭୌମୟୋଃ ॥

ଶନି ମଙ୍ଗଳଯୁକ୍ତ ହେଲେ ଜାତକ ତୀର୍ଥଗାମୀ, ଦେବବ୍ରାହ୍ମଣଭକ୍ତ ଓ ଅଳ୍ପ ସନ୍ତାନଯୁକ୍ତ ହୁଏ । ବୃହଜ୍ଜାତକ ମତରେ ଜାତକ ନିନ୍ଦନୀୟ ଗର୍ହିତ କାର୍ଯ୍ୟରେ ଲିପ୍ତ ହୁଏ ।

ଗୁରୁର୍ଜ୍ଞେନ ଯଦା ଯୁକ୍ତୋ ଧନୀ ଭବତି ପଣ୍ଡିତଃ ।
ଗୁରୁଭାର୍ଗବଯୋଗେ ଚ ପ୍ରହୃଷ୍ଟଃ ସର୍ବସମ୍ପଦଃ ॥

ବୃହସ୍ପତି ବୁଧଯୁକ୍ତ ହେଲେ ଜାତକ ଧନବାନ୍ ଓ ବିଦ୍ୱାନ୍ ହୁଏ । ବୃହସ୍ପତି ଶୁକ୍ରଯୁକ୍ତ ହେଲେ ଜାତକ ପ୍ରଫୁଲ୍ଲମନା ଓ ସର୍ବ ସମ୍ପଦ-ଯୁକ୍ତ ହୁଏ ।

ଗୁରୁଣା ରାହୁଯୋଗେନ ଜାତୋ ଭବତି ଦୁଃଖିତଃ ।
ରାଜପୁତ୍ରୋ ଯଦି ସ୍ୟାତ୍ତୁ ସର୍ବଦୁଃଖସ୍ୟ ଭାଜନଃ ॥

ବୃହସ୍ପତି ରାହୁଯୁକ୍ତ ହେଲେ ଜାତକ ଦୁଃଖିତ ହୁଏ । ରାଜପୁତ୍ର ହେଲେ ମଧ୍ୟ ସକଳ ଦୁଃଖର ସ୍ଥାନ ହୁଏ । କେବଳସାର ମତରେ ଜାତକ କାହାକୁ ଖାତର କରେ ନାହିଁ ।

ଗ୍ରହଯୋଗ ଶୁଭ ହେଉ ବା ଅଶୁଭ ହେଉ ତାହା କ୍ରମେ ରାଶି, ନକ୍ଷତ୍ର ଓ ଅଂଶରେ ଯୋଗ ହେଲେ କ୍ରମାନ୍ୱୟରେ ବିଶେଷ ବୃଦ୍ଧି ହୁଏ । ସାଧାରଣ ନିୟମରେ ସମସ୍ତେ ଗ୍ରହ ଏକରାଶିଗତ କି ନା ତାହା ଦେଖନ୍ତି, କିନ୍ତୁ ନକ୍ଷତ୍ରଗତ ଓ ଏକ ଅଂଶଗତ କି ନା ତାହା ଦେଖି ଯୁକ୍ତଫଳର ଉତ୍ତରୋତ୍ତର କଳ୍ପନା କରି କହିବାକୁ ହେବ ।

ରାଶିସ୍ଥିତି ଫଳ ବିଚାରଃ

ଧନୀ ଚ ରାଜପୂଜ୍ୟଶ୍ଚ ସଚିବୋ ବା ଭବେନ୍ନୃପଃ ।
ପୁଣ୍ୟାର୍ଥୀ ଧାର୍ମିକଶ୍ଚୈବ ରବୌ ମେଷେ ପ୍ରକୀର୍ତ୍ତିତଃ ॥

ରବି ମେଷରେ ଥିଲେ ଜାତକ ଧନୀ, ରାଜପୂଜ୍ୟ, ମନ୍ତ୍ରୀ କିମ୍ବା ରାଜ-ତୁଲ୍ୟ, ପୁଣ୍ୟବାନ୍ ଓ ଧାର୍ମିକ ହୁଏ ।

ଅଶ୍ୱାଦିବାହନୈର୍ଯୁକ୍ତଃ ସୁନ୍ଦରବହୁଭୂଷିତଃ ।
ଜାତଃ ସିଂହସ୍ଥିତେ ଭାନୌ ରୂପବାନ୍ ଚ ଦୟାପରଃ ॥

ରବି ସିଂହରାଶିରେ ଥିଲେ ଜାତକ ଅଶ୍ୱାଦି ବାହନଯୁକ୍ତ, ସୁନ୍ଦର ଓ ବହ୍ୱାଦିରେ ବିଭୂଷିତ ହୁଏ ।

ରୂପବାନ୍ ଧନବାନ୍ ଚୈବ କୁଳଶ୍ରେଷ୍ଠୋ ଭବେଦ୍ଧ୍ରୁବଂ ।
ବନ୍ଧୁଭିଃ ପରିପାଳ୍ୟଶ୍ଚ ଜାତଃ ସୌମ୍ୟସ୍ଥିତେ ରବୌ ॥

ରବି ମିଥୁନରେ ବା କନ୍ୟାରେ ଥିଲେ ଜାତକ ରୂପବାନ୍, ଧନବାନ୍ କୁଳାଗ୍ରଗଣ୍ୟ ଓ ବନ୍ଧୁପୋଷକ ହୁଏ । ବୃହଜ୍ଜାତକ ମତରେ ଜାତକ ଶାସ୍ତ୍ରଜ୍ଞ ଓ ଲେଖକ ହୁଏ ।

ବିଦ୍ୟାବାନଭବେତ୍ସାଧୁଃ କୁଳଶ୍ରେଷ୍ଠୋ ଧନାନ୍ୱିତଃ ।
କ୍ଷମୀ ଦୟାପରଶ୍ଚୈବ ଜାତୋ ଗୁରୁସ୍ଥିତେ ରବୌ ॥

ରବି ଧନୁ ଓ ମୀନରେ ଥିଲେ ଜାତକ ବିଦ୍ୟାବାନ୍ ସାଧୁ, କୁଳପୂଜ୍ୟ, କ୍ଷମୀ ଓ ଦୟାଳୁ ହୁଏ ।

ତୁଲାଳିବୃଷକର୍କିସ୍ଥଃ ଦିନନାଥୋ ଯଦା ଭବେତ୍ ।
ଅଦାତା କୂଟକର୍ମୀ ଚ ଅଳ୍ପାପତ୍ୟୋ ଭବେଦ୍ଧ୍ରୁବଂ ॥

ରବି ତୁଳା, ବିଛା, ବୃଷ ବା କର୍କଟରେ ଥିଲେ ଜାତକ ଅଦାତା, କପଟୀ ଓ ଅଳ୍ପ ସନ୍ତାନଯୁକ୍ତ ହୁଏ । ରବି ତୁଳାର ୧୦ ଅଂଶରେ ଥିଲେ ଜାତକ ଅତ୍ୟନ୍ତ ପାପୀ, ଚୌର, ନାସ୍ତିକ ଓ ଘୃଣ୍ୟ ହୁଏ ।

କୃଶାଙ୍ଗଃ କୃପଣଶ୍ଚୈବ ପାପାତ୍ମା ରୋଗସଂଯୁତଃ ।
ଭବେତ୍ ସୌରିସ୍ଥିତେ ଭାନୁର୍ଜାତୋ ଦେଶାନ୍ତରଂ ବଜେତ୍ ॥

ରବ ମକର ବା କୁମ୍ଭ ରାଶିରେ ଥିଲେ ଜାତକ କ୍ଷୀଣାଙ୍ଗ, କ୍ଳେଶି, ପାପାତ୍ମା, କୃଷ୍ଣ ଓ ଦେଶାନ୍ତରଗ ହୁଏ । ବୃହତ୍ଜାତକ ମତରେ ଜାତକର ମୁଖ ନାନାପ୍ରକାର ରୋଗଯୁକ୍ତ ହୁଏ ।

ଚଞ୍ଚଲଃ କୃପଣଃ କ୍ରୋଧୀ ଧାର୍ମିକଃ କୁଲନନ୍ଦନଃ ।
ଦ୍ୱିଜଦେବେ ସଦାସକ୍ତୋ ବୃଷସ୍ଥୋଽପି ଯଦା ଶଶୀ ॥

ଚନ୍ଦ୍ର ବୃଷସ୍ଥ ହେଲେ ଜାତକ ଚଞ୍ଚଲମନା, ଲୁବ୍ଧ, କ୍ରୋଧୀ, ଧାର୍ମିକ, କୁଳନନ୍ଦଦାୟକ ଓ ଦେବବ୍ରାହ୍ମଣ ପୂଜକ ହୁଏ ।

ପ୍ରାରବ୍ଧୋ ହ୍ୟମଜୋର୍ଦ୍ଦଶା ସ୍ୱଗୃହଗେ ମାନାର୍ଥସୌଖ୍ୟାବହା ।
କୌଜେ ଦୂଷଯୁତ ସ୍ତ୍ରିୟଂ ବୁଧଗୃହେ ବନ୍ଧ୍ୟା ସୁହୃଦ୍ ଦରଦା ।
ଦୁର୍ଗାରଣ୍ୟପଥାଲୟେ କୃଷିଜସ୍ୱ ସିଂହେ ଶିତର୍ଷେନ୍ଦୁଦା ।
କୁସ୍ତ୍ରୀଦା ମୃଗକୁମ୍ଭୟୋଃ ଗୁରୁଗୃହେ ମାନାର୍ଥସୌଖ୍ୟାବହା ॥

କର୍କଟସ୍ଥ ଚନ୍ଦ୍ର, ମାନ, ଅର୍ଥ ଓ ସୁଖ ଦାନ କରେ । ମେଷସ୍ଥ ବା ବୃଶ୍ଚିକସ୍ଥ ହେଲେ ସ୍ତ୍ରୀର ଅପ୍ରିୟଭାଜନ ହୁଏ । ମିଥୁନସ୍ଥ ବା କନ୍ୟାସ୍ଥ ହେଲେ ବନ୍ଧ୍ୟା, ମିତ୍ର ଓ ଧନପ୍ରାପ୍ତି କରାଏ । ସିଂହରେ ଥିଲେ ବନ୍ୟଭୂମି, ରାସ୍ତା ଓ ଗୃହାଦରେ କୃଷିର ବିସ୍ତାର କରେ । ତୁଲା ବା ବୃଷସ୍ଥ ଚନ୍ଦ୍ର ଉତ୍ତମାନ୍ନାଦ ପ୍ରାପ୍ତି କରାଏ । ମକର କୁମ୍ଭସ୍ଥ ହେଲେ କୁତ୍ସିତ ସ୍ତ୍ରୀ ଲାଭକରେ । ଧନୁ ବା ମୀନସ୍ଥ ଚନ୍ଦ୍ର ମାନ, ଧନ ଓ ସୁଖାଦ ପ୍ରାପ୍ତି କରାଏ ।

ମେଷାଲିମୃଗମୀନେଷୁ ଭୂମିପୁତ୍ରୋ ଯଦା ଭବେତ୍ ।
ଅଶ୍ୱାଦ ବାହନଂ ଛତ୍ରଂ ଧନବାନ୍ ପରନନ୍ଦକଃ ॥

ମଙ୍ଗଳ ମେଷରେ, ବୃଶ୍ଚିକରେ, ମକରରେ, ମୀନରେ ରହିଲେ ଅଶ୍ୱାଦ ବାହନ, ଛତ୍ର ଓ ଧନଲାଭ କରାଏ । ସେହି ବ୍ୟକ୍ତି ପରନନ୍ଦକ ହୁଏ । ମକରର ଉଚ୍ଚାଂଶରେ ଥିଲେ ବିବିଧ ସୁଖ ଭୋଗ କରାଏ ।

ବୃଷେ ଧନୁଷି ସିଂହେ ଚ ଯଦି ତିଷ୍ଠତି ଭୂମିଜଃ ।
ଧନାଢ୍ୟୋ ଭବେନ୍ମନ୍ତ୍ରୀ ପରଭାଗ୍ୟେ ଚ ନିର୍ଭରଃ ॥

ମଙ୍ଗଳ ବୃଷରେ, ଧନୁରେ ବା ସିଂହରେ ଥିଲେ ଜାତକ ଧନବାନ୍, ମନ୍ତ୍ରଣାଶକ୍ତିଯୁକ୍ତ ଓ ପରଭାଗ୍ୟ ଉପରେ ନିର୍ଭର କରେ ।

ଯୁବତୀ ମିଥୁନେ କର୍କେ ତୁଲେ କୁମ୍ଭେ ଚ ଭୂମିଜଃ ।
ଗୁଣବାନ ନିର୍ଦ୍ଧନଶ୍ଚୈବ ଦୟାବାନ୍ ଶତ୍ରୁଘାତକଃ ॥

ମଙ୍ଗଳ କନ୍ୟା, ମିଥୁନ, କର୍କଟ ବା ତୁଳାରେ ଥିଲେ ଜାତକ ଗୁଣବାନ୍, ନିର୍ଦ୍ଧନ ଦୟାପର ଓ ଶତ୍ରୁଘାତୀ ହୁଏ । କର୍କଟର ନୀଚାଂଶରେ ଥିଲେ ଅତ୍ୟନ୍ତ ଅଶୁଭ ହୁଏ ।

ଧନୁର୍ଯୁବତୀଯୁଗ୍ମେ ଚ ତାରାପୁତ୍ରୋ ଯଦା ଭବେତ୍ ।
ଧନାଢ୍ୟୋ ଭବେତ୍ କ୍ରୋଧୀ ବିଦ୍ୟାବାନ୍ ଜନବଲ୍ଲଭଃ ॥

ବୁଧ ଧନୁ, କନ୍ୟା, ମିଥୁନରେ ଥିଲେ ଜାତକ ଧନବାନ୍, କ୍ରୋଧଯୁକ୍ତ, ବିଦ୍ୱାନ୍ ଓ ଲୋକପୂଜ୍ୟ ହୁଏ । ଉଚ୍ଚାଂଶରେ ଥିଲେ ବିଶେଷ ଶୁଭଫଳ ଲାଭ କରିବ ।

କୁକ୍ଷିରୋଗୀ କ୍ରିୟାସକ୍ତଃ ପାପକାର୍ଯ୍ୟେଷୁ ତତ୍ପରଃ ।
ପରବିତ୍ତାପହାରୀ ଚ ସୌମ୍ୟେ ଭାର୍ଗବଗେହଗେ ॥

ବୁଧ ବୃଷ ବା ତୁଳାରେ ଥିଲେ ଜାତକ ଉଦରବେଦନାଯୁକ୍ତ, ନାନାକାର୍ଯ୍ୟାସକ୍ତ, ପାପକର୍ମୀ ଓ ପରଧନ ହରଣେଚ୍ଛୁ ହୁଏ ।

ମେଷାଳିମୃଗକୁମ୍ଭେଷୁ ସିଂହେ ଚ ଯଦି ବୋଧନଃ ।
ହିଂସ୍ରକଃ ପରଘାତୀ ଚ ମିଥ୍ୟାବାଦେଷୁ ତତ୍ପରଃ ॥

ବୁଧ ମେଷ, ବୃଶ୍ଚିକ, ମକର, କୁମ୍ଭ ବା ସିଂହରେ ଥିଲେ ଜାତକ ହିଂସ୍ରକ, ପରଘାତୀ ଓ ମିଥ୍ୟାବାଦୀ ହୁଏ ।

ଧନସ୍ଥାନୋ ଶାନ୍ତମୂର୍ତ୍ତିଃ ସର୍ବ୍ଦାଗଦପୀଡ଼ିତଃ ।
କର୍କ୍କମୀନେ ଯଦା ସୌମ୍ୟୋ ମତ୍ସ୍ୟମାଂସପ୍ରିୟୋ ଭବେତ୍ ॥

ବୁଧ କର୍କଟ ବା ମୀନରେ ଥିଲେ ଜାତକ ଧନସ୍ଥାନ, ଶାନ୍ତପ୍ରକୃତି ରୋଗପୀଡ଼ିତ, ମତ୍ସ୍ୟ ଓ ମାଂସପ୍ରିୟ ହୁଏ ।

ସେନାନୀ ବହୁବିତ୍ତଦାରତନୟୋ ଦାତା ସୁମୂର୍ତ୍ତିଃ କ୍ଷମୀ
ତେଜୋଦାରଗୁଣାନ୍ୱିତଃ ସୁରଗୁରୁଃ ଖ୍ୟାତଃ ପୁମାନ୍ କୌଜଭେ ।
କଲ୍ୟାଙ୍ଗଃ ସଧନାର୍ଥ ମିତ୍ର ତନୟସ୍ତ୍ୟାଗୀ ପ୍ରିୟଃ ଶୌକ୍ରଭେ
ବୌଧେ ଭୂରିପରିଚ୍ଛଦାତ୍ମଜ ସୁହୃଦ୍‌ସାଚିବ୍ୟଯୁକ୍ତଃ ସୁଖୀ ।

ବୃହସ୍ପତି ମେଷ ବା ବୃଶ୍ଚିକସ୍ଥ ହେଲେ ଜାତକ ସେନାନାୟକ, ଧନପୁତ୍ରାଦିଯୁକ୍ତ, ଦାତା, ଶୋଭନ ଶରୀରଧାରୀ, କ୍ଷମାବାନ, ତେଜସ୍ୱାନ ଓ ଉଦାର ଗୁଣଯୁକ୍ତ ହୁଏ । ବୃଷ ବା ତୁଳସ୍ଥ ହେଲେ ଜାତକ ସୁସ୍ଥଦେହୀ, ଧନ ମିତ୍ର ପୁତ୍ରଯୁକ୍ତ ତ୍ୟାଗୀ ଓ ସର୍ବ୍ବଜନପ୍ରିୟ ହୁଏ । ମିଥୁନ ବା କନ୍ୟାସ୍ଥ ହେଲେ ଜାତକ ଉତ୍ତମ ପରିଚ୍ଛଦାଦିଯୁକ୍ତ, ପୁତ୍ରଯୁକ୍ତ, ମନ୍ତ୍ରଣାଶକ୍ତିଯୁକ୍ତ ଓ ସୁଖୀ ହୁଏ ।

ଚାନ୍ଦ୍ରେ ରତ୍ନସୁତସ୍ୱଦାରବିଭବୋ ପ୍ରଜ୍ଞାସୁଖୈରନ୍ୱିତଂ
ସିଂହେ ସ୍ୟାଦ୍‌ବଲନାୟକଂ ସୁରଗୁରୁଃ ପ୍ରୋକ୍ତଂଚ ଯଚ୍ଚନ୍ଦ୍ରଭେ ।
ସ୍ୱର୍ଷେ ମାଣ୍ଡଳିକୋ ନରେନ୍ଦ୍ରସଚିବଃ ସେନାପତିର୍ବ୍ବା ଧନୀ ।
କୁମ୍ଭେ କର୍କଟବତ୍‌ଫଲାନ୍ ମକରେ ନୀଚୋଽଲ୍ପବିତ୍ତୋ ସୁଖୀ ।

ବୃହସ୍ପତି କର୍କଟରେ ଥିଲେ ଜାତକ ସ୍ୱର୍ଣ୍ଣାଦି ଅଲଙ୍କାର ଯୁକ୍ତ, ପୁତ୍ର, ସ୍ତ୍ରୀ, ଧନ, ବୁଦ୍ଧି ଓ ସୁଖଯୁକ୍ତ ହୁଏ । ସିଂହରେ ଥିଲେ ନେତା ହୁଏ ଓ ଧନ, ରତ୍ନ, ବୁଦ୍ଧି, ସୁଖ, ସ୍ତ୍ରୀ ଓ ପୁତ୍ରଯୁକ୍ତ ହୁଏ । ଧନୁ ବା ମୀନରେ ଥିଲେ ରାଜତୁଲ୍ୟ, ମନ୍ତ୍ରଣାଶକ୍ତିଯୁକ୍ତ, ସେନାପତି ଓ ଧନବାନ୍ ହୁଏ । କୁମ୍ଭରେ ଥିଲେ ରତ୍ନ, ପୁତ୍ର, ସ୍ତ୍ରୀ, ଧନ, ବୁଦ୍ଧି ଓ ସୁଖ ପ୍ରାପ୍ତି କରାଏ । ମକରରେ ଥିଲେ ଜାତକ କୁଳାନୁଚିତ କର୍ମ କରେ, ନିର୍ଦ୍ଧନ ଓ ଅସୁଖୀ ହୁଏ । ନୀଚାଂଶରେ ଥିଲେ ବିଶେଷ ଅଶୁଭ ହୁଏ ।

କୁଜର୍କ୍ଷେ ପରସ୍ତ୍ରୀରତଃ ସ୍ୟାତ୍ତଦର୍ଥେ
ବିବାଦୈର୍ହୃତସ୍ୱକୁଳାଙ୍ଗାରରୂପଃ ।
ସ୍ୱଭେ ରାଜପୂଜ୍ୟୋଽଭୟୋ ବନ୍ଧୁକାଶଃ
ସୁବୁଦ୍ଧିର୍ଧନୀ ଭାର୍ଗବେ ଶୌର୍ଯ୍ୟଯୁକ୍ତଃ ।

ଶୁକ୍ର ମେଷ ବା ବିଛାରେ ଥିଲେ ଜାତକ ପରସ୍ତ୍ରୀରତ, ପରସ୍ତ୍ରୀ ହେତୁକ ବିବାଦ ଯୋଗୁଁ ଧନନାଶକାରୀ ଓ କୁଳର କଳଙ୍କ ହୁଏ । ବୃଷ କିମ୍ବା ତୁଳରେ ଥିଲେ ଜାତକ ରାଜପୂଜ୍ୟ, ନିର୍ଭୟ, ବନ୍ଧୁଯୁକ୍ତ, ଉତ୍ତମ ବୁଦ୍ଧିଯୁକ୍ତ, ଧନୀ ଓ ଶୌର୍ଯ୍ୟବାନ୍ ହୁଏ ।

ରାଜକାର୍ଯ୍ୟକରଣପ୍ରସ୍ତୁତାତ୍ମା ।
ଦ୍ୱନ୍ଦ୍ୱଗେ ଭୃଗୁସୁତେଽର୍ଥକଳାଢ୍ୟଃ ।
ଷଷ୍ଠରାଶ୍ୟପଗତେଽଧମକର୍ମା ।
ନୀଚଦାରତନୟୋଽନୟଯୁକ୍ତଃ ॥

ଶୁକ୍ର ମିଥୁନରେ ଥିଲେ ଜାତକ ରାଜକାର୍ଯ୍ୟ ଚତୁର, ଧନବାନ ଓ କଳାଶାସ୍ତ୍ରଜ୍ଞ ( ଜ୍ୟୋତିଷ, ସଙ୍ଗୀତ, ବୈଦ୍ୟକ ) ହୁଏ । କନ୍ୟାରେ ଥିଲେ ଜାତକ ନୀଚକର୍ମାସକ୍ତ, କୁତ୍ସିତ ସ୍ତ୍ରୀ ପୁତ୍ର ଯୁକ୍ତ ଓ ଅନ୍ୟାୟୀ ହୁଏ ।

ଦ୍ୱେଷଚୈର୍ଯ୍ୟାଦଥୋ ଶୂରଃ ଶଶିଗୃହଗତେ ଦାନବଗୁରୌ
ହୟେ ପୂଜ୍ୟଶ୍ଚ ଗୁଣୀ ଝଷଗତୈର୍ମୀନ ସଂସ୍ଥିତଃ ।
ସ୍ତ୍ରୀଜାପାଲୈଃ ପୂଜ୍ୟୋ ରବିଗୃହଗତେ ମନ୍ଦନସ୍ଥନଃ
ସ୍ତ୍ରିୟା ପ୍ରାପ୍ତଦ୍ରବ୍ୟଃ ପ୍ରବଳ ବନିତା ପୂର୍ଣ୍ଣିତନୟଃ ॥

ଶୁକ୍ର କର୍କଟରେ ଥିଲେ ଜାତକ ଭୟାର୍ତ୍ତ ଓ ଦୁଇଟି ଭାର୍ଯ୍ୟାଯୁକ୍ତ ହୁଏ । ଧନୁରେ ଥିଲେ ପୂଜ୍ୟ ଓ ଗୁଣବାନ୍ ହୁଏ । ମୀନରେ ଥିଲେ ସଜ୍ଜନତୁଲ୍ୟ କରାଏ । ସିଂହରେ ଥିଲେ ଜାତକ ଚକ୍ଷୁରୋଗୀ ହୁଏ । ତାହାର ବହୁସନ୍ତାନ ଜାତ ହୁଅନ୍ତି । ସେ ଦୁଷ୍ଟା ସ୍ତ୍ରୀ ହେତୁକ ଧନଲାଭ କରେ ।

ଭୃଗୁସୁତେ ଶନିଗେହଗତେ ନରଃ
କୁଯୁବତୀପ୍ରରତୋ ବଜିତା ସ୍ତ୍ରିୟା ।
ଭବତି କମ୍ବଳପଣ୍ୟଧନୋଽଥବା
ମହିଷବେଷରଜନୟୁତୋ ଧନୀ ॥

ଶୁକ୍ର ମକର ବା କୁମ୍ଭରେ ଥିଲେ ଜାତକ କୁତ୍ସିତ ସ୍ତ୍ରୀ ଲାଭ କରେ । ସେ ସ୍ତ୍ରୀ ବଶୀଭୂତ ହୋଇପାରେ । କମ୍ବଳ, ଲୋମ, ମହିଷ ଓ ଅଳଙ୍କାର ବିଶେଷର ବାଣିଜ୍ୟଦ୍ୱାରା ସେ ବିଶେଷ ଧନଲାଭ କରେ ।

ସୌରେ ମେଷେଽତିମୂର୍ଖୋ ଭବତି ଗତସୁହୃଦ୍ଧାର୍ମିକୋ ବୃଷ୍ଟିକଷ୍ଟେ
ସ୍ୱାନୋ ପୀନୋ ବଲକ୍ଷ୍ମୋ ଭବତି ଚ କୃପଣୋ ବନ୍ଧୁବାକ୍ କ୍ଳେଶଯୁକ୍ତଃ ।
ନିତ୍ୟଂ ସୌଖ୍ୟାର୍ଥହୀନୋ ଭବତି ଚ ତନୟୋ
ବୃଷକେଶୋଽଥ ଲେଖ୍ୟା
ମୂର୍ଖୋ ମୁଖ୍ୟାଧିନାଥୋ ଭବତି ଚ ଯୁବତେ ତନ୍ତ୍ରପୁଷ୍ପସ୍ୟ ଗେହେ ।

ଶନି ମେଷରେ ରହିଲେ ଜାତକ ମୂର୍ଖ, ବନ୍ଧୁହୀନ ଓ ଦାମ୍ଭିକ ହୁଏ । ନୀଚାଂଶ ଗତ ହେଲେ ଏହି ସମସ୍ତ ମନ୍ଦ ଫଳର ବୃଦ୍ଧି ହୁଏ ।

ବୃଶ୍ଚିକରେ ରହିଲେ ଧୀନ, ନିର୍ଲଜ ଓ କୃପଣ ହୁଏ ଏବଂ ବନ୍ଧନ କଷ୍ଟାଦି ଲାଭ କରେ । ସମସ୍ତ କାର୍ଯ୍ୟରେ ବିଫଳ ମନୋରଥ ହୁଏ । ଜାତକ ସନ୍ତାନହୀନ, ଭୂଷ ବେଶଯୁକ୍ତ, ଲେଖକ ଓ ଜ୍ଞାନହୀନ ହୁଏ । ମିଥୁନରେ ବା କନ୍ୟାରେ ଥିଲେ ସମସ୍ତ ଲୋକରେ ମୁଖ୍ୟ କରାଏ ।

ଗୋସ୍ତ୍ରେ ଗମ୍ୟାଂଗନେଷ୍ଟୋ ଭବତି ଚ କୁଳଃନାସ୍ୱକୋ ବିତ୍ତହୀନଃ
ଭୁଙ୍ଗେ ଦ୍ରବ୍ୟାଧିନାଥୋ ଭବତି ଚ ନଗରଗ୍ରାମସେନାଧିନାଥଃ ।
କର୍କେ ମୂର୍ଖୋ ଦରିଦ୍ରୋ ଭବତି ବିକଳତନ୍ୱୋ ମାତୃପିତ୍ରୋର୍ବିହୀନୋ ।
ସିଂହୋର୍ଗେହେ ବିହୀନୈଶ୍ଚ ବିସୁଖସୁତସୁହୃତ୍ର ସଶ୍ଚିତେ ସୂର୍ଯ୍ୟପୁତ୍ରେ ॥

ଶନି ବୃଷରେ ଥିଲେ ଜାତକର ଅଗମ୍ୟ ଗମନ, କୁତ୍ସିତ ସ୍ତ୍ରୀ ବିବାହ ଓ ଧନହୀନ ହୁଏ । ତୁଳାରେ ଧନାଦି ଲାଭ, ଗ୍ରାମ, ନଗର ତଥା ସେନାନାୟକ ପଦ ପ୍ରାପ୍ତି ହୁଏ । ତୁଙ୍ଗାଂଶରେ ଥିଲେ ବିଶେଷ ଶୁଭ କରାଏ । କର୍କଟରେ ଥିଲେ ଜାତକ ଜ୍ଞାନହୀନ ଓ ପିତୃମାତୃହୀନ ହୁଏ । ( ଅଳ୍ପସମୟ ମଧ୍ୟରେ ପିତୃମାତୃଙ୍କର ବିଯୋଗ ବା ସେହି ଗ୍ରହର ଦଶା-ଅନ୍ତର୍ଦ୍ଦଶାଦିର ଭୋଗକାଳରେ ସେମାନଙ୍କର ମୃତ୍ୟୁ ହୁଏ) ସିଂହରେ ଥିଲେ ସ୍ତ୍ରୀ ମରଣ, ସୁଖହୀନ, ପୁତ୍ର ଓ ବନ୍ଧୁହୀନ ହୁଏ ।

ଅଜୀବଂ ସୁଖଭାକ୍ ସୁତଡନଲସ୍ୟଃ ସତ୍ପୁତ୍ରଦାରାଧନୋ
ଜୈବେ ସୂର୍ଯ୍ୟସୁତେ ଧନୀ ନୟବଳଗ୍ରାମାଗ୍ରନେତା ଭବେତ୍ ॥
ଅନ୍ୟସ୍ତ୍ରୀଧନଙ୍ଗ୍ରାହାର୍ଥନିପୁଣୋ ପ୍ରେମାଗ୍ରଣୀର୍ମିନଦ୍ରୁକ୍
ସୁକ୍ଷେତ୍ରେ ମଳିନଃ ସ୍ଥିରଥବିଭବୋ ଦ୍ୱେକ୍ତା ଚ ଜାତଃ ପୁମାନ୍ ॥

ଶନି ଧନୁ ବା ମୀନରେ ଥିଲେ ଜାତକ ଅନନ୍ତସୁଖୀ, ଉତ୍ତମ ଗୃହବାନ୍, ଉତ୍ତମ ପୁତ୍ର ଓ ସ୍ତ୍ରୀ ଧନାଦି ଯୁକ୍ତ ହୁଏ । ଜାତକ ଧନବାନ୍ ନ୍ୟାୟପୂର୍ଣ, ଗ୍ରାମଜନମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ, ଅନ୍ୟ ସ୍ତ୍ରୀ ଧନ

ସଙ୍ଗୀତାଦିକଳାଣୀ ଓ ପ୍ରେମଯୁକ୍ତ ହୁଏ । ମକର ଚମ୍ପା କୁମ୍ଭରେ ଥିଲେ ଜାତକ ସ୍ଥିର ସମ୍ପତ୍ତିଭୋକ୍ତା ଓ ସନ୍ଦିଗ୍ଧମନା ହୁଏ ।

କୃପଣଃ କ୍ରୋଧନୋ ରୋଗୀ ଭବେନ୍ମେଷେ ବିଧୁନ୍ତୁଦଃ ।
ବୃଷେ ରୂପାନ୍ୱିତୋ ଭୋଗୀ ଯୁଗ୍ମେ ଭୂପୋ ଭବେଦ୍ଗୁଣୀ ।
କର୍କଟେ ଚ ଧନୀ ରୋଗୀ ଭୂମ୍ନୋ ସିଂହେ ବିଶେଷତଃ ।
କନ୍ୟାୟାଞ୍ଚ ଭବେନ୍ମନ୍ତ୍ରୀ ତୁଲାୟାଞ୍ଚ ଧନୀ ଭବେତ୍ ।
ବୃଶ୍ଚିକେ ଚ ଭବେତ୍ କ୍ରୋଧୀ ଚାପେ ଚ ପରନିନ୍ଦକଃ ।
ମୃଗେ ଭବତି ହୀନାଙ୍ଗଃ କୁମ୍ଭେ ଦାରିଦ୍ର୍ୟବେଷ୍ଟିତଃ ।
ପରଦାରରତୋ ମୀନେ ବୈପରୀତ୍ୟଂ ଫଳଂ ଶିଖୀ ॥

ରାହୁ ମେଷରେ ଥିଲେ ଜାତକ କ୍ରୋଧୀ ଓ ରୋଗୀ ହୁଏ । ବୃଷଭରେ ଥିଲେ ରୂପବାନ୍ ଭୋଗୀ, ମିଥୁନରେ ଥିଲେ ଭୂସ୍ୱାମୀ ଓ ଗୁଣବାନ୍, କର୍କଟରେ ଥିଲେ ରୋଗୀ ଓ ଧନୀ ହୁଏ । ସିଂହରେ ଧନ ଓ ରୋଗର ବିଶେଷ ଦେଖାଯାଏ । କନ୍ୟାରେ ଥିଲେ ମନ୍ତ୍ରଣା ଶକ୍ତିଯୁକ୍ତ ଓ ତୁଳାରେ ଥିଲେ ଧନବାନ୍ କରାଏ । ବୃଶ୍ଚିକରେ ଥିଲେ କ୍ରୋଧୀ ଓ ଧନୁରେ ଥିଲେ ପରନିନ୍ଦାତତ୍ପର ହୁଏ । ମକରରେ ଥିଲେ ବିକଳାଙ୍ଗ, କୁମ୍ଭରେ ଥିଲେ ଧନହୀନ ଓ ମୀନରେ ଥିଲେ ପରଦାର ନିରତ ହୁଏ । କେତୁ ରାହୁର ରାଶ୍ୟାଶ୍ରିତ ଫଳର ବିପରୀତ ଫଳ ପ୍ରଦାନ କରେ ।



## ଭାବଫଳ ବିଚାରକ୍ରମଃ

### ତନୁସ୍ଥାନ ବିଚାରଃ

ରୂପଲକ୍ଷଣବର୍ଣ୍ଣାନାଂ କ୍ଲେଶଦୋଷସୁଖାୟୁଷାଂ ।
ବୟଃ ପ୍ରମାଣ ଜାତିନାଂ ତନୁସ୍ଥାନାନ୍ନିରୀକ୍ଷୟେତ୍ ॥

ଲଗ୍ନଭାବରୁ ଜାତକର ରୂପ, ଲକ୍ଷଣ, ବର୍ଣ୍ଣ, କ୍ଲେଶ, ଦୋଷ, ସୁଖ, ଆୟୁ, ବୟସ ଓ ଜାତିର ବିଚାର କରିବେ ।

### ଧନସ୍ଥାନ ବିଚାରଃ

ମଣିମୁକ୍ତାଫଳଂ ସ୍ୱର୍ଣ୍ଣଂ ରତ୍ନଧାତୁ କୁଟୁମ୍ବକଂ ।
କ୍ରୟବିକ୍ରୟବର୍ତ୍ତନଂ ଧନସ୍ଥାନାନ୍ନିରୀକ୍ଷୟେ ॥

ଦ୍ୱିତୀୟ ସ୍ଥାନରୁ ମଣି, ମୁକ୍ତା, ଫଳ, ସ୍ୱର୍ଣ୍ଣ, ଧାତୁ, କୁଟୁମ୍ବ ଓ କ୍ରୟ ବିକ୍ରୟାଦିର ବିଚାର କରିବେ ।

### ଭ୍ରାତୃସ୍ଥାନ ବିଚାରଃ

ଭଗିନୀ ଭ୍ରାତୃ ଭୃତ୍ୟାନାଂ ଦାସକର୍ମିକୃତାମପି ।
କୁର୍ବୀତ ବୀକ୍ଷଣଂ ବିଦ୍ୱାନ୍ ସମ୍ୟକ୍ ଦୁଷ୍ଟିକ୍ୟବେକ୍ଷ୍ଣ ॥

ତୃତୀୟ ସ୍ଥାନରୁ ଭ୍ରାତା, ଭଗିନୀ, ଭୃତ୍ୟ ଓ ଦାସକର୍ମାଦିର ବିଚାର କରିବେ ।

### ବାହନସ୍ଥାନ ବିଚାରଃ

ସୁହୃଦଂ ସୁଖଦୁଃଖଂ ଚ ବୃଦ୍ଧିସ୍ଥାନ ସମାଗମଂ ।
ମାତରଂ ଗ୍ରାମଗେହାଦ ଚତୁର୍ଥାଦ୍ଭି ବିଚିନ୍ତୟେତ୍ ॥

ଚତୁର୍ଥ ସ୍ଥାନରୁ ବନ୍ଧୁସୌଖ୍ୟ, ସୁଖଦୁଃଖ, ବୃଦ୍ଧି, ଗମନାଗମନ, ମାତା, ଗ୍ରାମ ଓ ଗୃହାଦିର ବିଚାର କରିବେ ।

ସୁତସ୍ଥାନ ବିଚାରଃ

ଗର୍ଭପତ୍ୟାଦ୍ୟଧେୟାନାଂ ମନ୍ତ୍ରସନ୍ଧାନୟୋରପି ।
ବିଦ୍ୟାବୁଦ୍ଧି ପ୍ରବନ୍ଧାନାଂ ସୁତସ୍ଥାନାନ୍ନିରୀକ୍ଷୟେତ୍ ॥

ପଞ୍ଚମ ସ୍ଥାନରୁ ଗର୍ଭ, ଅପତ୍ୟ, କର୍ତ୍ତବ୍ୟ, ମନ୍ତ୍ର, ସନ୍ଧିକାର୍ଯ୍ୟ, ବିଦ୍ୟା, ବୁଦ୍ଧି ଓ ପ୍ରବନ୍ଧାଦିର ବିଚାର କରିବେ ।

ଶତ୍ରୁସ୍ଥାନ ବିଚାରଃ

ବୈରିଣାଂ ରିପୁସଙ୍ଘାତଂ ଖରେଷ୍ଟ୍ରକ୍ରୂରକର୍ମଣାଂ ।
ମାତୁଳାତଙ୍କଶଙ୍କାନାଂ ରିପୁସ୍ଥାନାନ୍ନିରୀକ୍ଷୟେତ୍ ॥

ଷଷ୍ଠ ସ୍ଥାନରୁ ଶତ୍ରୁଚିନ୍ତା, ଶତ୍ରୁପୀଡ଼ା, ରୋଗ, ଗର୍ଦ୍ଦଭ ଉଷ୍ଟ୍ରାଦି ପଶୁ, କ୍ରୂରକର୍ମ, ମାତୁଳ ପୀଡ଼ା ଓ ଭୟର ବିଚାର କରାଯାଏ ।

ପତ୍ନୀସ୍ଥାନ ବିଚାରଃ

ବାଣିଜ୍ୟବ୍ୟବହାରଞ୍ଚ ବିବାଦଞ୍ଚ ରତିକ୍ରିୟାଂ ।
ଗମାଗମକଲତ୍ରାଣି ପ୍ରାଜ୍ଞଃ ପଶ୍ୟେତ୍କଲତ୍ରତଃ ॥

ସପ୍ତମ ସ୍ଥାନରୁ ବାଣିଜ୍ୟ ବିବାଦ, ରତିକ୍ରିୟା, ଗମନାଗମନ ଓ ସ୍ତ୍ରୀ ସମ୍ବନ୍ଧୀୟ ବିଚାର କରିବେ ।

## ନିଧନସ୍ଥାନ ବିଚାରଃ

ନଦ୍ୟୁତ୍ତରେଽଧ୍ୱବୈଷମ୍ୟ ଦେଶେ ଶତ୍ରୁପ୍ରସଙ୍ଗତେ ।
ନଷ୍ଟେ ଦ୍ରଂଷ୍ଟ୍ରେ ରଣେ ବ୍ୟାଘ୍ରେ ଛିଦ୍ରେ ଛିଦ୍ରଂ ବିଚିନ୍ତୟେତ୍ ॥

ଅଷ୍ଟମ ସ୍ଥାନରୁ ନଦୀସନ୍ତରଣରୂପ ମାର୍ଗ ବୈଷମ୍ୟ, ଦେଶସଙ୍କଟ, କର୍ମନଷ୍ଟ, ଦନ୍ତାଘାତ, ଯୁଦ୍ଧ, ବ୍ୟାଘ୍ରଭୟ, ଜନାପବାଦ ଓ ସକଳ ମନ୍ଦ ଫଳର ବିଚାର କରିବେ ।

## ଧର୍ମସ୍ଥାନ ବିଚାରଃ

ବାପୀକୂପ ତଡ଼ାଗାଦ୍ୟ ପ୍ରପା ଦେବଗୃହାଣି ଚ ।
ଦୀକ୍ଷାଂ ଯାତ୍ରାଂ ତତୋ ଧର୍ମଂ ଧର୍ମସ୍ଥାନାନ୍ନିରୀକ୍ଷୟେତ୍ ॥

ନବମ ସ୍ଥାନରୁ ବାପୀ, କୂପ, ତଡ଼ାଗ, ଜଳଛତ୍ର, ଦେବାଳୟ, ଦୀକ୍ଷା, ତୀର୍ଥଯାତ୍ରା ଓ ଧର୍ମକର୍ମାଦିର ବିଚାର କରିବେ ।

## କର୍ମସ୍ଥାନ ବିଚାରଃ

ରାଜ୍ୟଂ ମୁଦ୍ରାଂ ଗୃହଂ ପୁଣ୍ୟଂ ସ୍ଥାନଂ ପିତୃପ୍ରୟୋଜନଂ ।
ବୃଷ୍ଟ୍ୟାଦିବ୍ୟୋମବୃତ୍ୟନ୍ତଂ ବ୍ୟୋମସ୍ଥାନାନ୍ନିରୀକ୍ଷୟେତ୍ ॥

ଦଶମ ସ୍ଥାନରୁ ରାଜ୍ୟ, ମୁଦ୍ରାଙ୍କନ, ଗୃହ, ପୁଣ୍ୟସ୍ଥାନ, ପିତୃ-ପ୍ରୟୋଜନୀୟ ବସ୍ତୁ ଓ ବୃଷ୍ଟ୍ୟାଦି ଆକାଶ ପ୍ରଚଳିତ ବିଷୟର ବିଚାର କରିବେ ।

## ଲାଭସ୍ଥାନ ବିଚାରଃ

ଗଜାଶ୍ୱଯାନବସ୍ତ୍ରାଣି ଶଯ୍ୟାକାଞ୍ଚନକନ୍ୟକାଃ ।
ଆୟୁର୍ବିଦ୍ୟାର୍ଥଲାଭଞ୍ଚ ଲକ୍ଷୟେଲ୍ଲାଭଲଗ୍ନତଃ ॥

ଏକାଦଶ ସ୍ଥାନରୁ ହସ୍ତୀ, ଘୋଟକ, ଯାନ, ବସ୍ତ୍ର, ଶଯ୍ୟା, ସ୍ୱର୍ଣ୍ଣାଦି-ଅଳଙ୍କାର, କନ୍ୟା, ଅର୍ଥ, ବିଦ୍ୟା ଓ ଧନଲାଭର ବିଚାର କରାଯାଏ ।

ବ୍ୟୟସ୍ଥାନ ବିଚାରଃ

ତ୍ୟାଗଭୋଗବିବାଦେଷୁ ଦାନେଷୁ କୃଷିକର୍ମସୁ ।
ବ୍ୟୟସ୍ଥାନେଷୁ ସର୍ବେଷୁ ବଦନ୍ତି ବୃଦ୍ଧିଂ ବ୍ୟୟଂ ବ୍ୟୟାତ୍ ॥

ଦ୍ୱାଦଶ ସ୍ଥାନରୁ ତ୍ୟାଗ, ଭୋଗ ବିବାଦ, ଦାନ, କୃଷିକର୍ମ, ବୃଦ୍ଧି ଓ ବ୍ୟୟର ବିଚାର କରାଯାଏ ।

ଅସ୍ତ୍ରବ୍ରଣୟୋଃ ଷଷ୍ଠେ ହ୍ୟଷ୍ଟମେ ମୃତ୍ୟୁରନ୍ଧ୍ରୟୋଃ ।
ବ୍ୟୟସ୍ୟ ଦ୍ୱାଦଶସ୍ଥାନେ ବୈପରୀତ୍ୟେନ ଚିନ୍ତନଂ ॥

ଷଷ୍ଠରୁ ଶତ୍ରୁ ଓ ବ୍ରଣ, ଅଷ୍ଟମରୁ ମୃତ୍ୟୁ, ଅପବାଦ ଓ ଦ୍ୱାଦଶରୁ ବ୍ୟୟ ବିଚାର କରିବେ । ଏହି ସ୍ଥାନମାନଙ୍କରେ ପାପଗ୍ରହ ଥିଲେ ଏହି ଅଶୁଭ ଫଳମାନଙ୍କର ବୃଦ୍ଧି ହେବ ଓ ଶୁଭଗ୍ରହ ଥିଲେ ଏହି ଅଶୁଭ ଫଳମାନଙ୍କର ବିନାଶ ହେବ ବୋଲି କହିବେ । ଏହି ଦ୍ୱାଦଶ ଭାବର ସମସ୍ତ ବିଚାର ଜାତକରେ ଯେପରି ପ୍ରଶ୍ନରେ ମଧ୍ୟ ସେହିପରି ବିଚାର କରାଯାଏ ।



## ଲଗ୍ନଭାବ ବିଚାର

### ଲଗ୍ନସ୍ଥ ଗ୍ରହଫଳଂ

ରବୌ ଲଗ୍ନଗତେ ତସ୍ୟ ଦଶାକାଲେ ଶିରୋରୁଜଃ ।
ଅଙ୍ଘ୍ରିବାଦଭବେଦ୍‌ବାପି ଚକ୍ଷୁଃପୀଡ଼ା ବିଶେଷତଃ ॥

ରବି ଲଗ୍ନରେ ଥିଲେ ତାହାର ଦଶାନ୍ତର୍ଦଶାରେ ଜାତକ ଶିରୋବେଦନା, ଅଙ୍ଘ୍ରିବାଦ ରୋଗ ଓ ଚକ୍ଷୁରୋଗ ଭୋଗ କରେ ।

ଦାକ୍ଷିଣ୍ୟଶୌର୍ଯ୍ୟଧନରୂପଗୁଣୈଃ ପ୍ରଧାନ—
ଶ୍ଚନ୍ଦ୍ରେ କୁଳୀରବୃଷଗୋବଗତେ ବିଲଗ୍ନେ ।
ଉନ୍ମତ୍ତନୀଚବିକଳୋ ବଧିରଶ୍ଚ ମୂକଃ ।
ଶେଷେ ପୁମାନ୍ ଭବତି କୃଷ୍ଣତନୁର୍ବିଶେଷାତ୍ ॥

ବୃଷ ବା ମେଷ କର୍କଟ ଲଗ୍ନସ୍ଥ ଚନ୍ଦ୍ର ଜାତକକୁ ଦୟା, ଦାନ, ଶୌର୍ଯ୍ୟ, ଧନ, ରୂପ ଓ ଉତ୍ତମ ଗୁଣାଦିରେ ଯୁକ୍ତ କରାଏ । ଅନ୍ୟାନ୍ୟ ଲଗ୍ନସ୍ଥ ଚନ୍ଦ୍ର ଜାତକକୁ ଅସ୍ଥିରମନା, ମନ୍ଦକର୍ମାସକ୍ତ, ବିକଳାଙ୍ଗ, ଶ୍ରବଣଶକ୍ତି ରହିତ, ବାକ୍‌ଶକ୍ତିହୀନ ଓ କୃଷ୍ଣବର୍ଣ୍ଣ କରାନ୍ତି । ହୋରାସାର ମତରେ ପୂର୍ଣ୍ଣ ଚନ୍ଦ୍ର ଲଗ୍ନରେ ଥିଲେ ଜାତକ ତେଜୀୟାନ୍ ଓ ଗୁଣୀ ହୁଏ । କ୍ଷୀଣ ଚନ୍ଦ୍ର ଥିଲେ ସମସ୍ତ ଭାବରେ ଅଶୁଭ ହୁଏ ।

ବିଲଗ୍ନେ କୁଜୋ ଦଣ୍ଡଲୋହାଗ୍ନିଘାତ—
ସ୍ତୁପେନ୍ଦ୍ରାନସଂ ସର୍ବଦା ଜନ୍ତିନୋଟବେ ।
କଳହାଦଘାତଃ ଶିରେ ନେତ୍ରପୀଡ଼ା
ଫଳାନାଂ ବିପାକେ ସଦୈବୋପସର୍ଗଃ ॥

ଲଗ୍ନସ୍ଥ ମଙ୍ଗଳ ଦଣ୍ଡ, ଅଗ୍ନି, ଅସ୍ତ୍ରାଦ ହେତୁକ ଭୟ କରାଏ । ସର୍ବଦା ମାନସିକ ପୀଡ଼ା ହୁଏ । ସ୍ତ୍ରୀ ନାଶ, ଶୀରୋରୋଗ ଓ ନେତ୍ର ରୋଗାଦ କରାଏ । କୌଣସି କାର୍ଯ୍ୟ କରି ସାର ଫଳ ଭୋଗ କାଳରେ ନାନା ବିପତ୍ତିରେ ପକାଏ ।

ମଙ୍ଗଳ ଲଗ୍ନସ୍ଥ ହେଲେ ଜାତକ ଅର୍ଶାଦ ରୋଗ ପୀଡ଼ିତ, ନାଡ଼-ରୋଗାର୍ତ୍ତ, କ୍ଷୁଦ୍ଧ ଓ କୃଷ୍ଣବର୍ଣ୍ଣ ହୁଏ । ( ଜ୍ୟୋ: )

ତନୁଗତଶଶିପୁତ୍ରେ ଭାନ୍ତଦେହୋତଶାନ୍ତଃ
ଵମଲମତିସୁଶୀଲଃ ପଣ୍ଡିତସ୍ତ୍ୟାଗଶୀଲଃ ।
ସ୍ଥିରମୃଦୁ ଶୁଭଭାଷୀ ସତ୍ୟବାଦୀ ବିଳାସୀ ।
କୁଳଜନହିତକାରୀ ନାଗରୀପ୍ରୀତିକାରୀ ॥

ବୁଧ ଲଗ୍ନସ୍ଥ ହେଲେ ଜାତକ କମନୀୟ ଶରୀର, ଶାନ୍ତସ୍ୱଭାବ, ଉତ୍ତମମନା, ଗୁଣବାନ୍, ବିଦ୍ୟାବାନ୍, ତ୍ୟାଗୀ, ଉତ୍ତମବକ୍ତା, ସତ୍ୟବାଦୀ, ବିଳାସୀ, ସ୍ୱବଂଶୀୟ ବ୍ୟକ୍ତିର ଉପକାରୀ ଓ ସ୍ତ୍ରୀପ୍ରିୟ ହୁଏ ।

କବିଃ ସୁଗୀତଃ ପ୍ରିୟଦର୍ଶନଃ ଶୁଚ—
ର୍ଦାତା ଚ ବକ୍ତା ନୃପପୂଜିତଃ ସୁଖୀ ।
ଦେବଦ୍ୱିଜାରାଧନତତ୍ପରୋ ଧନୀ ।
ଭବେନ୍ନରୋ ଦେବଗୁରୌ ତନୁସ୍ଥେ ॥

ବୃହସ୍ପତି ଲଗ୍ନସ୍ଥ ହେଲେ ଜାତକ କାବ୍ୟକର୍ତ୍ତା, ଗୀତାନୁରାଗୀ, ପ୍ରିୟଦର୍ଶନ, ଶୁଚି, ଦାତା, ଉତ୍ତମଭାଷକ, ରାଜପୂଜ୍ୟ, ସୁଖୀ, ଦେବଦ୍ୱିଜ ପରାୟଣ ଓ ଧନବାନ୍ ହୁଏ ।

ତାମ୍ବୂଲଃ ଶିଳ୍ପବିଦ୍ୟଶ୍ଚ ଧନୀ ଭୋଗୀ ମହାମତିଃ ।
କାବ୍ୟଶାସ୍ତ୍ରବିନୋଦୀ ଚ ଧାର୍ମିକୋ ଲଗ୍ନଗେ ଭୃଗୌ ॥

ଶୁକ୍ର ଲଗ୍ନସ୍ଥ ହେଲେ ଜାତକ ବାକ୍‌ପଟୁ, ଶିଳ୍ପକୌଶଳୀ, ଧନବାନ୍, ଭୋଗୀ, ଉଦାରମନା, କାବ୍ୟପ୍ରିୟ ଓ ଧର୍ମାସକ୍ତ ହୁଏ ।

ସ୍ୱଚ ସ୍ୱର୍ଣ୍ଣାବଭବନେ କ୍ଷିତିପାଲତୁଲ୍ୟୋ
ଲଗ୍ନେଽର୍କଜେ ଭବତି ଦେଶପୁରାଧିନାଥଃ ।
ଶେଷେଷୁ ଦୁଃଖ ଗଦ ପୀଡ଼ିତ ଏବ ବାଲ୍ୟେ ।
ଦାରିଦ୍ର୍ୟକାମବଶଗୋ ମଲିନୋଽଲସଶ୍ଚ ॥

ଶନି ତୁଳ, ମକର, କୁମ୍ଭ, ଧନୁ ବା ମୀନଲଗ୍ନସ୍ଥ ହେଲେ ଜାତକ ରାଜତୁଲ୍ୟ ଭୋଗ କରେ । ଗ୍ରାମାଦିର ଅଧିପତ୍ୟ ଲାଭ କରେ । ଅନ୍ୟାନ୍ୟ ଲଗ୍ନସ୍ଥ ଶନି ଜାତକକୁ ନାନାପ୍ରକାର କ୍ଲେଶ ଓ ଦାରିଦ୍ର୍ୟ କଷ୍ଟାଦି ଭୋଗ କରାଏ । ଜାତକ ବାଲ୍ୟ ସମୟରେ ନାନା କଷ୍ଟ ଭୋଗ କରେ ।

ସ୍ୱବାକ୍ୟେ ସମର୍ଥଃ ପରେଷାଂ ପ୍ରତାପାତ୍
ପ୍ରଭାବାତ୍ ସମାଚ୍ଛାଦୟେତ୍ ସ୍ୱାତ୍ମପକ୍ଷାର୍ଥାନ୍ ।
ତମୋ ଯସ୍ୟ ଲଗ୍ନେ ସଭଗ୍ନାରିବର୍ଗୀୟଃ
କଳତ୍ରେଽଧିକଂ ଭୂରିଦାରୋପି ଯାତ୍ରାତ୍ ॥

ରାହୁ ଲଗ୍ନରେ ଥିଲେ ଜାତକ ନିଜର ବଚନକୁ ସମର୍ଥ କରିବା ଚେଷ୍ଟା କରେ । ଶତ୍ରୁକର୍ତ୍ତୃକ ପୀଡ଼ିତ ହେଉଥିଲେ ସୁଦ୍ଧା ଶତ୍ରୁକୁ ଡ଼ରେ ନାହିଁ । ବଳବୀର୍ଯ୍ୟ ହୀନ ଓ ବହୁ ସ୍ତ୍ରୀ ଭୋଗ ଇଚ୍ଛା କରେ ।

ରାହୁ ବୃଷ, ମିଥୁନ, କର୍କଟ ବା ସିଂହ ଲଗ୍ନସ୍ଥ ହେଲେ ବିଶେଷ ଧନଲାଭ କରାଏ । ଅନ୍ୟାନ୍ୟ ଲଗ୍ନସ୍ଥ ହେଲେ ବୁଦ୍ଧିନାଶ ଓ ଧନହାନି କରାଏ । ଷ: ହୋ: ।

ତନୁସ୍ଥଃ ଶିଖୀବାନ୍ଧବଃ କ୍ଳେଶକର୍ତ୍ତା
ତଥା ଦୁର୍ଜନେଭ୍ୟୋ ଭୟବ୍ୟାକୁଳତ୍ୱଂ ।
କଳତ୍ରାଦି ଚିନ୍ତା ସଦୋଦ୍ବେଗତା ଚ
ଶରୀରେ ବ୍ୟଥା ନୈକଧା ମାରୁତୀ ସ୍ୟାତ୍ ॥

କେତୁ ଲଗ୍ନରେ ଥିଲେ ଜାତକ ବନ୍ଧୁବାନ୍ଧବଙ୍କୁ କଷ୍ଟ ଦିଏ । ଦୁର୍ଜନର ଭୟରେ ଅଭୁଲ ହୁଏ । ତାହାର ସ୍ତ୍ରୀ ପୀଡ଼ିତ ହୁଏ । ସବୁବେଳେ ତାହାର ମନ ଉଦ୍‌ବିଗ୍ନରେ ଥାଏ । ବାତାଦି ରୋଗରେ ସେ ପୀଡ଼ିତ ହୋଇଥାଏ ।

ଲଗ୍ନାଧିପସ୍ଥିତିଫଳଂ

ଅଙ୍ଗାଧୀଶଃ ସ୍ୱଗେହେ ବୁଧଗୁରୁକବିଭିଃ ସଂଯୁତୋ କେନ୍ଦ୍ରଗୋ ବା
ସ୍ୱୀୟୋଚ୍ଚେ ତୁଙ୍ଗେ ସ୍ୱମିତ୍ରୈର୍ଯଦି ଶୁଭଭବନେ ବୀକ୍ଷିତଃ ସଦ୍ଗ୍ରହୈଃ ପଂ ।
ସ୍ୟାନ୍ନୂନଂ ପୁଣ୍ୟଶୀଳଃ ସକଳଜନମତଃ ସର୍ବସମ୍ପନ୍ନିଧାନଂ
ଜ୍ଞାନୀ ମନ୍ତ୍ରୀ ଚମୂପଃ ସୁରୁଚିରବଦନୋ ମାନଦୋ ମାନବାନାଂ ॥
ଜା: ଅ:

ଲଗ୍ନାଧିପତି ଲଗ୍ନରେ ଥିଲେ କିମ୍ବା ବୁଧ, ବୃହସ୍ପତି, ଶୁକ୍ର ଯୁକ୍ତ ହୋଇ କେନ୍ଦ୍ରରେ ଥିଲେ କିମ୍ବା ଉଚ୍ଚକ୍ଷେତ୍ର, ମିତ୍ରକ୍ଷେତ୍ର, ଶୁଭଗ୍ରହ କ୍ଷେତ୍ରରେ ରହି ଶୁଭଗ୍ରହମାନଙ୍କ ଦ୍ୱାରା ଦୃଷ୍ଟ ହେଉଥିଲେ ଜାତକ ପୁଣ୍ୟକର୍ତ୍ତା, ସକଳ ଧନ ସମ୍ପଦର ଅଧିକାରୀ, ଜ୍ଞାନବାନ୍, ମନ୍ତ୍ରଣା ଶକ୍ତି ଯୁକ୍ତ, ସେନାନାୟକ, ସୁନ୍ଦର ଚକ୍ଷୁଯୁକ୍ତ ଓ ଜନବଲ୍ଲଭ ହୁଏ ।

(ଗ୍ରନ୍ଥବସ୍ତୁର ଉପ୍ଯୁରେ ଦ୍ୱାଦଶଭାବାଧିପତି ମାନଙ୍କର ସ୍ଥିତିଫଳ ସ୍ଥାନେ, ସ୍ଥାନେ ଅନୁବାଦରେ ମ ତ ଲୁହାଯାଉଅଛି । )

ଲଗ୍ନାଧିପତି ପାପଗ୍ରହର ଗୃହରେ ଥିଲେ ଏବଂ ପାପଗ୍ରହମାନଙ୍କର ସପ୍ତମ ବା ଦ୍ୱାଦଶରେ ରବି ବା ଚନ୍ଦ୍ର ଥିଲେ ଜାତକ ବଳହୀନ ଓ ଦୁଷ୍ଟ ହୁଏ । ୧. ଜାଃ ଅଃ ।

ଲଗ୍ନାଧିପତି ଦ୍ୱିତୀୟରେ ଥିଲେ ଜାତକ ନାନାପ୍ରକାର ଉପାୟ ଅବଲମ୍ବନ କରି ଧନ ଉପାର୍ଜନ କରେ ଓ ସେହି ପରିମାଣରେ ଦାନ କରେ । ୨ । ପା. ହୋ. ।

ତୃତୀୟରେ ଥିଲେ ଜାତକ ଅଭିମାନୀ, କ୍ରୀଡ଼ାପ୍ରିୟ ଓ ବଳହୀନ ହୁଏ । ୩ ।

ଚତୁର୍ଥରେ ଥିଲେ ଜାତକ ହୃଷ୍ଟପୁଷ୍ଟ ଓ ଧନବାନ୍ ହୁଏ । ୪ ।

ପଞ୍ଚମରେ ଥିଲେ ଜାତକ ବିଳାସପ୍ରିୟ, କଳନାଶକ୍ତି ସମ୍ପନ୍ନ ଓ କାନ୍ତିଯୁକ୍ତ ହୁଏ । ୫ ।

ଷଷ୍ଠରେ ଥିଲେ ଜାତକର ଶତ୍ରୁବୃଦ୍ଧି ହୁଅନ୍ତି । ତାହାର ଦଶାନ୍ତର୍ଦ୍ଦଶାରେ ଜାତକ ଉନ୍ମାଦ ଓ ନାନାପ୍ରକାର ରୋଗାକ୍ରାନ୍ତ ହୁଏ । ୬ ।

ସପ୍ତମରେ ଥିଲେ ସେ ବ୍ୟକ୍ତି ସ୍ତ୍ରୀପ୍ରିୟ ହୁଏ ଓ ବ୍ୟବସାୟ ସୂତ୍ରରେ ଧନଲାଭ କରେ । ଯୌବନରେ ବିଦେଶ ଯାତ୍ରା କରେ । ୭ ।

ଅଷ୍ଟମରେ ଥିଲେ ଜାତକ ଶତ୍ରୁପୀଡ଼ିତ ଓ ରୁଗ୍ଣ ହୁଏ । ୮ ।

ନବମରେ ଥିଲେ ଜାତକ ବିଦ୍ୱାନ୍, ବନ୍ଧୁପ୍ରିୟ ଓ ଧାର୍ମିକ ହୁଏ ।୯।

ଦଶମରେ ଥିଲେ ଜାତକ ନୀତିବାନ୍ ଓ କର୍ମକୁଶଳ ହୁଏ । ୧୦ ।
ଏକାଦଶରେ ଥିଲେ ଜାତକ ମିତ୍ରପ୍ରିୟ ଓ ବଳିଷ୍ଠ ହୁଏ । ୧୧ ।
ଦ୍ୱାଦଶରେ ଥିଲେ ଜାତକ କପଟୀ ଓ ପରଦାରାସକ୍ତ ହୁଏ । ୧୨ ।

ଲଗ୍ନଭାବ ବିଗ୍ରହଃ ସମାପ୍ତଃ

---

## ଧନଭାବ ବିଗ୍ରହଃ

### ଧନସ୍ଥଗ୍ରହଫଳଂ

ଧନେ କାଶ୍ୟମେୟଂ ନଗଣାଂ ମୁଖେ ବୈ
ଭବେଲ୍ଲାଞ୍ଛନଂ ଚୈଲଜାତଂ ସ୍ୱବକ୍ତ୍ରଂ ।
ଯଦା ସୌମ୍ୟଖେଟେ ଯୁତେ ଚେଦନାପ୍ତିଃ
ସଗତ୍ନୀ ବିଶେଷାତ୍ ଭବେନ୍ନୂନମଚ୍ଛେଦ୍ୟ ॥

ରବି ଦ୍ୱିତୀୟରେ ଥିଲେ ଜାତକର ମୁଖମଣ୍ଡଳରେ ଲାଞ୍ଛନ ଥାଏ । ଯଦି ରବି ଶୁଭଗ୍ରହ ଯୁକ୍ତ ହୋଇଥାଏ ତେବେ ନାନା ଉପାୟରେ ଧନ ଲାଭ କରେ । ରାହୁ ପ୍ରଭୃତି ପାପଗ୍ରହର ସଙ୍ଗରେ ଥିଲେ ଜାତକର ସମସ୍ତ ସମ୍ପତ୍ତି ବିନାଶ କରେ ।

ସୁଖାମୃତୋ ଦ୍ରବ୍ୟଯୁତୋ ବଣୀତୋ
ଭବେନ୍ନରଃ ପୂର୍ଣ୍ଣବିଧୌ ଦ୍ୱିତୀୟେ ।
କ୍ଷୀଣୋଷ୍ଣଲଦ୍ଧ୍ୱାନ୍ ବିଧୌ ନାଲ୍ପବୁଦ୍ଧିଃ ।
ନ୍ୟୂନାଧିକତ୍ୱେ ଫଳଂ ତାରତମ୍ୟଂ ॥

ପୂର୍ଣ୍ଣଚନ୍ଦ୍ର ଦ୍ୱିତୀୟରେ ଥିଲେ ଜାତକ ସୁଖ, ପୁତ୍ର, ଧନ ଓ ବିନୟ ଯୁକ୍ତ ହୁଏ । କ୍ଷୀଣ ଚନ୍ଦ୍ର ଥିଲେ ସ୍ଖଳିତ ବାକ୍ୟ, ଧନହୀନ ଓ ଅଳ୍ପବୁଦ୍ଧି-ବିଶିଷ୍ଟ ହୁଏ । ଚନ୍ଦ୍ର ମଧ୍ୟବଳବିଶିଷ୍ଟ ହୋଇଥିଲେ ଶୁଭାଶୁଭ ମିଶ୍ରିତ ଫଳ ପ୍ରଦାନ କରେ ।

କୃଷିକୋ ବ୍ୟବହାରୀ ଭୋଗୀ ପ୍ରବାସୀ ସ୍ୱଳ୍ପବିତ୍ତବାନ୍ ।
ଧାତୁବାଦ କ୍ରିୟାଯୁକ୍ତୋ ଦ୍ୟୂତକାରୋଽର୍ଥଗେ କୁଜେ ।

ମଙ୍ଗଳ ଦ୍ୱିତୀୟରେ ଥିଲେ ଜାତକ କୃଷିକର୍ମକାରୀ, ବ୍ୟବହାର ପାରଙ୍ଗମ, ଭୋଗୀ, ପ୍ରବାସୀ ଋଣକର ଧନୀ, ଧାତୁପରୀକ୍ଷକ ଓ ଦ୍ୟୂତପ୍ରିୟ ହୁଏ ।

ସତ୍ୟବାଗ୍ମୀ ହୃଦଗ୍ରନ୍ଥ ପ୍ରବାସୀ ପିତୃଭକ୍ତିଯୁକ୍ ।
ସୁନ୍ଦରଃ ପୂର୍ଣ୍ଣଭାଗ୍ୟଶ୍ଚ ଧନଗେ ଶଶିନନ୍ଦନେ ॥

ବୁଧ ଦ୍ୱିତୀୟରେ ଥିଲେ ଜାତକ ସତ୍ୟନିଷ୍ଠ, ପ୍ରବାସୀ, ପିତୃଭକ୍ତ, ସୁନ୍ଦର ଓ ପୂର୍ଣ୍ଣଭାଗ୍ୟ ଯୁକ୍ତ ହୁଏ ।

ନୃପକୃତବହୁମାନଂ ସତ୍କୃତଂ ଭୂମିଲାଭଂ
ନରଯୁବତିଜନୈର୍ବା ଦତ୍ତଗୋଭୂମିବିତ୍ତଂ ।
ଅଶନବସନଭୂଷାଗନ୍ଧମାଲ୍ୟାମ୍ବରାଣି
ପରକୃତମୁପକାରଂ ବୃଷିତେମେତି ଶୌର୍ଯ୍ୟଂ ॥

ଦ୍ୱିତୀୟସ୍ଥ ବୃହସ୍ପତି ଜାତକକୁ ରାଜସମ୍ମାନ, ଭାଇମାନଙ୍କ ଯୋଗୁ ଭୂମିଲାଭ, ପର ସ୍ତ୍ରୀ ଦେଇଥିବା ଗୋ, ଧନ, ଭୂମିଲାଭ, ଉତ୍ତମ ଖାଦ୍ୟ, ପରିଧାନ, ସ୍ରକ୍‌ଚନ୍ଦନାଦି ବେଶ, ପରୋପକାର ଓ ଶୌର୍ଯ୍ୟବୃଦ୍ଧି କରାଏ ।

ଅନ୍ୟଚ :—

ଲକ୍ଷ୍ମୀବାନ୍ ନିତ୍ୟମୁତ୍ସାହୀ ଧନସ୍ଥେ ଦେବତାଗୁରୌ ।
ରୂପବାନ୍ ଗୁଣବାନ୍ ଶୂରଃ ବନ୍ଧୁନାଂ ପରିପୋଷକଃ ॥
ଜା. ସଂ.

ବୃହସ୍ପତି ଦ୍ୱିତୀୟରେ ଥିଲେ ଜାତକ ଧନବାନ୍, ଉତ୍ସାହଯୁକ୍ତ, ରୂପବାନ୍, ଗୁଣବାନ୍, ଶୂର ଓ ବନ୍ଧୁଲୋକର ଭରଣ ପୋଷଣକାରୀ ହୁଏ ।

ବିଦ୍ୟାର୍ଜିତୋ ଧନୋ ନିତ୍ୟଂ ସ୍ତ୍ରୀଧନେନାଥବା ଧନୀ ।
ରଜତସ୍ୟ ଭବେଲ୍ଲାଭୋ ଦ୍ୱିତୀୟେ ଭୃଗୁନନ୍ଦନେ ॥

ଶୁକ୍ର ଦ୍ୱିତୀୟରେ ଥିଲେ ଜାତକ ବିଦ୍ୟାର କୌଶଳରେ, ସ୍ତ୍ରୀ ହେତୁକ ଯୌତୁକାଦି ଧନରେ ଓ ରୌପ୍ୟାଦି ଦ୍ରବ୍ୟ ବ୍ୟବହାରରେ ଧନଲାଭ କରେ ।

ଦ୍ୱିତୀୟସ୍ଥଶନୈର୍ଦ୍ଦାୟେ ବିତ୍ତନାଶମଥାକ୍ଷିରୁକ୍ ।
ରାଜକୋପଂ ମନସ୍ତାପମନ୍ୟଦ୍ୱେଷଂ ମନୋରୁଜଂ ॥

ଶନି ଦ୍ୱିତୀୟରେ ଥିଲେ ଧନନାଶ, ମସ୍ତକ ଓ ଚକ୍ଷୁରୋଗ, ରାଜକୋପ, ମନସନ୍ତାପ ଓ ଅନ୍ୟଦ୍ୱେଷାଦି ପୀଡ଼ା ହୁଏ ।

ମତ୍ସ୍ୟମାଂସଧନୀ ନିତ୍ୟଂ ନଖଚର୍ମାସ୍ଥିବିକ୍ରୟୀ ।
ଚୌରିକା ବୃତ୍ତିଜୀବୀ ଚ ରାହୌ ଧନଗତୋ ନରଃ ॥

ରାହୁ ଦ୍ୱିତୀୟରେ ଥିଲେ ଜାତକ ମତ୍ସ୍ୟମାଂସ ଓ ନଖଚର୍ମ ଏବଂ ଅସ୍ଥି ବ୍ୟବହାରରୁ ଓ ଚୌର୍ଯ୍ୟ ବୃତ୍ତିରେ ଜୀବିକା ନିର୍ବାହ କରେ ।

ଧନେ କେତବଃ ବ୍ୟତ୍ରତା କଂ ନରେଶାତ୍
ଧନେ ଧାନ୍ୟନାଶୋ ମୁଖେ ରୋଗକୃଚ୍ଚ ।
କୁଟୁମ୍ବାଦ୍ ବିରୋଧୋ ବଚଃ ସଙ୍କଟୋ ବା
ଭବେତ୍ ସୁସ୍ଥତେ ସୌମ୍ୟଗେହେଽତିସୌଖ୍ୟଂ ।

କେତୁ ଦ୍ୱିତୀୟରେ ଥିଲେ ସେ ବ୍ୟକ୍ତିର ଧନୋପାର୍ଜନ ନିମିତ୍ତ ସକଳ ଚେଷ୍ଟା ବିଫଳ ହୁଏ । ମୁଖରୋଗ ହୁଏ । ସ୍ୱଜନମାନେ ବିରୋଧୀ ହୁଅନ୍ତି । ମୀନ, କନ୍ୟା, ମିଥୁନସ୍ଥ ହୋଇଥିଲେ ଶୁଭଫଳ ଦିଅନ୍ତି ।

## ଧନେଶସ୍ଥିତିଫଳଂ

କୋଷାଧୀଶଃ ସ୍ୱଗୃହେ ସୁରଗୁରୁସହିତଃ ସର୍ବସମ୍ପତ୍ପ୍ରଦଃ ସ୍ୟାତ୍
କେନ୍ଦ୍ରେ ବାଽଥ ତ୍ରିକେ ଚେତ୍ ଭବତି ହି ମନୁଜୋ କ୍ଲେଶଭାଗ୍ ଦ୍ରବ୍ୟହୀନଃ
ସ୍ୱାତ୍ମ୍ୟାଧୀଶୋ ତ୍ରିକସ୍ଥୋ କବିତନୁପଯୁତୌ ସ୍ୟାତ୍ତଦା ନେତ୍ରହୀନଃ—
ଚନ୍ଦ୍ରଃ ପାପେନ ଯୁକ୍ତୋ ଧନଭବନଗତଃ ଶୁଭଯୁଙ୍ନେତ୍ରହୀନଃ ॥ ଜା. ଅ.

ଦ୍ୱିତୀୟ ସ୍ଥାନାଧିପ ଦ୍ୱିତୀୟରେ ଥିଲେ ବା ବୃହସ୍ପତି ଯୁକ୍ତ ବା ଦୃଷ୍ଟ ହୋଇ ଲଗ୍ନ, ଚତୁର୍ଥ, ସପ୍ତମ ବା ଦଶମରେ ଥିଲେ, ସେହି ବ୍ୟକ୍ତିର ବିଶେଷ ଧନଲାଭ ହୋଇଥାଏ । ଦ୍ୱିତୀୟ ଅଧିପତି ଷଷ୍ଠ, ଅଷ୍ଟମ ବା ଦ୍ୱାଦଶ ସ୍ଥାନରେ ପାପଯୁକ୍ତ ବା ଦୃଷ୍ଟ ହୋଇଥିଲେ ଧନନାଶ ହୁଏ । ଧନାଧିପତି, ଲଗ୍ନାଧିପ ଓ ବ୍ୟୟାଧିପ ସହିତ ଯୁକ୍ତ ହୋଇ ଶୁକ୍ର ମହିତ ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଅଥବା ଚନ୍ଦ୍ର ପାପଯୁକ୍ତ ହୋଇ ଦ୍ୱିତୀୟରେ ଥିଲେ ଜାତକ ଚକ୍ଷୁହୀନ ହୁଏ । ଧନାଧିପତି ତୃତୀୟରେ ଶୁଭଯୁକ୍ତ ହୋଇଥିଲେ ଭ୍ରାତୃପ୍ରୀତି ଓ ଭ୍ରାତୃହେତୁକ ଧନଲାଭ ହୁଏ । ପାପଯୁକ୍ତ ବା ପାପଦୃଷ୍ଟିରେ ଥିଲେ ବିପରୀତ ଫଳ ହୁଏ । ମାରକତ୍ୱ ବୃଦ୍ଧି ପାଏ ।

ଧନାଧିପତି ନବମ ବା ପଞ୍ଚମରେ ଥିଲେ ଜାତକ ବିବିଧ ଉପାୟରେ ଧନ ଲାଭ କରେ ଓ ତାହାର ଶରୀର ଅତ୍ୟନ୍ତ କମନୀୟ ହୁଏ । ୨ ( ପା ଦୋ )

---

## ତୃତୀୟ ଭାବ ବିଚାରଃ

### ତୃତୀୟସ୍ଥ ଗ୍ରହଫଳଂ

ତୃତୀୟେ ଯଦା ସ୍ୱର୍ଭବେ ଜନ୍ମକାଳେ
ପ୍ରତାପାଧିକଂ ବନ୍ଧନଂ ଶୁକ୍ରକୋତି ।
ତଦା ସୋଦରୈସ୍ତତ୍ପ୍ୟତେ ତୀର୍ଥଗାମୀ
ସଦାରକ୍ଷଯୁଃ ସ୍ୱଳ୍ପଲାଭଂ ନରେଶାତ୍ ॥

ରବି ତୃତୀୟ ସ୍ଥାନରେ ଥିଲେ ଜାତକ ପ୍ରତାପଶାଳୀ ହୁଏ । ଭ୍ରାତୃକର୍ତ୍ତୃକ ଉତ୍ପୀଡ଼ିତ ହୁଏ । ତୀର୍ଥ ଗମନାନୁରକ୍ତ ଓ ସଚ୍ଚରିତ୍ର ହୁଏ । ରାଜାଠାରୁ ସାମାନ୍ୟ ଧନ ଲାଭ କରେ ।

ଶଶିନ ସହଜସଂସ୍ଥେ ପାପଖେଟେନ ଚ ସଙ୍ଗ୍ୟଂ
ସ ଭବତି ବନ୍ଧୁହନ୍ତୀ ଭ୍ରାତୃହନ୍ତା ଚ ମୂର୍ଖଃ ।
ଭବତି ଚ ସୁଖଭାଗୀ ସୌମ୍ୟଖେଟ ଯୁକ୍ତେନାଥ
ସକଳଗୁଣନିଧାନଃ କାବ୍ୟଶାସ୍ତ୍ରପ୍ରମୋଦୀ ॥

ଚନ୍ଦ୍ର ପାପଗ୍ରହର ଯୁକ୍ତ ହୋଇ ତୃତୀୟସ୍ଥ ହେଲେ ଜାତକ ବନ୍ଧୁହନ୍ତା, ଭ୍ରାତୃଘାତୀ ଓ ମୂର୍ଖ ହୁଏ । ଶୁଭଯୁକ୍ତସ୍ଥ ହୋଇଥିଲେ ଜାତକ ସୁଖୀ ସର୍ବଗୁଣସମ୍ପନ୍ନ ଓ କାବ୍ୟାନୁରକ୍ତ ହୁଏ ।

ସହଜ ଭବନସଂସ୍ଥେ ଭୂମିଜେ ଭ୍ରାତୃହନ୍ତା
କୃଷିଧନସୁଖଭାଗୀ ତୁଙ୍ଗଭୌମେ ବିଳାସୀ ।
ଧନସୁଖପରିହୀନୋ ନୀଚଗେ ଶତ୍ରୁଗେହେ
ବସତି ମଶକପୂର୍ଣ୍ଣେ ମନ୍ଦିରେ କୁତ୍ସିତେ ଚ ॥

ମଙ୍ଗଳ ତୃତୀୟସ୍ଥ ହେଲେ ଜାତକଭ୍ରାତୃବିନାଶକାରୀ ହୁଏ । ଉଚ୍ଚରେ ଥିଲେ କୃଷିଦ୍ୱାରା ଧନ ଉପାର୍ଜ୍ଜନ କରି ସୁଖୀ ଓ ବିଳାସୀ ହୁଏ । ଏହି ତୃତୀୟସ୍ଥ ମଙ୍ଗଳ ଯଦି ନୀଚରେ ବା ଶତ୍ରୁଗୃହରେ ଥାଏ ଜାତକ ଧନ ଓ ସୁଖହୀନ ହୁଏ । ମଶକାଦି ପୂର୍ଣ୍ଣ କୁତ୍ସିତ ଗୃହରେ ବାସ କରେ ।

ବହୁତର ଧନପୂର୍ଣ୍ଣୋ ଭ୍ରାତୃହନ୍ତା ଚ ପାପେ
ବହୁତର ସୁତପତ୍ନୀପୂର୍ଣ୍ଣଗେହୋନ୍ତ ଚ ତୁଙ୍ଗେ ।
ଚପଳମତିବିଲଜ୍ଜଃ କ୍ଷୀଣଜଂଘଃ କୃଶାଙ୍ଗଃ
ଶିଶୁବୟସି ଚ ରୋଗୀ ସୋଦରସ୍ଥେ କୁମାରେ ॥

ବୁଧ ତୃତୀୟ ସ୍ଥାନରେ ଥିଲେ ଜାତକ ଧନଶାଳୀ ହୁଏ । ବୁଧ ଯଦି ପାପଗ୍ରହର ଗୃହରେ ଥାଏ ତେବେ ଜାତକର ଭ୍ରାତୃମାନେ ବିନାଶ ହୁଅନ୍ତି । ବୁଧ ଉଚ୍ଚସ୍ଥ କିମ୍ବା ଶୁଭଯୁକ୍ତ ହୋଇ ତୃତୀୟରେ ଥିଲେ ଜାତକ ପୁତ୍ର କଳତ୍ରାଦିରେ ଯୁକ୍ତ ହୁଏ । ଏହି ବ୍ୟକ୍ତି ଚଞ୍ଚଳମନା, ନିର୍ଲଜ୍ଜସ୍ୱଭାବ-ବିଶିଷ୍ଟ, କ୍ଷୀଣଜଂଘ, କ୍ଷୀଣଶରୀର ଓ ବାଲ୍ୟ ସମୟରେ ରୋଗପୀଡ଼ିତ ହୁଏ ।

ଧନବାନ୍ ନିର୍ଦ୍ଧନାକାରଃ କୃପଣୋ ଭ୍ରାତୃସଂଯୁତଃ ।
କୁଟୁମ୍ବନୃପପୂଜ୍ୟଶ୍ଚ ସହଜେ ଦେବତାଗୁରୌ ।

ବୃହସ୍ପତି ତୃତୀୟ ସ୍ଥାନରେ ଥିଲେ ଜାତକ ଧନବାନ୍ ହୋଇ ନିର୍ଦ୍ଧନ ସଦୃଶ ଦେଖାଯାଏ । ସେ ଅତ୍ୟନ୍ତ ଲୋଭୀ, ଭ୍ରାତୃଯୁକ୍ତ, କୁଟୁମ୍ବ-ଶ୍ରେଷ୍ଠ ଓ ରାଜପୂଜ୍ୟ ହୁଏ ।

ସହଜମନ୍ଦିରବର୍ତ୍ତିନି ଭାର୍ଗବେ, ପ୍ରଚୁର ଭ୍ରାତୃଯୁକ୍ତୋଽଭିଗୀଯୁତଃ ।
ଭବତି ଲୋଚନରୋଗସମାଯୁତୋ,ଧନଯୁତୋଽପି ସଦାକୃପଣଃ ଖଳଃ ॥

ଶୁକ୍ର ତୃତୀୟରେ ଥିଲେ ଜାତକ ଭ୍ରାତୃଭଗ୍ନୀଯୁକ୍ତ, ନେତ୍ରରୋଗୀ, ଧନବାନ୍, କୃପଣ ଓ ଦୁଷ୍ଟ ହୁଏ ।

ସହଜମନ୍ଦିରଗେ ରବିନନ୍ଦନେ ଭବତି ସଙ୍ଗସହୋଦରନାଶକଃ ।
ଭବତି ତଂ ନୃପତୁଲ୍ୟନରଂ କଟସ୍ତ୍ୟମଲପୋଷିତଯୁକସମନ୍ୱିତଂ ॥

ଶନି ତୃତୀୟରେ ଥିଲେ ଜାତକର ଭାଇମାନଙ୍କର ବିନାଶ ଘଟେ । ଏହି ବ୍ୟକ୍ତି ରାଜତୁଲ୍ୟ ହୁଏ । ଉତ୍ତମା ସ୍ତ୍ରୀ ଓ ସନ୍ତାନ ଲାଭ କରେ ।

ଭ୍ରାତୃବିନାଶଂ ପ୍ରଦଦାତି ରାହୁସ୍ତୃତୀୟଗେହେ ମନୁଜସ୍ୟ ଯୋଽପି ।
ସୌଖ୍ୟଂ ଧନଂ ପୁତ୍ରକଳତ୍ରମିତ୍ରଂ ଦଦାତି ତୁଙ୍ଗୀ ଗଜବାଜଭୃତ୍ୟାନ୍ ॥

ରାହୁ ତୃତୀୟରେ ଥିଲେ ଜାତକର ଭାଇମାନେ ବଞ୍ଚନ୍ତି ନାହିଁ । ଜାତକ ସୁଖ, ଧନ, ପୁତ୍ର, କଳତ୍ର ଓ ମିତ୍ରାଦିଯୁକ୍ତ ହୁଏ । ଏହି ରାହୁ ଉଚ୍ଚସ୍ଥ ହୋଇଥିଲେ ଜାତକ ହସ୍ତୀ, ଅଶ୍ୱାଦି ବାହନ ଓ ଭୃତ୍ୟଯୁକ୍ତ ହୁଏ ।

ସହଜସ୍ଥୋ ଯଦା କେତୁଃ ସୌଖ୍ୟଂ ସୌଭାଗ୍ୟମେବ ଚ ।
ପୁତ୍ରଲାଭୋ ଭବେତ୍ତସ୍ୟ ଜାୟତେ ଚ ମହାଧନୀ ॥

କେତୁ ତୃତୀୟରେ ଥିଲେ ଜାତକ ସୁଖ, ସୌଭାଗ୍ୟ, ଧନ ଓ ପୁତ୍ରାଦିଯୁକ୍ତ ହୁଏ ।

ତୃତୀୟସ୍ଥାନାଧିପସ୍ଥିତିଫଳଂ

ଭ୍ରାତୃସ୍ଥାନେଶଭୌମୌ ବ୍ୟୟସୁତପୁତ୍ରଧନସ୍ଥାନଗୌ ବନ୍ଧୁ ଶ୍ରେନଃ
ସୁକ୍ଷେତ୍ରେ ସୌମ୍ୟଦୃଷ୍ଟେ ସହଜଭବନପେ ମାନବଃ ସ୍ୟାତ୍ତ ଭକ୍ତାନ୍ ।

କେନ୍ଦ୍ରସ୍ଥେ ବନ୍ଧୁସୌଖ୍ୟଂ ଶୁଭଖଚରଯୁତେ ସ୍ୱାଦଦନ୍ତ୍ରଂ ନରାଣାଂ
ପାପୈଶ୍ଚେଦନ୍ୟଥୈଶ୍ଚେଭବଦନୁଜନଧିପୁସ୍ତା କ୍ଷେତ୍ରମିତ୍ରଂ ସମସ୍ତଂ ॥
ଜା. ଅ.

ତୃତୀୟ ସ୍ଥାନାଧିପ ସହ ମଙ୍ଗଳ ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ ସେ ବ୍ୟକ୍ତି ଭ୍ରାତୃହୀନ ହୁଏ । ତୃତୀୟ ସ୍ଥାନାଧିପ ସ୍ୱଗୃହରେ ଥିଲେ ସହ ଶୁଭଗ୍ରହ ଯୁକ୍ତ ବା ଦୃଷ୍ଟ ହୋଇଥିଲେ ଜାତକ ଭ୍ରାତୃଯୁକ୍ତ ହୁଏ । ତୃତୀୟାସ୍ଥାନାଧିପ ଲଗ୍ନ, ଚତୁର୍ଥ, ସପ୍ତମ ବା ଦଶମରେ ଥିଲେ ଜାତକର ବନ୍ଧୁବର୍ଗ ରହେ । ଶୁଭଗ୍ରହ ଯୁକ୍ତ ହୋଇଥିଲେ ତୃତୀୟ ଭାବର ସମସ୍ତ ଫଳ ମଙ୍ଗଳ ଓ ପାପଗ୍ରହ ଯୁକ୍ତରେ ତୃତୀୟ ଭାବର ସମସ୍ତ ଫଳ ମନ୍ଦ ହୁଏ ।

ଶୁଭଯୁକ୍ତ ତୃତୀୟସ୍ଥାନାଧିପ ଦ୍ୱିତୀୟରେ ରହିଲେ ନାନାପ୍ରକାର ଅର୍ଥାଗମ ହୁଏ ଓ ପରାକ୍ରମ ବୃଦ୍ଧି ହୁଏ । ବିପରୀତ ହେଲେ ଫଳର ଅନ୍ୟଥା ହୁଏ । ୧ ଧା. ହୋ.

ଚତୁର୍ଥରେ ଥିଲେ ଜାତକ ପିତୃକୃତ ଋଣଜାଳରେ ଅବଦ୍ଧ ହେବାକୁ ହୁଏ । ସେ ସର୍ବଦା ଶତ୍ରୁଯୁକ୍ତ ହୋଇଥାଏ । ୨

ପଞ୍ଚମରେ ଥିଲେ ସନ୍ତାନଭାବର ଫଳ ନଷ୍ଟ କରାଏ । ସାମାନ୍ୟ ଧନ ଲାଭ ହୁଏ । ୩

ତୃତୀୟାଧିପ ଷଷ୍ଠରେ ମିତ୍ର ଗୃହରେ ରହିଲେ ବନ୍ଧୁ ଓ ବଳାତୀୟମାନେ ଶତ୍ରୁ ହୁଅନ୍ତି, ଶତ୍ରୁଗୃହରେ ରହିଲେ କ୍ଷୀଣ ଶତ୍ରୁ ହୁଅନ୍ତି । ୪

ସପ୍ତମରେ ରହିଲେ ଦୂରରେ ବିବାହ ହୁଏ । ସେ ବ୍ୟକ୍ତି ବହୁତ ସମୟ ବିଦେଶରେ ରହି ଧନୋପାର୍ଜନ କରେ । ୫

ନବମରେ ଥିଲେ ବହୁ ଭ୍ରମଣ, ମାତୁଳଶତ୍ରୁ ଓ ବିଦ୍ୱାନ୍ କରାଏ ।୬

ଏକାଦଶରେ ଥିଲେ ବନ୍ଧୁ, ଭ୍ରାତା ଇତ୍ୟାଦିଙ୍କ ହେତୁରୁ ଧନ ଲାଭ ହେବ । ୭

### ଭ୍ରାତୃବାଦଯୋଗାଃ

ବିଲଗ୍ନସ୍ଥୋ ଯଦା ଜୀବୋ ଧନେ ସୌମ୍ୟ ଯଦା ଭବେତ୍ ।
ଚନ୍ଦ୍ରଶ୍ଚ ସହଜସ୍ଥାନେ ଭ୍ରାତା ତସ୍ୟ ନ ଜୀବତି ॥ ଶ. ହୋ.

ଲଗ୍ନରେ ବୃହସ୍ପତି, ଦ୍ୱିତୀୟରେ ଶନି ଓ ତୃତୀୟରେ ଚନ୍ଦ୍ର ଥିଲେ ଜାତକର ଭ୍ରାତାମାନେ ବଞ୍ଚନ୍ତି ନାହିଁ ।

କେନ୍ଦ୍ରେ ତ୍ରିକୋଣେ ଯଦି ପାପଖେଟସ୍ତୃତୀୟଭ୍ରାବାଦଲୁଜସ୍ୟ ନାଶଂ ।
ଶୁଭୋପଜାତେ ସହଜସ୍ୟ ବୃଦ୍ଧିଂ ଶୁଭାଶୁଭେ ମିଶ୍ରଫଳଂ ବଦନ୍ତି ॥
ଜା. ସ

ତୃତୀୟ ସ୍ଥାନଠାରୁ କେନ୍ଦ୍ରରେ ଓ ତ୍ରିକୋଣରେ ଅର୍ଥାତ୍ ଲଗ୍ନର ତୃତୀୟ, ଷଷ୍ଠ, ସପ୍ତମ, ନବମ, ଏକାଦଶ ଓ ଦ୍ୱାଦଶ ସ୍ଥାନମାନଙ୍କରେ ପାପଗ୍ରହ ଥିଲେ ଭ୍ରାତୃନାଶ କରନ୍ତି । ଉପରୋକ୍ତ ସ୍ଥାନମାନଙ୍କରେ ଶୁଭଗ୍ରହ ଥିଲେ ଭ୍ରାତୃ ବହୁଳ ହୁଅନ୍ତି । ଶୁଭାଶୁଭ ଉଭୟ ଗ୍ରହମାନେ ଥିଲେ କେତେକ ମରନ୍ତି, କେତେକ ବଞ୍ଚନ୍ତି ।

ମଙ୍ଗଳକୁ ଓ ତୃତୀୟ ସ୍ଥାନକୁ ଯେତୋଟି ଗ୍ରହ ଦେଖନ୍ତି ଜାତକର ତେତିକି ଭ୍ରାତା ରହନ୍ତି । କେ. ସା.

ଅଗ୍ରଜାନ୍ ହନ୍ତି ସୂର୍ଯ୍ୟଶ୍ଚ ପୃଷ୍ଠଜାଂସ୍ତୁ ଶନୈଶ୍ଚରଃ ।
ଅଗ୍ରପୃଷ୍ଠଂ ଦ୍ୱୟଂ ହନ୍ତି ସହଜସ୍ଥେ ମହୀସୁତେ ॥ କେ: ସା

ରବି ତୃତୀୟରେ ଥିଲେ ଉପର ଭାଇ ବା ଭଉଣୀକୁ, ଶନି ତୃତୀୟରେ ଥିଲେ କନିଷ୍ଠ ଭ୍ରାତା ବା ଭଗ୍ନୀଙ୍କୁ ଓ ମଙ୍ଗଳ ତୃତୀୟରେ ଥିଲେ ଜ୍ୟେଷ୍ଠ ଓ କନିଷ୍ଠ ଉଭୟଙ୍କୁ ବିନାଶ କରେ ।

ତୃତୀୟଭାବବିଚାରଃ ସମାପ୍ତଃ ।

---

## ଚତୁର୍ଥଭାବ ବିଚାରଃ

### ଚତୁର୍ଥସ୍ଥ ଗ୍ରହଫଳଂ

ସୁଖସ୍ଥେ ଦିନେଶେଽତିଶୋଭାଧିକାୟ, ଜନଃ ସମ୍ଭବେଦ୍ ବିଗ୍ରହଃ ବନ୍ଧୁତୋଽପି ।
ପ୍ରବାସୀ ବିପକ୍ଷାହବେ ମାନଭଙ୍ଗଃ, କଦାଚିନ୍ନଶାନ୍ତଂ ଭବେତ୍ତସ୍ୟ ଚିତ୍ତଃ ॥

ରବି ଚତୁର୍ଥରେ ରହିଲେ ଜାତକ ତେଜୀୟାନ୍ ହୁଏ । ବିବିଧ ପ୍ରକାରେ ଧନୋପାର୍ଜନ କରେ । ବନ୍ଧୁବାନ୍ଧବଙ୍କ ସହ କଳହ କରେ । ସେ ବ୍ୟକ୍ତି ପ୍ରବାସୀ ହୁଏ । ଶତ୍ରୁ ସହ ବିରୋଧୀ ହୋଇ ତାହାର ମାନଭଙ୍ଗ ହୁଏ । ସେ ବ୍ୟକ୍ତିର ଚିତ୍ତ ସର୍ବଦା ଅଶାନ୍ତ ଥାଏ ।

ବନ୍ଧୁସ୍ଥାନଗତେ ଚନ୍ଦ୍ରେ, ଜାନୁରୋଗୀ ଶିରୋବ୍ୟଥଃ ।
ଭବ୍ୟାବାସେ ବସେନ୍ନିତ୍ୟଂ କ୍ଷୀଣେ ପାପେ ବିପର୍ଯ୍ୟୟଃ ॥

ଚନ୍ଦ୍ର ଚତୁର୍ଥରେ ଥିଲେ ଜାତକ ଜାନୁରୋଗୀ, ଶିରଃପୀଡ଼ାପୀଡ଼ିତ ଓ ଉତ୍ତମ ଗୃହବାସୀ ହୁଏ । ଚନ୍ଦ୍ର କ୍ଷୀଣ ହୋଇଥିଲେ ବା ପାପଯୁକ୍ତ ହୋଇଥିଲେ ଅତ୍ୟନ୍ତ ଅଶୁଭ ହୁଏ ।

ବନ୍ଧୁସ୍ଥାନଗତେ ଭୌମେ ଭୂଗ୍ରାମେ ବସତ ଧ୍ରୁବଂ ।
ବନ୍ଧୁଭାଗ୍ୟବହ୍ନସ୍ଥ ସଦା ଦେବରତୋ ଭବେତ୍ ॥

ମଙ୍ଗଳ ଚତୁର୍ଥରେ ଥିଲେ ଜାତକ ଭୂଗ୍ରାମରେ ବାସ କରେ । ସେ ବନ୍ଧୁ ଭାଗ୍ୟହୀନ ଓ ଦେବସେବାନିରତ ହୁଏ ।

ବନ୍ଧୁମିତ୍ରୋ ବନ୍ଧୁଧନୋ ବନ୍ଧୌ ପାପଂ ବିନା ବୁଧେ ।
ନାନାଭିସବିଳାସୀ ଚ ସପାପେ ତୁ ବ୍ୟଥା ଫଳଂ ॥

ଶୁଭଯୁକ୍ତ ବୁଧ ଚତୁର୍ଥରେ ଥିଲେ ମିତ୍ର, ଧନ ଓ ନାନାପ୍ରକାର ଭୋଗଯୁକ୍ତ କରାଏ । ପାପଯୁକ୍ତ ବୁଧ ଅଶୁଭ ଫଳ ପ୍ରଦାନ କରେ ।

ରତ୍ନୋପଭୋଗୀ ବନ୍ଧୁସ୍ଥେ ଦେବପୂଜ୍ୟେଽତିଗର୍ବିତଃ ।
ସଙ୍କରିଷ୍ଟବନ୍ଧମୁକ୍ତୋ ଭବ୍ୟଗେହୀ ଚ ମାନବଃ ॥

ବୃହସ୍ପତି ଚତୁର୍ଥରେ ଥିଲେ, ଜାତକ ରତ୍ନାଲଙ୍କାରଭୋଗୀ, ଗର୍ବିତ ଓ ଉ ମ ଗୃହରେ ବାସ କରେ । ତାହାର ସମସ୍ତ କଷ୍ଟ ଖଣ୍ଡନ ହୁଏ ।

ଭବତ ବନ୍ଧୁଗତେ ଭୃଗୁଜେ ନରୋ ବହୁକଳତ୍ରସୁତେନ ସମନ୍ୱିତଃ ।
ସୁମୁଖମଭ୍ରୁତମୁଚ୍ଚଗତେ ବସେ ବରଗୃହେ ବରନାରୀସମନ୍ୱିତଃ ॥

ଶୁକ୍ର ଚତୁର୍ଥରେ ଥିଲେ ଜାତକ ସ୍ତ୍ରୀ, ପୁତ୍ର ଓ ସୁନ୍ଦର ଗୃହାଦି ଲାଭ କରେ । ଏହି ଶୁକ୍ର ଉଚ୍ଚସ୍ଥ ହୋଇଥିଲେ ଜାତକ ସୁନ୍ଦରବଦନ, ଶ୍ରେଷ୍ଠ ଗୃହ ଓ ଶ୍ରେଷ୍ଠାପତ୍ନୀ ଲାଭ କରେ ।

ଚତୁର୍ଥସ୍ଥଶନୈର୍ଦୋଷେ ମାତୃତଦ୍‌ବର୍ଗନାଶନଂ ।
ଗୃହଦାହଂ ପଦଭ୍ରଂଶଂ ଚୌରଗ୍ନିନୃପପୀଡ଼ନଂ ।

ଶନି ଚତୁର୍ଥରେ ଥିଲେ ମାତୃ ବା ତଦ୍‌ବର୍ଗୀୟ କାହାର ହେଲେ ମୃତ୍ୟୁ ହୁଏ । ଗୃହଦାହ, ପଦଚ୍ୟୁତି, ଚୌରଭୟ ଓ ରାଜଭୟ ହୁଏ ।

ଚତୁର୍ଥଗଣି ସ୍ଥିତସ୍ତୁକାଳେ ମାତୁର୍ବିନାଶଂ ହ୍ୟଥବା ତଦାପ୍ତଂ ।
କ୍ଷେତ୍ରାର୍ଥନାଶଂ ନୃପତେଃ ପ୍ରକୋପଂ ସ୍ୱଗୃହାଦପାତିତ୍ୟ-
ମନେକଦୁଃଖଂ ॥

ରାହୁ ଚତୁର୍ଥରେ ଥିଲେ ଜାତକର ମାତୃନାଶ, ଭୂମିନାଶ, ରାଜହେତୁକ ଭୟ, ଭାର୍ଯ୍ୟା ସମ୍ବନ୍ଧେ ଅପବାଦାଦି ଶ୍ରବଣ ଓ ନାନାପ୍ରକାର ଦୁଃଖଭୋଗ କରେ ।

ଚତୁର୍ଥେ ନ ମାତୁଃ ସୁଖଂ ନୋ କଦାଚିତ୍,
ସୁହୃଦ୍‌ବର୍ଗତଃ ପୈତୃକଂ ନାଶମେତି ।
ଶିଖୀ ବନ୍ଧୁବର୍ଗାତ୍ ସୁଖଂ ସ୍ୱୋଚ୍ଚଗେହେ,
ଚିରଂ ନୋ ବସେତ୍ ସ୍ୱଗୃହେ ବ୍ୟଗ୍ରତା ଚ ॥

କେତୁ ଚତୁର୍ଥରେ ଥିଲେ ଜାତକ ମାତୃସୁଖଭୋଗ କରି ନ ପାରେ । ବନ୍ଧୁ ସୁଖ ମଧ୍ୟ ତାହାର ଭାଗ୍ୟରେ ଘଟେ ନାହିଁ । ସେ ପ୍ରବାସୀ ଓ ଉଦ୍‌ବିଗ୍ନମନା ହୁଏ । କେତୁ ମୀନ ବା ଧନୁରାଶିସ୍ଥ ହୋଇ ଚତୁର୍ଥରେ ରହିଲେ ବନ୍ଧୁସୁଖାଦି ପ୍ରାପ୍ତି କରାଏ ।

ଚତୁର୍ଥ ସ୍ଥାନାଧିପସ୍ଥିତି ଫଳଂ ।

ପାତାଳେଶଃ ସ୍ୱରାଶୌ ଶୁଭଖଚରଯୁତୋ ଭାଗ୍ୟନାଥେନ ଯୁକ୍ତଃ
ସାମନ୍ତଃ ସ୍ୟାଦ୍‌ଉଚ୍ଚଶ୍ଚେତ୍ ସୁରପତିଗୁରୁଣାବାହନେଶସ୍ତନୁସ୍ଥଃ ।
ସନ୍ଦୃଷ୍ଟୋ ରାଜପୂଜ୍ୟସ୍ତଦନୁ ଚ ହିବୁକାଧୀଶ୍ୱରେ ଲାଭସଂସ୍ଥେ
ଯାନଂ ପଶ୍ୟନ୍ନରାଣାଂ ଜନବହମଭିମତଂ ବାହନାନାଂ ପ୍ରଦଦ୍ୟାତ୍ ॥

ଜା. ଅ,

ଚତୁର୍ଥ ସ୍ଥାନାଧିପତି ଚତୁର୍ଥରେ ଶୁଭଗ୍ରହଯୁକ୍ତ ବା ନବମାଧିପତି-ଯୁକ୍ତ ହେଲେ ଜାତକ ରାଜାର ପ୍ରିୟପାତ୍ର ହୁଏ । ଚତୁର୍ଥ ସ୍ଥାନାଧିପ ବୃହସ୍ପତି ସହିତ ଯୁକ୍ତ ହୋଇ ଲଗ୍ନରେ ଥିଲେ ଜାତକ ରାଜପୂଜ୍ୟ ହୁଏ । ଚତୁର୍ଥ ସ୍ଥାନର ଅଧିପତି ଏକାଦଶରେ ଥାଇ ଚତୁର୍ଥ ସ୍ଥାନକୁ ଦେଖୁଥିଲେ ଜାତକ ଯାନବାହନାଦି ଉପଭୋଗ କରେ ।

ସ୍ୱକ୍ଷେତ୍ରେ ତୁର୍ଯ୍ୟନାଥସ୍ତନୁପତିସହିତଃ ସ୍ୟାଦକସ୍ମାତ୍ ଗୃହାପ୍ତିଃ
ସୌହାର୍ଦ୍ଦ୍ୟଂ ବା ସୁହୃଦ୍ଭିସ୍ତଦିଦରଗୃହଗସ୍ତେଭ୍ୟଦା ଲାଭଯୋଗଃ ।
ଯାବନ୍ତଃ ପାପଖେଟା ଧନଦଶମଗୃହସ୍ୱାନ୍ତପେ ସ୍ୱେଭିକସ୍ଥା
ଯୁକ୍ତାସ୍ତାବତ୍ପ୍ରମାଣା ଜ୍ୱଳନବଶଗତାଃ କ୍ଲେଶଦାଃ ସ୍ୟୁର୍ଗୃହାନ୍ତଃ ॥

ଚତୁର୍ଥ ସ୍ଥାନାଧିପ ଲଗ୍ନାଧିପତି ସହିତରେ ଚତୁର୍ଥରେ ଥିଲେ ସେହି ବ୍ୟକ୍ତି ଉତ୍ତମ ଗୃହଲାଭ କରେ । (ଚତୁର୍ଥ ସ୍ଥାନ ଓ ଲଗ୍ନ ସ୍ଥାନର ଅଧିପତି ଏକ ହେଲେ ସେହି ଚତୁର୍ଥ ସ୍ଥାନାଧିପ) ଜାତକ ବନ୍ଧୁପ୍ରିୟ ହୁଏ । ଅନ୍ୟ କୌଣସିଠାରେ ( ଚତୁର୍ଥ ଛଡ଼ା ) ଯୁକ୍ତ ହେଲେ ଗୃହଲାଭ ହୁଏ ନାହିଁ । ଦ୍ୱିତୀୟ, ଦଶମ ଓ ଦ୍ୱାଦଶର ଅଧିପତିମାନଙ୍କ ସହ ଯେତୋଟି ପାପଗ୍ରହ ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିବେ, ସେହି ବ୍ୟକ୍ତିର ସେତିକି ଥର ଗୃହଦାହ ହୁଏ ।

ସ୍ୱତୁଙ୍ଗତସ୍ଥେ ହିବୁକାଧିନାଥେ ସ୍ୱକ୍ଷେତ୍ର ମିତ୍ରଗୃହେ ସ୍ଥିତୋ ବା ।
ଶୁଭଗ୍ରହେଣାପି ଯୁତେଽଥ ଦୃଷ୍ଟେ କ୍ଷେତ୍ରାଦିବୃଦ୍ଧିଂ ପ୍ରବଦେନ୍ମୁନୀଶାଃ ॥
କେ. ସା,

ଚତୁର୍ଥ ସ୍ଥାନାଧିପତି ଉଚ୍ଚରେ, ସ୍ୱଗୃହରେ ବା ମିତ୍ରଗୃହରେ ଥାଇ ଶୁଭଗ୍ରହଯୁକ୍ତ ବା ଦୃଷ୍ଟ ହେଲେ ଭୂମି ଓ ଗୃହାଦି ଲାଭ ହୋଇଥାଏ ।

ଚତୁର୍ଥ ସ୍ଥାନାଧିପ ଲଗ୍ନରେ ଥିଲେ ଧନଲାଭ ହୁଏ । ୧, ପା, ହୋ।

ଚତୁର୍ଥସ୍ଥାନାଧିପ ଦ୍ୱିତୀୟରେ ଥିଲେ ଭୂଦେଉଳ ଓ ଖନିଜ ଦ୍ରବ୍ୟ ଲାଭ ହେତୁ ଧନ ଲାଭ ହୁଏ । ୨

ଚତୁର୍ଥସ୍ଥାନାଧିପ ତୃତୀୟରେ ଥିଲେ ବାସସ୍ଥାନର ପରିବର୍ତ୍ତନ ଘଟେ । ସେହି ବ୍ୟକ୍ତି ପୈତୃକ ସମ୍ପତ୍ତିର ବିନାଶକ ହୁଏ । ୩

ଚତୁର୍ଥ ସ୍ଥାନାଧିପ ଚତୁର୍ଥରେ ଥିଲେ ସୁଖ ସୌଭାଗ୍ୟ ବୃଦ୍ଧି ହୁଏ । ୪

ଚତୁର୍ଥସ୍ଥାନାଧିପ ପଞ୍ଚମରେ ଥିଲେ ଜାତକ ଦ୍ୟୁତକ୍ରୀଡ଼ା ଦ୍ୱାରା ଓ ଦେବସେବା ଦ୍ୱାରା ଧନଲାଭ କରେ । ୫

ଚତୁର୍ଥ ସ୍ଥାନାଧିପ ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ ବନ୍ଧୁବିରୋଧ ଓ ସ୍ଥାନନାଶ ହୁଏ । ତାହାର ଭୂସମ୍ପତ୍ତିର ବିନାଶ ହୁଏ । ୬

ଚତୁର୍ଥ ସ୍ଥାନାଧିପ ସପ୍ତମରେ ଥିଲେ ଜାତକ ବାଣିଜ୍ୟଦ୍ୱାରା ଲାଭବାନ୍ ହୁଏ ।

ଚତୁର୍ଥ ସ୍ଥାନାଧିପ ନବମରେ ଥିଲେ ଜାତକ ବିଦ୍ୟା ଓ ଧର୍ମକାର୍ଯ୍ୟ ଦ୍ୱାରା ଧନଲାଭ କରେ । ୨

ଚତୁର୍ଥ ସ୍ଥାନାଧିପ ଦଶମରେ ଥିଲେ ଜାତକ ବାଣିଜ୍ୟ ଅଥବା ରାଜକାର୍ଯ୍ୟ ହେତୁ ଧନଲାଭ କରେ ।

ଚତୁର୍ଥପତି ଏକାଦଶରେ ଥିଲେ ସ୍ଥାବର ସମ୍ପତ୍ତି ଲାଭ କରାଏ ।



## ପଞ୍ଚମଭାବବିଚାରଃ

### ପଞ୍ଚମସ୍ଥ ଗ୍ରହଫଳଂ

ସୁତସ୍ଥାନଗେ ପୂର୍ବଜାପତ୍ୟଘାତୀ
କୁଶାଗ୍ରା ମତିଃ ସ୍ୱଳ୍ପରେ ମନ୍ତ୍ରବିଦ୍ୟା ।
ରତଶ୍ଚାଧ୍ୱନେ ସଞ୍ଚକୋପୀ ପ୍ରମୋଦୀ
ମୃତିଃ କ୍ରୋଡରୋଗାଦ୍ଭବା ଖ୍ୟାପିତଃ ।

ରବି ପଞ୍ଚମରେ ଥିଲେ ଜାତକର ପ୍ରଥମ ପୁତ୍ରର ମୃତ୍ୟୁ ଘଟେ । ତାହାର ବୁଦ୍ଧି ଅତ୍ୟନ୍ତ ତୀକ୍ଷ୍ଣ ହୁଏ । ସେ ମାନ୍ତ୍ରିକ ହୁଏ । ପ୍ରତାରଣା ପାରଙ୍ଗମ, ସ୍ୱଳ୍ପକୋପୀ ଓ ବିଳାସୀ ହୁଏ । ଉଦର ରୋଗରେ ତାହାର ମୃତ୍ୟୁ ହୁଏ ।

ପଞ୍ଚମଂ ସ୍ୱଗୃହଂଶେର୍ଯଦି ସ୍ୟାଦ୍ରବିଃ ପ୍ରଥମ ପୁତ୍ରହା ।
ନ ହନ୍ୟାଦପରାନ୍ ପୁତ୍ରାନନ୍ୟର୍କ୍ଷେ ଗର୍ଭଘାତକଃ ॥

ଶ, ହୋ

ଲଗ୍ନର ପଞ୍ଚମରେ ରବି ସ୍ୱଗୃହସ୍ଥ ହୋଇଥିଲେ (ମେଷଲଗ୍ନଜାତ ବ୍ୟକ୍ତିର) ପ୍ରଥମ ପୁତ୍ରର ମରଣ ଘଟେ । ଅନ୍ୟାନ୍ୟ ସନ୍ତାନମାନଙ୍କର କୌଣସି କ୍ଷତି ଘଟେ ନାହିଁ । ସିଂହ ଛଡ଼ା ଅନ୍ୟ ଯେ କୌଣସି ରାଶିସ୍ଥ ପଞ୍ଚମସ୍ଥ ରବି ଜାତକର ସ୍ତ୍ରୀର ଗର୍ଭପାତ କରାଏ ।

ତନୟସ୍ଥଗତଶଶାଙ୍କେ ବରପୂର୍ଣ୍ଣଃ ସୁଖୀ ସ୍ୟାତ୍
ବହୁତରସୁତଯୁକ୍ତୋ ଧର୍ମ୍ୟନାଶ୍ରୟମେତଃ ।

ଯଦି ଭବତି ଶଶାଙ୍କଃ କ୍ଷୀଣପାପାରିଗେହେ
ହରତି ସୁଖସମୂହଂ ପଞ୍ଚମସ୍ଥୋ ନରାଣାଂ ।

ପୂର୍ଣ୍ଣଚନ୍ଦ୍ର ପଞ୍ଚମରେ ଥିଲେ ସେ ବ୍ୟକ୍ତି ସନ୍ତାନ, ସ୍ତ୍ରୀ, ଧନ ଓ ସୁଖଯୁକ୍ତ ହୁଏ । ଏହି ପଞ୍ଚମସ୍ଥ ଚନ୍ଦ୍ର କ୍ଷୀଣ ହେଲେ, ପାପଗ୍ରହ ଗୃହରେ ଥିଲେ କିମ୍ବା ଶତ୍ରୁଗୃହରେ ଥିଲେ ଜାତକ ସୁଖହୀନ ଓ ସନ୍ତାନହୀନ ହୁଏ ।

ତନୟଭବନସଂସ୍ଥେ ଭୂମିପୁତ୍ରେ ମନୁଷ୍ୟଃ
ଭବତି ତନୟହୀନୋ ବହିହୀନୋଽତିଦୁଃଖୀ ।
ଯଦି ନିଜଗୃହତୁଙ୍ଗେ ବର୍ତ୍ତତେ ଭୂମିପୁତ୍ରଃ
ଗୁରୁଯୁତଗତଦୃଷ୍ଟିଃ ପୁତ୍ରଲାଭଂ କରୋତି ॥

ମଙ୍ଗଳ ପଞ୍ଚମରେ ଥିଲେ ଜାତକର ଧନ ପୁତ୍ର ଓ ସୁଖ ନଷ୍ଟ ହୁଏ । ମେଷ, ବୃଶ୍ଚିକ, ମକରସ୍ଥ ମଙ୍ଗଳ ପଞ୍ଚମରେ ଥାଇ ବୃହସ୍ପତି ଯୁକ୍ତ ହେଲେ ବା ବୃହସ୍ପତିକର୍ତ୍ତୃକ ଦୃଷ୍ଟ ହେଲେ ସନ୍ତାନ ଲାଭ ହୁଏ ।

ତନୟମନ୍ଦିରଗେ ଶଶିନନ୍ଦନେ ସୁତକଳତ୍ରଯୁତଃ ସୁଖଭାଜନଃ ।
ବିକଚପଙ୍କଜବକ୍ତ୍ରମୁଖଃ ନରଃ, ଶୁଭଯୁତୋ ଶୁଭଦୃଷ୍ଟିଗତୋଽଥବା ।

ବୁଧ ପଞ୍ଚମରେ ଶୁଭଗ୍ରହ ସହିତରେ ବା ଶୁଭଗ୍ରହର ଦୃଷ୍ଟିରେ ଥିଲେ ଜାତକ ପୁତ୍ର, ପତ୍ନୀ ଓ ସୁଖ ଲାଭ କରେ । ତାହାର ମୁଖ ସୁନ୍ଦର ଓ ସେ କବି ହୁଏ ।

ସମ୍ଭବୋ ବହୁଧାର୍ଯ୍ୟସ୍ତୁ ବହୁପୁତ୍ରସ୍ତୁ ସୁନ୍ଦରଃ ।
ଧର୍ମ୍ମଯୋଧପତିଃ ଶ୍ରୀମାନ ପଞ୍ଚମେ ଦେବତାଗୁରୌ ।

ବୃହସ୍ପତି ପଞ୍ଚମରେ ଥିଲେ ଜାତକ ସମୃଦ୍ଧିଶାଳୀ, ବହୁ ସ୍ତ୍ରୀ ଭୋଗକାରୀ, ବହୁପୁତ୍ରଯୁକ୍ତ, ସୁନ୍ଦର, ଧନୀ, ସେନାପତି ଓ ଶ୍ରୀସମ୍ପନ୍ନ ହୁଏ ।

ବହୁକନ୍ୟୋଲ୍ପପୁତ୍ରଶ୍ଚ ଦାତା ଭୋକ୍ତା ଗୁଣାନ୍ୱିତଃ ।
ଧନୀ ମାନୀ ଚ ସତତଂ ସୁତସ୍ଥେ ଭୃଗୁନନ୍ଦନେ ॥

ଶୁକ୍ର ପଞ୍ଚମ ସ୍ଥାନରେ ଥିଲେ ଜାତକ ବହୁକନ୍ୟା ଓ ଅଳ୍ପ ପୁତ୍ର-ଯୁକ୍ତ, ଦାତା, ଭୋକ୍ତା, ଗୁଣବାନ୍ , ଧନୀ ଓ ମାନୀ ହୁଏ ।

ଶନୈଶ୍ଚରେ ପଞ୍ଚମମନ୍ଦିରସ୍ଥେ ପୁତ୍ରାର୍ଥହୀନୋ ଭବତି ଚ ଦୁଃଖୀ ।
ଦୃଗେ ଘଟେ ମୈଥୁନକେ ଚ ଯଚ୍ଛୌ ପୁତ୍ରୈକଭାଗୀ ଭବତୀତି କଶ୍ଚିତ୍ ॥

ଶନି ପଞ୍ଚମରେ ଥିଲେ ଜାତକର ପୁତ୍ରସୁଖ ଓ ଧନହାନି ଘଟେ, ଶନି ତୁଳାରେ, ମକରରେ, କୁମ୍ଭରେ, ଧନୁରେ, ମୀନରେ ଓ ବୃଷରେ ଥିଲେ ଗୋଟିଏ ପୁତ୍ର ରହେ ।

ରାହୁଃ ସୁତସ୍ଥୋ ଶଶୀ ଭାନୁଗେହେ ପୁତ୍ରସ୍ୟ ହନ୍ତା କୁପିତଃ ସଦୈବ ।
ଗେହାନ୍ତରେ ସୋଽପି ସୁତୈକମାତ୍ରଂ ଜୀବସ୍ୟ ଦୃଷ୍ଟେ
ନ ତୁ ଦୋଷମାହୁଃ ॥

ରାହୁ ପଞ୍ଚମସ୍ଥ ହୋଇ କର୍କଟ ବା ସିଂହରେ ଥିଲେ ଜାତକର ସନ୍ତାନଗଣ ବିନାଶ ହୁଅନ୍ତି । ଅନ୍ୟ ରାଶିରେ ଥିଲେ ଗୋଟିଏ ପୁତ୍ର ରହେ । ରାହୁକୁ ବୃହସ୍ପତି ଦେଖିଲେ କୌଣସି ଦୋଷ ରହେ ନାହିଁ । ସେ ବ୍ୟକ୍ତି ସୁସନ୍ତାନଯୁକ୍ତ ହୁଏ ।

ଯଦା ପଞ୍ଚମେ ଯସ୍ୟ ପୁତ୍ରାଭିଧାନୋ
ତଦା ପୁତ୍ରକଷ୍ଟଂ ସ୍ୱୟଂ କ୍ରୋଡଦୁଃଖୀ ।
ପରଂ ମନ୍ତ୍ରଶାସ୍ତ୍ରବାଦେ ରତସ୍ତ
ସ୍ୱୟଂ ଧର୍ମକଳ୍ପଦ୍ରୁମେ ବୈ କୁଠାରଃ ॥

କେତୁ ପଞ୍ଚମରେ ଥିଲେ ଜାତକ ପୁତ୍ରକଷ୍ଟ ଭୋଗ କରେ । ମନ୍ତ୍ର ଓ ଧର୍ମଶାସ୍ତ୍ରାଦିର ବର୍ତ୍ତରରେ ପ୍ରବୃତ୍ତ ହୁଏ । ନିଜେ କୌଣସି ଧର୍ମ କାର୍ଯ୍ୟ କରେ ନାହିଁ ।

ପଞ୍ଚମାଧିପସ୍ଥିତିଫଳଂ ।

ସୁତେଶେ ମଞ୍ଚମେ ଯସ୍ୟ ତସ୍ୟ ପୁତ୍ରଃ ସୁଖୀ ଭବେତ୍ ।
କ୍ଷଣିକ କ୍ରୂରଭାଷୀ ଚ ଧାର୍ମିକୋ ମତିମାନ୍ ଭବେତ୍ ॥ ପାଃ ଦେ

ପଞ୍ଚମ ସ୍ଥାନାଧିପ ପଞ୍ଚମରେ ଥିଲେ ତାହାର ପୁତ୍ରମାନେ ସୁଖରେ ରହନ୍ତି । ସେ ବ୍ୟକ୍ତି କ୍ଷୀଣକ୍ରୋଧୀ, ଧାର୍ମିକ ଓ ବୁଦ୍ଧିମାନ୍ ହୁଏ ।

ସୁତେଶେ ଷଷ୍ଠବ୍ୟୟସ୍ଥେ ପୁତ୍ରଃ ଶତ୍ରୁତ୍ୱମାପ୍ନୁୟାତ୍ ।
ମୃତପୁତ୍ରୋ ଗ୍ରାହ୍ୟପୁତ୍ରୋ ବା ଧନପୁତ୍ରୋଽଥବା ଭବେତ୍ ॥

ପଞ୍ଚମ ସ୍ଥାନାଧିପ ଷଷ୍ଠ ବା ଦ୍ୱାଦଶରେ ଥିଲେ ସେ ବ୍ୟକ୍ତିର ପୁତ୍ର ଶତ୍ରୁ ହୁଏ । ସେ ବ୍ୟକ୍ତିର ସନ୍ତାନ ବଞ୍ଚିବା କଷ୍ଟକର । ସେ ଦତ୍ତପୁତ୍ର ବା କ୍ରୟପୁତ୍ର କରିଥାଏ । ଜାତକ ସେହି ଦତ୍ତପୁତ୍ରାଦିର ଯଦି ଶତ୍ରୁତା ସମ୍ପାଦନ କରେ ।

ସୁତେଶେ କର୍ମଗେ ମାନ୍ୟ ସର୍ବଧର୍ମସମନ୍ୱିତଃ ।
ଧନପୁତ୍ରଗୁଣୈର୍ଯୁକ୍ତଃ ଭକ୍ତିଯୁକ୍ତେନଚେତସା ॥

ପଞ୍ଚମ ସ୍ଥାନାଧିପ ଦଶମରେ ଥିଲେ ଜାତକ ମାନୀ, ଗୁଣୀ, ଧନୀ ଓ ପୁତ୍ରଯୁକ୍ତ ହୁଏ । ସେ ବ୍ୟକ୍ତି ଧର୍ମତତ୍ପର ଓ ଭକ୍ତିଯୁକ୍ତ ହୁଏ ।

ସୁତେଶେ ଅସୁକ୍ତି ବତେଭ ପୁତ୍ରପ୍ରାପ୍ତିର୍ନ ସଂଶୟଃ ।
କାସଶ୍ୱାସୀ ସୁଖୀ ନ ସ୍ୟାତ୍ତୁ କ୍ରୋଧଯୁକ୍ତୋ ଧନାନ୍ୱିତଃ ॥

ପଞ୍ଚମ ସ୍ଥାନାଧିପତି ଅଷ୍ଟମ ବା ଦ୍ୱିତୀୟରେ ଥିଲେ ସେହି ବ୍ୟକ୍ତି ପୁତ୍ରଲାଭ କରେ । ସେହି ବ୍ୟକ୍ତି କ୍ରୋଧୀ ଓ କାସ ଶ୍ୱାସାଦି ରୋଗ-ପୀଡ଼ିତ ହୁଏ । ସେ ଧନଲାଭ କରେ ।

ସୁତେଶେ ନବମେ ଯସ୍ୟ ପୁତ୍ରୋ ରାଜସମୋ ଭବେତ୍ ।
ଅଥବା ଗ୍ରନ୍ଥକର୍ତ୍ତା ଚ ବିଖ୍ୟାତଃ କୁଳଦୀପକଃ ॥

ପଞ୍ଚମ ସ୍ଥାନାଧିପତି ନବମରେ ଥିଲେ ତାହାର ପୁତ୍ରମାନେ ରାଜତୁଲ୍ୟ ହୁଅନ୍ତି । ସେ ବ୍ୟକ୍ତି ଗ୍ରନ୍ଥକର୍ତ୍ତା, ପ୍ରଖ୍ୟାତନାମା କୁଳଶ୍ରେଷ୍ଠ ହୁଏ ।

ସୁତେଶେ ଲାଭଭବନେ ପଣ୍ଡିତୋ ଜନବଲ୍ଲଭଃ ।
ଗ୍ରନ୍ଥକର୍ତ୍ତା ମହାଦକ୍ଷୋ ବହୁପୁତ୍ରୋ ଧନାନ୍ୱିତଃ ॥

ପଞ୍ଚମାଧିପତି ଏକାଦଶରେ ଥିଲେ ଜାତକ ବିଦ୍ୱାନ୍, ଲୋକପୂଜ୍ୟ, ଗ୍ରନ୍ଥକର୍ତ୍ତା, ବହୁକନ୍ୟା ଏବ ଧନଯୁକ୍ତ ଓ ସକଳ କାର୍ଯ୍ୟରେ ଧୁରନ୍ଧର ହୁଏ ।

ସୁତେଶେ ଲଗ୍ନସଂସ୍ଥେ ତୁ ମାୟାବୀ ପିଶୁନୋ ଭବେତ୍ ।
ଲୋଷ୍ଟ୍ରୋଽପି ଦତ୍ତବାନ୍ନୈବ କସ୍ମିଚିଦ୍ ଦ୍ରବ୍ୟସ୍ୟ କା କଥା ॥

ପଞ୍ଚମ ସ୍ଥାନାଧିପ ଲଗ୍ନରେ ବା ତୃତୀୟରେ ଥିଲେ ଜାତକ ମାୟାବୀ, ପରଦ୍ୱେଷକ ଓ ଅତ୍ୟନ୍ତ ଲୁବ୍ଧ ହୁଏ । ଅନ୍ୟ ଜନକ ବା କ'ଣ, ମାଟି ଢେଲା ଓ ଦସ୍ତାନକୁ ଦେବା ଲୋଭ କରେ ।

ସୁତେଜେଶ ମାତୃଭବନେ ଚରଂ ମାତୃସୁଖଂ ଭବେତ୍ ।
ଲକ୍ଷ୍ମୀଯୁକ୍ତଃ ସୁବୁଦ୍ଧିଶ୍ଚ ସଚୀବଶ୍ଚାଽଥବା ଗୁରୁଃ ॥

ପଞ୍ଚମ ସ୍ଥାନାଧିପତି ଚତୁର୍ଥରେ ଥିଲେ ଜାତକ ବହୁତ ସମୟ ପର୍ଯ୍ୟନ୍ତ ମାତୃସୁଖ ଭୋଗ କରେ । ସେ ବ୍ୟକ୍ତି ଧନବାନ୍, ବୁଦ୍ଧିମାନ୍, ମନ୍ତ୍ରୀ କିମ୍ବା ଉପଦେଷ୍ଟା ହୁଏ ।

## ବିଦ୍ୟାଦିଯୋଗାଃ

ବିଦ୍ୟାସ୍ଥାନପ ଜୀବଚନ୍ଦ୍ରତନୟାଃ ଷଟ୍ତ୍ରିବ୍ୟୟାଷ୍ଟସ୍ଥିତା
ବିଦ୍ୟାବୁଦ୍ଧିବିବେକହୀନଫଳଦା ନୀଚୈରଗା ବା ଯଦି ।
ସ୍ୱୋଚ୍ଚ ସ୍ୱର୍କ୍ଷଗତାସ୍ତ୍ରିକୋଣଗୃହଗାଃ କେନ୍ଦ୍ରସ୍ଥିତା ବା ଯଦି
ଶ୍ରୀବିଦ୍ୟାବିନୟାଦିଯୁକ୍ତନୟୁଣୋ ରାଜାଧିରାଜପ୍ରିୟଃ ॥ ଜା. ଫ.

ପଞ୍ଚମ ସ୍ଥାନାଧିପତି, ବୃହସ୍ପତି ବା ବୁଧ ତୃତୀୟ, ଷଷ୍ଠ, ଅଷ୍ଟମ ବା ଦ୍ୱାଦଶୀ ନୀଚ ବା ଶତ୍ରୁଗୃହରେ ଥିଲେ ଜାତକ ବିଦ୍ୟା, ବୁଦ୍ଧି ଓ ବିବେକହୀନ ହୁଏ । ଏହି ଉପରୋକ୍ତ ପଞ୍ଚମସ୍ଥାନାଧିପ, ବୃହସ୍ପତି, ବୁଧ ଯଦି ଉଚ୍ଚ, ସ୍ୱକ୍ଷେତ୍ର, କେନ୍ଦ୍ର ବା ତ୍ରିକୋଣରେ ଥିଲେ, ଜାତକ ଧନ ବିଦ୍ୟା ବିନୟ-ଯୁକ୍ତ ଓ ରାଜପ୍ରିୟ ହୁଏ ।

ବାକ୍‌ସ୍ଥାନେଶୋ ଗୁରୁର୍ବା ବ୍ୟୟରିପୁ ନିଧନସ୍ଥାନଗୋ ବାଗ୍‌ବିହୀନ-
ସ୍ତ୍ରୈବଂ ପିତ୍ରାଦିହୀନାଂ ପତୟ୍ୟ ଇହ ଯୁତା ମୂକତା ସ୍ୟାଚ୍ଚ ତାଭ୍ୟାଂ
ବାଗୀଶାତ୍ ପଞ୍ଚମେଶସ୍ତ୍ରିକଭବନଗତଃ ପୂର୍ଣ୍ଣଧର୍ମୀ ଙ୍ଗନାଥାଃ
ରନ୍ଧ୍ରେ ଦ୍ୱେଷ୍ୟାନ୍ତମସ୍ଥା ଯଦି ଜନୁଷି ନୃଣାମାସୁ ଜାବାମଭାବଃ ॥
ଜା. ଅ.

ପଞ୍ଚମ ସ୍ଥାନାଧିପତି କିମ୍ବା ବୃହସ୍ପତି ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ ଜାତକର କହିବା ଶକ୍ତି ନ ଥାଏ । ପଞ୍ଚମାଧିପ ବା ବୃହସ୍ପତି ସଙ୍ଗରେ ଦଶମାଧିପ ଓ ତୃତୀୟାଧିପ ଯୁକ୍ତ ହୋଇ ପୂର୍ବୋକ୍ତ ଭାବରେ ଥିଲେ ଯଥାକ୍ରମେ ଜାତକର ପିତାର ଓ ତାହାର ଭ୍ରାତାର କହିବା ଶକ୍ତି ନ ଥାଏ । ବୃହସ୍ପତିର ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ପଞ୍ଚମାଧିପ ଥିଲେ କିମ୍ବା ଲଗ୍ନ, ପଞ୍ଚମ ଓ ନବମର ଅଧିପତିମାନେ ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ ଜାତକ ସନ୍ତାନହୀନ ହୁଏ ।

ପାପୋ ବା ଯାପବେଜ୍ୟଃ ସୁଖଭବନଗତଃ ପଞ୍ଚମେ ଽଷ୍ଟମେ ବା
ହିତାଂଶୁସ୍ତଦ୍‌ବଦେବ ଖଗୁଣମିତସମା ତୁଲ୍ୟ ଏବ ପ୍ରବନ୍ଧଃ ।
ଯାବନ୍ତଃ ପାପଖେଟାଃ ସୁତଭବନଗୃହଗତା ନସୌମ୍ୟଦୃଷ୍ଟ୍ୟା ବିଯୁକ୍ତା-
ସ୍ତାବଦ୍‌ବର୍ଷପ୍ରମାଣଂ ନସୁତମିହ ଭବେଦ୍‌ବସନ୍ତେ ତେଷାଂ ବଳମ୍ବଃ ॥

ଜା. ଅ.

ପାପ ଗ୍ରହ କିମ୍ବା ବୃହସ୍ପତି ଚତୁର୍ଥରେ, ଚନ୍ଦ୍ର ପଞ୍ଚମରେ ବା ଅଷ୍ଟମରେ ଥିଲେ ସେହି ବ୍ୟକ୍ତିର ସନ୍ତାନ ତିରଶବର୍ଷ ପର୍ଯ୍ୟନ୍ତ ହୁଏ ନାହିଁ । ପଞ୍ଚମ ସ୍ଥାନରେ ଯେତୋଟି ପାପଗ୍ରହ ଥିବେ ଓ ସେମାନେ ଯଦି ଶୁଭ-ଦୃଷ୍ଟିରେ ନ ଥିବେ ବା ଶୁଭଯୁକ୍ତ ହୋଇ ନ ଥିବେ ତେବେ ସେହି ଗ୍ରହପରିମିତ କାଳପର୍ଯ୍ୟନ୍ତ ସନ୍ତାନ ରହିବେ ନାହିଁ ।

( ମଙ୍ଗଳର ୬ ବର୍ଷ ରବିର ୬୦ ବର୍ଷ ଓ ଶନିଙ୍କର ୫୦ ବର୍ଷ )

ସୁତସ୍ଥାନାଷ୍ଟମେ ପାପେ ବିଯୁତେ ଜାୟତେ ନରଃ ।
ଶୁଭଯୁକ୍ତେଽଥବା ସ୍ତ୍ରୀପାପେ ଜାତପୁତ୍ରୋ ବିନଶ୍ୟତି ॥ କେ. ସା.

ସୁତ ସ୍ଥାନର ଅଷ୍ଟମ ଯେ ଦ୍ୱାଦଶ ରହ୍ଣରେ ପାପ ଗ୍ରହ ଥିଲେ ମନୁଷ୍ୟ ସୁତହୀନ ହୁଏ । ସେହି ସ୍ଥାନରେ ଶୁଭ ଗ୍ରହ ଥିଲେ ପୁତ୍ର ଜନ୍ମ ହୋଇ ମରେ ।

ପଞ୍ଚମସ୍ଥାନଗତୋ ଭୌମୋ ମେଷସିଂହାଳିମୀନଗଃ ।
ଗୁରୁଦୃଷ୍ଟେ ଯୁତେ ଚାପି ସୁତପ୍ରାପ୍ତିର୍ନ ସଂଶୟଃ ॥

ମଙ୍ଗଳ ପଞ୍ଚମରେ ଥିଲେ ସନ୍ତାନ ବଞ୍ଚନ୍ତି ନାହିଁ କିନ୍ତୁ ପଞ୍ଚମ ସ୍ଥାନ ଯଦି ମେଷ, ସିଂହ, ବିଛା ବା ମୀନରାଶି ହୋଇଥାଏ ସେହି ରାଶିସ୍ଥ ମଙ୍ଗଳଙ୍କୁ ବୃହସ୍ପତି ଦେଖିଲେ ବା ତା ସହିତ ଯୁକ୍ତ ହୋଇଥିଲେ ନିଶ୍ଚୟ ସନ୍ତାନପ୍ରାପ୍ତି ହୁଏ ।

ଗ୍ରନ୍ଥାନ୍ତରେ :—ବୃହସ୍ପତିଙ୍କର ପଞ୍ଚମରେ ମଙ୍ଗଳ, ଶନି କମ୍ବା ରବି ଥିଲେ ଓ ପଞ୍ଚମାଧିପ ପାପଯୁକ୍ତ ହୋଇଥିଲେ ସନ୍ତାନହୀନ ହୁଏ ।

ଭା. କୁ.

ଦତ୍ତକପୁତ୍ର ଗ୍ରହଣଯୋଗାଃ

ପାପକ୍ଷେତ୍ରଗତେ ଚନ୍ଦ୍ରେ ପୁତ୍ରେଶେ ଧର୍ମମାଗତେ ।
ଦତ୍ତପୁତ୍ରସ୍ୟ ସମ୍ପ୍ରାପ୍ତିର୍ଲଗ୍ନେଶପୁତ୍ରକୋଣଗଃ ॥ ଶ. ହୋ.

ଚନ୍ଦ୍ର ପାପଗ୍ରହର ଗୃହ ( ମେଷ, ସିଂହ, ବିଛା, ମକର, କୁମ୍ଭ ) ରେ ଥିଲେ, ପଞ୍ଚମ ସ୍ଥାନାଧିପ ନବମରେ ରହିଲେ ଓ ତାହାର ନବମ ବା ପଞ୍ଚମରେ ଲଗ୍ନାଧିପତି ରହିଲେ ଜାତକ ଦତ୍ତପୁତ୍ର ଗ୍ରହଣ କରେ ।

ଗ୍ରନ୍ଥାନ୍ତରେ :—ପଞ୍ଚମାଧିପ ଶୁଭଯୁକ୍ତ ଓ ପଞ୍ଚମରେ ବୁଧ ଏବଂ ଏକାଦଶରେ ଶନି ଥିଲେ ଜାତକ ଦତ୍ତପୁତ୍ର ଗ୍ରହଣ କରେ ।

ପା. ହୋ.

ପୁତ୍ରସ୍ଥାନେ କୁଜେ ମନ୍ଦେ ବୁଧକ୍ଷେତ୍ରେ ତଲଗ୍ନଗେ ।
ବୁଧଦୃଷ୍ଟେ ଯୁତେ ବାପି ତଦା ଦତ୍ତସୁତାଦୟଃ ।

ପଞ୍ଚମରେ ମଙ୍ଗଳ ଓ ଶନି ଥିଲେ, ମିଥୁନ ବା କନ୍ୟା ଲଗ୍ନ ହୋଇଥିଲେ, ସେମାନଙ୍କୁ ବୁଧ ଦେଖୁଥିଲେ ଜାତକ ଦତ୍ତପୁତ୍ର ଓ କନ୍ୟା ଗ୍ରହଣ କରେ ।

ପୁତ୍ରସ୍ଥାନେ ବୁଧକ୍ଷେତ୍ରେ ବୁଧସଂସ୍ଥେ ସ୍ଥିତେଽପି ବା ।
ଲଗ୍ନାଧିପେ ଶନୌ ବାପି ଦତ୍ତପୁତ୍ରା ଭବନ୍ତି ହି ।

କୁମ୍ଭ ଲଗ୍ନଜାତ ବ୍ୟକ୍ତିର ମିଥୁନରେ କିମ୍ବା ଧନୁରେ ବୁଧ ଥିଲେ, ଜାତକ ଦତ୍ତପୁତ୍ର ଗ୍ରହଣ କରେ ।

ଗ୍ରନ୍ଥାନ୍ତରେ :—ଚନ୍ଦ୍ର ଦୃଷ୍ଟ ଓ ଶନିଯୁକ୍ତ ପଞ୍ଚମ ସ୍ଥାନ, ଶନିର କ୍ଷେତ୍ର ହେଲେ ଜାତକ ଦତ୍ତପୁତ୍ର ଗ୍ରହଣ କରେ । ହୋ, ସା

ପୁତ୍ରେଶେ ସ୍ୱଗୃହେଶସ୍ଥେ ଧର୍ମେଶେ କର୍ମରାଶିଗେ ।
ପୁତ୍ରେ ସୂର୍ଯ୍ୟଜଦୃଷ୍ଟେ ତୁ ଦତ୍ତପୁତ୍ରା ଭବନ୍ତି ହି ॥

ପଞ୍ଚମାଧିପ ନବମରେ, ନବମାଧିପ ଦଶମରେ ଥିଲେ ଓ ପଞ୍ଚମ ସ୍ଥାନକୁ ଶନି ଦେଖୁଥିଲେ ଜାତକ ଦତ୍ତପୁତ୍ରମାନଙ୍କୁ ଗ୍ରହଣ କରେ ।

ପୁତ୍ରାଧିପେ ରବୌ ଲଗ୍ନେ ପୁତ୍ରସ୍ଥୌ ଶନିସୋମଜୌ ।
ପୁତ୍ରାଧିପେ ବଳଯୁତେ ଦତ୍ତପୁତ୍ରାତ୍ ସୁଖଂ ଭବେତ୍ ।

ମେଷ ଲଗ୍ନ ହୋଇଥିବ, ଲଗ୍ନରେ ରବି ଥିବେ, ସିଂହରେ ଶନି ଓ ବୁଧ ଥିଲେ ଜାତକ ଦତ୍ତପୁତ୍ରଠାରୁ ସୁଖଲାଭ କରେ ।

## ବ୍ରହ୍ମଶାପହେତୁକ ସନ୍ତାନନାଶଃ

ଗୁରୁକ୍ଷେତ୍ରେ ଯଦା ଚନ୍ଦ୍ରଃ ପୁତ୍ରେ ଜୀବାରଭାନୁଜାଃ ।
ଧର୍ମସ୍ଥାନାଧିପେ ନାଶେ ବ୍ରହ୍ମଶାପାତ୍ ସୁତକ୍ଷୟଃ ॥

ମୀନ ବା ଧନୁରେ ଚନ୍ଦ୍ର, ପଞ୍ଚମରେ ବୃହସ୍ପତି, ମଙ୍ଗଳ ଓ ଶନି ଓ ନବମାଧିପତି ଅଷ୍ଟମରେ ଥିଲେ ବ୍ରହ୍ମଶାପହେତୁକ ସନ୍ତାନ ନାଶ ହୁଅନ୍ତି ।

ପୁତ୍ରସ୍ଥାନାଧିପେ ଜୀବେ ରନ୍ଧ୍ରେ ପାପସମନ୍ୱିତେ ।
ପୁତ୍ରେଶାବର୍କଚନ୍ଦ୍ରୌ ବା ବ୍ରହ୍ମଶାପାତ୍ ସୁତକ୍ଷୟଃ ॥

ବୃହସ୍ପତି, ଚନ୍ଦ୍ର, କିମ୍ବା ରବି ପଞ୍ଚମ ସ୍ଥାନାଧିପତି ହୋଇ ଅଷ୍ଟମରେ ପାପଯୁକ୍ତ ହୋଇ ରହିଥିଲେ ବ୍ରହ୍ମଶାପହେତୁ ସନ୍ତାନ ନାଶ ହୁଅନ୍ତି ।

ଗ୍ରନ୍ଥାନ୍ତରେ :—ବୃହସ୍ପତି ପଞ୍ଚମରେ ଥାଇ ଷଷ୍ଠାଧିପ କର୍ତ୍ତୃକ ଦୃଷ୍ଟ ହେଉଥିଲେ ବା ତା ସହିତରେ ଥିଲେ ବ୍ରହ୍ମଶାପରୁ ସନ୍ତାନ ନାଶ ହେବ ।

## ପିତୃ ମାତୃ ଶାପହେତୁକ ସନ୍ତାନକ୍ଷୟଃ

ବ୍ୟୟଶେ ଲଗ୍ନଭବସ୍ଥେ ରନ୍ଧ୍ରେଶେ ପୁତ୍ରସଂସ୍ଥିତେ ।
ପିତୃସ୍ଥାନାଧିପେ ରନ୍ଧ୍ରେ ପିତୃଶାପାତ୍ ସୁତକ୍ଷୟଃ ॥

ବ୍ୟୟାଧିପତି ଲଗ୍ନରେ, ଅଷ୍ଟମ ସ୍ଥାନାଧିପ ପଞ୍ଚମରେ ଓ ଦଶମାଧିପ ଅଷ୍ଟମରେ ଥିଲେ ପିତୃଶାପହେତୁ ସନ୍ତାନ ନାଶ ହୁଅନ୍ତି ।

ନାଥସ୍ଥାନଗତେ ଜୀବେ କୁଜସଙ୍ଗସମନ୍ୱିତେ ।
ପୁତ୍ରସ୍ଥାନେ ମନ୍ଦଚନ୍ଦ୍ରୌ ମାତୃଶାପାତ୍ ସୁତକ୍ଷୟଃ ।

ବୃହସ୍ପତି ଅଷ୍ଟମରେ ମଙ୍ଗଳ ଓ ରାହୁ ସହିତରେ ଥିଲେ, ପଞ୍ଚମରେ ଚନ୍ଦ୍ର ଓ ଶନି ଥିଲେ ମାତୃଶାପ ହେତୁ ସନ୍ତାନ ନାଶ ହୁଏ ।

## ସନ୍ତାନପ୍ରାପ୍ତି ନିମିତ୍ତ ପ୍ରାୟଶ୍ଚିତ୍ତଂ

ତତ୍ପ୍ରାପ୍ତିର୍ଧର୍ମମୂଳା ତଦନୁ ବୁଧକବୀ ଶଙ୍କରସ୍ୟାଭିଷେକ—
ଶ୍ଚନ୍ଦ୍ରଶ୍ଚେତ୍ତଦ୍ୱଦେବ ବିଧିବପତିଗୁରୁର୍ମିତ୍ରସନ୍ତୌଷଧୀନାଂ ।
ସିଦ୍ଧ୍ୟାମନ୍ଦାରସୂର୍ଯ୍ୟା ଯଦି ଶିଖୀତମସୀ ଚେତ୍ ଙ୍ଗଣେଶପୂଜା
କାର୍ଯ୍ୟାମ୍ନାୟୋକ୍ତିଶକ୍ତ୍ୟା ବୁଧଗୁରୁକବୟଃ କ୍ଷିପ୍ରମେବାପି ସିଦ୍ଧିଃ ॥

ସନ୍ତାନହୀନ ବ୍ୟକ୍ତି ସନ୍ତାନଲାଭ ନିମିତ୍ତ ସମସ୍ତ ପ୍ରକାର ଧର୍ମକାର୍ଯ୍ୟ କରିବା ବିଧେୟ । ବୁଧ, ଶୁକ୍ର, ଚନ୍ଦ୍ର ଏମାନଙ୍କ ମଧ୍ୟରୁ କୌଣସି ଗ୍ରହ ସନ୍ତାନଲାଭର ପ୍ରତିବନ୍ଧକ ହେଲେ ସେମାନଙ୍କ ଶାନ୍ତି ନିମନ୍ତେ ରୁଦ୍ରାଭିଷେକାଦି କର୍ମ କରଣୀୟ । ବୃହସ୍ପତି ପ୍ରତିବନ୍ଧକ ହେଲେ ସନ୍ତାନ-ଗୋପାଳମନ୍ତ୍ରାଦି ଜପ କରିବା ବିଧି । ଶନି, ମଙ୍ଗଳ, ରବି, ରାହୁ ବା କେତୁ ଏମାନଙ୍କ ମଧ୍ୟରୁ କୌଣସି ଗ୍ରହ ପ୍ରତିବନ୍ଧକ ହେଲେ ସ୍ନାନ, ପୁରଶ୍ଚରଣ ନିୟମାନୁଯାୟୀ କୁଳଦେବପୂଜା, ସଦ୍‌ଗ୍ରନ୍ଥ ହରିବଂଶାଦି ପାଠ-ଦ୍ୱାରା ସନ୍ତାନଲାଭ ହୁଏ ।

## ଶାପପ୍ରତୀକାର ଉପାୟଃ

ତସ୍ୟ ଦୋଷସ୍ୟ ଶାନ୍ତ୍ୟର୍ଥଂ କୁର୍ଯ୍ୟାଚାନ୍ଦ୍ରାୟଣଂ ନରଃ ।
ବ୍ରହ୍ମକୂର୍ଚ୍ଚଦ୍ୱୟଂ କୃତ୍ୱା ଧେନୁଂ ଦଦ୍ୟାତ୍ ସଦକ୍ଷିଣାଂ ॥
ପଞ୍ଚରତ୍ନାନି ଦେୟାନି ସୁବର୍ଣ୍ଣେନ ସମନ୍ୱିତଂ ।
ଅନ୍ନଦାନଂ ତତଃ କୁର୍ଯ୍ୟାଦୟୁତଂ ବା ସହସ୍ରକଂ ।

ଏବଂ କୃତେ ତୁ ସତ୍ପୁତ୍ରଂ ଲଭତେ ନାତ୍ର ସଂଶୟଃ ।
ମୁକ୍ତଶାପୋ ଢଣୁଦୋଷୋ ସ ପୁମାନ୍ ସୁଖମଶ୍ନୁତେ । ଶା, ସ,

ବ୍ରହ୍ମଶାପ ପିତୃଶାପ ଅଥବା ମାତୃଶାପ ହେତୁ ସନ୍ତାନନାଶ ହେଉଥିଲେ ଅଥବା ଅନ୍ୟାନ୍ୟ ନେ ଦୋଷରୁ ହେଉଥିଲେ ସୁବା ଚାନ୍ଦ୍ରାୟଣାଦି ବ୍ରତ, ଉକ୍ତୋକ୍ତ ବ୍ରହ୍ମକୂର୍ଚ୍ଚ କଟ଼ ଦକ୍ଷିଣା ସହ ଧେନୁଦାନ, ସୁବର୍ଣ୍ଣସହ ପଞ୍ଚରତ୍ନଦାନ, ଅଯୁତେ ବ୍ୟକ୍ତି ଅଥବା ସହସ୍ରେ ବ୍ୟକ୍ତିଙ୍କୁ ଅନ୍ନଦାନ କଲେ ଜାତକର ସମସ୍ତ ପାପ ଖଣ୍ଡନ ହୋଇ ସତ୍ପୁତ୍ରଲାଭ ହୁଏ । ଏହି ସମସ୍ତ ଶାନ୍ତି ନିଜର ଶକ୍ତ୍ୟନୁସାରୀ କରିବେ ।

## ଷଷ୍ଠଭାବ ବିଚାରଃ

### ଷଷ୍ଠସ୍ଥ ଗ୍ରହଫଳଂ

ଅରିଗୃହଗତଭାନୌ ଯୋଗଶୀଳୋ ମତିଜ୍ଞଃ
ନିଜକୁଳହିତକାରୀ ଜ୍ଞାତିବର୍ଗପ୍ରମୋଦୀ ।
କୃଶତନୁଗୃହମେଧୀ ଶୂରମୂର୍ତ୍ତିର୍ବିଳାସୀ
ଭବତି ବିପୁଳତେଜାଃ କୂର୍ମପୃଷ୍ଠୋପମାଙ୍ଗଃ ॥

ରବି ଷଷ୍ଠରେ ଥିଲେ ଜାତକ ଯୋଗଶୀଳ, ବୁଦ୍ଧିମାନ୍, ସ୍ୱଜନହିତ-ସାଧକ, ଜ୍ଞାତିପ୍ରମୋଦୀ, କ୍ଷୀଣାଙ୍ଗ, ଗୃହୀ, ମନୋଜ୍ଞବେଶ, ବିଳାସୀ, ତେଜସ୍ୱୀ ଓ କୂର୍ମଦେହୀ ହୁଏ ।

ଷଷ୍ଠେ ବିଧୁର୍ମୂର୍ତ୍ତିଖଳୈରପି ଦୃଷ୍ଟଃ, ପାପାନ୍ୱିତଃ ପାପଗୃହେ ଚ ପାପଃ ।
ଶିଶୁଂ ନିହନ୍ତ୍ୟାଶୁ ପରିପୂର୍ଣ୍ଣଦେହଃ ଶୁଭେକ୍ଷିତୋ ଜୀବଗୃହସ୍ଥିତୋଽପି ॥

ଷଷ୍ଠସ୍ଥ ଚନ୍ଦ୍ର ପାପଯୁକ୍ତ ହେଲେ କିମ୍ବା ପାପଦୃଷ୍ଟ ହେଲେ, ପାପ ଗ୍ରହର କ୍ଷେତ୍ରରେ ଥିଲେ ବା ନିଜେ ପାପ ହୋଇଥିଲେ ଶତ୍ରୁ ବୃଦ୍ଧି ଓ ମୃତ୍ୟୁତୁଲ୍ୟ ଫଳ ପ୍ରଦାନ କରେ । ଚନ୍ଦ୍ର ପୂର୍ଣ୍ଣ ହୋଇଥିଲେ, ଶୁଭଦୃଷ୍ଟରେ ଥିଲେ କିମ୍ବା ଧନୁ ମୀନସ୍ଥ ହେଲେ ଶତ୍ରୁମାନଙ୍କୁ ନାଶ କରେ ।

ରିପୁଗୃହଗତଭୌମେ ମାନବଃ ସୌଖ୍ୟଭାଗୀ
ସୁତଧନସୁରପୂର୍ଣ୍ଣସ୍ତୁଙ୍ଗଗେ ସ୍ୱଗୃହେ ବା ।
ରିପୁଗଣପରିଦୃଷ୍ଟେ ନୀଚଗେ ଭୂମିପୁତ୍ରେ ।
ଭବତି ବିକଳମୂର୍ତ୍ତିଃ କ୍ଷୁଧିତଃ କ୍ରୂରକର୍ମା ॥

ମଙ୍ଗଳ ଷଷ୍ଠରେ ଥିବେ ଓ ଏହି ସ୍ଥାନ ଯଦି ମେଷ, ବୃଶ୍ଚିକ ବା ମକର ହୋଇଥିବ; ତେବେ ଜାତକ ଧନ, ସୌଖ୍ୟ ଓ ପୁତ୍ରାଦି ଯୁକ୍ତ ହୁଏ । ମଙ୍ଗଳ ଅନ୍ୟରାଶିସ୍ଥ ହୋଇ ଯଦି ଶତ୍ରୁଦୃଷ୍ଟ ହୁଏ ବା କର୍କଟରେ ଥାଏ, ତେବେ ଜାତକ ବିକଳାଙ୍ଗ, କ୍ଷୁଧିତ ଓ କ୍ରୂରକର୍ମନିରତ ହୁଏ ।

ଶତ୍ରୂନ୍ ବିଜୟତେ ସୌମ୍ୟଃ ସୌମ୍ୟଦୃଷ୍ଟୋଽଥବା ବୁଧଃ ।
ନୀଚଃ ପାପଶ୍ଚ ବକ୍ରୀ ଚ ଷଷ୍ଠର୍କ୍ଷେ ରିପୁବୃଦ୍ଧିକୃତ୍ ॥

ବୁଧ ଷଷ୍ଠସ୍ଥ ହୋଇ ଶୁଭଦୃଷ୍ଟ ହେଲେ ଜାତକ ଶତ୍ରୁବିଜୟୀ ହୁଏ । ବୁଧ ନୀଚଗୃହସ୍ଥ, ପାପଯୁକ୍ତ କିମ୍ବା ନୀଚସ୍ଥ ହେଲେ କିମ୍ବା ବକ୍ର ହୋଇଥିଲେ ଶତ୍ରୁକର୍ତ୍ତୃକ ଜାତକ ଉତ୍ପୀଡ଼ିତ ହୁଏ ।

କରିହୟୈଃ କୃତସଙ୍ଗରସାଗରେ, ଜୟତି ଶତ୍ରୁକୁଳଂ ରିପୁଗେ ଗୁରୌ ।
ରିପୁଗୃହେ ଯଦି ବକ୍ରଗତୋ ଗୁରୁ, ରିପୁକୁଳାଦ୍ଭୟମାତନୁତେଽରିଗଃ ॥

ବୃହସ୍ପତି ଷଷ୍ଠରେ ଥିଲେ ମାନବ ହସ୍ତୀ ଅଶ୍ୱାଦି ବ୍ୟବହୃତ ଯୁଦ୍ଧକ୍ଷେତ୍ରରେ ଜୟ ଲାଭ କରେ । ଏହି ଷଷ୍ଠସ୍ଥ ବୃହସ୍ପତି ଯଦି ଶତ୍ରୁ-

ଗୃହଗତ ବା ବକ୍ର ହୋଇଥାଏ, ତେବେ ଶତ୍ରୁକର୍ତ୍ତୃକ ଜାତକ ଉତ୍ପୀଡ଼ିତ ହୁଏ ।

**ଭବତି ଶତ୍ରୁକୁଳାଦ୍ଭୟପୀଡ଼ିତୋ ରିପୁଗୃହେ ଭୃଗୁଜେଽସ୍ତଗତେ ନରଃ ।**
**ଜୟତି ଶତ୍ରୁବଲଂ ନନୁ ତୁଙ୍ଗଗେ ଭୃଗୁସୁତେ ସ୍ୱଗୃହେ ନନୁ ଷଷ୍ଠଗେ ॥**

ଅସ୍ତମିତ ଶୁକ୍ର ଷଷ୍ଠସ୍ଥାନରେ ଥିଲେ ଜାତକ ଶତ୍ରୁଭୟରେ ପୀଡ଼ିତ ହୁଏ । କିନ୍ତୁ ଏହି ଶୁକ୍ର ଉଚ୍ଚରେ ବା ସ୍ୱଗୃହରେ ଥିଲେ ଜାତକ ବଳଶାଳୀ ହୋଇ ଶତ୍ରୁନାଶ କରେ ।

ଜାତେ ରବୌ ଜାତଜନା ଭୟନ୍ତି ଷଷ୍ଠେ ଶନୈଶ୍ଚରେ ମାନବାନାଂ ।
ଅନ୍ୟତ୍ର ଶତ୍ରୁଂ ନିହନ୍ତି ତୁଙ୍ଗୀ ପୂର୍ଣ୍ଣାର୍ଥକାମାନ୍ ପ୍ରଦଦାତି ଶେଷେ ॥

ଶନି ଷଷ୍ଠସ୍ଥ ହୋଇ ନୀଚ ହେଲେ ନୀଚ ଲୋକଠାରୁ ଭୟପ୍ରାପ୍ତି କରାଏ । ଉଚ୍ଚରେ ଥିଲେ ଶତ୍ରୁନାଶ କରେ ଓ ଅନ୍ୟରାଶିସ୍ଥ ହେଲେ ଉଦ୍ୟୋଗସିଦ୍ଧି କରାଇ ଧନ ଦିଏ ।

ଷଷ୍ଠେ ତମଃ ଶତ୍ରୁବିନାଶକାରୀ ଦଦାତି ପୁତ୍ରାଂଶ୍ଚ ଧନାନ୍ନ ଭୋଗାନ୍ ।
ଅନ୍ୟଗ୍ରହୋତ୍ଥାଂଶ୍ଚ ହନ୍ତି ଦୁଷ୍ଟାନ୍ ପ୍ରଧାନଯୋଷିତ୍ଭରଣଂ କରୋତି ॥

ରାହୁ ଷଷ୍ଠରେ ଥିଲେ ଶତ୍ରୁନାଶ, ପୁତ୍ରଲାଭ, ଧନଲାଭ, ଭୋଗ ଓ ଅନ୍ୟ ଗ୍ରହକୃତ ରିଷ୍ଟ ମଧ୍ୟ ଖଣ୍ଡନ ହୁଏ । ସେହି ବ୍ୟକ୍ତିର ସ୍ତ୍ରୀ ବନ୍ଧ୍ୟା କଷ୍ଟକର ।

ତମଃ ପୃଷ୍ଠଭାଗଗତେ ଷଷ୍ଠଭାବେ,
ଭବେନ୍ମାତୁଲାନ୍ମାନଭଙ୍ଗୋ ରିପୂଣାଂ ।
ଭବେଦ୍ଧର୍ମଲବ୍ଧଂ ସୁଖଂ ଲଭମେତି,
ଶରୀରେ ସଦାଽଽମତ୍ୱଂ ବ୍ୟାଧିନାଶଂ ॥

କେତୁ ଷଷ୍ଠରେ ଥିଲେ ମାତୁଳ ଓ ଶତ୍ରୁହେତୁ ମାନଭଙ୍ଗ, ଧର୍ମ ଓ ସୁଖଲାଭ ହୁଏ । ଶରୀର ନୀରୋଗ ହୁଏ ।

## ଷଷ୍ଠାଧିପ ସ୍ଥିତିଫଳଂ

ଷଷ୍ଠ ସ୍ଥାନାଧିପତି ଲଗ୍ନରେ ଥିଲେ ସେ ବ୍ୟକ୍ତି ନାନା କ୍ଳେଶ ଭୋଗ କରେ ଓ ଶତ୍ରୁହନ୍ତା ହୁଏ । ଷଷ୍ଠ ସ୍ଥାନାଧିପତି ଦ୍ୱିତୀୟରେ ଥିଲେ ଜାତକ ଦୁଷ୍ଟ ହୁଏ । ସ୍ୱହେତୁ ଧନଲାଭ କରେ, ଶତ୍ରୁହେତୁ ତାହାର ବହୁତ ଧନବ୍ୟୟ ହୁଏ । ଜା· ଅ.

ଷଷ୍ଠ ସ୍ଥାନାଧିପତି ତୃତୀୟରେ ଥିଲେ ଜାତକର ଭ୍ରାତା ରହନ୍ତି ନାହିଁ । ସେ ବ୍ୟକ୍ତି ଆତ୍ମୀୟଙ୍କୁ କଷ୍ଟ ଦିଏ । ଶୁଭ ଦୃଷ୍ଟ ହେଲେ ଶୁଭଫଳ ଓ ତୃତୀୟାଧିପ ଷଷ୍ଠାଧିପର ତାତ୍କାଳିକ ମିତ୍ର ହେଲେ ଶୁଭ ।

ଷଷ୍ଠ ସ୍ଥାନାଧିପତି ଚତୁର୍ଥରେ ଥିଲେ ଚତୁଷ୍ପଦ ବିନାଶ ଓ ଗୃହକଳହ ହୁଏ ।

ଷଷ୍ଠ ସ୍ଥାନାଧିପତି ପଞ୍ଚମରେ ଥିଲେ ନାନାପ୍ରକାର ପୀଡ଼ା ଓ ସନ୍ତାନହାନି ହୁଏ ।

ଷଷ୍ଠାଧିପ ଷଷ୍ଠରେ ଥିଲେ ଶତ୍ରୁ ରହନ୍ତି ନାହିଁ ଶତ୍ରୁମାନେ କଷ୍ଟ ଜାତ କରି ପାରନ୍ତି ନାହିଁ ।

ଷଷ୍ଠାଧିପ ସପ୍ତମରେ ଥିଲେ ଜାତକର ସ୍ତ୍ରୀ ରୁଗ୍ଣା ହୁଏ । ବାଣିଜ୍ୟ ହେତୁ ଯଶ ହୁଏ । ଷଷ୍ଠାଧିପ ଅଷ୍ଟମରେ ଥିଲେ ବିପଦସୂଚକ ଓ ଦଶାନ୍ତର୍ଦ୍ଦଶାରେ ମାରାତ୍ମକ ପୀଡ଼ା କରାଏ । ଷଷ୍ଠାଧିପ ଅଷ୍ଟମରେ ଥିଲେ ଭାଗ୍ୟବିନାଶ ଓ ଶତ୍ରୁବୃଦ୍ଧି ହୁଏ ।

ଷଷ୍ଠାଧିପ ଦଶମରେ ଥିଲେ ହୃଦ୍ରୋଗାଦି ଭଙ୍ଗ ହୁଏ । ଶତ୍ରୁମାନେ ତାହାଙ୍କୁ ଡ଼ରନ୍ତି । ଷଷ୍ଠାଧିପ ଏକାଦଶରେ ଥିଲେ ଭ୍ରାତା ରଖାଏ ନାହିଁ, ଥିଲେ ବୈରଭାବରେ ରଖେ । ଷଷ୍ଠାଧିପ ଦ୍ୱାଦଶରେ ଥିଲେ ସେ ବ୍ୟକ୍ତି ଅପବ୍ୟୟ କରେ ଓ ଦନ୍ତରୋଗରେ ପୀଡ଼ିତ ହୁଏ ।

ଲଗ୍ନାଧିପତି ସହିତ କମ୍ବା କରେ ଷଷ୍ଠାଧିପତି ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥାଏ ଏବଂ ଯଦି ପାପଦୃଷ୍ଟ ହୋଇଥାଏ ତେବେ ସେହି ଗ୍ରହର ଅଙ୍ଗବିଭାଗରେ ବ୍ରଣାଦି ପୀଡ଼ା ଜନ୍ମି ପାରେ । ପାଠକଗଣ ଗ୍ରହକାରକରୁ କାହାର କ ରୋଗ ଓ କେଉଁ ଅଙ୍ଗରେ ସେହି ଗ୍ରହର ଅଧିକାର ଦେଖି ଫଳ କହିବେ । ଯେଉଁ ଅଙ୍ଗରେ ଯେଉଁ ଗ୍ରହର ଅଧିକାର ସେହି ଗ୍ରହର ଅଶୁଭରେ ତାହାର କାରକତ୍ୱ ପୀଡ଼ା ସେହି ଅଙ୍ଗରେ ହୋଇଥାଏ ।



## ସପ୍ତମଭାବ ବିଚାରଃ

### ସପ୍ତମସ୍ଥ ଗ୍ରହସ୍ଥିତ ଫଳଂ

ରବିଗଭବନସଂସ୍ଥେ ଭାସ୍କରେ ସ୍ତ୍ରୀବିନାଶଃ
ନ ଭବତି ସୁଖଭାଗୀ ଚଞ୍ଚଳଃ ପାପଶୀଳଃ ।
ଉଦରସମଶରୀରୋ ନାତି ଦୀର୍ଘୋ ନ ଖର୍ବଃ
କପିଳନୟନରୂପୋ ପିଙ୍ଗକେଶୀ କୁମୂର୍ତ୍ତିଃ ॥

ରବି ସପ୍ତମ ସ୍ଥାନରେ ଥିଲେ ଜାତକର ସ୍ତ୍ରୀ ବିନାଶ ହୁଏ । ସେ କେବେହେଁ ସୁଖଭାଗୀ ହୋଇ ନ ପାରେ । ଏହି ବ୍ୟକ୍ତି ଚଞ୍ଚଳ, ପାପଶୀଳ, କୁକ୍ଷିଦେଶାନୁରୂପ ସୁନ୍ଦରଶରୀର, ମଧ୍ୟମ ତନୁବିଶିଷ୍ଟ, କପିଳ

ବାଳମାରହୃତ ଚକ୍ଷୁ, ପିଙ୍ଗଳବର୍ଣ୍ଣ କେଶଯୁକ୍ତ ଓ କୁତ୍ସିତ ବେଶଧାରୀ ହୁଏ ।

ବିମଳବପୁଷି ଚନ୍ଦ୍ରେ ସପ୍ତମସ୍ଥେ ମନୁଷ୍ୟଃ,
ରୁଚିର ଯୁବତୀନାଥଃ କାଞ୍ଚନାଢ୍ୟଃ ମୃଦଙ୍ଗୀ ।
ଷଶିନ କୃଷଣଶରୀରେ ପାପଗେ ପାପଦୃଷ୍ଟେ ।
ନ ଭବତି ସୁଖଭାଗୀ ରୋଗିଣୀ ସ୍ତ୍ରୀ ପତିଶ୍ଚ ॥

ସପ୍ତମରେ ପୂର୍ଣ୍ଣ ଚନ୍ଦ୍ର ଥିଲେ ଜାତକ ମନୋରମ ରମଣୀର ପାଣିଗ୍ରହଣ କରେ । ସ୍ୱର୍ଣ୍ଣାଦି ଲାଭକରେ ଓ ସୁନ୍ଦର ବେଶଧାରୀ ହୁଏ । ଚନ୍ଦ୍ର କ୍ଷୀଣ ହୋଇ ପାପଗୃହରେ ରହିଲେ ବା ପାପଯୁକ୍ତ ହେଲେ ଜାତକ ଅସୁଖୀ ଓ ରୁଗ୍ଣା ସ୍ତ୍ରୀର ପାଣିଗ୍ରହଣ କରେ ।

ମୃଦଗୃହଗତଭୌମୋ ନୀଚସଂସ୍ଥୋଽରିଗେହୀ
ଯୁବତୀମରଣଦୁଃଖଂ ଯଚ୍ଛତେ ମାନବାନାଂ ।
ନିଜଗୃହକରଗେହେ ସ୍ୱନ୍ୟପତ୍ନୀଷ୍ୱ ଦତ୍ତେ
ଚପଳମତିବିରୂପାଂ ପାପଶୀଳାଂ କୁଚେଲାଂ ॥

ମଙ୍ଗଳ ସପ୍ତମସ୍ଥ ହୋଇ ନୀଚ ବା ଶତ୍ରୁଗୃହଗ ହେଲେ ଜାତକର ସ୍ତ୍ରୀର ମୃତ୍ୟୁ ଘଟେ । ଏ ସ୍ଥାନ ନିଜଗୃହ, ସ୍ୱକ୍ଷେତ୍ର ବା ଉଚ୍ଚ ସ୍ଥାନ ହେଲେ ଅନ୍ୟ ପତ୍ନୀ ଲାଭ ହୁଏ । ସେ ସ୍ତ୍ରୀ ଚଞ୍ଚଳା, କୁତ୍ସିତରୂପା, ଅଶୋଭନଚରିତା ଓ ମଳିନା ହୁଏ ।

ଯୁବତୀମନ୍ଦିରଗେ ଶଶିନନ୍ଦନେ
ଭବତି ବନ୍ଧ୍ୟପତିର୍ଯଦି ନୀଚଗେ ।
ରଘୁକୁଳପ୍ରମଦାପତିବଲ୍ଲଭଃ
ସ ତୁ ଭବେଦ୍ଭୁଗେ ଶଶୀନନ୍ଦନେ ॥

ବୁଧ ସପ୍ତମରେ ନୀଚ ହୋଇ ଥିଲେ, ସେ ବ୍ୟକ୍ତିର ସ୍ତ୍ରୀ ବନ୍ଧ୍ୟା ହୁଏ । ଏହି ବୁଧ ଅନ୍ୟ ଗୃହରେ ଥିଲେ ଜାତକ ଶତ୍ରୁବଂଶୀୟା ସ୍ତ୍ରୀର ପାଣି ଗ୍ରହଣ କରେ ।

ଗୌରାଙ୍ଗୀଂ ସୁରୂପାଂ ସ୍ଫୁଟପଙ୍କଜାକ୍ଷୀଂ
ଦଦ୍ୟାଚ୍ଛୁଭର୍କ୍ଷେ ଶୁଭଦୃଷ୍ଟିଯୋଗଃ ।
ଚିରାୟୁଷଂ ଭୋଗଯୁତଂ ନରଞ୍ଚ
କୁର୍ଯ୍ୟାଦ୍ ଗୁରୁର୍ଦର୍ପକଗେହବାସୀ ॥

ବୃହସ୍ପତି ସପ୍ତମସ୍ଥ ହୋଇ ଶୁଭ ଗ୍ରହର ଗୃହରେ ରହିଲେ ଓ ଶୁଭ ଦୃଷ୍ଟିରେ ଥିଲେ ଜାତକ ଅତ୍ୟନ୍ତ ସୁନ୍ଦରୀ ସ୍ତ୍ରୀ ଲାଭ କରେ । ସେହି ବ୍ୟକ୍ତି ଦୀର୍ଘାୟୁ, ଭୋଗଯୁକ୍ତ ଓ ଉତ୍ତମ ଗୃହରେ ବାସ କରେ । ଅନ୍ୟ ସ୍ଥାନଗତ ହେଲେ ସାମାନ୍ୟ ଶୁଭ ଫଳ ପ୍ରଦାନ କରେ ।

ଯୁବତିମନ୍ଦିରଗେ ଚ ସିତେ ନରୋ
ବହୁଧନେନ ସୁତେନ ସମନ୍ୱିତଃ ।
ଅମଲକାମବଚପ୍ରମଦାପତି—
ର୍ଭବତି ଗୁରୁବପୂର୍ମୁଦିତଃ ସୁଖୀ ॥

ଶୁକ୍ର ସପ୍ତମରେ ଥିଲେ ଜାତକ ଧନପୁତ୍ରାଦିଯୁକ୍ତ, ଉତ୍ତମବଂଶୋଦ୍ଭବା ସ୍ତ୍ରୀଯୁକ୍ତ, ସୁନ୍ଦର ଶରୀରଧାରୀ, ଆନନ୍ଦୀ ଓ ସୁଖୀ ହୁଏ ।

ସଦାମୟବ୍ୟସ୍ତୋ ହତଦହନ କାମଃ, ପାପର୍କ୍ଷଗାମୀ ଖଳୁ ମନ୍ଦଗାମୀ ।
ପୁନର୍ଭୁବଂ ବାପ୍ୟଥବା କୁରୂପାଂ, ଶୁଭେକ୍ଷିତଶ୍ଚେନ୍ନ ସୁହୃଦ୍‌ଗୃହସ୍ଥଃ ॥

ଶନି ସପ୍ତମସ୍ଥ ହୋଇ ପାପକ୍ଷେତ୍ରଗତ ବା ବକ୍ର ହେଲେ ସେହି ବ୍ୟକ୍ତିର ସ୍ତ୍ରୀ ବଞ୍ଚି ପାରେ ନାହିଁ । ଏହି ସପ୍ତମସ୍ଥ ଶନି ଶୁଭଦୃଷ୍ଟ,

ଜୃଚସ୍ଥ ବା ମିତ୍ରଗୃହସ୍ଥ ହେଲେ ବାଗ୍‌ଦତ୍ତା ବା ବିବାହିତା କନ୍ୟାର ପାଣି ଗ୍ରହଣ କରେ ।

ଜାୟାସ୍ତଗଶ୍ଚନ୍ଦ୍ରବିନିହନ୍ତ ନାଶଂ ସଦା ଚ ଛନ୍ନାଂ କୁମତିଂ ସରୋଗାଂ ।
ପାପାନୁରକ୍ତାଂ କୁଲଟାଂ କୁଶୀଳାଂ ସୁତାର୍ଥହୀନାଂ ପ୍ରମଦାନ୍ତୁ ଶେଷେ ॥

ରାହୁ ସପ୍ତମରେ ଥିଲେ ଜାତକର ପତ୍ନୀବିୟୋଗ ହୁଏ । ସ୍ତ୍ରୀ ଥିଲେ ଛନ୍ନସ୍ତ୍ରୀ, କୁବୁଦ୍ଧିଯୁକ୍ତା, ରୋଗାନ୍ୱିତା, ପାପକାର୍ଯ୍ୟାନୁରକ୍ତା, କୁଳଟା କୁତ୍ସିତସ୍ୱଭାବା ଓ ଧନପୁତ୍ରାର୍ଥହୀନା ହୁଏ ।

ପାପୈର୍ଦୃଷ୍ଟୋ ଯୁତୋ ବାପି ରବିଚନ୍ଦ୍ରବିଲୋକିତଃ ।
ଦାରନିହନ୍ତି ସ୍ୱର୍ଭାନୁର୍ନ ଦୋଷଂ ଶୁଭଦୃଷ୍ଟିତଃ ॥

ସପ୍ତମସ୍ଥ ରାହୁ ପାପଦୃଷ୍ଟ, ପାପଯୁକ୍ତ ଓ ରବିଚନ୍ଦ୍ରଙ୍କ ଦ୍ୱାରା ଦୃଷ୍ଟ ହେଲେ ଜାତକର ସ୍ତ୍ରୀ ମରେ; କିନ୍ତୁ ଏହି ସପ୍ତମସ୍ଥ ରାହୁ ଶୁଭଦୃଷ୍ଟ ହେଲେ କିଛି ଦୋଷ ରହେ ନାହିଁ ।

ଶିଖୀ ସପ୍ତମେ ଭୂୟସୀ ମାର୍ଗଚିନ୍ତା
ନିବୃତ୍ତିଃ ସୁନାଶୋଽଥବା ବାରିଭୀତଃ ।
ଭବେନ୍ନୂ କୀଟଗଃ ସର୍ବଦା ଲାଭକାରୀ,
କଳତ୍ରାଦିପୀଡ଼ା ବ୍ୟୟୋ ବ୍ୟଗ୍ରତା ଚ ॥

କେତୁ ସପ୍ତମରେ ଥିଲେ ଜାତକ ବୃଥା ଭ୍ରମଣ କରେ । ତାହାର ସଞ୍ଚିତ ଧନ ବୃଥା ବ୍ୟୟ ହୁଏ । ସ୍ତ୍ରୀ ପୁତ୍ରାଦିର ପୀଡ଼ା ହୁଏ । ଚିତ୍ତ ଅସ୍ଥିର ହୁଏ । ଏହି କେତୁ ବୃଶ୍ଚିକ ରାଶିରେ ଥିଲେ ସର୍ବଦା ଧନଲାଭ ହୁଏ ।

## ସପ୍ତମସ୍ଥାନାଧିପତି ସ୍ଥିତଫଳଂ

ସ୍ତ୍ରୀଶବାଧିପତି ଷଡ଼ାଦଷ୍ଟ ସ୍ଥିତୋ ଜାୟା ଭବେଦ୍ ରୋଗିଣୀ ।
ଭର୍ତ୍ତ୍ୟା ସ୍ୟାଦ୍‌ବ୍ୟଭିଚାରିଣୀ ନିଜଗୃହେ ପାପାନ୍ୱିତୌ ସ୍ତ୍ରୀଗ୍ରହେ ॥

ସପ୍ତମାଧିପତି ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ ଜାତକର ସ୍ତ୍ରୀ ରୁଗ୍ଣା ହୁଏ । ଚନ୍ଦ୍ର ଓ ଶୁକ୍ର ନିଜ ନିଜ ଗୃହରେ ଥାଇ ପାପଯୁକ୍ତ ହେଲେ ଜାତକର ସ୍ତ୍ରୀ ବ୍ୟଭିଚାରିଣୀ ହୁଏ । ୧ । ପା. ହୋ.

ସପ୍ତମାଧିପତି ଲଗ୍ନରେ ଥିଲେ ସେହି ବ୍ୟକ୍ତି ଅଳ୍ପ ବୟସରେ ସୁନ୍ଦରୀ କନ୍ୟା ବିବାହ କରେ । ଲଗ୍ନ ଯଦି ଦ୍ୱାତ୍ମକ ହୁଏ ତେବେ ପ୍ରେମିକ ହୁଏ । ୨ ।

ସପ୍ତମାଧିପତି ଦ୍ୱିତୀୟରେ ଥିଲେ ଜାତକ ବିବାହ ଦ୍ୱାରା ଧନଲାଭ କରେ ଓ ବାଣିଜ୍ୟ ପାରଙ୍ଗମ ହୁଏ । ୩ ।

ସପ୍ତମାଧିପତି ତୃତୀୟରେ ଥିଲେ ଭ୍ରାତୃ ଓ ଜ୍ଞାତିମାନଙ୍କ କର୍ତ୍ତୃକ ନାନାପ୍ରକାର ଅନିଷ୍ଟ ଘଟେ । ୪ ।

ସପ୍ତମାଧିପ ଚତୁର୍ଥରେ ଥିଲେ ଜାତକ ସୁଖୀ ଓ ସ୍ତ୍ରୈଣ ହୁଏ । ୫ ।

ସପ୍ତମାଧିପ ପଞ୍ଚମରେ ଥିଲେ ବିବାହହେତୁକ ଧନଲାଭ ହୁଏ । ତାହାର କନ୍ୟାସନ୍ତତି ପ୍ରଥମେ ଜାତ ହୁଏ । ୬ ।

ସପ୍ତମାଧିପ ଷଷ୍ଠରେ ଥିଲେ ସ୍ତ୍ରୀ ରୁଗ୍‌ଣା ହୁଏ । ବ୍ୟବସାୟ ହେତୁ ଧନ ଘାତ ହୁଏ । ୭ ।

ସପ୍ତମାଧିପ ସପ୍ତମରେ ଥିଲେ ତାହା ସୌଭାଗ୍ୟସୂଚକ । ଜାତକ ଅତ୍ୟନ୍ତ କାମାର୍ତ୍ତ ହୁଏ । ୮ ।

ଅଷ୍ଟମରେ ଥିଲେ ସ୍ତ୍ରୀନାଶ ହୁଏ । ତାହାର ମତି ଅତ୍ୟନ୍ତ ଚଞ୍ଚଳ ହୋଇଥାଏ । ୯ ।

ନବମରେ ଥିଲେ ଜାତକ ଉତ୍ତମ ସ୍ତ୍ରୀ ଲାଭ କରେ ଓ ସମସ୍ତ ସୁଖ ଭୋଗ କରେ । ୧୦ ।

ଦଶମରେ ଥିଲେ ଜାତକ ଲୋକପୂଜ୍ୟ, ସୁଖୀ ଓ ମାନୀ ହୁଏ ।୧୧।

ଏକାଦଶରେ ଥିଲେ ବ୍ୟବସାୟ ଓ ବିଦ୍ୟାହେତୁକ ଧନଲାଭ ହୁଏ । ଅଳ୍ପ ବୟସରେ ବିବାହ କରେ । ୧୨ ।

ଦ୍ୱାଦଶରେ ସପ୍ତମାଧିପତି ଥିଲେ ସ୍ତ୍ରୀ ବିନାଶ ହୁଏ ।୧୩।

**ବିବାହ ବୟସ ନିର୍ଣ୍ଣୟଃ**

ଦାରେଶେ ଶୁଭରାଶିସ୍ଥେ ସ୍ୱୋଚ୍ଚ ସ୍ୱକ୍ଷେତ୍ରଗେ ଭୃଗୌ ।
ଅଷ୍ଟମେ ନବମେଽବ୍ଦେ ତୁ ବିବାହଃ ପ୍ରାୟଶୋ ଭବେତ୍ ॥

ସପ୍ତମାଧିପତି ଶୁଭ ଗ୍ରହର କ୍ଷେତ୍ରରେ ଥିଲେ, ଶୁକ୍ର ଉଚ୍ଚସ୍ଥ ବା ସ୍ୱକ୍ଷେତ୍ରସ୍ଥ ହୋଇଥିଲେ ଜାତକ ଆଠ ବା ନବର୍ଷଠାରେ ବିବାହ କରେ ।

ଲଗ୍ନାତ୍କେନ୍ଦ୍ରଗତେ ଶୁକ୍ରେ ତସ୍ମାତ୍କାମଗତେ ଶନୌ ।
ଦ୍ୱାଦଶୈକୋନବିଂଶେ ଚ ବିବାହଃ ପ୍ରାୟଶୋ ଭବେତ୍ ॥ ଜେ.ସା,

ଶୁକ୍ର ଯଦି କେନ୍ଦ୍ରରେ ଥିବେ ଓ ଶନି ତାହାଙ୍କ ସପ୍ତମରେ ଥିବେ, ତେବେ ଜାତକର ଦ୍ୱାଦଶ ବା ଊନବିଂଶ ବର୍ଷଠାରେ ବିବାହ ହୁଏ ।

କୁଟୁମ୍ବସ୍ଥାନଗେ ଶୁକ୍ରେ ଦାରେଶେ ଲାଭରାଶିଗେ ।
ଦଶମେ ଷୋଡ଼ଶାବ୍ଦେ ଚ ବିବାହଃ ପ୍ରାୟଶୋ ଭବେତ୍ ॥
ଜେ. ସା.

ଶୁକ୍ର ସପ୍ତମରେ ଥିଲେ ଓ ସପ୍ତମାଧିପତି ଏକାଦଶରେ ଥିଲେ ଜାତକର ଦଶ ବା ଷୋଡ଼ଶ ବର୍ଷଠାରେ ବିବାହ ହୁଏ ।

ଚନ୍ଦ୍ରାଦ୍ୟାମିତ୍ରଗେ ଶୁକ୍ରେ ଶୁକ୍ରାଦ୍ ଯାମିତ୍ରଗେ ଶନୌ ।
ଦ୍ୱାଦଶେ କୋନବିଂଶେ ଚ ବିବାହ ପ୍ରାୟଶୋ ଭବେତ୍ ॥

ଚନ୍ଦ୍ର ସପ୍ତମରେ ଶୁକ୍ର ଓ ଶୁକ୍ରଙ୍କ ସପ୍ତମରେ ଶନି (ଶନି ଚନ୍ଦ୍ର ଏକତ୍ର ସପ୍ତମରେ ଶୁକ୍ର) ଥିଲେ ଜାତକ ୧୨ ବର୍ଷ ବା ୧୯ ବର୍ଷରେ ବିବାହ କରେ ।

ଧନେଶେ ଲାଭରାଶିସ୍ଥେ ଲଗ୍ନେଶେ କର୍ମରାଶିଗେ ।
ଅବ୍ଦେ ପଞ୍ଚଦଶେ ପ୍ରାପ୍ତେ ବିବାହଃ ପ୍ରାୟଶୋ ଭବେତ୍ ॥

ଧନାଧିପତି ଏକାଦଶରେ ଥିଲେ, ଲଗ୍ନାଧିପତି ଦଶମରେ ଥିଲେ ଜାତକର ୧୫ ବର୍ଷଠାରେ ବିବାହ ହୁଏ ।

ଧନେଶେ ଲାଭରାଶିସ୍ଥେ ଲାଭେଶେ ଧନରାଶିଗେ ।
ଅବ୍ଦେ ତ୍ରୟୋଦଶେ ପ୍ରାପ୍ତେ ବିବାହଂ ଲଭତେ ନରଃ ॥

ଧନାଧିପତି ଏକାଦଶରେ ଏବଂ ଏକାଦଶର ଅଧିପତି ଦ୍ୱିତୀୟରେ ଥିଲେ, ଜାତକ ତ୍ରୟୋଦଶ ବର୍ଷଠାରେ ବିବାହ କରେ ।

ଚନ୍ଦ୍ରାଦ୍ୟାମିତ୍ରଗେ ଶୁକ୍ରେ ତଦୀଶେ ଭୌମସଂଯୁତେ ।
ଦ୍ୱାବିଂଶେ ସପ୍ତବିଂଶେ ଚ ବିବାହଃ ପ୍ରାୟଶୋ ଭବେତ୍ ॥

ଦ୍ୱିତୀୟରେ ଶୁକ୍ର ଓ ଦ୍ୱିତୀୟସ୍ଥାନାଧିପ ମଙ୍ଗଳ ସଙ୍ଗରେ ଥିଲେ ଜାତକର ୨୨ ବର୍ଷଠାରେ ବା ୨୭ ବର୍ଷଠାରେ ବିବାହ ହୁଏ ।

ବିବାହର ବୟସ ନିର୍ଣ୍ଣୟ ସମ୍ବନ୍ଧେ ପାରାଶରୀ ହୋରା, କେରଳସାର ସଂଗ୍ରହ ଓ ଶମ୍ଭୁହୋରାପ୍ରଦୀପ ଗ୍ରନ୍ଥମାନଙ୍କରେ ନାନାପ୍ରକାର ପ୍ରମାଣ ଅଛି ।

ବଳୀ ସେ ସମସ୍ତ ଘଟିବା ଅଳ୍ପ କ୍ୱଚିତ୍ ଦେଖାଯାଏ । ଶୁକ୍ର, ଚନ୍ଦ୍ର, ସପ୍ତମାଧିପ ଓ ଧନାଧିପଙ୍କର ଶୁଭତ୍ୱରେ ଅଳ୍ପ ବୟସରେ ଓ ଏମାନଙ୍କର ଅଶୁଭତ୍ୱରେ ବିଳମ୍ୱରେ ବିବାହ ହୁଏ । ଉପରେ ଯେଉଁସବୁ ବିବାହ ବୟସ ପ୍ରମାଣ ଦିଆଯାଇଅଛି ତାହା କେବଳ ଅଳ୍ପ ସମୟ ଓ ଅଧିକ ସମୟରେ ନିର୍ଭର କରେ । ପାଠକବର୍ଗ ଉଲ୍ଲିଖିତ ବୟସ ସଂଖ୍ୟା ଠିକ୍ ନ ଆସିଲେ ସନ୍ଦିହାନ ହେବେ ନାହିଁ ।

## ବିବାହ ପର ଭାଗ୍ୟନିର୍ଣ୍ଣୟଃ

ଭାଗ୍ୟଂ ବିବାହାତ୍ପରତୋ ବଦନ୍ତି ଶୁକ୍ରୋଽସ୍ତଗେ ସ୍ୱେପତଯୋଽଥବା ଚ ।
କୁଟୁମ୍ବପେ ବା ଦ୍ୱଣବିବର୍ଯ୍ୟସ୍ତେ ଲଗ୍ନେଶ୍ୱରେ ବା ଶୁଭଦୃଷ୍ଟିଯୋଗେ ॥

ଶୁକ୍ର, ଲଗ୍ନାଧିପତି ବା ଧନାଧିପତି ସପ୍ତମସ୍ଥ ହୋଇ କିମ୍ବା ତୃତୀୟ ଷଷ୍ଠ, ଦଶମ ବା ଏକାଦଶରେ ଥିଲେ ଓ ଶୁଭ ଗ୍ରହର ଦୃଷ୍ଟିରେ ଥିଲେ ବିବାହ ପର ଭାଗ୍ୟ ଉଦୟ ହୁଏ ।

ତନ୍ନାରତେ ଦାରପତୌ କୁଟୁମ୍ବନାଥେ ବିଲଗ୍ନାଧିପତୌ ଚ ଦୁଃସ୍ଥେ ।
ନୀଚାରିମୂଢାଂଶଗତେ ସପାପେ ଭାଗ୍ୟଂ ବିବାହାତ୍ ପ୍ରବଦନ୍ତି ନେଷ୍ଟମ୍ ॥

ସପ୍ତମ ସ୍ଥାନାଧିପତି, ଧନାଧିପତି, ଶୁକ୍ର କିମ୍ବା ଲଗ୍ନାଧିପତି ଷଷ୍ଠ ଅଷ୍ଟମ ବା ଦ୍ୱାଦଶରେ କିମ୍ବା ନୀଚସ୍ଥ ବା ଶତ୍ରୁଗୃହସ୍ଥ ହେଲେ ଭାଗ୍ୟ ନାଶହୁଏ ।



## ଅଷ୍ଟମଭାବ ବିଚାରଃ

### ଅଷ୍ଟମସ୍ଥ ଗ୍ରହ ଫଳଂ ।

ନିଧନଗତଦିନେଶେ ଚଞ୍ଚଳସ୍ତ୍ୟାଗଶୀଳଃ
ରିପୁକୁଳଶତସେବୀ ସର୍ବଦା ରୋଗଯୁକ୍ତଃ ।
ବିତଥବଚନସୁଭାଷୀ ଭାଗ୍ୟହୀନୋ ବିଶାଳଃ
ରତିରହିତକୁଚେଳୋ ନୀଚସେବୀ ପ୍ରବାସୀ ॥

ରବି ଅଷ୍ଟମରେ ଥିଲେ ଜାତକ ଚଞ୍ଚଳମନା, ତାଗୀ, ଶତ୍ରୁସେବୀ, ରୋଗଯୁକ୍ତ, ମିଥ୍ୟାବାଦରେ ମନୋରଞ୍ଜନକାରୀ, ଭାଗ୍ୟହୀନ, ବୃହଦାକାର, କାମ ଅପ୍ରିୟ ହୋଇଥାଏ । ସେ ବ୍ୟକ୍ତି ନୀଚସେବା କରେ ଓ ପ୍ରବାସୀ ହୁଏ ।

ନିଧନଭବନସଂସ୍ଥଃ ଶୀତରଶ୍ମିର୍ନରାଣାଂ
ନିଧନମଚିରକାଳେ ପାପଗେହୀ ଦଦାତି ।
ନିଜଭୃଗୁସୁତଗେହୀ ସୌମ୍ୟଗେହୀ ଚ ପୂର୍ଣ୍ଣଃ
ଜନୟତି ବହୁଦୁଃଖଂ କାଶପିତ୍ତାଦିରୋଗୈଃ ॥

ଚନ୍ଦ୍ର ଅଷ୍ଟମସ୍ଥ ହୋଇଥିବେ ଓ ଏହି ସ୍ଥାନ ଯଦି ପାପଗ୍ରହର ଗୃହ ହୋଇଥିବ, ତେବେ ଜାତକର ଅଳ୍ପଦିନ ମଧ୍ୟରେ ମରଣ ଘଟେ । ଏହି ଚନ୍ଦ୍ର ବୃଷ, ମିଥୁନ, କର୍କଟ କନ୍ୟା ବା ତୁଳାରେ ଥିଲେ ଓ ପୂର୍ଣ୍ଣ ଚନ୍ଦ୍ର ହୋଇଥିଲେ ଜାତକ କାଶ ଓ ପିତ୍ତାଦିରୋଗାକ୍ରାନ୍ତ ହୋଇ ନାନା କ୍ଲେଶ ଭୋଗ କରେ ।

ନିଧନଭବନସଂସ୍ଥେ ଭୂମିଜେ କ୍ଷୀଣନୀତେ
ବ୍ରଜତି ନିଧନତ୍ୱଂ ନୀଚମଧ୍ୟେ ମନୁଷ୍ୟଃ ।

ଖରତରକନକରୌଦ୍ରୈଃ ସାନ୍ତସାରୈଶ୍ଚ ରୋଗୈଃ
କରଚରଣନିପାତୈର୍ମୃତ୍ୟୁଲୋକଂ ପ୍ରୟାତି ॥

ମଙ୍ଗଳ ନୀଚ ବା ଦୁର୍ବଳ ହୋଇ ଅଷ୍ଟମରେ ଥିଲେ, ଜାତକ ନୀଚ ଜାତି ମଧ୍ୟରେ ପ୍ରାଣ ତ୍ୟାଗ କରେ । ଏହି ବ୍ୟକ୍ତି ଶୁଷ୍କବ୍ରଣ ଓ ଅତିସାରାଦି ରୋଗଦ୍ୱାରା ବା କରପଦାଦି ପୋଡ଼ି ଯିବାହେତୁରୁ ପ୍ରାଣତ୍ୟାଗ କରେ ।

ନିଧନଭବନସଂସ୍ଥେ ସୋମପୁତ୍ରେ ଶୁଭେ ସ୍ୟା-
ନ୍ନିଧନମିହ ବରତୀର୍ଥଜଳେ ନୃଣାଂ ।
ଯଦି ଚ ପାପଗତୋ ରିପୁଗେହଗୋ
ବଦନକର୍ମଗଦେନ ନୟନ୍ତ୍ୟଧଃ ॥

ବୁଧ ଶୁଭଯୁକ୍ତ ବା ସ୍ୱଗୃହସ୍ଥ କିମ୍ବା ଶୁଭକ୍ଷେତ୍ରସ୍ଥ ହୋଇ ଶୁଭଦୃଷ୍ଟ ହେଲେ ଜାତକର ଉତ୍ତମ ତୀର୍ଥରେ ମୃତ୍ୟୁ ଘଟେ । ପାପଗୃହଗତ ବା ଶତ୍ରୁଗୃହସ୍ଥ ହୋଇ ଅଷ୍ଟମସ୍ଥ ହେଲେ ଜାତକ ମୁଖକର୍ମ ରୋଗରେ ମରେ ଓ ଅଧୋଗତି ଲାଭ କରେ ।

ଜୀବେ ମୃତ୍ୟୁଗତେ ଜ୍ଞାନାତ୍ ପୁଣ୍ୟାର୍ଥେ ମରଣଂ ଭବେତ୍ ।
ଶୁଭକ୍ଷେତ୍ରେ ସ୍ୱଗୃହେ ଚୈବମନ୍ୟଥା ତୁ ସ୍ୱସଂ ଜ୍ଞକଂ ॥

ବୃହସ୍ପତି ଶୁଭକ୍ଷେତ୍ର ବା ସ୍ୱକ୍ଷେତ୍ରରେ ଥାଇ ଅଷ୍ଟମସ୍ଥ ହେଲେ ଜାତକ ଜ୍ଞାନରେ ଉତ୍ତମ ତୀର୍ଥରେ ପ୍ରାଣତ୍ୟାଗ କରେ । ଅନ୍ୟ କ୍ଷେତ୍ରରେ ଥିଲେ ଜାତକ ଅଜ୍ଞାନରେ ପ୍ରାଣତ୍ୟାଗ କରେ ।

ନିଧନଭବନସଂସ୍ଥେ ଭାର୍ଗବେ ଜନ୍ମକାଳେ ବିଗତଧର୍ମରତୋ ନୃପସେବକଃ ।
ଭବତିମାଂସରତଃ ପୃଥୁଲୋଚନୋ ନିଧନମେତି ଚ ତୀର୍ଥବରେ ସୁଧୀଃ ॥

ଶୁକ୍ର ଅଷ୍ଟମରେ ଥିଲେ ଜାତକ ପରଧର୍ମପ୍ରିୟ, ରାଜସେବକ, ମାଂସପ୍ରିୟ, ସ୍ଥୂଳଦେହ ଓ ପଣ୍ଡିତ ହୁଏ । ତାହାର ତୀର୍ଥମୃତ୍ୟୁ ହୁଏ ।

ଶନୈଶ୍ଚରେ ଚାଷ୍ଟମଗେ ମନୁଷ୍ୟୋ
ଦେଶାନ୍ତରେ ତିଷ୍ଠତି ଦୁଃଖଭାଗୀ ।
ଚୌର୍ଯ୍ୟାପରାଧେନ ଚ ନୀଚହସ୍ତେ
ପଞ୍ଚତ୍ୱମାପ୍ନୋତ୍ୟଥ ନେତ୍ରରୋଗୈଃ ॥

ଶନି ଅଷ୍ଟମରେ ଥିଲେ ଜାତକ ପ୍ରବାସରେ ରହେ ଓ ବହୁତ କଷ୍ଟ ଭୋଗ କରେ । ଚୌର୍ଯ୍ୟବୃତ୍ତିର ଅପରାଧରେ ନୀଚ ହସ୍ତରେ କିମ୍ବା ନେତ୍ର ରୋଗରେ ପ୍ରାଣତ୍ୟାଗ କରେ ।

ରାହୁର୍ଯଦା ଚାଷ୍ଟମମନ୍ଦିରସ୍ଥୋ ରୋଗାନ୍ୱିତଂ ପାପରତଂ ପ୍ରଗଲ୍‌ଭଂ ।
ଚୌରଂ କୃଶଂ କାପୁରୁଷଂ ଧନାଢ୍ୟଂ କାନ୍ତାମତିଂ ତତ୍ପୁରୁଷଂ କରୋତି ॥

ରାହୁ ଅଷ୍ଟମରେ ଥିଲେ ଜାତକ ରୋଗାକ୍ରାନ୍ତ, ପାପ କାର୍ଯ୍ୟଲିପ୍ତ, ଦାମ୍ଭିକ, ଚୌର, କ୍ଷୀଣାଙ୍ଗ, କାପୁରୁଷ, ଧନବାନ୍ ଓ ଅଥଯୁକ୍ତ ହୁଏ ।

ଗୁଦଂ ପୀଡ୍ୟତେଽର୍ଶୋଦିରୋଗୈରବଶ୍ୟଂ
ଭୟଂ ବାହନାଦେର୍ବିହଙ୍ଗାଂ ବିରୋଧଃ ।
ଭବେଦଷ୍ଟମେ ରାହୁପୁଚ୍ଛେଽର୍ଥଲାଭଃ
ସଦା କୀଟକନ୍ୟାଽଜଗୋ ଯୁଗ୍ମଗେ ବା ॥

କେତୁ ଅଷ୍ଟମରେ ଥିଲେ ଜାତକ ଅର୍ଶାଦି ରୋଗ ପୀଡ଼ିତ ହୁଏ । ତାହାର ବାହନପତନ ଭୟ ଓ ଧନନାଶ ହୁଏ । କିନ୍ତୁ ମେଷ, ବୃଷ, ମିଥୁନ, କନ୍ୟା ଓ ବୃଶ୍ଚିକରେ ଥିଲେ ବିଶେଷ ଧନଲାଭ ହୁଏ ।

## ଅଷ୍ଟମାଧିପତି ସ୍ଥିତିଫଳଂ ।

ଅଷ୍ଟମାଧିପ ଲଗ୍ନରେ ଥିଲେ ଶରୀର ପୀଡ଼ା ହୁଏ । ଜାତକ ଦ୍ୟୂତପ୍ରିୟ ହୁଏ । ୧ ।

ଦ୍ୱିତୀୟରେ ଥିଲେ ଧନନାଶ ଓ କୁଟୁମ୍ବପୀଡ଼ା ହୁଏ । ୨ ।

ତୃତୀୟରେ ଥିଲେ ଭ୍ରାତୃମାନେ ଶତ୍ରୁ ହୁଅନ୍ତି । ଜାତକ ବାତରୋଗୀ ହୁଏ । ୩ ।

ଚତୁର୍ଥରେ ଥିଲେ ଗୃହ ନାଶ ଓ ମନସ୍ତାପ ହୁଏ । ୪ ।

ପଞ୍ଚମରେ ଥିଲେ ସନ୍ତାନନାଶ ଓ ବୁଦ୍ଧିଭ୍ରମ ହୁଏ । ୫ ।

ଷଷ୍ଠରେ ଥିଲେ ଅର୍ଶାଦି ରୋଗ ଓ ବ୍ରଣପୀଡ଼ା ଭୋଗ କରେ । ୬ ।

ସପ୍ତମରେ ଥିଲେ ସ୍ତ୍ରୀ ପୀଡ଼ା ଓ ମାନନାଶ ହୁଏ । ୭ ।

ଅଷ୍ଟମରେ ଥିଲେ ଦୀର୍ଘାୟୁ, କାର୍ଯ୍ୟଶତ୍ରୁ ଓ ପରନିନ୍ଦକ ହୁଏ ।୯

ନବମରେ ଥିଲେ ଭାଗ୍ୟନାଶ, ଧର୍ମହାନି ଓ ମାତୁଳ ଶତ୍ରୁ ହୁଏ ।

ଦଶମରେ ଥିଲେ ଉଦ୍ୟୋଗାଦି ଭଙ୍ଗ ଓ ଧନନାଶ କରାଏ ।୧୦

ଏକାଦଶରେ ଥିଲେ ମାରାତ୍ମକ ପୀଡ଼ା କାରକ, ଭ୍ରାତୃପୀଡ଼ା ହୁଏ ୧୧

ଦ୍ୱାଦଶରେ ଥିଲେ ଧନର ଅପବ୍ୟୟ ଓ ପାପ ବୃଦ୍ଧି ହୁଏ । ୧୨

ରନ୍ଧ୍ରସ୍ଥାନସ୍ଥିତା ବା ସ୍ଥିରଭବନଗତାଃ ଶୁକ୍ରବାଗୀଶସୌମ୍ୟାଃ
କୃତ୍ସ୍ନଂ ଧର୍ମସ୍ୟ କର୍ତ୍ତ୍ର ଭବତି ହି ନିୟତଂ କାରକଂ ତସ୍ୟ ଭାବଃ ।
ବାଲ୍ୟେ ଦୁଃଖୀ ନରଃ ସ୍ୟାତ୍ ନିଧନଗୃହପତୌ ଲାଭପାତେ ସୁଖୀ ସ୍ୟାତ୍
ପଶ୍ଚାତ୍ପାପେଽଲ୍ପମାୟୁଃ ଶୁଭଖଗସହିତୋ ଦୀର୍ଘମାୟୁର୍ନରାଣାଂ ॥

ଶୁକ୍ର, ବୃହସ୍ପତି ବା ବୁଧ ଅଷ୍ଟମ ସ୍ଥାନରେ ବା ସ୍ଥିର ରାଶିରେ ଥିଲେ, ସେହି ବ୍ୟକ୍ତିର ସ୍ୱଭାବ ସମସ୍ତ କର୍ମ ସାଧନାରେ ତତ୍ପର ହୁଏ । ଅଷ୍ଟମାଧିପତି ଏକାଦଶରେ ଥିଲେ ଜାତକ ବାଲ୍ୟ ବୟସରେ ଦୁଃଖ ଓ

ଅନ୍ତଃକାଳରେ ସୁଖ ଭୋଗ କରେ । ଅଷ୍ଟମାଧିପତି ପାପଗ୍ରହଯୁକ୍ତରେ ଜାତକ ଅଳ୍ପାୟୁ ଓ ଶୁଭଗ୍ରହଯୁକ୍ତରେ ଦୀର୍ଘାୟୁ ହୁଏ ।

## ନବମଭାବ ବିଚାରଃ ।

ଭାଗ୍ୟସ୍ଥାନଂ ପରଜ୍ଞେୟଂ ତସ୍ମାଦ୍ଧି ଭବନାନ୍ତରଂ ।
ଆୟୁର୍ବିଦ୍ୟା ଯଶୋ ବିତ୍ତଂ ସର୍ବଭାଗ୍ୟେ ପ୍ରତିଷ୍ଠିତଂ ॥ ହୋ. ସା.

ତସ୍ମାତ୍ ସର୍ବଂ ଗଣକୈର୍ବିଚିନ୍ତ୍ୟଂ ଭାଗ୍ୟାଳୟଂ କେବଳମତ୍ର ଯତ୍ନାତ୍ ।
ଆୟୁଶ୍ଚ ମାତା ଚ ପିତା ଚ ବଂଶୋ ଭାଗ୍ୟାନ୍ୱିତେନୈବ ଭବନ୍ତି ଧନ୍ୟାଃ ॥
ଜା, ଭ,

ଦ୍ୱାଦଶଭାବ ମଧ୍ୟରେ ଭାଗ୍ୟଭାବ ପ୍ରଧାନ । କାରଣ ଏହି ଭାଗ୍ୟ ଭାବରେ ଆୟୁ, ବିଦ୍ୟା, ଯଶ, ଧନ, ସୁଖ ଓ ଭୋଗାଦି ସମସ୍ତର ବିଚାର କରାଯାଏ । ଜାତକ ଦେଖିବା ଅବସ୍ଥାରେ ଭାଗ୍ୟଭାବର ପୁଙ୍ଖାନୁପୁଙ୍ଖ ବିଚାର ଆବଶ୍ୟକ । ପିତା, ମାତା ଓ ସ୍ୱକୁଟୁମ୍ବସ୍ଥ ସମସ୍ତ ବ୍ୟକ୍ତିଗଣ ଭାଗ୍ୟବାନ ବ୍ୟକ୍ତି ହେତୁରୁ ଧନ୍ୟ ହୁଅନ୍ତି ।

### ନବମସ୍ଥ ଗ୍ରହଫଳଂ

ହନ୍ତି ପୁଣ୍ୟଞ୍ଚ ଭାଗ୍ୟଞ୍ଚ ସୂର୍ଯ୍ୟଃ ପୁଣ୍ୟଗତୋ ନୃଣାଂ ।
ତୁଙ୍ଗସ୍ୱର୍କ୍ଷଗୃହଂ ଯାତଃ ପୁଷ୍ଟଫଳଂ ଧର୍ମମାଢତେଶତ୍ରୁ ।

ରବି ନବମରେ ଥିଲେ ଜାତକର ପୁଣ୍ୟ ଓ ଭାଗ୍ୟ ବିନାଶ ହୁଏ । ଏହି ନବମସ୍ଥ ରବି ମେଷ ବା ସିଂହରେ ଥିଲେ ଜାତକ ବହୁଧର୍ମ ସଞ୍ଚୟ କରେ ।

ନବମଭବନସଂସ୍ଥେ ଶୀତରଶ୍ମୌ ସୁପୂର୍ଣ୍ଣେ
ବହୁତରଧନଭାଗୀ କାମିନୀଚିତ୍ତହାରୀ ।
ନ ଭବତି ଧନଭାଗୀ କ୍ଷୀଣକେ ଶୀତଗେ ବା
ଶମଲପଥବିରୋଧୀ ନିର୍ଗୁଣୋ ମୂଢ଼ଚେତାଃ ।

ପୂର୍ଣ୍ଣ ଚନ୍ଦ୍ର, ନବମରେ ଥିଲେ ଜାତକ ଧନବାନ୍ ଓ ସ୍ତ୍ରୀମୋହନକାରୀ ହୁଏ । ଏହି ଚନ୍ଦ୍ର, କ୍ଷୀଣ ହୋଇଥିଲେ କିମ୍ବା ନୀଚରେ ଥିଲେ ଜାତକ ଅଧର୍ମାସକ୍ତ, ଗୁଣହୀନ ଓ ମୂର୍ଖ ହୁଏ ।

ନବମଭବନସଂସ୍ଥେ ଭୂମିପୁତ୍ରେଽତିରୋଗୀ
ନୟନକରଣଗୌରେ ପିଙ୍ଗଳଃ ସଙ୍କାଲେ ।
ବହୁତରଧନଯୁକ୍ତୋ ଭାଗ୍ୟଯୁକ୍ତୋ କୁଚେଲଃ
ଶମଲମତିସୁଶୀଳଃ ଶିଳ୍ପବିଦ୍ୟାନୁରକ୍ତଃ ।

ମଙ୍ଗଳ ନବମରେ ଥିଲେ ଜାତକ ରୋଗାର୍ତ୍ତ, ପିଙ୍ଗଳ ଚକ୍ଷୁଯୁକ୍ତ ଧନଯୁକ୍ତ, ଭାଗ୍ୟଯୁକ୍ତ, କୁତ୍ସିତ ବସନଧାରୀ, ଅନାବିଳଚିତ୍ତ, ଉତ୍ତମ ସ୍ୱଭାବବିଶିଷ୍ଟ ଓ ଶିଳ୍ପବିଦ୍ୟାନୁରକ୍ତ ହୁଏ ।

ନବମପୂଣ୍ୟଗୃହେ ଶଶିନନ୍ଦନେ ଧନକଳତ୍ରସୁତେନ ସମନ୍ୱିତଃ ।
ଭବତି ପାପଗୃହେ ବିପଦସ୍ଥିତଃ ଶ୍ରୁତିବିନିନ୍ଦକବୌଦ୍ଧମତାଶ୍ରୟୀ ।

ବୁଧ ନବମସ୍ଥ ହୋଇ ଶୁଭଗ୍ରହର ଗୃହରେ ଥିଲେ ଜାତକ ଧନ ସ୍ତ୍ରୀ ଓ ପୁତ୍ରଯୁକ୍ତ ହୁଏ । ପାପଗ୍ରହର ଗୃହସ୍ଥ ହୋଇଥିଲେ ଜାତକ ନାନା ବିପଦରେ ପଡ଼େ । ସେ ଶ୍ରୁତିନିନ୍ଦକ ହୁଏ ଓ ବୌଦ୍ଧଧର୍ମାଚରଣ କରେ ।

ଭବତି ଭାଗ୍ୟନିଧିଂ ନୃପବଲ୍ଲଭଂ ସୁରଗୁରୌ ନବମେ ଧନବାନ୍ ଗୁଣୀ
ତ୍ରିଦଶପୂଜନପରଃ ପରମାର୍ଥବିତ୍ ପ୍ରଚୁରକୀର୍ତ୍ତିକରଃ କୁଳବର୍ଦ୍ଧନଃ ।

ବୃହସ୍ପତି ନବମରେ ଥିଲେ ଜାତକ ଭାଗ୍ୟଯୁକ୍ତ, ରାଜପୂଜ୍ୟ, ଧନବାନ୍, ଗୁଣବାନ୍, ଦେବପୂଜକ, କୀର୍ତ୍ତିମାନ୍, କୁଳାନନ୍ଦକାରୀ ଓ ଈଶ୍ୱର ଭକ୍ତ ହୁଏ ।

ଜପମଙ୍ଗଳତୀର୍ଥପରାୟଣବପୁଃ ସୁଖୀ ସୁରଗୁରୁଦ୍ୱିଜଭକ୍ତିରତଃ ଶୁଚିଃ ।
ନିଜବଳାର୍ଜିତଭାଗ୍ୟମହୋତ୍ସବୋ ଭବତି ଧର୍ମଗତେ ଭୃଗୁନନ୍ଦନେ ॥

ଶୁକ୍ର ନବମରେ ଥିଲେ ଜାତକ ତୀର୍ଥଭ୍ରମଣ କରେ । ବ୍ରାହ୍ମଣଭକ୍ତ ଓ ସୁଖୀ ହୁଏ । ସେ ତାହାର ସ୍ୱୋପାର୍ଜିତ ଅର୍ଥଦ୍ୱାରା ଭାଗ୍ୟବାନ୍ ହୁଏ ।

ଦଣ୍ଡାନ୍ୱିତୋ ବନ୍ଧଗତେ ନବମସ୍ଥେ ଶନୈଶ୍ଚରେ ।
ସ୍ୱର୍କ୍ଷୋଚ୍ଚଗେ ମିତ୍ରଦୃଷ୍ଟେ ଧନବାନ୍ ପୁତ୍ରବାନ୍ ଭବେତ୍ ॥

ଶନି ନବମରେ ବକ୍ର ହୋଇ ଥିଲେ ଜାତକ ଦାସକର୍ମାସକ୍ତ ହୁଏ । ନବମସ୍ଥ ଶନି ତୁଳା, ମକର ବା କୁମ୍ଭରେ ଥିଲେ ବା ମିତ୍ରଦୃଷ୍ଟ ହୋଇ ଥିଲେ ଜାତକ ଧନ, ପୁତ୍ରଯୁକ୍ତ ହୁଏ ।

ନୀଚକର୍ମାନୁରକ୍ତଃ ସ୍ୟାତ୍ ସତ୍ୟଶୌଚବିବର୍ଜିତଃ
ଭାଗ୍ୟହୀନୋ ଭବେଜ୍ଜନ୍ତୁ ଧର୍ମସ୍ଥେ ଚ ବିଧୁନ୍ତୁଦଃ

ରାହୁ ନବମରେ ଥିଲେ ଜାତକ ନୀଚ କର୍ମାନୁରକ୍ତ, ମିଥ୍ୟାବାଦୀ ଶୌଚବର୍ଜିତ, ଭାଗ୍ୟହୀନ ଓ ଗରିବ ହୁଏ । ସମୁହୋଲ୍ଲରେ ପ୍ରକାଶ ରାହୁ ବୃହସ୍ପତିକର୍ତ୍ତୃକ ଦୃଷ୍ଟ ହେଲେ ଶୁଭ ହୋଇଥାଏ

ଶିଖୀ ଧର୍ମଭବେ ଯଦା କ୍ଲେଶନାଶଃ
ସୁତାର୍ଥୀ ଭବେତ୍ ମ୍ଲେଚ୍ଛତୋ ଭାଗ୍ୟବୃଦ୍ଧିଃ ।
ସହୋତ୍ଥାର୍ତ୍ତିଂ ବ୍ୟଥାଂ ବାହୁବେଗଂ ବିଧତ୍ତେ
ସଦା ପାପକର୍ମାନୁରକ୍ତୋ ମନୁଷ୍ୟଃ ॥

କେତୁ ନବମରେ ଥିଲେ ମନୁଷ୍ୟ କ୍ଳେଶରହିତ ଓ ପ୍ରତାପଶାଳୀ ହୁଏ । ନୀଚ ଜାତିଯୋଗୁଁ ଧନ ଲାଭ କରେ । ଅସହ୍ୟ ବ୍ୟଥାଯୁକ୍ତ ବାହୁ ରୋଗ ଯୁକ୍ତ ହୁଏ ଓ ସର୍ବଦା ପାପକର୍ମନିରତ ହୁଏ ।

ନବମଭାବାଧିପଫ୍ରଳିତ ଫଳଂ

ଭାଗ୍ୟେଶୋ ମୂର୍ତ୍ତିବର୍ତ୍ତୀ ସୁରପତିଗୁରୁଣାଲୋକିତୋ ଭୂପବନ୍ଦ୍ୟୋ
ଲଗ୍ନସ୍ଥୋ ବାନ୍ଧବେଶୋ ନବମପତିରୁଭୌ ପଶ୍ୟତଶ୍ଚେତ୍ସ୍ୱଗେହଂ ।
ସର୍ବଂ ସ୍ୟାମାପ୍ତଦଂ ସ୍ୟାନ୍ମନୁଜ ଇହ ତଦା ସମ୍ପଦାଂ ବାନ୍ଧବେନ୍ଦ୍ରେ ।
ରନ୍ଧ୍ରସ୍ଥାନସ୍ଥିତଶ୍ଚେତ୍ ବଜତି ହି ମନୁଜୋ ଭାଗ୍ୟସଂହିତ୍ୟମେବଂ ॥
ଜା, ଅ,

ନବମ ସ୍ଥାନାଧିପତି ଲଗ୍ନରେ ଥାଇ ବୃହସ୍ପତିକର୍ତ୍ତୃକ ଦୃଷ୍ଟ ହେଲେ ଜାତକ ରାଜପୂଜ୍ୟ ହୁଏ । ଚତୁର୍ଥ ସ୍ଥାନାଧିପ ତଥା ନବମାଧିପ ଲଗ୍ନରେ ଥାଇ ସେମାନଙ୍କର ସ୍ୱଗୃହମାନଙ୍କୁ ଅର୍ଥାତ୍ ଚତୁର୍ଥ ନବମକୁ ଦେଖୁଥିଲେ ସେ ବ୍ୟକ୍ତି ଧନଧାନ୍ୟାଦି ସକଳ ସମ୍ପଦଯୁକ୍ତ ହୁଏ । ନବମାଧିପ ଅଷ୍ଟମରେ ଥିଲେ ଜାତକ ଭାଗ୍ୟହୀନ ହୁଏ ।

ଭାଗ୍ୟାଧିପେ ସପ୍ତମସ୍ଥେ ଲଗ୍ନାଧିପସମନ୍ୱିତେ ।
ଭାଗ୍ୟବାନ୍ ଭବେଦ୍ ବ୍ୟୂଢ଼ାଦିତ କେରଳାନଶ୍ଚୟଂ ॥
କେ, ସା,

ନବମାଧିପତି ସପ୍ତମରେ ଲଗ୍ନାଧିପତି ଯୁକ୍ତ ହୋଇଥିଲେ ଜାତକ ଭାଗ୍ୟବାନ୍ ହୁଏ ।

ଭାଗ୍ୟେଶେ ଧନରାଶିସ୍ଥେ ଧନେଶେ ଭାଗ୍ୟରାଶିଗେ ।
ଦ୍ୱାଦଂଶବଯ୍ୟସେ ବାପି ବହୁଭାଗ୍ୟପ୍ରଦୋ ଭବେତ୍ ॥

ନବମାଧିପତି ଦ୍ୱିତୀୟରେ ଓ ଧନାଧିପତି ନବମରେ ଥିଲେ ଜାତକ ବାଇଶି ବର୍ଷଠାରେ ବହୁ ଭାଗ୍ୟଯୁକ୍ତ ହୁଏ ।

ଭାଗ୍ୟସ୍ଥାନାଧିପେ ଷଷ୍ଠେ ଅଷ୍ଟମେ ହ୍ୟଥବା ବ୍ୟୟେ ।
ପିତୃନାଶଂ ଭବେଦ୍‌ବାଲ୍ୟେ ସ ନରସ୍ତୁ ଦୁଃଖଭାଜନଃ ॥

ନବମାଧିପତି ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ ସେ ବ୍ୟକ୍ତି ସକଳ ଦୁଃଖର ସ୍ଥାନ ହୁଏ । ସେହି ବ୍ୟକ୍ତି ବାଲ୍ୟ ସମୟରେ ପିତୃହୀନ ହୁଏ ।

ଭାଗ୍ୟସ୍ଥାନାଧିପେ ପୁତ୍ରେ ଶୁଭଦୃଷ୍ଟି ଗତେଽପି ବା ।
ପୁଷ୍କଳଂ ଧନପ୍ରାପ୍ତିରତ୍ର କେରଳନିଶ୍ଚୟଂ ॥

ନବମାଧିପତି ପଞ୍ଚମରେ ଶୁଭଦୃଷ୍ଟିରେ ଥିଲେ ଜାତକ ଧନପ୍ରାପ୍ତ ଲାଭ କରେ ।

## ସ୍ୱଦେଶଭାଗ୍ୟ ଯୋଗଃ

ଚନ୍ଦ୍ରାଦ୍‌ବିଲଗ୍ନାନ୍ନବମଂ ଭଗୁକ୍ତଂ
ଭାଗ୍ୟାଳୟଂ ସ୍ୱାମିଯୁତେକ୍ଷିତଂ ତତ୍ ।
କୁର୍ଯ୍ୟାତ୍ ସ୍ୱଦେଶୋଭବଭାଗ୍ୟମନ୍ୟ
ଚେଦନ୍ୟଖେଟୋ ବିଷୟାନ୍ତରେଣ ।

ଲଗ୍ନଠାରୁ ଓ ଚନ୍ଦ୍ରଠାରୁ ନବମ ସ୍ଥାନମାନଙ୍କୁ ଭାଗ୍ୟସ୍ଥାନ ବୋଲାଯାଏ । ଉଭୟ ସ୍ଥାନର ଭାଗ୍ୟାଧିପତିମାନେ ସେହି ସେହି ସ୍ଥାନମାନଙ୍କରେ ଥିଲେ ବା ସେହି ସେହି ସ୍ଥାନମାନଙ୍କୁ ଦେଖୁଥିଲେ ଜାତକ ସ୍ୱଦେଶରେ ଭାଗ୍ୟବୃଦ୍ଧି କରେ । ଅନ୍ୟ ଗ୍ରହ ସେହି ସେହି ସ୍ଥାନ-

ମାନଙ୍କରେ ରହିଲେ ବା ସେହି ସ୍ଥାନମାନଙ୍କୁ ଦେଖିଲେ ଜାତକ ବିଦେଶରେ ଭାଗ୍ୟଲାଭ କରିଥାଏ ।

ସ୍ଥିରେ ସ୍ବଦେଶେ ବହୁଭାଗ୍ୟଯୁକ୍ତଃ
ସ୍ଥିରଗ୍ରହୈର୍ଭୂରିଧନାନ୍ୱିତଃ ସ୍ୟାତ୍ ।
ଚରଗ୍ରହୈଃ ସଂଯୁତଭାଗ୍ୟକୀର୍ତ୍ତି—
ର୍ନାନାପ୍ରଦେଶେ ପ୍ରଚରନ୍ କୁମାର୍ଗୀ ॥

ଯଦି ଭାଗ୍ୟସ୍ଥାନ ସ୍ଥିର ରାଶି ହୋଇଥିବ, ପୁଣି ସେହି ସେହି ସ୍ଥାନରେ ବୃହସ୍ପତି, ଶନି, ରବି, ମଙ୍ଗଳ ଥିଲେ ଜାତକ ସ୍ୱଦେଶରେ ଭାଗ୍ୟଲାଭ କରେ । ଭାଗ୍ୟସ୍ଥାନ ଚରରାଶି ହୋଇଥିବ, ସେହି ସ୍ଥାନରେ ଚନ୍ଦ୍ର, ବୁଧ, ଶୁକ୍ର ଥିଲେ ଜାତକ ବିଦେଶ ପର୍ଯ୍ୟଟନ କରି ଅନ୍ୟ ଉପାୟରେ ଭାଗ୍ୟଲାଭ କରେ ।

### ଭାଗ୍ୟଭୋଗସମୟଃ

ଭାଗ୍ୟାଧିପଶ୍ଚେଦ୍ ଯଦି କେନ୍ଦ୍ରବର୍ତ୍ତୀ
ଆଦୌ ବୟସ୍ୟେବ ସୁଖୀ ମନୁଷ୍ୟଃ ।
ତ୍ରିକୋଣଗଃ ସ୍ୱୋଚ୍ଚଗତୋଽଥବା ଚେତ୍
ମଧ୍ୟେ ବୟସ୍ୟେବ ଫଳପ୍ରଦଃ ସ୍ୟାତ୍ ॥

ଜା, ଭ,

ନବମାଧିପତି କେନ୍ଦ୍ରରେ ଥିଲେ ଜାତକ ପ୍ରଥମ ବୟସରେ ସୁଖ ଭୋଗ କରେ । ନବମାଧିପତି ତ୍ରିକୋଣରେ ବା ଉଚ୍ଚରେ ଥିଲେ ଜାତକ ମଧ୍ୟ ଜୀବନରେ ସୁଖଲାଭ କରେ । ବୃହଜ୍ଜାତକ ମତରେ ବୃହସ୍ପତି ଓ ଚନ୍ଦ୍ର ଥିବା ରାଶିମାନଙ୍କର ଅଧିପତି ଓ ଲଗ୍ନାଧିପ କେନ୍ଦ୍ରସ୍ଥ ହେଲେ ଯୌବନରେ ସୁଖଭୋଗ ହୁଏ ।

ଅକ୍ଷରେଭ୍ୟୋ ଦନସଙ୍ଖ୍ୟିତା ଗଜକସ୍ୟବେଦାଗ୍ନୟଃ ଷୋଡ଼ଶଃ ।
ତତ୍ତ୍ୱାବ୍ୟଙ୍ଗଗୁଣା ଦ୍ୱିବେଦପ୍ରତମା ଦୃଗ୍ଧ୍ୟାଦଜାନାଂ ସମାଃ ॥

ଯେଉଁ ଗ୍ରହମାନେ ଭୁକ୍ତଛକାରକ ଓ ଯୋଗଫଳଦାୟକ ସେହି ଗ୍ରହମାନେ ସେମାନଙ୍କ ଦଶାନ୍ତର୍ଦଶାରେ ଭାଗ୍ୟବୃଦ୍ଧି କରନ୍ତି । ଗ୍ରନ୍ଥାନ୍ତରେ ପ୍ରକାଶ—ଯେଉଁ ଗ୍ରହମାନେ ଶୁଭଫଳଦାୟକ, ସେମାନଙ୍କ ନିର୍ଦ୍ଦିଷ୍ଟ ବର୍ଷ ପରେ ଦଶାନ୍ତର୍ଦଶାରେ ସେମାନେ ଶୁଭଫଳ ଦଅନ୍ତି । ଏହି ନିର୍ଦ୍ଦିଷ୍ଟ ବର୍ଷ ମଧ୍ୟରେ ଶୁଭଫଳଦାୟକ ଦଶା ଆସିଲେ ମଧ୍ୟ ସାମାନ୍ୟ ଶୁଭଫଳ ଦେଇ ଥାଏ । ରବି ଶୁଭ ହୋଇଥିଲେ ୨୨ ବର୍ଷ ପରେ ତାହାଙ୍କର ଦଶାନ୍ତର୍ଦଶାରେ ଶୁଭ ଫଳ ଦଅନ୍ତି । ଏହିପରି ଚନ୍ଦ୍ର ୨୪ ବର୍ଷ ପରେ, ମଙ୍ଗଳ ୨୮ ବର୍ଷ ପରେ, ବୁଧ ୩୨ ବର୍ଷ ପରେ, ବୃହସ୍ପତି ୧୬ ବର୍ଷ ପରେ, ଶୁକ୍ର ୨୫ ବର୍ଷ ପରେ, ଶନି ୩୬ ବର୍ଷ ପରେ ଶୁଭ ଫଳ ଦଅନ୍ତି । ଲଗ୍ନ ଅତ୍ୟନ୍ତ ବଳବାନ୍ ହୋଇଥିଲେ ୪୨ ବର୍ଷ ପରେ ଜାତକ ଜନ୍ମ ଭାଗ୍ୟ ଭୋଗ କରେ ।

## ଧର୍ମବଳ ତତ୍ତ୍ୱଃ

ଧର୍ମଂ ଧର୍ମପତିର୍ନବାଽସ୍ୟପଗୁରୁର୍ଦେବାଧିପୂଜ୍ୟାଽଥବା
ଯଦ୍ୟାସ୍ତେ ଶୁଭବୀକ୍ଷିତୋ ବଳଯୁତଃ ପଶ୍ୟେନ୍ନ ବା ତଦ୍‌ବଶାତ୍ ।
ଯଜ୍ଞିଷ୍ଟ କୁରୁତେ ସମଂ ଗୁରୁଜନେ ନାପ୍ରୀତୟେ ସର୍ବଦା
କ୍ଷୀଣେନ୍ଦ୍ୱର୍କଧସୁତନୁଜରବଜୈର୍ଧର୍ମସ୍ୟ ହାନିର୍ଭବେତ୍ ॥

ନବମ ସ୍ଥାନକୁ ନବମାଧିପତି ଅଥବା ଶୁକ୍ର, ବୃହସ୍ପତି ନ ଦେଖିଲେ ଅଥବା ଏମାନଙ୍କ ମଧ୍ୟରୁ କୌଣସି ଗ୍ରହ ସେହି ସ୍ଥାନରେ ନ ଥିଲେ ଜାତକର ସମସ୍ତ କାର୍ଯ୍ୟକଳାପ ଗୁରୁଜନମାନଙ୍କର ସନ୍ତୋଷବିଧାନ କରି ନ ପାରେ । କ୍ଷୀଣ ଚନ୍ଦ୍ର, ରବି, ମଙ୍ଗଳ ବା ଶନି ନବମକୁ ଦେଖିଲେ ଜାତକ ଧର୍ମହନ୍ତା ହୁଏ ।

ଗୁରୌ ବା ଭୃଗୁପୁତ୍ରେ ବା ସ୍ୱୋଚ୍ଚମିତ୍ରାଂଶକେ ଶୁଭେ ।
ଧର୍ମାଧିପେ ବଲଯୁତେ ଧର୍ମାଧ୍ୟକ୍ଷଃ ନରୋ ଭବେତ୍ ॥

ବୃହସ୍ପତି ବା ଶୁକ୍ର ଉଚ୍ଚସ୍ଥ, ମିତ୍ରଗୃହସ୍ଥ ବା ସ୍ୱଗୃହସ୍ଥ ହୋଇଥିଲେ ଓ ନବମାଧିପତି ବଳବାନ୍ ହେଲେ ଜାତକ ଧର୍ମାଧ୍ୟକ୍ଷ ହୁଏ ।

ଶନୌ ତୁଲାସ୍ଥେ ମକରେ ସୁରେଜ୍ୟେ ଚ
ଲଗ୍ନେ କୁଳୀରେ ବୃଷଭେ ଶଶାଙ୍କେ ।
ଜାତଃ ସୁଖୀ ବ୍ରହ୍ମପଦଂ ପ୍ରୟାତି
ପ୍ରସାଧନାଦୈ୍ୟରନ୍ତ୍ରମନ୍ତ୍ରସିଦ୍ଧ୍ୟା ॥

କର୍କଟ ଲଗ୍ନ ହୋଇଥିବ, ଶନି ତୁଳାରେ, ବୃହସ୍ପତି ମକରରେ ଓ ଚନ୍ଦ୍ର ବୃଷରେ ଥିଲେ ଜାତକ ମନ୍ତ୍ରସିଦ୍ଧି କରି ସୁଖଭୋଗ କରେ ଓ ଅନ୍ତକାଳରେ ମୋକ୍ଷ ହୁଏ ।

---

## ଦଶମଭାବ ବିଚାରଃ

କର୍ମଣ୍ୟେବ ପ୍ରଧାନେ ଚ ଗ୍ରହାଃ ସର୍ବେ ଫଳପ୍ରଦାଃ ।
ତସ୍ମାତ୍ ସର୍ବପ୍ରୟତ୍ନେନ କର୍ମସ୍ଥାନଂ ବିଚନ୍ତୟେତ୍ ॥

ଯଦ୍ୟପ୍ୟନେକାନି ଭବନ୍ତି ଶାସ୍ତ୍ରେ
ନାନାବିଧଂ ଶାସ୍ତ୍ରଫଳାନି କୋଷ୍ଠ୍ୟାଂ ।
ତଥାପି ସଂସାରସମୁଦ୍ରମଧ୍ୟେ
ଭୁଂକ୍ତେ ନରଃ କର୍ମଫଳାନି ଚୈବ ॥

ଦଶମ ଭାବଟିର ନାମ କର୍ମଭାବ । ଏହି ଭାବସ୍ଥ ସମସ୍ତ ଗ୍ରହ ପ୍ରାୟ ଶୁଭଫଳ ପ୍ରଦାନ କରନ୍ତି । ଜାତକର ବୃତ୍ତି, ପ୍ରବୃତ୍ତି ସମସ୍ତ କର୍ମଭାବ ପ୍ରକାଶ କରେ । କର୍ମଭାବର ଶୁଭାଶୁଭ ଉପରେ ସମସ୍ତ ଜାତକର ଫଳ ନିର୍ଭର କରେ । କର୍ମଭାବ ବଳ ଅତି ସୂକ୍ଷ୍ମରୂପେ ବିଚାର କରିବେ ।

ଦଶମସ୍ଥ ଗ୍ରହଫଳଂ

କର୍ମସ୍ଥିତସ୍ୟାପିରବେର୍ଦଶାୟାଂ
ରାଜ୍ୟାର୍ଥଲାଭଂ ସମୁପୈତି ଧୈର୍ଯ୍ୟଂ ।
ଉଦ୍ଯୋଗସିଦ୍ଧିଂ ନୃପମାନନଂ ଚ
ଯଶଃସମେତଂ ପ୍ରକରୋତି ନିତ୍ୟଂ ॥

ରବି ଦଶମରେ ଥିଲେ ଜାତକ ରାଜ୍ୟାର୍ଥ ଲାଭ କରେ । ଧୈର୍ଯ୍ୟଶୀଳ ହୁଏ । ଉଦ୍‌ଯୋଗ ସିଦ୍ଧି ହୁଏ । ରାଜସମ୍ମାନ ମିଳେ । ଯଶବୃଦ୍ଧି କରେ ।

ଚନ୍ଦ୍ରଜରଧନଭାଗୀ କର୍ମଗସ୍ତେ ହିମାଂଶୌ
ବିବିଧଗୁଣନିଧାନଃ ସ୍ୱନ୍ଦାରାଦିପୂର୍ଣ୍ଣଃ ।
ଅପିକୁଟିଳଗୃହସ୍ଥେ କାଶରୋଗୀ କୃଶାଙ୍ଗଃ
ପରଯୁବତିଧନାଢ୍ୟଃ କର୍ମହୀନୋ ମନୁଷ୍ୟଃ ॥

ଚନ୍ଦ୍ର ଦଶମରେ ଥିଲେ ଜାତକ ଧନବାନ୍, ଗୁଣାକର, ସ୍ତ୍ରୀପୁତ୍ରାଦି ଯୁକ୍ତ ହୁଏ । ଏହି ଦଶମସ୍ଥ ଚନ୍ଦ୍ର ଶତ୍ରୁ କିମ୍ବା ପାପଗ୍ରହର ଗୃହରେ ଥିଲେ ଜାତକର ଶରୀର କାଶାଦି ରୋଗଦ୍ୱାରା କ୍ଷୀଣ ହୁଏ ସେ ଓ ପରସ୍ତ୍ରୀରତ ହୁଏ । ଧନଲାଭ କରେ । କର୍ମହୀନ ହୁଏ ।

ଦଶମଗତମହୀଜେ ଦାମ୍ଭିକଃ କ୍ରୋଧଯୁକ୍ତଃ
ଅପିକୁଳଭୟକାରୀ କାମିନୀରତକାରୀ

ଜଠରସମଣଗ୍ନେ ଭୂମିଜାତା ପ୍ରଳାପୀ ।
ଦ୍ୱିଜଗୁରୁସୁରଭକ୍ତୋଽଧର୍ମକର୍ମାନୁରକ୍ତଃ ॥

ମଙ୍ଗଳ ଦଶମରେ ଥିଲେ ଜାତକ ଦାମ୍ଭିକ, କ୍ରୋଧୀ, ଶତ୍ରୁ-ଭୟଦାୟୀ, ସ୍ତ୍ରୀଚରିତ୍ରବନୋଦନକାରୀ ଉଦରପର ଶରୀରଧାରୀ, କୃତିକାରୀ, ବୃଥାଭାଷୀ, ବ୍ରାହ୍ମଣ, ଗୁରୁ ଓ ଦେବଭକ୍ତ ଓ ଅଧର୍ମ କର୍ମାନୁରକ୍ତ ହୁଏ ।

ଯଶୋ ନୃପତିପୂଜା ଚ ମିତ୍ରଂ ବିତ୍ତଂ ଶୁଭେ ବୁଧଃ ।
କର୍ମସ୍ଥାନଗତଃ କୁର୍ଯ୍ୟାଦ୍ବିପରୀତମତୋଽନ୍ୟଥା ॥

ବୁଧ ଶୁଭଯୁକ୍ତ ବା ଶୁଭଦୃଷ୍ଟ ହୋଇ ଦଶମରେ ଥିଲେ, ଜାତକ ରାଜପୂଜ୍ୟ ଓ ମିତ୍ରଧନାଦିଯୁକ୍ତ ହୁଏ । ଏହି ବୁଧ ପାପଯୁକ୍ତ ବା ପାପଦୃଷ୍ଟ ହେଲେ ଜାତକ କର୍ମହୀନ ଓ ଧନହୀନ ହୁଏ ।

ଦଶମଧାମଗତେ ଚ ବୃହସ୍ପତୌ
ରୁଚିରରତ୍ନବିଭୂଷିତମନ୍ଦିରଃ ।
ଜୟତି ନୀତିଗୁଣୈର୍ନିଜଶାତ୍ରବାନ୍
ସକଳଧର୍ମକରଃ ସୁଖଭାଜନଃ ॥

ବୃହସ୍ପତି ଦଶମରେ ଥିଲେ ଜାତକର ଗୃହ ଅତ୍ୟନ୍ତ ରତ୍ନାଦିରେ ପରିପୂର୍ଣ୍ଣ ହୁଏ । ଏହି ବ୍ୟକ୍ତି ନୀତିଗୁଣରେ ନିଜ ଶତ୍ରୁମାନଙ୍କୁ ଜୟ କରେ । ଧର୍ମପରାୟଣ ଓ ସୁଖୀ ହୁଏ ।

ଦଶମମନ୍ଦିରଗେ ଭୃଗୁନନ୍ଦନେ
ବହୁବଦର୍ଥଯୁତୋ ଦୃଶି ସେଗବାନ୍ ।
ଅପିନଗତୋଽପି ରାଜ୍ୟପଦଂ ସୁଖଂ
ଲଭତେ ବରନାସ୍ତ୍ରସମନ୍ୱିତଃ ॥

ଶୁକ୍ର ଦଶମରେ ଥିଲେ ଜାତକ ମଧ୍ୟବର୍ତ୍ତୀ, ବେଦ୍ୱାଗୀ ଓ ଶ୍ରେଷ୍ଠା ରମଣୀ ଲାଭ କରେ । ଏହି ବ୍ୟକ୍ତି ବନବାସୀ ହେଲେ ମଧ୍ୟ ରାଜା ତୁଲ୍ୟ ସୁଖଭୋଗ କରେ ।

ଶନୈଶ୍ଚରେ କର୍ମଗତେ ମନୁଷ୍ୟୋ
ମହାଧନୀ ଭୃତ୍ୟଜନାନୁରକ୍ତଃ ।
ଶୂରଃ ପ୍ରଚଣ୍ଡୋ ନୃପସଦ୍ମବାସୀ
ନ ଶତ୍ରୁବର୍ଗାଦ୍‌ଭୟମେତି ମାନୀ ॥

ଶନି ଦଶମରେ ଥିଲେ ଜାତକ ଧନୀ, ଭୃତ୍ୟବର୍ଗାନୁରକ୍ତ, ଜ୍ଞାନୀ, କୋପନସ୍ୱଭାବ, ଉତ୍ତମ ଗୃହବାସୀ ହୁଏ । ସେ ବ୍ୟକ୍ତି ମାନୀ ଓ ଶତ୍ରୁଦ୍ୱାରା ପରାସ୍ତ ହୁଏ ନାହିଁ ।

କାମାତୁରଃ କର୍ମଗତେ ଚ ସୈଂହେ
ପରାନ୍ନଭୋଜୀ ମୁଖରପ୍ରତପ୍ତଃ ।
ସ୍ନାନେ ବିରକ୍ତଃ ସୁଖବର୍ଜିତଶ୍ଚ
ଶିଳ୍ପାନୁଶୀଳୋ ଚପଳୋଽତିଦୁଷ୍ଟଃ ॥

ରାହୁ ଦଶମରେ ଥିଲେ ଜାତକ କାମାତୁର, ପରାନ୍ନଭୋଜୀ, ମୁଖର ସ୍ତ୍ରୀ ପ୍ରାପ୍ତିହେତୁରୁ କଷ୍ଟପ୍ରାପ୍ତି, ସ୍ନାନାଦି ଶୌଚବର୍ଜିତ, ଶିଳ୍ପବିଦ୍ୟା-କୁଶଳ, ଚଞ୍ଚଳ ଓ ଦୁଷ୍ଟମନା ହୁଏ ।

ପିତୁର୍ନୋ ସୁଖଂ କର୍ମଯୋଗସ୍ୟ କେତୁ—
ସ୍ତଦା ଦୁର୍ଭଗଂ କଷ୍ଟଭାଜଂ କରୋତି ।
ତଦାବାହନେ ପୀଡ଼ିତଂ ଜାତୁ ଜନ୍ମ
ତୁଷାଜାଲକନ୍ୟାସୁ ଚେଚ୍ଛତ୍ରୁନାଶଂ ॥

କେତୁ ଦଶମରେ ଥିଲେ ଜାତକ ପିତୃସୁଖ ଭୋଗ କରି ପାରେ ନାହିଁ । ନାନାପ୍ରକାର କ୍ଲେଶ ଭୋଗ କରେ, ବାହନାଦିରୁ ପତନଭୟ ରହେ; ବନ୍ତୁ ବୃଷ, ମେଷ, ବୃଶ୍ଚ ଓ କନ୍ୟା ରାଶିରେ ଥିଲେ ଶତ୍ରୁନାଶ କରାଏ ।

ଦଶମାଧିପସ୍ଥିତଫଳଂ

କର୍ମେଶେ ରିପୁରନ୍ଧ୍ରରିଷ୍ଫଭବନେ ସ୍ୟାନ୍ନୀଚ ଭକ୍ଷାଶନେ
କେନ୍ଦ୍ରେ କୋଣଗୃହେଽଥ ମିତ୍ରଭବନେ ସ୍ୱୋଚ୍ଚେ ସ୍ୱଗେହଂ ଗତେ ।
ଭୋଗୀ ଜାତସୁକର୍ମଭାଗ୍ୟସଦନେ ଭାଗ୍ୟାଧିପେ ସଂଯୁତେ
ହ୍ୟାନ୍ଦୋଲାଦିଗଜାଦିବାହନମହାଭାଗ୍ୟଂ ନୃଣାଂ ସମ୍ପଦଃ ॥
ସ. ର.

ଦଶମାଧିପତି ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ ଜାତକ ନିର୍ଦ୍ଧନ ହୋଇ ଉଷାଦି ନୀଚବୃତ୍ତି ଅବଲମ୍ବନ କରେ । କେନ୍ଦ୍ର ବା ତ୍ରିକୋଣରେ କିମ୍ବା ମିତ୍ର ଗୃହରେ ବା ସ୍ୱକ୍ଷେତ୍ର ବା ଉଚ୍ଚରେ ଥିଲେ ଜାତକ ନାନାପ୍ରକାର ସୁଖ ଭୋଗ କରେ । ଦଶମାଧିପତି ନବମାଧିପତି ସହିତରେ ନବମରେ ଥିଲେ ସେ ବ୍ୟକ୍ତି ହସ୍ତୀ, ଅଶ୍ୱାଦି ଯାନରେ ଗମନାଗମନ କରେ ଓ ବିପୁଳ ଭାଗ୍ୟ ଭୋଗ କରେ ।

କର୍ମାଧିପେ ପଞ୍ଚମସ୍ଥେ ଶୁଭଗ୍ରହସମନ୍ୱିତେ ।
ରାଜସମ୍ମାନମର୍ଥାପ୍ତିଂ ସମ୍ଭବେନ୍ନାତ୍ର ସଂଶୟଃ ॥
କେ. ପା.

ଦଶମାଧିପତି ପଞ୍ଚମରେ ଶୁଭଗ୍ରହ ସହିତରେ ଥିଲେ ଜାତକ ରାଜସମ୍ମାନ ଓ ବିପୁଳ ଧନ ଲାଭ କରେ ।

କର୍ମାଧିପଃ ସୌମ୍ୟଖଗଃ ସବୀର୍ଯ୍ୟୈର୍ବା,
ଯୁକ୍ତେକ୍ଷିତଃ ସୌମ୍ୟଖଗୈର୍ଯଦା ସ୍ୟାତ୍ ।

ବାଡବଗାଃ ସୌମ୍ୟଖଗାଃ ସର୍ବାର୍ଥ୍ୟାଃ
ଶୁଭଂ ଫଳଂ ତଦ୍ଭବନସ୍ୟ ବାଚ୍ୟଂ ॥

ବଳବାନ୍ ଶୁଭଗ୍ରହ ଦଶମାଧିପତି ହୋଇଥିଲେ କିମ୍ବା ଶୁଭଗ୍ରହ କର୍ତ୍ତୃକ ଦୃଷ୍ଟ ହେଉଥିଲେ କିମ୍ବା ଦଶମରେ ବଳବାନ୍ ଶୁଭଗ୍ରହ ଥିଲେ ଦଶମଭାବ ଅତି ଉତ୍ତମ ହୁଏ ।

କର୍ମାଧୀଶଃ ସବାର୍ଯ୍ୟୋ ଯଦି ଜନୁଷି ତଦା ସର୍ବକର୍ମାଣ୍ୟଦଂ ନୋ ।
ଗେହେ ସ୍ବୀୟେ ସଦାର୍ଯୋ ଶୁଭବହଗଯୁତେ ମାନବୋ ମାନଶୀଳଃ ॥
ଜା. ଅ.

ଦଶମାଧିପତି ଦୁର୍ବଳ ହୋଇଥିଲେ ଅଶୁଭ ଫଳ ଘଟେ । ଜାତକ କୌଣସି କାର୍ଯ୍ୟ ସମାଧା କରି ପାରେ ନାହିଁ । କର୍ମାଧିପତି ଶୁଭଗ୍ରହଯୁକ୍ତ ହେଲେ ବା ସ୍ବଗୃହସ୍ଥ ହେଲେ ଜାତକ ମାନୀ ଓ ସକଳ କର୍ମଦକ୍ଷ ହୁଏ ।

କର୍ମେଶେ ବଳବର୍ଜିତେ ଚପଳଧୀର୍ଜାତୋ ଦୁରାଗ୍ରହବାନ୍ ।
ଜୀବଜ୍ଞାସିତଭାନବୋ ବଳହୀନୋ ଦୁଃସ୍ଥାନକର୍ମପ୍ରଦାଃ ॥

କର୍ମାଧିପତି ନିର୍ବଳ ହୋଇଥିଲେ ଜାତକ ଚଞ୍ଚଳମନା ଓ ଦୁରାଗ୍ରହୀ ହୁଏ । ବୃହସ୍ପତି, ବୁଧ, ଶନି ଓ ରବି ଏମାନେ ଦୁର୍ବଳ ହେଲେ ଜାତକ କୁତ୍ସିତ ସ୍ଥଳରେ କର୍ମପ୍ରାପ୍ତି ହୁଏ ।

ପାପୋ ଯଚ୍ଛତି କର୍ମଗୋଽପି ବଳବାନ୍ ବ୍ୟକ୍ତିସ୍ଥିରାସାହସଂ ।
ସୌମ୍ୟା ଦୁର୍ବଳଶାଳିନୋ ଦଶମଗାଃ ସତ୍କର୍ମବିଧ୍ୱଂସକାଃ ॥

ପାପଗ୍ରହ ଦଶମରେ ବଳବାନ୍ ହୋଇ ଥିଲେ ଜାତକ ବ୍ୟକ୍ତକ୍ରୀଡ଼ା-ନିପୁଣ ଓ ସାହସୀ ହୁଏ । ଶୁଭଗ୍ରହ ଦୁର୍ବଳ ହୋଇ ଦଶମରେ ଥିଲେ ସମସ୍ତ ସତ୍କର୍ମ ବିନାଶ ହୁଏ ।



## ଏକାଦଶ ଭାବ ବିଚାରଃ

ବହୁତରଧନଭାଗୀ ଶୃଙ୍ଗସଂସ୍ଥେ ଧନେଶେ,
ନରପତିଗୃହମେଧୀ ଭୋଗଖ୍ୟାତୋ ଗୁଣଜ୍ଞଃ ।
କୃଶତନୁବଲଯୁକ୍ତଃ କାମିନୀଶତ୍ରୁହାଶ୍ଚ,
ଭବତି ଚପଲଶତ୍ରୋ ଜ୍ଞାତିବର୍ଗପ୍ରମୋଦୀ ॥

ରବି ଏକାଦଶରେ ଥିଲେ ଜାତ ବ୍ୟକ୍ତି ଧନୀ, ଗୃହୀ, ଭୋଗଶୂନ୍ୟ, ଗୁଣବାନ୍, କ୍ଷୀଣଶରୀର ହୋଇଲେହେଁ ବଳବାନ୍, ସ୍ତ୍ରୀବଲ୍ଲଭ, ଚଞ୍ଚଳମନା ଓ ଜ୍ଞାତିବର୍ଗ ସହିତ ଆମୋଦରେ ଦିନ ନିଏ ।

ବହୁତରସୁଖଭାଗୀ ଲାଭସଂସ୍ଥେ ଶଶାଙ୍କେ,
ପ୍ରଚୁରଧନସମେତୋ ଦାରଭୃତ୍ୟାଦିଯୁକ୍ତଃ ।
ଶଶିନି କୃଶଶରୀରେ ନୀଚପାପାରିଗେହେ,
ନ ଭବତି ସୁଖଭାଗୀ ନିର୍ଦ୍ଧନୋ ମୂଢ଼ଚେତାଃ ॥

ଚନ୍ଦ୍ର ଏକାଦଶରେ ଥିଲେ ଜାତ ବ୍ୟକ୍ତି ସୁଖୀ, ଧନୀ, ସ୍ତ୍ରୀ ଓ ଭୃତ୍ୟାଦିରେ ଯୁକ୍ତ ହୁଏ । କ୍ଷୀଣ ଚନ୍ଦ୍ର ଏକାଦଶସ୍ଥ ହୋଇ ନୀଚ ବା ଶତ୍ରୁଗୃହସ୍ଥ ହୋଇଥିଲେ ଜାତକ ସୁଖହୀନ ନିର୍ଦ୍ଧନ ଓ ଦୁର୍ବୁଦ୍ଧିଯୁକ୍ତ ହୁଏ ।

ପରଜନହିତକାରୀ ଲାଭସଂସ୍ଥେ ଚ ଭୌମେ,
ନୃପ ଇବ ଗୃହମେଧୀ ପଣ୍ଡିତଃ କୋଷପୂର୍ଣ୍ଣଃ ।
ଭବତି ଚ ଯଦି ତୁଙ୍ଗେ ଲୋକସୌଭାଗ୍ୟଯୁକ୍ତଃ,
ଧୃତକରବଲଯୁକ୍ତଃ ପୁଣ୍ୟକାମୋଃତିଲୋଲଃ ॥

ମଙ୍ଗଳ ଏକାଦଶରେ ଥିଲେ ଜାତକ ସ୍ୱକୁଟୁମ୍ବ ହିତକାରୀ, ନୃପତୁଲ୍ୟ ଓ ବଳବାନ ହୁଏ । ଏହି ମଙ୍ଗଳ ଉଚ୍ଚରେ ଥିଲେ ଜାତକ ସୌଭାଗ୍ୟଯୁକ୍ତ, ଧୈର୍ଯ୍ୟଶାଳୀ, ବଳଯୁକ୍ତ, ପୁଣ୍ୟକର୍ମୀ ଓ ଅତିଶୟ ତେଜସ୍ୱୀ ହୁଏ ।

ସ୍ତ୍ରୀବଲ୍ଲଭୋଽତିଗୁଣବାନ୍ ମତିମାନ୍ ସ୍ୱଜନପ୍ରିୟଃ ।
ଲାଭଗେ ସୋମତନୟେ ମହାନ୍ନିର୍ଦ୍ଧନବ ନ୍ ଭବେତ୍ ॥

ବୁଧ ଏକାଦଶରେ ଥିଲେ ଜାତକ ସ୍ତ୍ରୀପ୍ରିୟ, ଗୁଣବାନ୍, ବୁଦ୍ଧିମାନ୍ ସ୍ୱଜନପ୍ରିୟ, ପରପାକଶଙ୍କୀହୀନ ଓ ଧନୀ ହୁଏ ।

ନୀରୋଗୀ ଦୃଢ଼କାର୍ଯ୍ୟୋସ୍ତ ମନ୍ତ୍ରବତ୍ ପରମାର୍ଥବତ୍ ।
ନାତିବଦ୍ୟୋଽଳ୍ପତନୟଃ ସାଧୁରେକାଦଶେ ଗୁରୌ ॥

ବୃହସ୍ପତି ଏକାଦଶରେ ଥିଲେ ଜାତକ ରୋଗଶୂନ୍ୟ, ଦୃଢ଼ଚେତା, ମାନ୍ତ୍ରିକ, ପରମାର୍ଥଜ୍ଞାନବିଶିଷ୍ଟ, ଅଳ୍ପ ବିଦ୍ୟାଯୁକ୍ତ, ଅଳ୍ପ ସନ୍ତାନଯୁକ୍ତ ଓ ସାଧୁ ହୁଏ ।

ନିଜଗୃହାୟଗତେ ଭୃଗୁଜେ ଗୁଣୀ,
ନିଜକୁଳସ୍ୟ ହିତେ ନିୟତବ୍ରତୀ ।
ମଦନତୁଲ୍ୟବପୁଃ ସୁଖଭାଜନୋ,
ଭବତି ହାସ୍ୟରତଃ ପ୍ରମଦାପ୍ରିୟଃ ॥

ଶୁକ୍ର ଏକାଦଶରେ ଥିଲେ ଜାତକ ଗୁଣବାନ୍, ସ୍ୱକୁଳ ହିତରେ ନିଯୁକ୍ତ, ସୁନ୍ଦର ଶରୀର, ସୁଖୀ, ହାସ୍ୟରତ ଓ ସ୍ତ୍ରୀଲୋଲୁପ ହୁଏ ।

ସୂର୍ଯ୍ୟାତ୍ମଜେ ଲାଭଗତେ ମନୁଷ୍ୟୋ,
ଧନୀ ବିତୃଷ୍ଣୋ ବହୁଭୋଗଭୋଗୀ ।

ଗୀତାନୁରାଗୀ ମୁଦିତଃ ସୁଶୀଲଃ,
ସର୍ବୈଷ୍ଟକାଲେ ଭବତୀହ ମାନୀ ॥

ଶନି ଏକାଦଶରେ ଥିଲେ ଜାତକ ଧନବାନ୍, ଦୃଷ୍ଟାରହିତ, ଭୋଗୀ, ସଙ୍ଗୀତାନୁରାଗୀ, ଦୀର୍ଘଚିତ୍ତ, ଉତ୍ତମ ସ୍ୱଭାବବିଶିଷ୍ଟ ଓ ଅଳ୍ପ ବୟସରୁ ମାନୀ ହୁଏ ।

ଆୟସ୍ଥିତେ ଦୈତ୍ୟସୁତେ ମନୁଷ୍ୟୋ
ହନ୍ତା ରିପୋଶ୍ଚାପି ସୁବୀର୍ଯ୍ୟଯତ୍ନାତ୍ ।
ଶୃଙ୍ଖଲ୍ୟୁକ୍ତଃ ପରଦାରସେବୀ
ଶାସ୍ତ୍ରସ୍ୟ ନିନ୍ଦୀ ଚପଲୋ ବିଲଜ୍ଜଃ ॥

ରାହୁ ଏକାଦଶରେ ଥିଲେ ଜାତକ ନିଜର ବଳ ଓ ଯତ୍ନଦ୍ୱାରା ଶତ୍ରୁପକ୍ଷକୁ ପରାସ୍ତ କରେ । ଏହି ବ୍ୟକ୍ତି ଚଞ୍ଚଳମନା, ପରସ୍ତ୍ରୀରତ, ଶାସ୍ତ୍ରନିନ୍ଦକ, ଚପଳ ଓ ଲଜ୍ଜାହୀନ ହୁଏ ।

ସୁଭଗ୍ୟଃ ସୁବିଦ୍ୟାଧିକୋ ଦର୍ଶନୀୟଃ,
ସୁପାନ୍ଦଃ ସୁବସ୍ତ୍ରଃ ସୁତେଜୋଽପି ତସ୍ୟ ।
ଦରେ ପୀଡ୍ୟତେ ସନ୍ତତିର୍ଦୁର୍ଭଗା ଚ,
ଶିଖୀ ଲାଭଗଃ ସର୍ବଲାଭଂ କରୋତି ॥

କେତୁ ଏକାଦଶରେ ଥିଲେ ଜାତ ବ୍ୟକ୍ତି ଭାଗ୍ୟବାନ୍, ବିଦ୍ୱାନ୍, ସୁନ୍ଦର, ଯୋଗ୍ୟ,ଉତ୍ତମବସନଧାରୀ, ତେଜୀୟାନ୍ ଓ ସର୍ବଦା ଉଦରରୋଗ-ଯୁକ୍ତ ହୁଏ । ସେ ସର୍ବଦା ଧନ ଲାଭ କରେ ।

ଆୟସ୍ଥାନ ବଳ ବିଚାରଃ :
ସ୍ୱସ୍ୱାମି ସଦ୍ଗ୍ରହଯୁତେକ୍ଷିତ ଆୟଗେହେ,
ସଦ୍ବର୍ଗକେ ଭବତି ଯସ୍ୟ ବିଶେଷଲାଭଃ ।

ନ କ୍ରୈଶ୍ଚ ଦୃଷ୍ଟି ସହିତେ ନ ଚ ତନ୍ନ ଲଭଃ
ସଦ୍‌ବର୍ଗକେଂଃପ୍ୟଥ ଚ ମିଶ୍ରଫଳଂ ଚ ମିଶ୍ରେ ॥

ଏକାଦଶ ସ୍ଥାନରେ ଏକାଦଶର ଅଧିପତି ବା ଶୁଭଗ୍ରହ ଥିଲେ, ଅମ୍ବା ସେ ସ୍ଥାନକୁ ଶୁଭଗ୍ରହ ଦେଖୁଥିଲେ ଓ ଲାଭାଧିପତି ଶୁଭ ବର୍ଗସ୍ଥ ହେଲେ ବିଶେଷ ଲାଭ ହୋଇଥାଏ । ଏକାଦଶରେ ପାପଗ୍ରହ ଥିଲେ ବା ଏକାଦଶକୁ ପାପଗ୍ରହ ଦେଖୁଥିଲେ ଲାଭ ହୁଏ ନାହିଁ ; ପାପ ଲାଭାଧିପତି ଶୁଭ ଷଡ୍‌ବର୍ଗରେ ଥିଲେ ସାମାନ୍ୟ ଲାଭ ହୁଏ ।

## ଲାଭାଧିପ ସ୍ଥିତିଫଳଂ

ଲାଭାଧିପ ଲଗ୍ନରେ ଥିଲେ ଜାତକ ସାତ୍ତ୍ୱିକ ବୁଦ୍ଧିଯୁକ୍ତ, ଧନବାନ୍ ଓ କୌତୁକୀ ହୁଏ । ୧ ।

ଦ୍ୱିତୀୟରେ ଅମ୍ବା ତୃତୀୟରେ ଥିଲେ ଜାତକ ସର୍ବକର୍ମକୁଶଳ ଓ ଭୋଗୀ ହୁଏ । ୨ ।

ଚତୁର୍ଥରେ ଅମ୍ବା ପଞ୍ଚମରେ ଥିଲେ ଜାତକ ସୁଖଭୋଗୀ, ବୁଦ୍ଧିମାନ୍ ପୁତ୍ରଯୁକ୍ତ ହୁଏ ।୩।

ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ ଜାତକ ରୁଗ୍ଣ, ପ୍ରବାସୀ ଓ ପରସେବକ ହୁଏ । ଦଶାନ୍ତର୍ଦଶାରେ ମାରାତ୍ମକ ପୀଡ଼ା ଭୋଗ କରେ ।୪।

ସପ୍ତମରେ ଥିଲେ ଜାତକ ଉତ୍ତମା ସ୍ତ୍ରୀ ଲାଭ କରେ ଓ ଗୁଣବାନ୍ ହୁଏ । ୫ ।

ନବମ ବା ଦଶମରେ ଥିଲେ ଜାତକ ସତ୍ୟବାଦୀ, ଚତୁର ଓ ଧନବାନ୍ ହୁଏ । ୬ ।

ଏକାଦଶରେ ଥିଲେ ଜାତକ ବାଗ୍ମୀ, ଚତୁର ଓ କବିତାଲେଖକ ହୁଏ । ୭ ।



# ଦ୍ୱାଦଶଭାବବିଚାରଃ

## ଦ୍ୱାଦଶସ୍ଥ ଗ୍ରହ ଫଳଂ

ନଡ଼ମତିରତିଗାମୀ ଗୃହ୍ୟଯୋଷିଦ୍ବିଳାସୀ,
ବିହଗଗଣବିଘାତୀ କ୍ରୂରଚେଷ୍ଟଃ କୁମୂର୍ତ୍ତିଃ ।
ନ ଭବତି ବଲଯୁକ୍ତୋ ଦ୍ୱାଦଶସ୍ଥେ ଦିନେଶୋ,
କଥକଜନବିରୋଧୀ ଜଂଘରୋଗୀ ସଶଙ୍କଃ ॥

ରବି ଦ୍ୱାଦଶରେ ଥିଲେ ଜାତକ ବାକ୍ଶକ୍ତିବିହୀନ, ଅଛି କାମୁକ, ପରସ୍ତ୍ରୀ ଅଭିଳାଷୀ, ପକ୍ଷୀଘାତକ, କ୍ରୂରଚେଷ୍ଟା, କୁତ୍ସିତରୂପ, ବଳହୀନ, କଥକଜନବିରୋଧୀ, ଜଙ୍ଘରୋଗୀ ଓ ଭୟାଳୁ ହୁଏ ।

ଭବତି ଶଶିନି ତୁଙ୍ଗେ ଦ୍ୱାଦଶସ୍ଥେ ଧନାଢ୍ୟଃ,
ବିପୁଲଯୁବତୀନାଥଃ ପୁତ୍ରଭୃତ୍ୟାଦିଯୁକ୍ତଃ ।
କ୍ଷୀଣେ ବପୁଷି ଶଶାଙ୍କେ ନୀଚପାପାରିସଂସ୍ଥେ,
ଗଦନିଚୟସମେତଃ ସର୍ବଦୁଃଖାଭିତପ୍ତଃ ॥

ଚନ୍ଦ୍ର ଦ୍ୱାଦଶରେ ଉଚ୍ଚ ହୋଇ ଥିଲେ ଜାତକ ଧନବାନ୍, ବହୁ ସ୍ତ୍ରୀସଂଭୋଗୀ, ପୁତ୍ର ଓ ଭୃତ୍ୟାଦିଯୁକ୍ତ ହୁଏ । ଏହି ଦ୍ୱାଦଶସ୍ଥ ଚନ୍ଦ୍ର କ୍ଷୀଣ, ନୀଚ, ପାପ ବା ଶତ୍ରୁଗୃହସ୍ଥ ହେଲେ ଜାତକ ବହୁ ରୋଗଯୁକ୍ତ ଓ ବହୁ ପ୍ରକାର ଦୁଃଖ ଭୋଗ କରେ ।

ପରଧନହରଣେଚ୍ଛା ସର୍ବଦା ଚଞ୍ଚଳାକ୍ଷଃ,
ଚପଳଗତିବିହାରୀ ହାସ୍ୟଯୁକ୍ତଃ ପ୍ରଚଣ୍ଡଃ ।
ନ ଭବତି ସୁଖଭାଗୀ ଦ୍ୱାଦଶସ୍ଥେ ଚ ଭୌମେ,
ପରଯୁବତିବିହାରୀ ଶୌଳିକଃ କର୍ମଶୂରଃ ॥

ମଙ୍ଗଳ ଦ୍ୱାଦଶରେ ଥିଲେ ଜାତକ ପରଧନହରଣେଚ୍ଛୁକ, ଚଞ୍ଚଳ ନେତ୍ରବିଶିଷ୍ଟ, ଦ୍ରୁତଗାମୀ, ହାସ୍ୟଯୁକ୍ତ, କ୍ରୁରସ୍ୱଭାବ, ଅସୁଖୀ, ପରଦାରାସକ୍ତ ଶୂଲ୍କବ୍ୟବସାୟୀ ଓ କର୍ମଦକ୍ଷ ହୁଏ ।

ଭବନ୍ତି ରିଷ୍ଫଗତେ ଚ ବୁଧେ ନରା
ବିକଳମୂର୍ତ୍ତିଧରା ଧନବର୍ଜିତାଃ ।
ପରକଳତ୍ରଧନେନ ଚ ବିତ୍ତବାନ୍,
ବ୍ୟସନପାପରତାଃ କୁହକାଃ ସଦା ॥

ବୁଧ ଦ୍ୱାଦଶରେ ଥିଲେ ଜାତକ ବିକଳାଙ୍ଗ, ଧନହୀନ, ପରସ୍ତ୍ରୀ ଦ୍ୱାରା ଧନାଦାୟକାରୀ, ବ୍ୟସନାସକ୍ତ, କପଟୀ ଓ ପାପାତ୍ମା ହୁଏ ।

ସତ୍ୟବାଦୀ ଦାନଶୀଳସ୍ତ୍ୟକ୍ତଦୁଷ୍ଟଜନଃ ଶୁଭଃ ।
ଅପ୍ରମାଦୀ ସାଧୁଶୀଲୋ ବ୍ୟୟସ୍ଥେ ଦେବତାଗୁରୌ ॥

ବୃହସ୍ପତି ଦ୍ୱାଦଶରେ ଥିଲେ ଜାତକ ସତ୍ୟବାଦୀ, ଦାନଶୀଳ, ଦୁଷ୍ଟଜନପରିତ୍ୟାଗୀ, ଶୁଭାତ୍ମା, ଅପ୍ରମାଦୀ ଓ ସାଧୁସ୍ୱଭାବାନ୍ୱିତ ହୁଏ ।

ବ୍ୟୟନିକେତନବର୍ତ୍ତିନି ଭାର୍ଗବେ,
ଭବନ୍ତି ରୋଗୟୁତାଃ ପ୍ରଥମେ ନରାଃ ।
ତଦନୁ ଦମ୍ଭପରାୟଣଚେତନାଃ,
କୃଶ ଧନା ମଲିନାଃ କଲହୀ ସଦା ॥

ଶୁକ୍ର ଦ୍ୱାଦଶରେ ଥିଲେ ଜାତକ ବାଲ୍ୟରୋଗୀ, ଦାମ୍ଭିକ, ଅଳ୍ପ ଧନଯୁକ୍ତ, ମଳିନ ଓ କଳହପ୍ରିୟ ହୁଏ ।

ଶତ୍ରୌ ଶନୌ ଚଞ୍ଚଳଦାରନାଥୋ,
ଗଦାନ୍ୱିତୋ ହୀନଧନଃ ସୁଦୁଃଖୀ ।

ଜଂଘବ୍ରଣୀ କ୍ରୂରମତିଃ କୃଶାଙ୍ଗୋ,
ବଧେ ରତଃ ପକ୍ଷୀଗଣସ୍ୟ ନିତ୍ୟଂ ॥

ଶନି ଦ୍ୱାଦଶରେ ଥିଲେ ଜାତକ ଚଞ୍ଚଳମନା ସ୍ତ୍ରୀ ପ୍ରାପ୍ତି ହୁଏ । ସେ ବ୍ୟକ୍ତି ରୋଗଯୁକ୍ତ, ଦୁଃଖୀ, ଜଙ୍ଘବ୍ରଣଯୁକ୍ତ, କ୍ରୂରବୁଦ୍ଧି, କ୍ଷୀଣଶରୀର ଓ ପକ୍ଷୀହନ୍ତା ହୁଏ ।

ରିଷ୍ଫବ୍ରିତେ ସୋମସୁତେ ମନୁଷ୍ୟଃ,
ଧର୍ମାର୍ଥହୀନୋ ବହୁଦୁଃଖତପ୍ତଃ ।
କାନ୍ତାସଖ୍ୟକ୍ତ ବିଦେଶବାସୀ,
ଦମ୍ଭାନ୍ୱିତଃ ପିଙ୍ଗଳନେତ୍ରଯୁକ୍ତଃ ॥

ଚନ୍ଦ୍ର ଦ୍ୱାଦଶରେ ଥିଲେ ଜାତକ ଧର୍ମାର୍ଥବିହୀନ ଓ ନାନାପ୍ରକାର ଦୁଃଖ ଭୋଗ କରେ । ସେ ବ୍ୟକ୍ତି ସ୍ତ୍ରୀସୁଖ ଭୋଗ କରି ପାରେ ନାହିଁ । ପ୍ରବାସରେ ରହେ । ଦମ୍ଭର ସହ ସମସ୍ତ କାର୍ଯ୍ୟ କରେ । ତାହାର ନେତ୍ରଦ୍ୱୟ ପିଙ୍ଗଳବର୍ଣ୍ଣ ହୁଏ ।

ଶିଖୀ ରିଷ୍ଫଗୋ ବସ୍ତିଗୁହ୍ୟାଂଘ୍ରି ନେତ୍ରେ,
ରୁଜା ପୀଡ଼ନଂ ମାତୁଳାନ୍ନୈବ ଶର୍ମ ।
ସଦା ସଦ୍‌ବ୍ୟୟଂ ରାଜତୁଲ୍ୟଃ କରୋତି,
ରିପୂଣାଂ ବିନାଶଂ ରଣେ ସୌଖ୍ୟମେତି ॥

କେତୁ ଦ୍ୱାଦଶରେ ଥିଲେ ଜାତକ ତଳପେଟ, ଗୁହ୍ୟଦେଶ, ପାଦ ଓ ନେତ୍ରଦ୍ୱୟରେ ପୀଡ଼ା ଭୋଗ କରେ । ମାତୁଳସ୍ନେହ ଭୋଗ କରି ପାରେ ନାହିଁ । ରାଜାର ତୁଲ୍ୟ ସଦ୍‌ବ୍ୟୟରେ ଧନ ବିନିଯୋଗ କରେ, ଯୁଦ୍ଧ ବିବାଦରେ ସେ ଶତ୍ରୁମାନଙ୍କୁ ପରାଜୟ କରେ ।

## ବ୍ୟୟଭାବ ବଳ ନିର୍ଣ୍ଣୟଂ

ରିଫସ୍ଥାନଗତେ ଶୁଭେ ଶୁଭଯୁତେ ସୌମ୍ୟଗ୍ରହାଲୋକତେ
ତନ୍ନାଥେ ବଲେଃରୀଚଗୃହଗେ ବିତ୍ତବ୍ୟୟଂ ଭାବଭାକ୍ ।
ରିଫସ୍ଥେ ବଲେ ବଲେନ ସହିତେ ରିଫାଧିପେ ବିତ୍ତହା,
ମିଶ୍ରେବ୍ୟମତଗତ୍ତ୍ୱେ ଭୂ ପକଲଂ ମିଶ୍ରବ୍ୟୟଂ ଦେହିନାଂ ॥

ଶୁଭଗ୍ରହ ଦ୍ୱାଦଶରେ ରହିଲେ କିମ୍ବା ଶୁଭଗ୍ରହର ଦୃଷ୍ଟିରେ ଦ୍ୱାଦଶ ସ୍ଥାନ ଥିଲେ, ବ୍ୟୟାଧିପ ନୀଚ ବା ଶତ୍ରୁ କ୍ଷେତ୍ରରେ ଥାଇ ଶୁଭ ଦୃଷ୍ଟିରେ ଥିଲେ ଧନନାଶ ହୁଏ ନାହିଁ । ବଳହୀନ ଗ୍ରହ ଦ୍ୱାଦଶରେ ଥିଲେ ଏବଂ ବ୍ୟୟାଧିପତି ବଳବାନ୍ ହେଲେ ଧନନାଶ ହୁଏ । ଦ୍ୱାଦଶ ସ୍ଥାନକୁ ଓ ଦ୍ୱାଦଶ ସ୍ଥାନାଧିପତିଙ୍କୁ ଶୁଭଗ୍ରହ ଦେଖୁଥିଲେ ଜାତକ ସଦ୍‌ବ୍ୟୟ କରେ । ଏମାନେ ଅଶୁଭ ଦୃଷ୍ଟିରେ ଥିଲେ ଜାତକ ଅସଦ୍‌ବ୍ୟୟ କରେ । ଶୁଭାଶୁଭ ଉଭୟ ଗ୍ରହର ଦୃଷ୍ଟି ଥିଲେ ଉଭୟ ପ୍ରକାରେ ଧନ ବ୍ୟୟ କରେ ।

## ବ୍ୟୟାଧିପସ୍ଥିତଫଳଂ ।

ବ୍ୟୟାଧିପତି ଲଗ୍ନରେ ଥିଲେ ଜାତକ ଦାନଶୀଳ ଓ କ୍ଷୀଣଶରୀରୀ ହୁଏ । ୧ । ପ. ହୋ. ।

ବ୍ୟୟାଧିପତି ଦ୍ୱିତୀୟରେ ଥିଲେ ଧନନାଶ ଓ କୁଟୁମ୍ବପୀଡ଼ା ହୁଏ । ୨ ।

ତୃତୀୟରେ ଥିଲେ ଭ୍ରାତୃଶତ୍ରୁ ହୁଅନ୍ତି । ଜାତକ ପରଧନ ହରଣରେ ମନ ବଳାଏ । ୩ ।

ଚତୁର୍ଥରେ ଥିଲେ ଯାନାଦିରୁ ପତନଭୟ ଓ ଗୃହବାଧା ହୁଏ । ୪ ।

ପଞ୍ଚମରେ ଥିଲେ ଜାତକ ସନ୍ତାନହୀନ, ବାକ୍‌ଶକ୍ତିହୀନ ଓ ଧନହୀନ ହୁଏ । ୫ ।

ଷଷ୍ଠରେ ଥିଲେ ବ୍ରଣପୀଡ଼ା ହୁଏ । ଜାତକ ମାତ ଶତ୍ରୁଦ୍ୱାରା ଉତ୍ପୀଡ଼ିତ ହୁଏ । ୬ ।

ସପ୍ତମରେ ଥିଲେ ସ୍ତ୍ରୀପୀଡ଼ା ଓ ସ୍ତ୍ରୀହେତୁକ ଧନନାଶ ହୁଏ । ୭।

ଅଷ୍ଟମରେ ଥିଲେ ଜାତକ ନାନା ରୋଗାକ୍ରାନ୍ତ ହୁଏ ଓ ଦାରିଦ୍ର୍ୟ ହୁଏ । ୮ ।

ନବମରେ ଥିଲେ ଭାଗ୍ୟନାଶ ହୁଏ । ମାତୁଳ ଶତ୍ରୁ ହୁଅନ୍ତି । ପୁଣ୍ୟ କର୍ମାଦରେ ଜାତକ ଧନ ବ୍ୟୟ କରେ । ୯ ।

ଦଶମରେ ଥିଲେ କର୍ମକ୍ଷୟ, ଉଦ୍ୟୋଗାଦ ଭଙ୍ଗ ହୁଏ । ଜାତକ ଅପମାନ ଭୋଗ କରେ । ୧୦ ।

ଏକାଦଶରେ ଥିଲେ ଲାଭ ଅପେକ୍ଷା ବ୍ୟୟ ବିଶେଷ ହୁଏ ।

ବ୍ୟୟାଧିପତି ଦ୍ୱାଦଶରେ ଥିଲେ ପିତୃସମ୍ପତ୍ତି ନାଶ ହୁଏ । ଜାତକ ସାମାନ୍ୟ ପଶୁମାନଙ୍କୁ ଉପାର୍ଜନ କରେ ।

ଚତୁର୍ଥୋଽଧ୍ୟାୟଃ ସମାପ୍ତଃ ।



# ପଞ୍ଚମୋଽଧ୍ୟାୟଃ

## ରାଜଯୋଗ ବିଚାରଃ

ପ୍ରାହୁର୍ଯବନାଃ ସ୍ୱତୁଙ୍ଗଗୈଃ କ୍ରୂରୈଃ କ୍ରୂରମତିର୍ମହୀପତିଃ ।
କ୍ରୂରୈସ୍ତୁ ନ ଜୀବ ଶର୍ମଣଃ ପକ୍ଷୋଽଭିମଧିପଃ ପ୍ରଜାୟତେ ॥
ବୃ. ଜା.

ଯବନାଚାର୍ଯ୍ୟ କହୁଅଛନ୍ତି, ପାପଗ୍ରହମାନେ ରାଜଯୋଗକାରକ ହେଲେ ପାପମତି ରାଜା କରନ୍ତି । ଶୁଭ ଗ୍ରହମାନେ ରାଜଯୋଗକାରକ

ହେଲେ ପୁଣ୍ୟକର୍ମାଦିଯୁକ୍ତ ରଜା କରାନ୍ତି । ଜୀବଶର୍ମାଙ୍କ ମତରେ ପାପଗ୍ରହମାନେ ରାଜଯୋଗକାରକ ହେଲେ ମଧ୍ୟ ରାଜା କରାଇ ପାରନ୍ତି ନାହିଁ ।

ଷଡ୍ଭିର୍ଗ୍ରହୈରୁଚ୍ଚସମନ୍ୱିତୈଃ ସ୍ୟାତ୍,
ରାଜାଧିରାଜୋ ବହୁଦେଶଭର୍ତ୍ତା ।
ଉଚ୍ଚସ୍ଥିତୈଃ ପଞ୍ଚଭିରେବ ରାଜା,
ଶକ୍ର୍ୟାନ୍ୱିତୋ ଦେବଗୁରୌ ବିଲଗ୍ନେ ॥ ବୃ. ଜା.

ଛଅ କମା ପାଞ୍ଚଟି ଗ୍ରହ ଉଚ୍ଚରେ ଥିଲେ ଜାତକ ରାଜା ହୁଏ । ବୃହସ୍ପତି କର୍କଟର ପଞ୍ଚମାଂଶରେ ଥିଲେ ଓ କର୍କଟର ପଞ୍ଚମାଂଶରେ ଲଗ୍ନ ହେଲେ ତାହା ରାଜଯୋଗ ହୁଏ ।

ଯମେ କୁମ୍ଭେ ଽର୍କେଜେ ଗବି ଶଶିନି ତୈରେବ ତନୁଗୈ
ନୃଯୁକ୍ ସିଂହାଳିସ୍ଥୈଃ ଶଶିଜଗୁରୁବକ୍ରୈର୍ନୃପତୟଃ ।
ଯମେନ୍ଦୂ ତୁଙ୍ଗେଽଗେ ସବିତୃଶଶିଜୌ ଷଷ୍ଠଭବନେ,
ତୁଲାଜେନ୍ଦୁକ୍ଷେତ୍ରୈଃ ସଶିତକୁଜଜୀବୈଶ୍ଚ ନରପୋ ॥

ବୃ. ଜା.

•

କୁମ୍ଭ ଲଗ୍ନ ହୋଇଥିବ, ଶନି ଲଗ୍ନରେ ଥିବେ, ମେଷରେ ରବି, ବୃଷରେ ଚନ୍ଦ୍ର, ବୁଧ, ସିଂହରେ ବୃହସ୍ପତି ଓ ବୃଶ୍ଚିକରେ ମଙ୍ଗଳ ଥିଲେ ରାଜଯୋଗ ହୁଏ ।୧। ଗ୍ରହ ଅବସ୍ଥାନ ଯେପରି ସେପରି ରହିବ, ମାତ୍ର ଲଗ୍ନ ମେଷ ହେଲେ ତାହା ଅନ୍ୟ ଏକ ରାଜଯୋଗ । ୨ । ଲଗ୍ନ ବୃଷ ହେବ, ସମସ୍ତ ଗ୍ରହ ପୂର୍ବପର ଥିଲେ ତାହା ଅପର ଏକ ରାଜଯୋଗ । ୩ ।

କୁଜେ ତୁଙ୍ଗେଽର୍କେନ୍ଦ୍ୱୋ ଧନୁଷି ଯମଲଗ୍ନେ ଚ କୁପତିଃ,
ପତିର୍ଭୂମେଶ୍ଚାନ୍ୟଃ କ୍ଷିତିସୁତବିଲଗ୍ନେ ସଶଶିନି ।

ସଚନ୍ଦ୍ରେ ସୌରେଽସ୍ତେ ସୁରପତିଗୁରୌ ଚାପଧରଗେ,
ସ୍വତୁଙ୍ଗସ୍ଥେ ଭାନାବୁଦୟମୁପଯାତେ କ୍ଷିତିପତିଃ ॥
ବୃ. ଜା.

ମକର ଲଗ୍ନ ହୋଇଥିବ, ଲଗ୍ନରେ ଶନି ଓ ମଙ୍ଗଳ ଥିବେ, ଧନୁ ରାଶିରେ ରବି ଓ ଚନ୍ଦ୍ର ଥିଲେ ତାହା ଏକ ରାଜଯୋଗ । ୪ । ମକର ଲଗ୍ନ ହୋଇଥିବ, ଲଗ୍ନରେ ମଙ୍ଗଳ ଓ ଚନ୍ଦ୍ର ଥିବେ, ରବି ଧନୁରେ ଥିଲେ ତାହା ଅନ୍ୟ ଏକ ରାଜଯୋଗ । ୫ । ମେଷ ଲଗ୍ନ, ଲଗ୍ନରେ ରବି, ତୁଳାରେ ଶନି ଓ ଚନ୍ଦ୍ର, ଧନୁରେ ବୃହସ୍ପତି ଥିଲେ ତାହା ଅପର ରାଜଯୋଗ ।୬। ଏହି ଷଷ୍ଠ ରାଜଯୋଗକୁ ପ୍ରକାରାନ୍ତରେ ଅନ୍ୟ ପ୍ରକାର କହାଯାଇଅଛି । ଧନୁ ଲଗ୍ନ ହୋଇଥିବ, ଲଗ୍ନରେ ବୃହସ୍ପତି, ମେଷରେ ରବି ଓ ତୁଳାରେ ଶନି ଓ ଚନ୍ଦ୍ର ଥିଲେ ତାହା ରାଜଯୋଗ ହୁଏ । ୭ ।

ବୃଷେ ସେନ୍ଦୌ ଲଗ୍ନେ ସବିତୃଗୁରୁତୀକ୍ଷ୍ଣାଂଶୁତନୟୈଃ,
ସୁହୃଜ୍ଜାୟାଖସ୍ଥୈର୍ଭବତି ନିୟମାନ୍ ମାନବପତିଃ ।
ମୃଗେ ମନ୍ଦେ ଲଗ୍ନେ ସହଜରିପୁଧର୍ମବ୍ୟୟଗତୈଃ,
ଶଶାଙ୍କାଦ୍ୟୈଃ ଖ୍ୟାତଃ ପୃଥୁଗୁଣଯଶାଃ ପୁଙ୍ଗଳପତିଃ ॥
ବୃ. ଜା.

ବୃଷ ଲଗ୍ନ ହୋଇଥିବ, ଲଗ୍ନରେ ଚନ୍ଦ୍ର ଥିବେ, ବୃଶ୍ଚିକରେ ବୃହସ୍ପତି ଥିବ, କୁମ୍ଭରେ ଶନି ଥିବ ଓ ମେଷରେ ରବି ଥିଲେ ତାହା ଏକ ରାଜଯୋଗ ହୁଏ । ୮ । ମକର ଲଗ୍ନ ହୋଇଥିବ, ଲଗ୍ନରେ ଶନି, ମୀନରେ ଚନ୍ଦ୍ର, ମିଥୁନରେ ମଙ୍ଗଳ, କନ୍ୟାରେ ବୁଧ ଓ ଧନୁରେ ବୃହସ୍ପତି ଥିଲେ ଅନ୍ୟ ଏକ ରାଜଯୋଗ ହୁଏ । ୯ ।

ହୟେ ସେନ୍ଦୌ ଜ୍ଞେ ମୃଗମୁଖଗତେ ଭୂମିତନୟେ,
ସ୍ୱତୁଙ୍ଗସ୍ଥୌ ଲଗ୍ନେ ଭୃଗୁଜଶଶିଜାବତ୍ର ନୃପତିଃ ।

ସୁତଷ୍ଟୌମ୍ବିକ୍ଷାର୍କୌ ଗୁରୁଶିତଶଶୀ ନୃପି ହୁବୁକେ ।
ବୁଧେ କନ୍ୟାଲଗ୍ନେ ଭବତି ହି ନୃପସ୍ତାପି ଗୁଣବାନ୍ ॥

ବୃ. ଜା.

ମୀନ ଲଗ୍ନ, ତହିଁରେ ଶୁକ୍ର ଥିବେ, ଧନୁରେ ବୃହସ୍ପତି ଓ ଚନ୍ଦ୍ର ଏବଂ ମକରରେ ମଙ୍ଗଳ ଥିଲେ ରାଜଯୋଗ ହୁଏ । ୧୦ । କନ୍ୟା ଲଗ୍ନ, ତହିଁରେ ବୁଧ, ଧନୁରେ ବୃହସ୍ପତି ଚନ୍ଦ୍ର ଓ ଶୁକ୍ର ଏବଂ ମକରରେ ଶନି ଓ ମଙ୍ଗଳ ଥିଲେ ତାହା ଏକ ରାଜଯୋଗ ହୁଏ । ୧୧ । ଏହି ରାଜଯୋଗ ଜାତକ ଗୁଣବାନ୍ ଓ ରାଜା ହୁଏ ।

ଝଷେ ସେନ୍ଦୌ ଲଗ୍ନେ ଘଟମୃଗମୃଗେନ୍ଦ୍ରେଷୁ ସହିତୈ—
ର୍ଯମାର୍କେସ୍ୟୋଭୂଃସ ଖଲୁ ମନୁଜଃ ଶାସ୍ତି ବସୁଧାଂ ।
ଅଜେ ସାବେ ମୂର୍ତ୍ତୌ ଶଶିଗୃହଗତେ ଗୃମରଗୁରୌ
ସୁରେଜ୍ୟେ ବା ଲଗ୍ନେ ଧରଣୀପତିରନ୍ୟୋପି ଗୁଣବାନ୍ ॥

ବୃ. ଜା.

ମୀନଲଗ୍ନ, ତହିଁରେ ଚନ୍ଦ୍ର, ସିଂହରେ ରବି, ମକରରେ ମଙ୍ଗଳ ଓ କୁମ୍ଭରେ ଶନି ଥିଲେ ତାହା ଏକ ରାଜଯୋଗ ହୁଏ । ୧୨ । କର୍କଟ ଲଗ୍ନ ତହିଁରେ ବୃହସ୍ପତି ଓ ମେଷରେ ମଙ୍ଗଳ ଥିଲେ ତାହା ଏକ ରାଜଯୋଗ ହୁଏ । ୧୩ ।

ମୃଗମୁଖେର୍କତନୟସ୍ତନୁସଂସ୍ଥଃ
କ୍ରିୟକୁଲୀରହସ୍ୟୋଧିପଯୁକ୍ତାଃ ।
ମିଥୁନତୌଲିସହିତୌ ବୁଧଶୁକ୍ରୌ
ଯଦି ତଥା ପୃଥୁଯଶା ପୃଥିବୀଶଃ ॥

ବୃ. ଜା.

ମକର ଲଗ୍ନ ହୋଇଥିବ, ତହିଁରେ ଶନି ଥିବେ, ମେଷରେ ମଙ୍ଗଳ; କର୍କଟରେ ଚନ୍ଦ୍ର, ଧନୁରେ ବୃହସ୍ପତି, ମିଥୁନରେ ବୁଧ ଓ ତୁଳାରେ ଶୁକ୍ର ଥିଲେ ଜାତକ ଗୁଣବାନ୍ ରାଜା ହୁଏ । ୧୪ ।

ଗୁରୁରବିକୁଜସୌରୈଃ ସ୍ୱୋଚ୍ଚଗୈର୍ଜନ୍ମକାଳେ,
ଜଲନିଧିରସନାୟାଃ ସ୍ୱାମିତାଂ ଯାତି ଭୂମେଃ ।
ଭଜତି ସମରଲକ୍ଷ୍ମୀ ତଂ ନୃପଂ ସଙ୍ଗରସ୍ଥଂ,
କରିତୁରଗରଥୌଘଂ ରାଜଲକ୍ଷ୍ମୀସମେତଂ ॥

ଜା, ଶି,

ବୃହସ୍ପତି କର୍କଟର ୫ ଅଂଶରେ ରବି ମେଷର ୧୦ ଅଂଶରେ, ମଙ୍ଗଳ ମକରର ୨୮ ଅଂଶରେ ଓ ଶନି ତୁଳାର ୨୦ ଅଂଶରେ ଥିଲେ ଜାତକ ସସାଗରା ପୃଥିବୀରେ ରାଜତ୍ୱ କରେ । ହସ୍ତୀ, ଅଶ୍ୱ, ରଥ ବ୍ୟବହୃତ ଯୁଦ୍ଧ କ୍ଷେତ୍ରରେ ଜୟ ଲାଭ କରେ । ୧୫ । ପୂର୍ବୋକ୍ତ ଗ୍ରହମାନେ କେବଳ ଉଚ୍ଚଗତ ହୋଇଥିଲେ ସାମାନ୍ୟ ରାଜଯୋଗ ହୁଏ ।

ଲଗ୍ନାଦ୍ଯସ୍ୟ ଖଗସ୍ୟ ଭାଗ୍ୟଭବନଂ ତୁଙ୍ଗ ।
ତଦୀଶେନ ଯୁଗଦୃଷ୍ଟଂ ଚେଦ୍ଭବତକ୍ଷିତେରଧିପତି-
ସ୍ୱୋଚ୍ଚସ୍ଥିତୈଶ୍ଚେଦ୍ଗ୍ରହୈଃ ।
ମୀନସ୍ଥେ ଭୃଗୁନନ୍ଦନେ ସୁତଗତେ ଜୀବେ ସତାରାଧିପେ ।
ରାଜା ନୀଚକୁଲୋଦ୍ଭବୋଽପିନିୟତଂ ଜାୟାତ୍ରିସୁବଂଶାଡଗଃ ॥

ଜା, ଶି,

ଲଗ୍ନର ନବମରେ ଯେଉଁ ଗ୍ରହ ଉଚ୍ଚ, ସେହି ଗ୍ରହ ସେହି ରାଶିର ଅଧିପତି ସଙ୍ଗେ ଯୁକ୍ତ ହୋଇଥିଲେ ବା ତାହାର ଦୃଷ୍ଟିରେ ଥିଲେ ରାଜ-ଯୋଗ ହୁଏ ।

ସ୍ପଷ୍ଟ—ବୃଷ ଲଗ୍ନଜାତ ବ୍ୟକ୍ତିର ମଙ୍ଗଳ ସହ ଶନିର ଯୋଗ ବା ଶନିର ଦୃଷ୍ଟିସ୍ଥ ମଙ୍ଗଳ ହେଲେ ତାହା ଯୋଗକାରକ ।

କର୍କଟ ଲଗ୍ନଜାତ ବ୍ୟକ୍ତିର ଶୁକ୍ରସହ ବୃହସ୍ପତିର ଯୋଗ ଅଥବା ବୃହସ୍ପତିର ଦୃଷ୍ଟିରେ ଶୁକ୍ର ଥିଲେ ଯୋଗକାରକ ।

ସିଂହ ଲଗ୍ନଜାତ ବ୍ୟକ୍ତିର ରବିସହ ମଙ୍ଗଳର ଯୋଗ ଅଥବା ମଙ୍ଗଳର ଦୃଷ୍ଟିରେ ରବି ଥିବା ଯୋଗକାରକ ।

କନ୍ୟା ଲଗ୍ନଜାତ ବ୍ୟକ୍ତିର ଚନ୍ଦ୍ରସହ ଶୁକ୍ରର ଯୋଗ ଅଥବା ଶୁକ୍ରର ଦୃଷ୍ଟିରେ ଚନ୍ଦ୍ର ଥିଲେ ଯୋଗକାରକ ।

ବୃଶ୍ଚିକ ଲଗ୍ନଜାତ ବ୍ୟକ୍ତିର ବୃହସ୍ପତି ସହ ଚନ୍ଦ୍ରର ଯୋଗ ବା ଚନ୍ଦ୍ରର ଦୃଷ୍ଟିରେ ବୃହସ୍ପତି ଥିଲେ ଯୋଗକାରକ ।

ମକର ଲଗ୍ନଜାତ ବ୍ୟକ୍ତିର ବୁଧ କନ୍ୟାରେ ଥିବା ଯୋଗକାରକ, ବୁଧ ନିଜେ ସେହି ସ୍ଥାନରେ ଅଧିପତି ଯୋଗେ ତାହା ପ୍ରତି ଦୃଷ୍ଟିର ବିଚାର ନାହିଁ । କୁମ୍ଭଲଗ୍ନଜାତ ବ୍ୟକ୍ତିର ଶନିସହ ଶୁକ୍ରର ଯୋଗ ବା ଶୁକ୍ରର ଦୃଷ୍ଟିରେ ଶନି ଥିଲେ ଯୋଗକାରକ ।

ଅନ୍ୟାନ୍ୟ ଲଗ୍ନମାନଙ୍କର ନବମରେ କୌଣସି ହେଲେ ଗ୍ରହ ଉଚ୍ଚ ନୁହନ୍ତି । ତେଣୁ ସେହି ଲଗ୍ନଜାତ ବ୍ୟକ୍ତିମାନଙ୍କୁ ଏହି ଯୋଗ ନାହିଁ ।

ମୀନ ଲଗ୍ନ ହୋଇଥିବ, ଲଗ୍ନରେ ଶୁକ୍ର ଥିବ, କର୍କଟରେ ଚନ୍ଦ୍ର ଓ ବୃହସ୍ପତି ଥିଲେ ରାଜଯୋଗକାରକ ହୁଏ । ୧୨ ।

କନ୍ୟାୟାଂ ରବିସୋମଜୌ ନିଜଗୃହେ ସୂର୍ଯ୍ୟସ୍ଥିତୌ ମେଷଗୌ
ଭୂପୁତ୍ରେ ଦଶମାଳୟେ ସୁରଗୁରୌ କର୍କସ୍ଥିତେ ଭୂମିପଃ ।
ଲଗ୍ନେ ତୁଙ୍ଗ ଗୃହସ୍ଥିତେ ଶଶଧରେ ଶେଷାଃ ଗ୍ରହା ପ୍ରାକ୍ତନ —
ସ୍ଥାନସ୍ଥା ବରୁଣାଳୟାନ୍ତ ଧରଣୀଂ ପାତ୍ୟେକପାତିମିବ ॥ ଜା. ଶି. ।

ତୁଲା ଲଗ୍ନ ହୋଇଥିବ, ଚତୁର୍ଥରେ ଶୁକ୍ର ଓ ଶନି ଥିବେ, ମେଷରେ ମଙ୍ଗଳ ଥିବେ, କର୍କଟରେ ବୃହସ୍ପତି ଥିବେ ଓ କନ୍ୟାରେ ରବି ଓ ବୁଧ ଥିଲେ ତାହା ରାଜଯୋଗ ହୁଏ । ୧୭ ।

ବୃଷ ଲଗ୍ନ ହୋଇଥିବ, ଲଗ୍ନରେ ଚନ୍ଦ୍ର, କର୍କଟରେ ବୃହସ୍ପତି, କନ୍ୟାରେ ରବି ଓ ବୁଧ ଥିଲେ ରାଜଯୋଗ ହୁଏ । ଏହି ଯୋଗଜାତ ବ୍ୟକ୍ତି ସସାଗରା ଧରା ରାଜତ୍ୱ କରେ । ୧୮ ।

ବୃଷେ ହସ୍ୟେ ମୂର୍ତ୍ତିଧନାରିଲାଭଗୈଃ,
ଶଶାଙ୍କଜୀବାର୍କସୁତାପରୈର୍ନୃପଃ ।
ସୁଖେ ଗୁରୌ ଖେ ଶଶିତୀକ୍ଷ୍ଣଦୀଧିତି,—
ର୍ଯମୋଦୟେ ଲାଭଗତୌ ନୃପୋଽପରେ ॥ ବୃ.ଜା.

ବୃଷ ଲଗ୍ନ ହୋଇଥିବ, ଲଗ୍ନରେ ଚନ୍ଦ୍ର ଥିବେ, ମିଥୁନରେ ବୃହସ୍ପତି, ତୁଲାରେ ଶନି, ମୀନରେ ରବି, ମଙ୍ଗଳ, ବୁଧ ଓ ଶୁକ୍ର ଥିଲେ ରାଜଯୋଗ ହୁଏ । ୧୯ ।

ଧନୁ ଲଗ୍ନ ହୋଇଥିବ, ଲଗ୍ନରେ ଶନି ଥିବେ, ମୀନରେ ବୃହସ୍ପତି କନ୍ୟାରେ ଚନ୍ଦ୍ର ଓ ରବି, ତୁଳାରେ ମଙ୍ଗଳ, ବୁଧ ଓ ଶୁକ୍ର ଥିଲେ ତାହା ରାଜଯୋଗ ହୁଏ । ୨୦ ।

ଏହି ସମସ୍ତ ରାଜଯୋଗକାରକ ଗ୍ରହମାନେ ସେମାନଙ୍କର ଦଶାନ୍ତର୍ଦ୍ଦଶାରେ ଯୋଗକାରକ ଫଳ ଦିଅନ୍ତି । ରାଜବଂଶଜାତ ବ୍ୟକ୍ତିଗଣ ଏହି ଯୋଗରେ ଜାତ ହେଲେ ରାଜା ହୁଅନ୍ତି । ଅନ୍ୟ ବଂଶଜାତ ବ୍ୟକ୍ତିଗଣ ସୌଭାଗ୍ୟ, ଯଶ, ସମ୍ପଦାଦିରେ ଯୁକ୍ତ ହୁଅନ୍ତି ।

## ଶୁଭଯୋଗବର୍ଣ୍ଣନମ୍ଃ

ଲଗ୍ନେ ଚନ୍ଦ୍ରେ ଗୁରୌ ସୌଖ୍ୟେ କର୍ମସ୍ଥେ ଭୃଗୁନନ୍ଦନେ ।
ସ୍ଥୋଚ୍ଚସ୍ୱର୍କ୍ଷସ୍ଥିତେ ମନ୍ଦେ ନୃପତୁଲ୍ୟୋ ଭବେନ୍ନରଃ ॥
ସ. ର.

ଲଗ୍ନରେ ଚନ୍ଦ୍ର, ଚତୁର୍ଥରେ ବୃହସ୍ପତି, ଦଶମରେ ଶୁକ୍ର ଓ ତୁଳାରେ ଶନି ଥିଲେ ଏକ ବଳିଷ୍ଠ ରାଜଯୋଗ ହୁଏ ।

ଲଗ୍ନେ ଗୁରୌ ବୁଧେ କେନ୍ଦ୍ରେ ଭାଗ୍ୟନାଥେନ ବୀକ୍ଷିତେ ।
ଲଗ୍ନେଶେ ବାପି ସଂଦୃଷ୍ଟେ ନୃପତୁଲ୍ୟୋ ଭବେନ୍ନରଃ ॥

ଲଗ୍ନରେ ବୃହସ୍ପତି ଥିବେ, ବୁଧ କେନ୍ଦ୍ରରେ ଥାଇ ଭାଗ୍ୟାଧିପତି ବା ଲଗ୍ନାଧିପତିର ଦୃଷ୍ଟିରେ ଥିଲେ ଜାତକ ରାଜା ତୁଲ୍ୟ ହୁଏ ।

ଚନ୍ଦ୍ରାତ୍ ସପ୍ତମଗୋ ଜୀବଃ ଜୀବଯୋଗଃ ସ ଉଚ୍ୟତେ ।
ଜୀବଯୋଗେ ଭବେଦ୍ଦାତା ବହୂନାଂ ପରିପାଳକଃ ॥

ଚନ୍ଦ୍ରର ସପ୍ତମରେ ବୃହସ୍ପତି ଥିଲେ ଜୀବଯୋଗ ହୁଏ । ଏହି ଯୋଗଜାତ ବ୍ୟକ୍ତି ଦାତା ହୁଏ ଓ ବହୁଲୋକର ପରିପୋଷକ ହୁଏ ।

ଗୁରୁଶିତବୁଧଲଗ୍ନେ ସପ୍ତମସ୍ଥେଽର୍କପୁତ୍ରେ,
ବିୟତି ଦିବସନାଥେ ଭୋଗିନାଂ ଜନ୍ମ ବିନ୍ଦ୍ୟାତ୍ ।
ଶୁଭବଲଯୁତକେନ୍ଦ୍ରୈଃ କ୍ରୂରଭସ୍ଥୈଶ୍ଚ ପାପୈ-
ର୍ବ୍ରଜତି ଶବରଦସ୍ୟୁସ୍ୱାମିତାମର୍ଥଭାକ୍ ଚ ॥

ଲଗ୍ନରେ ବୃହସ୍ପତି, ଶୁକ୍ର ଓ ବୁଧ ଥିଲେ, ସପ୍ତମରେ ଶନି ଥିଲେ, ଦଶମରେ ରବି ଥିଲେ, ଏକ ଶୁଭଯୋଗ ହୁଏ । ଯୋଗଜାତ ବ୍ୟକ୍ତି

ଭୋଗୀ ହୁଏ । ଶୁଭ ଗ୍ରହମାନେ କେନ୍ଦ୍ରସ୍ଥ ହୋଇ କ୍ରୂରରାଶିସ୍ଥ ହେଲେ ଜାତକ ଶବର, ଚୌର ଇତ୍ୟାଦି ନୀଚ ବ୍ୟକ୍ତି ହେଲୁ ଧନଲାଭ କରେ ।

ହରୌ ସ୍ତ୍ରିୟାମଲୌ ଗୃପେ ଘଟେ ମୀନେ ବୃଷେ ନରେ ।
ସ୍ଥିତେ ଗ୍ରହଗଣେ ଲଗ୍ନେ ଚତୁଷ୍ଟକୋ ହି ଜାୟତେ ॥
ଚତୁଷ୍ଟକେ ତୁ ଯୋ ଜାତୋ ଭୂପାଳଗଣସେବିତାଃ ।
ଭୁନକ୍ତି ଜଗତୀଂ ସର୍ବାଂ ସାଗରାମ୍ବରଭୂଷିତଂ ॥

ସିଂହରେ, କନ୍ୟାରେ, ବୃଶ୍ଚିକରେ, ଧନୁରେ, କୁମ୍ଭରେ, ମୀନରେ ବୃଷରେ ଓ ମିଥୁନରେ ଓ ଜନ୍ମ ଲଗ୍ନରେ ସମସ୍ତ ଗ୍ରହମାନେ ଥିଲେ ଚତୁଷ୍ଟକ ଯୋଗ ହୁଏ । ଏହି ଯୋଗଜାତ ବ୍ୟକ୍ତି ନାନାପ୍ରକାର ଭୋଗ କରେ ।

ଚନ୍ଦ୍ରାତ୍ମଜୋ ଲଗ୍ନଗତୋ ଯଦି ସ୍ୟାତ୍,
କେନ୍ଦ୍ରେ ଶରୌ ଦେବଗୁରୋହିତସ୍ଥେତ୍ ।
ଚନ୍ଦ୍ରୋଦୟୋ ଯୋଗ ଇତି ପ୍ରବୀଣାଃ,
ସ୍ୟାଦ୍‌ଭୂମିଜାତଂ କଥୟନ୍ତି ଜାତଂ ॥ ଜା. ଚ.

ଲଗ୍ନରେ ବୁଧ, କେନ୍ଦ୍ରରେ ବା ପଞ୍ଚମରେ ବୃହସ୍ପତି ଥିଲେ ଚନ୍ଦ୍ରୋଦୟ ଯୋଗ ହୁଏ । ଏହି ଯୋଗଜାତ ବ୍ୟକ୍ତିର ଜନ୍ମ ସଫଳ ।

ପଞ୍ଚମସ୍ଥୋ ଯଦା ଜୀବୋ ଦଶମସ୍ଥଶ୍ଚ ଚନ୍ଦ୍ରମା ।
ସ ରାଜ୍ୟବାନ୍ ମହାବୁଦ୍ଧିସ୍ତପସ୍ୱୀ ଚ ମହାବଳଃ ॥ ଜା. ଚ.

ପଞ୍ଚମରେ ବୃହସ୍ପତି ଓ ଦଶମରେ ଚନ୍ଦ୍ର ଥିଲେ ଜାତକ ବୁଦ୍ଧିମାନ୍, ତପସ୍ୱୀ, ବଳବାନ୍ ଓ ରାଜ୍ୟ ଭୋଗ କରେ ।

ସ୍ୱର୍କ୍ଷସ୍ଥୈଶ୍ଚ ଚତୁଷ୍ଟୟେ ହି ବଳଭିଃ ସ୍ୱୋଚ୍ଚସ୍ଥିତୈର୍ବା ଗ୍ରହୈଃ
ଶୁକ୍ରାଙ୍ଗାରକମନ୍ଦଜୀବଶଶିଜୈରେତୈର୍ଯଥାନୁକ୍ରମଂ ।
ମାଲବ୍ୟୋରୁଚକଃ ଶଶୋଽଥ କଥିତଂ ହଂସଶ୍ଚ ଭଦ୍ରସ୍ତଥା,
ମାହାତ୍ମ୍ୟାତ୍ପୁରୁଷାଃ କୁଳାଧିକତୟା ଖ୍ୟାତାବଦାତାଃ ସଦା ॥
ଜ୍ୟୋ. ସୁ.

ଶୁକ୍ର, ମଙ୍ଗଳ, ଶନି, ବୃହସ୍ପତି ଓ ବୁଧ ଏମାନେ ଉଚ୍ଚସ୍ଥ ବା ସ୍ୱକ୍ଷେତ୍ରସ୍ଥ ହୋଇ କେନ୍ଦ୍ରରେ ଥିଲେ ଯଥାକ୍ରମେ ମାଲବ୍ୟ, ରୁଚକ, ଶଶକ, ହଂସ ଓ ଭଦ୍ରଯୋଗ ହୁଏ । ( ଶୁକ୍ରଦ୍ୱାରା ମାଲବ୍ୟ କ୍ରମେ ) ଏହି ଯୋଗଜାତ ବ୍ୟକ୍ତିଗଣ ସତ୍ପୁରୁଷ, କୁଳାଗ୍ରଗଣ୍ୟ ଓ ପ୍ରଖ୍ୟାତନାମା ହୁଅନ୍ତି ।

ଜୀବେ ଦ୍ୱିତୀୟେ ଉଶନା ଚତୁର୍ଥେ,
ଶଶାଙ୍କସପ୍ତେ କୁଜଲାଭଗେ ଚ ।
ଗ୍ରାମ୍ୟାଧିପୋ ଭାଗ୍ୟପ୍ରତାପଶାଳୀ,
ନରସ୍ତଦା କାମିନୀରାଜଯୋଗଃ ॥ ଯୋ. ର.

ବୃହସ୍ପତି ଦ୍ୱିତୀୟରେ, ଶୁକ୍ର ଚତୁର୍ଥରେ, ଚନ୍ଦ୍ର ସପ୍ତମରେ, ମଙ୍ଗଳ ଏକାଦଶରେ ଥିଲେ କାମିନୀ ଯୋଗ ହୁଏ । ଜାତକ ଗ୍ରାମାଧିପ, ପ୍ରତାପବାନ୍ ଓ ଭାଗ୍ୟବାନ୍ ହୁଏ ।

ଲଗ୍ନେ ଗୁରୌ ଚନ୍ଦ୍ରମସି ଚ ସପ୍ତେ,
ଚନ୍ଦ୍ରାଦ୍ଗତେ ସୂର୍ଯ୍ୟକୁସୁମ୍ବଯୋଗଃ ।
ଭୂପାଳବାପୂଜିତବନ୍ଧୁରକ୍ଷୋ,
ବଂଶାଧିକେ ବସ୍ତ୍ରରେ ପୁଣ୍ୟରକ୍ଷଃ ॥ ଯୋ. ର.

ଲଗ୍ନରେ ବୃହସ୍ପତି, ସପ୍ତମରେ ଚନ୍ଦ୍ର, ଚନ୍ଦ୍ରଙ୍କଠାରୁ ଅଷ୍ଟମ ସ୍ଥାନ ଅଟେ ଯେ ଦ୍ୱିତୀୟ ତହିଁରେ ରବି ଥିଲେ କୁସୁମଯୋଗ ହୁଏ । ଜାତକ ଷୋଡ଼ଶ ବର୍ଷଠାରୁ ବନ୍ଧୁ ପୂଜ୍ୟ, ପୁରରକ୍ଷକ ଓ ରାଜବଲ୍ଲଭ ହୁଏ ।

ଏକୈକେନ ଖଗେନ ଜନ୍ମସମୟେ ସେକାବଲୀ କୀର୍ତ୍ତିତା,
ମୁକ୍ତାଲୀବ ସମସ୍ତଭୂପମୁକୁଟାଲଙ୍କାରଚୂଡ଼ାମଣିଃ ।
ତଜ୍ଜାତୋ ରିପୁପୁଞ୍ଜଭଞ୍ଜନକରସ୍ତ୍ରୀଗନ୍ଧର୍ବବ୍ୟାଙ୍ଗନା,
ବୃନ୍ଦାନନ୍ଦପରସ୍ତ ଗୁଣବ୍ରଜଧରେ ବିଦ୍ୟାକରୋ ମାନବଃ ।

ଜନ୍ମକାଳରେ ମୁକ୍ତାମାଳାର ନ୍ୟାୟ ନଅଟି ରାଶିରେ ନଅଟି ଗ୍ରହ ରହିଲେ ଏକାବଳୀ ଯୋଗ ହୁଏ । ଏହି ଯୋଗଜାତ ବ୍ୟକ୍ତି ସମସ୍ତ ରାଜନ୍ୟବର୍ଗର ମୁକୁଟାଲଙ୍କାର ଚୂଡ଼ାମଣି ସଦୃଶ, ରିପୁବୃନ୍ଦ ବିନାଶକ, ଗନ୍ଧର୍ବକନ୍ୟା (ସମସ୍ତ ଗୁଣଯୁକ୍ତା ଓ ଦେବାଙ୍ଗନାଗଣର ଆନନ୍ଦଦାୟକ, ନାନାବିଧ ଗୁଣଶାଳୀ ଏବଂ ସକଳ ବିଦ୍ୟାର ଆକର ହୁଏ ।

କର୍କଟେ ମକରେ ମେଷେ ତୁଲାୟାଂ ଗ୍ରହସଂସ୍ଥିତେ ।
ଚତୁଃସାଗରଯୋଗୋଽୟଂ ରାଜ୍ୟକୋ ଜନକୋଷକୃତ୍ ॥

କର୍କଟ, ମକର, ତୁଳ ଓ ମେଷରେ ଗ୍ରହ ଥିଲେ ଚତୁଃସାଗର ଯୋଗ ହୁଏ । ଏହି ଯୋଗଜାତ ବ୍ୟକ୍ତି ରାଜ୍ୟାଧୀଶ ଓ ଅତୁଳସମ୍ପତ୍ତିର ଅଧିକାରୀ ହୁଏ ।

ସହୋତ୍ତୁପୁଣ୍ୟାଙ୍ଗଗତୋ ଗ୍ରହଶ୍ଚେତ୍,
ଭାଗ୍ୟଂ ପ୍ରପଶ୍ୟେଦ୍ ଯଦି ବା ସମାର୍ଘ୍ୟଃ ।
ହିରଣ୍ୟମାଲୀ ଖଳୁ ଭାଗ୍ୟଶାଳୀ,
ପ୍ରସୂତିକାଲେ ଯଦି ଯସ୍ୟ ଜନ୍ତୋଃ ॥

ଜନ୍ମକାଳରେ ଲଗ୍ନ, ତୃତୀୟ କିମ୍ବା ପଞ୍ଚମ ଭାବଗତ କୌଣସି ବଳବାନ୍ ଶୁଭ ଗ୍ରହ ଭାଗ୍ୟସ୍ଥାନକୁ ପୂର୍ଣ୍ଣଦୃଷ୍ଟିରେ ଦେଖିଲେ ଜାତକ ସୁବର୍ଣ୍ଣ ହାର ଧାରଣ କରେ ଓ ଭାଗ୍ୟବାନ୍ ହୁଏ ।

ଚନ୍ଦ୍ରଦ୍ୱିତୀୟସ୍ଥେ ଯଦି ଗୀଷ୍ପତିଷ୍ଟ,
ଶୁକ୍ରେଣ ଯୁକ୍ତୋ ନବମେଶ ଦୃଷ୍ଟ୍ୟା ।
ଗଦାଖ୍ୟଯୋଗୋ ଜନୁଷି ନରସ୍ୟ,
ଦ୍ୱିପଞ୍ଚବର୍ଷେ ଗଜଯାନଯାତଃ ॥ ଯୋ. ର

ଚନ୍ଦ୍ର ଦ୍ୱିତୀୟରେ ବୃହସ୍ପତି ଥିବେ, ସେ ଶୁକ୍ରସହ ଯୁକ୍ତ ଓ ନବମାଧି-ପତିର ଦୃଷ୍ଟିରେ ଥିଲେ ଗଦାଯୋଗ ହୁଏ । ଏହି ଯୋଗଜାତ ବ୍ୟକ୍ତି ୫୨ ବର୍ଷଠାରେ ଗଜାଦି ଯାନାରୋହଣ କରି ଗମନାଗମନ କରେ ।

ଝଷୌ ଗୁରୌ ଶୁକ୍ରବୁଧୌ ସ୍ମରସ୍ଥେ,
ମୃଗେ ଶଶାଙ୍କେ ରବିଶୌରିଲାଭେ ।
ଗଙ୍ଗାପ୍ରବାହାଖ୍ୟକରାଜଯୋଗୋ,
ଜ୍ଞାନୀ ଚ ମାନୀ ବିନୟୀ ଧନୀ ସ୍ୟାତ୍ ॥

ବୃହସ୍ପତି ଷଷ୍ଠରେ, ଶୁକ୍ର ଓ ବୁଧ ସପ୍ତମରେ, ଚନ୍ଦ୍ର ମକର ରାଶିରେ ରବି ଓ ଶନି ଏକାଦଶରେ ଥିଲେ ଗଙ୍ଗାପ୍ରବାହ ଯୋଗ ହୁଏ । ଜାତକ ଜ୍ଞାନୀ, ମାନୀ, ବିନୟୀ ଓ ଧନୀ ହୁଏ ।

ଭାଗ୍ୟାଧିପାତ୍ କେନ୍ଦ୍ରଗୋ ଗୀଷ୍ପତିଷ୍ଟ,
ଲଗ୍ନାଧୀଶାତ୍ କେନ୍ଦ୍ରଗୋ ଭାର୍ଗବୋ ବା ।
କର୍ମାଧିପାତ୍ କେନ୍ଦ୍ରଗୋ ବୋଧନଶ୍ଚ,
ମିଷ୍ଟାନ୍ନାଶୀ ବ୍ରହ୍ମଜଃ ଶାସ୍ତ୍ରବାଚୀ ॥ ଯୋ. ର.

ନବମାଧିପତିର କେନ୍ଦ୍ରରେ ବୃହସ୍ପତି ଥିବେ, ଏକାଦଶର ଅଧିପତିର କେନ୍ଦ୍ରରେ ଶୁକ୍ର ଓ ଦଶମାଧିପତିର କେନ୍ଦ୍ରରେ ବୁଧ ଥିଲେ ଏକ ବଟିଷ୍ଟୁ ଯୋଗ ହୁଏ । ଏହି ଯୋଗଜାତ ବ୍ୟକ୍ତି ମିଷ୍ଟାନ୍ନଭୋଜୀ, ବ୍ରହ୍ମଜ୍ଞାନପରାୟଣ ଓ ବହୁଶାସ୍ତ୍ରାଭ୍ୟାସୀ ହୁଏ ।

ଧନେଶ ଭାଗ୍ୟେ ଚ ତପେଶ ଲାଭେ,
ଲାଭେଶ ଉଚ୍ଚେ ପରମୋଚ୍ଚଗଣ୍ଡ ।
ଯୋଗେଷ୍ଟୁ ଶ୍ଚେଦ ଯଦ୍ଧ ମାନବଣ୍ଟ,
ଶାସ୍ତ୍ରେ ନିପୁଣୋ ବରବୁଦ୍ଧିମନ୍ତଃ ॥ ଜା. ଭ.

ଧନାଧିପତି ଦ୍ୱିତୀୟରେ, ନବମାଧିପତି ଏକାଦଶରେ ଓ ଏକାଦଶର ଅଧିପତି ପରମୋଚ୍ଚରେ ଥିଲେ ଚଣ୍ଡଯୋଗ ହୁଏ । ଉକ୍ତ ଯୋଗଜାତ ବ୍ୟକ୍ତି ବୁଦ୍ଧିମାନ୍ ଓ ବହୁ ଶାସ୍ତ୍ରାନ୍ୱେଷୀ ହୁଏ ।

ତମୋଗାଂଶରାଶ୍ୟାଧିପତେସ୍ତ୍ରିକୋଣେ,
ତଦାଧୀଶ୍ୱରେ ଯୁକ୍ତଭୌମେନ ଦୃଷ୍ଟଃ ।
ତଦା ଭୂପଯୋଗେ ନରେ ଜାତଷଣ୍ଡି—
ସମାରାଜପ୍ରୀତୌ ରମାମୋହନଃ ସ୍ୟାତ୍ ॥ ଯୋ. ର.

ରାହୁ ଯେଉଁ ରାଶିରେ ଥିବ, ସେହି ରାଶିର ଅଧିପତି ନବମ ବା ପଞ୍ଚମରେ ଥାଇ ସେହି ରାଶିପତି (ଯେଉଁଠାରେ ଥିବ) ସହ ଯୁକ୍ତ ଓ ମଙ୍ଗଳ ଦୃଷ୍ଟ ହେଲେ ଭୂପ ଯୋଗ ହୁଏ । ଉକ୍ତ ଯୋଗଜାତ ବ୍ୟକ୍ତି ୩୬ ବର୍ଷଠାରେ ରାଜପ୍ରିୟ ଓ ଈଶ୍ୱରଭକ୍ତ ହୁଏ ।

ଧନେଶ ଭାଗ୍ୟେଶ ଚ କଣ୍ଟକସ୍ଥୌ,
ଯୁକ୍ତୋଽପି ମନ୍ତ୍ରେ ଗୁରୁଣାପି ଦୃଷ୍ଟଃ ।

ଶ୍ରୀଯୋଗଜୋମାନବୋ ଶତ୍ରୁହନ୍ତା,
ଯୁଗ୍ମେ ସମେ ବତ୍ସରେ ରାଜତୁଲ୍ୟଃ ॥ ଯୋ. ର.

ଧନାଧିପତି ଓ ଭାଗ୍ୟାଧିପତି କେନ୍ଦ୍ରସ୍ଥ ହୋଇ ବୃହସ୍ପତି ସହ ଯୁକ୍ତ ଅମ୍ବା ବୃହସ୍ପତିଦ୍ୱାରା ଦୃଷ୍ଟ ହେଲେ ଶ୍ରୀଯୋଗ ହୁଏ । ଉକ୍ତ ଯୋଗଜାତ ବ୍ୟକ୍ତି ବାଇଶି ବର୍ଷ ପରେ ଶତ୍ରୁନାଶ କରି ରାଜତୁଲ୍ୟ ହୁଏ ।

ସ୍ଥାନାଧିପଃ କର୍ମଗତୌ ବଳିଷ୍ଠୌ,
ଧର୍ମେଶଦୃଷ୍ଟୌ ସହ ତଦ୍‌ଯୁତୌ ବା ।
ପରସ୍ପରକ୍ଷେତ୍ରସମାଗତୌ ବା,
ସିଂହାସନପ୍ରାପ୍ତିକରୌ ଭବେତାଂ ॥ ପା. ହୋ.

ଚତୁର୍ଥ ସ୍ଥାନାଧିପତି ଦଶମରେ ରହି ନବମାଧିପତିର ଦୃଷ୍ଟିରେ ଥିଲେ ବା ତା ସହିତ ଯୁକ୍ତ ହୋଇଥିଲେ ବା ବଳବାନ୍ ଚତୁର୍ଥ ସ୍ଥାନାଧିପ ଦଶମରେ ଓ ନବମାଧିପ ନବମରେ ଥିଲେ ସିଂହାସନ ପ୍ରାପ୍ତି ହୁଏ ।

ସହ କେନ୍ଦ୍ରତ୍ରିକୋଣେ ବା ନବସେତାଂ ତମୋଗ୍ରହୌ ।
ନାଥେନାନ୍ୟତରେଣାପି ସମ୍ବନ୍ଧାଦ୍ ଯୋଗକାରକୌ ॥ ଲ. ପା.

ରାହୁ ଅମ୍ବା କେତୁ କେନ୍ଦ୍ରରେ ଥାଇ ନବମ ଓ ପଞ୍ଚମାଧିପ ଯୁକ୍ତ ହେଲେ ଅମ୍ବା ସେମାନଙ୍କର ଦୃଷ୍ଟିରେ ଥିଲେ ଅଥବା ନବମ ବା ପଞ୍ଚମରେ ଥାଇ କେନ୍ଦ୍ରାଧିପତିମାନଙ୍କସହ ଯୁକ୍ତ ବା ସେମାନଙ୍କ କର୍ତ୍ତୃକ ଦୃଷ୍ଟ ହେଲେ ଯୋଗକାରକ ହୋଇଥାନ୍ତି ।

ସିଂହେ କମଲଖୀଭର୍ତ୍ତ୍ତ କୁଳୀରସ୍ଥେ ନିଶାକରଃ ।
ଦୃଷ୍ଟୌ ଦ୍ୱାବପି ଜୀବେନ ପାର୍ଥିବଂ କୁରୁତେ ସଦା ॥

ସିଂହରେ ରବି ଓ କର୍କଟରେ ଚନ୍ଦ୍ର ଥାଇ, ଉଭୟେ ବୃହସ୍ପତିଙ୍କ ଦ୍ୱାରା ଦୃଷ୍ଟ ( ସମ୍ପୂର୍ଣ୍ଣ ନୁହେ ) ହେଲେ ଜାତକ ରାଜତୁଲ୍ୟ ହୁଏ ।

ଲଗ୍ନମୁକ୍ତାନ୍ୟକେନ୍ଦ୍ରସ୍ଥ ସମ୍ପୂର୍ଣ୍ଣଶଶଲାଞ୍ଛନଃ ।
ଶୁଭଦୃଷ୍ଟିଯୁତୋ ବାପି ଶୁଭଯୋଗୋ ବିଶିଷ୍ୟତେ ॥ ଲ. ପା.

ଲଗ୍ନକୁ ଛାଡି ଅନ୍ୟାନ୍ୟ କେନ୍ଦ୍ରରେ ଅର୍ଥାତ୍ ଚତୁର୍ଥ, ସପ୍ତମ ବା ଦଶମରେ ପୂର୍ଣ୍ଣଚନ୍ଦ୍ର ଥାଇ ଶୁଭଗ୍ରହମାନଙ୍କ ସହ ଯୁକ୍ତ ବା ଦୃଷ୍ଟ ହେଲେ ଏକ ବିଶିଷ୍ଟ ଶୁଭଯୋଗ ହୁଏ ।

କୁଜଃ ସ୍ୱଗେହୋପଗତୋ ରବିଜୀବନିରୀକ୍ଷିତଃ ।
ବୃଷେ ଜ୍ଞୋ ଭୃଗୁସନ୍ଦୃଷ୍ଟସ୍ତଥାପି ନୃପତିର୍ଭବେତ୍ ॥ ଯୋ. ର.

ମଙ୍ଗଳ ମେଷ ବା ବିଛାରେ ଥାଇ ରବି ଓ ବୃହସ୍ପତିଙ୍କ କର୍ତ୍ତୃକ ଦୃଷ୍ଟ ହେଉଥିଲେ ଶୁଭ ଯୋଗ ହୁଏ । ବୃଷରେ ବୁଧ ଥାଇ ଶୁକ୍ରକର୍ତ୍ତୃକ ଦୃଷ୍ଟ ହେଲେ ଶୁଭଯୋଗ ହୁଏ ।

ଶୀର୍ଷୋଦୟସ୍ଥା ସକଳା ଗ୍ରହେନ୍ଦ୍ରା,
ନୀଚାସ୍ତବର୍ଜ୍ୟା ଜନୟନ୍ତି ଭୂପଂ ।
ବୁଧେସ୍ତଗେହେ ଗୁରୁଶୁକ୍ରଦୃଷ୍ଟେ,
ରାଜା ଭବେଦ୍‌କ୍ଷୀଣନରେଶପୂଜ୍ୟଃ ॥ ଜା. ଶି.

ସମସ୍ତ ଗ୍ରହମାନେ ଶୀର୍ଷୋଦୟ ରାଶି (ମିଥୁନ, କନ୍ୟା, ତୁଳା, ବୃଶ୍ଚିକ, କୁମ୍ଭ)ରେ ଥିଲେ, ଏମାନେ ନୀଚ ବା ଅସ୍ତଗତ ହୋଇ ନ ଥିଲେ ଜାତକ ରାଜତୁଲ୍ୟ ହୁଏ । ବୁଧ ସପ୍ତମରେ ଥାଇ ବୃହସ୍ପତି ଓ ଶୁକ୍ର ଉଭୟଙ୍କ କର୍ତ୍ତୃକ ଦୃଷ୍ଟ ହେଲେ ଜାତକ ଜ୍ଞାନୀ ଓ ରାଜତୁଲ୍ୟ ହୁଏ । ଶୁକ୍ରଙ୍କର ଦୃଷ୍ଟି ପାଦେ ଥିବାକୁ ହେବ ।

ଉପଚୟଗୃହସଂସ୍ଥା ବ୍ୟୋମଗାଃ ସର୍ବ ଏବ,
ବିଦଧତି ନରପାଲଂ ରାଜଲକ୍ଷ୍ମୀସମେତଂ ।
ଧନକରଣଶଶିଜୀବା ବନ୍ଧୁସଂସ୍ଥା ମହୀଜୋ,
ନବମସୁତଗୃହସ୍ଥା ସାର୍ବଭୌମଂ ଚ କୁର୍ଯ୍ୟୁଃ ॥

ସମସ୍ତ ଗ୍ରହମାନେ ତୃତୀୟ, ଷଷ୍ଠ, ଦଶମ ଓ ଏକାଦଶରେ ଥିଲେ ଜାତକ ରାଜଲକ୍ଷ୍ମୀଯୁକ୍ତ ହୁଏ । ରବି, ଚନ୍ଦ୍ର, ବୃହସ୍ପତି ଚତୁର୍ଥରେ ଥିଲେ ଓ ନବମ ବା ପଞ୍ଚମରେ ମଙ୍ଗଳ ଥିଲେ ଜାତକ ରାଜାଧିରାଜପୂଜ୍ୟ ହୁଏ ।

ନୀଚସ୍ଥିତୋ ଜନ୍ମନି ଯୋ ଗ୍ରହଃସ୍ତ
ତଦ୍ରାଶିନାଥୋଽପି ତଦୁଚ୍ଚନାଥଃ ।
ସ ଚନ୍ଦ୍ର ଲଗ୍ନାତ୍ ଯଦି କେନ୍ଦ୍ରବର୍ତ୍ତୀ
ଭବେଦ୍‌ଉଦାସୌ ନୃପଚକ୍ରବର୍ତ୍ତୀ । ଜା. ସଂ.

( ସୁ. ଟୀ. :— ଜନ୍ମନି ଜନ୍ମସମୟେ ଯୋ ଗ୍ରହୋ ନୀଚରାଶିସ୍ଥଃ ସ୍ୟାତ୍ 'ତଦ୍ରାଶିନାଥଃ' ନୀଚସ୍ଥଗ୍ରହାଶ୍ରିତରାଶିନାଥଃ ତଦୁଚ୍ଚନାଥଃ ନୀଚସ୍ଥଗ୍ରହସ୍ୟ ଯ ଉଚ୍ଚରାଶିଃ ତସ୍ୟ ନାଥୋ ଯଦି ଚନ୍ଦ୍ରାତ୍ ଲଗ୍ନାତ୍ ବା କେନ୍ଦ୍ରବର୍ତ୍ତୀ ଭବେତ୍ ତଦା ନୃପଚକ୍ରବର୍ତ୍ତୀ ଯାବତ୍ ଅସୌ ଜାତକୋ ଭବେଦିତ୍ୟର୍ଥଃ । ସକଳବର୍ଣୀୟାନାମେବ ରାଜଯୋଗେ ରାଜ୍ୟଲାଭଫଳମନ୍ୟେଷାଂ ତୁ ପୁନର୍ବିଶେଷ ସୌଭାଗ୍ୟଯଶଃପ୍ରତିଷ୍ଠାଦି ଫଳମ୍ । )

ଜନ୍ମକାଳରେ ଯେଉଁ ଗ୍ରହ ନୀଚ ହୋଇଥିବ, ସେହି ନୀଚରାଶିର ଅଧିପତି ଗ୍ରହ ଓ ସେ ଗ୍ରହ ନୀଚ ହୋଇଅଛି ସେ ଯେଉଁଠାରେ ଉଚ୍ଚ, ସେହି ରାଶିର ଅଧିପତି ଗ୍ରହ, ଲଗ୍ନଠାରୁ ବା ଚନ୍ଦ୍ରଠାରୁ କେନ୍ଦ୍ରରେ ଥିଲେ ନୀଚଭଙ୍ଗ ରାଜଯୋଗ ହୁଏ ।

ଏହି ବାକ୍ୟଟିର ଅର୍ଥ ଅନ୍ୟ ପ୍ରକାର କେତେକ ଲୋକ କରନ୍ତି । ସେମାନଙ୍କ ମତରେ – ଗ୍ରହ ଯେଉଁଠାରେ ନୀଚ ହେଲେ ସେହି ରାଶିର

ଅଧିପତି ଓ ସେହି ରାଶିରେ ଯେ ଗ୍ରହ ଉଚ୍ଚ ସେହି ଗ୍ରହ ଉଭୟେ ଲଗ୍ନରେ ବା ଚନ୍ଦ୍ରର କେନ୍ଦ୍ରରେ ଥିଲେ ଏହି ଯୋଗ ହୁଏ । ଏହି ଯୁକ୍ତି ସମ୍ପୂର୍ଣ୍ଣ ଅଯୌକ୍ତିକ । ପାଠକଗଣ ସଂସ୍କୃତ ଟୀକା ଦେଖନ୍ତୁ ।

କଣ୍ଟକାଦ୍ ପ୍ରବୃତ୍ତୈଶ୍ଚ ଚତୁର୍ଗୃହଗତୈର୍ଗ୍ରହୈଃ ।
ଯୂପେଷୁ ଶକ୍ତିଦଣ୍ଡାଖ୍ୟା ହୋରାଦ୍ୟୈଃ କଣ୍ଟକୈଃ କ୍ରମାତ୍ ॥
ଜା. ଚ.

ସମସ୍ତ ଗ୍ରହମାନେ ( ରାହୁ କେତୁଙ୍କୁ ଛାଡ଼ି ) ଲଗ୍ନ, ଦ୍ୱିତୀୟ, ତୃତୀୟ ଓ ଚତୁର୍ଥରେ ରହିଲେ ଯୂପଯୋଗ ହୁଏ । ଚତୁର୍ଥ, ପଞ୍ଚମ, ଷଷ୍ଠ, ସପ୍ତମରେ ରହିଲେ ଶରଯୋଗ ହୁଏ । ସପ୍ତମ, ଅଷ୍ଟମ, ନବମ ଓ ଦଶମରେ ଥିଲେ ଶକ୍ତିଯୋଗ ହୁଏ । ଦଶମ, ଏକାଦଶ, ଦ୍ୱାଦଶ ଓ ଲଗ୍ନରେ ରହିଲେ ଦଣ୍ଡଯୋଗ ହୁଏ ।

ତ୍ୟାଗାତ୍ମବାନ୍ କ୍ରତୁବରୈର୍ଯଜତେ ଚ ଯୂପେ,
ହିଂସ୍ରୋଽଥଗୁପ୍ତ୍ୟଧିକୃତଃ ଶରକୃଚ୍ଛରାଖ୍ୟେ ।
ନୀଚୋଽଲସଃ ସୁଖଧନୈର୍ବିଯୁତଶ୍ଚ ଶକ୍ତୌ,
ଦଣ୍ଡେ ପ୍ରିୟୈର୍ବିରହିତଃ ପୁରୁଷୋଽନ୍ତ୍ୟବୃତ୍ତିଃ ॥

ଯୂପଯୋଗଜାତ ବ୍ୟକ୍ତି ଦାତା ଓ ଯଜ୍ଞାଦି କର୍ମରେ ନିଯୁକ୍ତ ହୁଏ । ଶରଯୋଗ ହେଲେ ଜାତକ ହିଂସ୍ରକ ଓ କପଟୀ ହୁଏ । ଶକ୍ତିଯୋଗ ହେଲେ ଜାତକ ନୀଚକର୍ମାସକ୍ତ, ଆଳସ୍ୟପରାୟଣ ଓ ସୁଖ ଧନହୀନ ହୁଏ । ଦଣ୍ଡଯୋଗଜାତ ବ୍ୟକ୍ତି ପୁତ୍ର, ମିତ୍ର, ଧନଶୂନ୍ୟ ହୋଇ ଦାସବୃତ୍ତି କରେ ।

ଯଦା ଚ ସୌରିଃ ସୁରରାଜମନ୍ତ୍ରୀ ପରସ୍ପରଂ ପଶ୍ୟତି ପୂର୍ଣ୍ଣଦୃଷ୍ଟ୍ୟା ।
ତଦା ସମଗ୍ରାଂ ବସୁଧାମୁପୈତି କମ୍ପାଂ ଧନେନାନ୍ୟଗୁଣେନ କମ୍ପା ॥ ଜା,ଚ.

ଶନିକୁ ବୃହସ୍ପତି ଓ ବୃହସ୍ପତିକୁ ଶନି ପରସ୍ପର ପୂର୍ଣ୍ଣ ଦୃଷ୍ଟିରେ ଦେଖିଲେ ଜାତକ ସମଗ୍ର ପୃଥିବୀର ରାଜା ହୁଏ । ତାହାର ଧନ ଜମା ଅନ୍ୟଗୁଣରେ କ ଆବଶ୍ୟକ ? । ପରସ୍ପର ସପ୍ତମସ୍ତ୍ର ୨ ସମାନ ଅଂଶଗତ ହେଲେ ଏହି ଫଳ ଦିଏ । ଯଥା :—ମେଷର ୧୫ ଅଂଶରେ ବୃହସ୍ପତି ଓ ତୁଳର ୧୫ ଅଂଶରେ ଶନି ଥିଲେ ପରସ୍ପରକୁ ସମ୍ପୂର୍ଣ୍ଣ ଦୃଷ୍ଟିରେ ଦେଖିବେ । କେବଳ ସପ୍ତମଗ୍ରଶିସ୍ଥ ହେଲେ ସାମାନ୍ୟ ଶୁଭ ହୋଇଥାଏ ।

ଯଦ ତଦ ସ୍ଥିତୋ ଭୌମୋ ଗୁରୁଯୁକ୍ତୋ ଭବେଦ୍ ଯଦ ।
ତଦୋକ୍ତଫଲମାଖ୍ୟାତ ସ୍ୟାଦୁଚ୍ଚେ ଦ୍ୱିଗୁଣଂ ଫଳଂ ॥

ମଙ୍ଗଳ ବୃହସ୍ପତି ଯୁକ୍ତ ହେଲେ ଶୁଭଫଳ ପ୍ରଦାନ କରେ । ମକର ୨୮ ଅଂଶରେ ବୃହସ୍ପତି ସହ ଯୁକ୍ତ ହେଲେ ଉତ୍କୃଷ୍ଟ ଫଳ ପ୍ରଦାନ କରେ ।

ଦଶମଭବନନାଥଃ କେନ୍ଦ୍ରକୋଣେ ଧନେ ବା,
ବଲବତ ଯଦ ଜାତଃ କ୍ଷେତ୍ରସିଂହାସନେ ବା ।
ସ ଭବତ ନରନାଥୋ ବଶ୍ରବଖ୍ୟାତକୀର୍ତ୍ତିଃ
ମଦଗଳତକପୋଳୈଃ ସଦ୍ଗଜୈଃସେବ୍ୟମାନଃ ॥

ଦଶମ ସ୍ଥାନାଧିପତି ବଲବାନ୍ ହୋଇ କେନ୍ଦ୍ର ବା ତ୍ରିକୋଣରେ ଥିଲେ କ୍ଷେତ୍ର-ସିଂହାସନ-ଯୋଗ ହୁଏ । ଏହି ଯୋଗଜାତ ବ୍ୟକ୍ତି ନରପତି ଓ ସଂସାର ମଧ୍ୟରେ ପ୍ରଖ୍ୟାତନାମା ହୁଏ । ମଦମତ୍ତ ହସ୍ତୀଗଣ ତାତକର ଅଧୀନରେ ରହନ୍ତି ।

ବୋଶ୍ୟାଦଯୋଗଃ ।

ସୂର୍ଯ୍ୟାଦ୍‌ବ୍ୟୟଗୈର୍ବୋଶିର୍ଦ୍ୱିତୀୟଗୈଶ୍ଚନ୍ଦ୍ରବର୍ଜିତୈର୍ବେଶିଃ ।
ଉଭୟସ୍ଥିତୈର୍ଗ୍ରହେନ୍ଦ୍ରୈରୁଭୟଚରୀ ନାମତଃ କଥିତା ॥

ରବିର ଦ୍ୱାଦଶ ସ୍ଥାନରେ ଚନ୍ଦ୍ରଭିନ୍ନ ଗ୍ରହ ଥିଲେ ବୋଶି ଯୋଗ ହୁଏ । ଦ୍ୱିତୀୟ ସ୍ଥାନରେ ଚନ୍ଦ୍ରଭିନ୍ନ ଗ୍ରହ ଥିଲେ ବେଶି ଯୋଗ ହୁଏ । ରବିର ଦ୍ୱିତୀୟ ଓ ଦ୍ୱାଦଶ ଉଭୟ ସ୍ଥାନରେ ଚନ୍ଦ୍ରଭିନ୍ନ ଅନ୍ୟ ଗ୍ରହମାନେ ଥିଲେ ଉଭୟଚରୀ ଯୋଗ ହୁଏ ।

## ଯୋଗଜାତଫଳଂ

ମନ୍ଦଦୃଗ୍‌ସ୍ମୃତିରବଚନଃ ପରଭୃତପରିଶ୍ରମୋ ଭବେଦ୍‌ବୋଶୀ ।
ଉଦ୍‌ଘୃଷ୍ଟବଚ୍ଚଃ ସ୍ମୃତିମାନ୍ ସ୍ଥୂଲଗତିଃ ସାତ୍ତ୍ୱିକୋ ଭବେଦ୍‌ବେଶୀ ॥
ସୁଭଗୋ ବହୁଭୃତ୍ୟଧନୋ ବନ୍ଧୂନାମାଶ୍ରୟୋ ନୃପତିତୁଲ୍ୟଃ ।
ନିତ୍ୟୋତ୍ସାହୀ ହୃଷ୍ଟୋ ଭୁନକ୍ତି ଭୋଗାନୁଭୟଚର୍ଯ୍ୟାମ୍ ॥

ବୋଶି ଯୋଗଜାତ ବ୍ୟକ୍ତି କ୍ଷୁଦ୍ରଚକ୍ଷୁ, ଅସ୍ପଷ୍ଟବାକ୍ୟ ଓ କଷ୍ଟ-ସହିଷ୍ଣୁ ହୁଏ । ବୋଶିଯୋଗଜାତ ବ୍ୟକ୍ତି ଉଚ୍ଚସ୍ୱରରେ ବାଗ୍‌ବିନ୍ୟାସକାରୀ, ସ୍ମରଣଶକ୍ତିସମ୍ପନ୍ନ, ଧୀରଗମନଶୀଳ ଓ ସାତ୍ତ୍ୱିକପ୍ରକୃତିକ ହୁଏ । ଉଭୟଚରୀ ଯୋଗଜାତ ବ୍ୟକ୍ତି ସୌଭାଗ୍ୟଶାଳୀ, ବହୁଭୃତ୍ୟ ଓ ଧନସମ୍ପନ୍ନ, ବନ୍ଧୁମାନଙ୍କର ଆଶ୍ରୟଦାତା, ନୃପତୁଲ୍ୟ, ନିତ୍ୟୋତ୍ସାହୀ, ସନ୍ତୋଷଯୁକ୍ତ ଓ ସୁଖଭାଗୀ ହୁଏ ।

## ସ୍ୱଗୃହସ୍ଥଗ୍ରହଫଳଂ

କୁଲତୁଲ୍ୟଂ କୁଲଶ୍ରେଷ୍ଠଃ ବନ୍ଧୁମାନ୍ୟୋ ଧନୀ ସୁଖୀ ।
କ୍ରମାନ୍ନୃପସମୋ ଭୂପ ଏକାଦ୍ୟୈଃ ସ୍ୱଗୃହସ୍ଥିତୈଃ ॥

ଗୋଟିଏ ଗ୍ରହ ବଳବାନ୍ ହୋଇ ସ୍ୱଗୃହସ୍ଥ ହେଲେ ଜାତକ କୁଳାନୁସାର କାର୍ଯ୍ୟ କରେ । ଏହିଭାବେ ଦୁଇଟି ଗ୍ରହ ଥିଲେ କୁଳଶ୍ରେଷ୍ଠ, ତିନିଟି ଗ୍ରହ ଥିଲେ ବନ୍ଧୁପୂଜ୍ୟ, ଚାରିଟି ଗ୍ରହ ଥିଲେ ଧନୀ, ପାଞ୍ଚୋଟି ଗ୍ରହ ଥିଲେ ସୁଖୀ, ଛଅଟି ଗ୍ରହ ଥିଲେ ରାଜତୁଲ୍ୟ ଓ ସାତଟି ଗ୍ରହ ପୂର୍ବୋକ୍ତଭାବେ ଅବସ୍ଥାନ କଲେ ଜାତକ ରାଜା ହୁଏ ।

## ଚନ୍ଦ୍ରଯୋଗ ବିଚାରଃ

ଅଧମସମବରିଷ୍ଠାନ୍ୟର୍କକେନ୍ଦ୍ରାଦିସଂସ୍ଥେ,
ଶଶିନି ବିନୟବିତ୍ତଂ ଜ୍ଞାନଧୀନୈପୁଣାନି ।
ଅହନି ନିଶି ଚ ଚନ୍ଦ୍ରେ ସ୍ୱେଧିମିତ୍ରାଂଶକେ ବା,
ସୁରଗୁରୁସିତଦୃଷ୍ଟେ ବିତ୍ତବାନ୍ ସ୍ୟାତ୍ସୁଖୀ ଚ ॥

ରବିଠାରୁ ଚନ୍ଦ୍ର କେନ୍ଦ୍ରସ୍ଥ ହେଲେ ଥିଲେ ଜାତକ ବିନୟ, ଧନ, ଜ୍ଞାନ, ବୁଦ୍ଧିବୃତ୍ତିରେ ହୀନ ହୁଏ । ଦ୍ୱିତୀୟ, ପଞ୍ଚମ, ଅଷ୍ଟମ ବା ଏକାଦଶରେ ଥିଲେ ବିନୟ, ଧନ, ଜ୍ଞାନ, ବୁଦ୍ଧିବୃତ୍ତିରେ ସମ ହୁଏ । ରବିର ତୃତୀୟ, ଷଷ୍ଠ, ନବମ ବା ଦ୍ୱାଦଶରେ ଚନ୍ଦ୍ର ଥିଲେ ଜାତକ ବିନୟ ବିତ୍ତ, ଜ୍ଞାନ ଓ ବୁଦ୍ଧିବୃତ୍ତିରେ ଶ୍ରେଷ୍ଠ ହୁଏ । ଚନ୍ଦ୍ର ଅଧିମିତ୍ର ଭାବରେ ଥାଇ ଦିବାଜନ୍ମ ଜାତକରେ ବୃହସ୍ପତିକର୍ତ୍ତୃକ ଓ ରାତ୍ରିଜନ୍ମ ଜାତକରେ ଶୁକ୍ର କର୍ତ୍ତୃକ ଦୃଷ୍ଟି ହେଲେ ଜାତକ ଧନୀ ଓ ସୁଖୀ ହୁଏ ।

ସ୍ୱାଂଶେ ଶଶିର୍ଦ୍ଦିବଦୃଷ୍ଟମୂର୍ତ୍ତି-
ର୍ନିଶୀଶ୍ୱରେପ୍ୟୁତିକରଃ ପ୍ରଦିଷ୍ଟଃ ।
ତଦୁତ୍ତମୋଭୂତକରଃ ସତୁଷ୍ୟା,
ଦୃଷ୍ଟୋଦିବାଦେବପୁରୋହିତେନ ॥ ଜା. ସଂ.

ଯବନେଶ୍ୱରଙ୍କ ମତରେ ଚନ୍ଦ୍ର ନିଜର ନବାଂଶରେ ଥାଇ ରାତ୍ରିଜନ୍ମ ଜାତକରେ ଶୁକ୍ରକର୍ତ୍ତୃକ ଓ ଦିବାଜନ୍ମ ଜାତକରେ ବୃହସ୍ପତିକର୍ତ୍ତୃକ ଦୃଷ୍ଟି ହେଲେ ଜାତ ବ୍ୟକ୍ତି ଧନବାନ୍ ହୁଏ ।

### ଅଧିଯୋଗାଃ

ସୌମ୍ୟୈଃ ସ୍ମରାରିନିଧନେଷ୍ୱଧିଯୋଗ ଇନ୍ଦୋ,—
ସ୍ତସ୍ମିଂଶ୍ଚ ଭୂପମଥବା କ୍ଷିତିପାଳଜନ୍ମ ।

ସଂପନ୍ନସୌଖ୍ୟବିଭବାହତଶତ୍ରବଶ୍ଚ,
ଦୀର୍ଘାୟୁଷୋ ବିଗତରୋଗଭୟାଂଶ୍ଚ ଜାତାଃ ॥ ବୃ. ଜା.

ଚନ୍ଦ୍ରଙ୍କର ଷଷ୍ଠ, ସପ୍ତମ ଓ ଅଷ୍ଟମରେ ସମସ୍ତ ଶୁଭଗ୍ରହମାନେ ଥିଲେ (ଏକତ୍ର ହୋଇ ବା ଭିନ୍ନ ସ୍ଥାନରେ ହୋଇ) ଅଧିଯୋଗ ହୁଏ । ଏହି ଯୋଗଜାତ ବ୍ୟକ୍ତି ରାଜତୁଲ୍ୟ, ଭୋଗୀ, ଶତ୍ରୁହନ୍ତା, ନୀରୋଗ, ନିର୍ଭୟ ଓ ଦୀର୍ଘାୟୁ ହୁଏ ।

ଶଶିନଃ ସୌମ୍ୟାଃ ଷଷ୍ଠେ ଦ୍ୟୂନେ ନିଧନସଂସ୍ଥିତବାସ୍ୟୁଃ ।
ଜାତୋ ନୃପତିର୍ଜ୍ଞେୟୋ ମନ୍ତ୍ରୀ ବା ସୈନ୍ୟନାୟକୋ ବାପି ॥
ସ. ଜା.

ଚନ୍ଦ୍ରଙ୍କର ଷଷ୍ଠ କିମ୍ବା ସପ୍ତମ କିମ୍ବା ଅଷ୍ଟମରେ ବୁଧ, ବୃହସ୍ପତି ଓ ଶୁକ୍ର ଥିଲେ ଜାତକ ରାଜତୁଲ୍ୟ ମନ୍ତ୍ରଣାଶକ୍ତିଯୁକ୍ତ ବା ସେନାପତି ହୁଏ ।

ସୁନଫାଦିଯୋଗାଃ

ହିତ୍ୱାର୍କଂ ସୁନଫାନଫାଦୁରୁଧୁରା ସ୍ୱାନ୍ତ୍ୟୋଭୟସ୍ଥୈର୍ଗ୍ରହୈଃ
ଶୀତାଂଶୋଃ କଥିତୋଽନ୍ୟଥା ତୁ ବହୁଭିଃ କେମଦ୍ରୁମୋଽନ୍ୟୈସ୍ତ୍ୱସୌ
କେନ୍ଦ୍ରେ ଶୀତକରେଽଥବା ଗ୍ରହଯୁତେ କେମଦ୍ରୁମୋ ନେଷ୍ୟତେ
କେଚିତ୍କେନ୍ଦ୍ରନବାଂଶକେଷୁ ଚ ବଦନ୍ତ୍ୟୁକ୍ତିଃ ପ୍ରସିଦ୍ଧ ନ ତେ ॥
ବୃ. ଜା.

ରବି ଛଡ଼ା ଅନ୍ୟ କୌଣସି ଗ୍ରହ ଚନ୍ଦ୍ରର ଦ୍ୱିତୀୟରେ ରହିଲେ ସୁନଫା ଓ ଦ୍ୱାଦଶରେ ରହିଲେ ଅନଫା ଯୋଗ ହୁଏ । ଚନ୍ଦ୍ରର ଦ୍ୱିତୀୟ ଓ ଦ୍ୱାଦଶରେ ରବିଭିନ୍ନ ଗ୍ରହ ଥିଲେ ଦୁରୁଧୁରା ଯୋଗ ହୁଏ । ଚନ୍ଦ୍ରର ଉଭୟ ପାର୍ଶ୍ୱରେ ଗ୍ରହ ନ ଥିଲେ କେମଦ୍ରୁମ ଯୋଗ ହୁଏ । ଚନ୍ଦ୍ରର

କେନ୍ଦ୍ରରେ ଗ୍ରହଯୁକ୍ତ ହେଲେ କେମଦ୍ରୁମ ଯୋଗ ହୁଏ ନାହିଁ । କେହି କେହି ମାନଙ୍କ ମତରେ ଚନ୍ଦ୍ର ଥିବା ନବାଂଶର କେନ୍ଦ୍ର ନବାଂଶରେ ଗ୍ରହ ରହିଲେ କେମଦ୍ରୁମ ଯୋଗ ଭଙ୍ଗ ହୁଏ; ମାତ୍ର ଏହି ଯୁକ୍ତି ଠିକ୍ ନୁହେ ।

## ସୁନଫାଂଦଯୋଗଜାତଫଳ

ସ୍ୱୟମଧିଗତବତ୍ତଃ ପାର୍ଥିବସ୍ତତ୍ସମୋ ବା,
ଭବତି ହି ସୁନଫାୟାଂ ଧୀଧନଖ୍ୟାତିମାଂଶ୍ଚ ।
ପ୍ରଭୁରଗଦଶରୀରଃ ଶୀଲବାନ୍ ଖ୍ୟାତକୀର୍ତ୍ତି-
ର୍ବିଷୟସୁଖସୁବେଶୋ ନିର୍ବୃତିଶ୍ଚାନଫାୟାଂ
ବୃ. ଜା.

ସୁନଫା ଯୋଗଜାତ ବ୍ୟକ୍ତି ନିଜ ଉପାର୍ଜିତ ଧନରେ ଧନୀ, ରାଜତୁଲ୍ୟ, ବୁଦ୍ଧିମାନ୍ ଓ ଖ୍ୟାତନାମା ହୁଏ । ଅନଫା ଯୋଗଜାତ ବ୍ୟକ୍ତି ଖ୍ୟାତନାମା, ରୋଗଶୂନ୍ୟ, ଗୁଣବାନ୍, ସୁବେଶ ଓ ନିବୃତ୍ତମନା ହୁଏ ।

ଉତ୍ପନ୍ନଭୋଗସୁଖଭାକ୍ ଧନବାହନାଢ୍ୟ—
ସ୍ତ୍ୟାଗାନ୍ୱିତୋ ଦୁରୁଧୁରାପ୍ରଭବ ସୁଭୃତ୍ୟଃ ।
କେମଦ୍ରୁମେ ମଳିନଦୁଃଖିତନୀଚନିସ୍ୱଃ,
ପ୍ରେଷ୍ୟଃ ଖଳଶ୍ଚ ନୃପତେରପି ବଂଶଜାତଃ ॥ ବୃ. ଜା.

ଦୁରୁଧୁରା ଯୋଗଜାତବ୍ୟକ୍ତି ନିଜର ଅର୍ଥ ଦେଖି ବ୍ୟୟ କରେ । ସୁଖ, ଧନ, ତ୍ୟାଗ, ପ୍ରଭୁତ୍ୱ ଓ ଖ୍ୟାତିଯୁକ୍ତ ହୁଏ । ଉତ୍ତମ ଭୃତ୍ୟ ବାହନାଦି ପ୍ରାପ୍ତି ହୁଏ । କେମଦ୍ରୁମ ଯୋଗଜାତ ବ୍ୟକ୍ତି ମଳିନ, ଦୁଃଖୀ, ନୀଚକର୍ମାନୁରକ୍ତ (ରାଜବଂଶଜ ହେଲେ ସୁଦ୍ଧା) ଦାସକର୍ମା ଓ ଦୁଷ୍ଟ ହୁଏ ।

କେମଦ୍ରୁମଯୋଗଭଙ୍ଗଃ

ନିଶାକରେ କେନ୍ଦ୍ରଗତେ ଭୃଗୌ ବା
ଜ୍ଞାବେକ୍ଷିତେ ନୈବ ଦରିଦ୍ରଯୋଗଃ ।
ଶୁଭାନ୍ୱିତେ ବା ଶୁଭଭାବଗେନ୍ଦୌ
ଜ୍ଞାବେକ୍ଷିତେ ନୈବ ଦରିଦ୍ରଯୋଗଃ ॥ ଜ୍ୟୋ.

ଶୁକ୍ରର କେନ୍ଦ୍ରରେ ଚନ୍ଦ୍ର ଥାଇ ବୃହସ୍ପତିଙ୍କର୍ତ୍ତୃକ ଦୃଷ୍ଟି ହେଲେ କିମ୍ବା ଚନ୍ଦ୍ର ଶୁଭଯୁକ୍ତ ଓ ଶୁଭଭାବସ୍ଥ ହୋଇ ବୃହସ୍ପତିଙ୍କର୍ତ୍ତୃକ ଦୃଷ୍ଟି ହେଲେ କେମଦ୍ରୁମ ଯୋଗ ଭଙ୍ଗ ହୁଏ ।

ଚତୁର୍ଷୁ କେନ୍ଦ୍ରେଷୁ ଭବନ୍ତି ଖେଟା
ଦୃଷ୍ଟୋଽପି କେମଦ୍ରୁମଯୋଗ ଏଷଃ ।
ତଦାସ୍ତୁ କେମଦ୍ରୁମତାଂ ନିତାନ୍ତଂ
କଳ୍ପଦ୍ରୁମଃ ସ୍ୟାତ୍ସକଳ ସତ୍ଫଳାପ୍ତ୍ୟୈ ॥ ଜା. ଭ.

ସମସ୍ତ କେନ୍ଦ୍ର ଗ୍ରହଯୁକ୍ତ ହୋଇଥିଲେ କିମ୍ବା ସମସ୍ତ କେନ୍ଦ୍ରକୁ ଗ୍ରହମାନେ ଦେଖୁଥିଲେ କେମଦ୍ରୁମଯୋଗ ଭଙ୍ଗ ହୁଏ ଓ ଜାତକ ଶୁଭଫଳ ପ୍ରାପ୍ତ ହୁଏ ।

ପ୍ରାଲେୟାଂଶୁଃ ସୂତିକାଲେ ସଦା ବା
ସର୍ବୈଃ ଖେଟୈର୍ବୀକ୍ଷ୍ୟମାଣଃ କରୋତି ।
ସନ୍ତୋଷାଢ୍ୟଂ ହନ୍ତି କେମଦ୍ରୁମଞ୍ଚ
ଦୀର୍ଘଂ ଗୃହ୍ଣୁଃ ରାଜଯୋଗ୍ୟଂ ମନୁଷ୍ୟଂ ॥ ଜ୍ୟୋ. ସା.

ସମସ୍ତ ଗ୍ରହମାନେ ଚନ୍ଦ୍ରକୁ ଦେଖୁଥିଲେ କେମଦ୍ରୁମ ଯୋଗ ଭଙ୍ଗ ହୁଏ । ଜାତକ ଧନୀ, ଦୀର୍ଘାୟୁ ଓ ରାଜପୂଜ୍ୟ ହୁଏ ।

ସର୍ବେ ଖେଟାଃ କେନ୍ଦ୍ରଭର୍ଯ୍ୟେଷୁ ସଂସ୍ଥାଃ
ଦୃଷ୍ଟ୍ୟା ଯୋଗସ୍ତାପି କେମଦ୍ରୁମୋଽସ୍ୟ ।
ଦୃଷ୍ଟଂ ସର୍ବଂ ସଫଳଂ ସମ୍ଭବନ୍ତ୍ୟ
କୁର୍ଯ୍ୟୁଃ ପୁଂସାଂ ସତ୍ଫଳଂ ବୈ ବଚନଂ ॥ ଜା. ପ.

ସମସ୍ତ ଗ୍ରହମାନେ କେନ୍ଦ୍ର ଓ ଉଚ୍ଚାଦି ଶୁଭ ଭାବମାନଙ୍କରେ ଥିଲେ କେମଦ୍ରୁମ ଯୋଗ ଭଙ୍ଗ ହୋଇ ଉତ୍ତମ ଶୁଭଫଳ ପ୍ରାପ୍ତି ହୁଏ ।

କ୍ଷିତିସୁତସୁତଜୀବେ ସୂତିକାଲେ ତୁଲାସ୍ଥାଂ
ବଳସତି ନଳିନୀନାଂ ନାୟକଃ କନ୍ୟକାନାଂ ।
ବଧୂରପି ଯଦି ଶେଷୈର୍ନେକ୍ଷିତୋ ମେଷବର୍ତ୍ତୀ
ଜନୟତି ନୃପତୀନ୍ଦ୍ରଂ ହନ୍ତି କେମଦ୍ରୁମଞ୍ଚ ॥ ଜା. ଶି.

ମଙ୍ଗଳ ଓ ବୃହସ୍ପତି ତୁଲାରେ ଥିବେ, ରବି କନ୍ୟାରେ ଥିବେ, ଚନ୍ଦ୍ର ମେଷରେ ଥାଇ ଶୁକ୍ର, ବୁଧ ଓ ଶନିକର୍ତ୍ତୃକ ଦୃଷ୍ଟି ଦେଉଥିଲେ କେମଦ୍ରୁମ ଦୋଷ ଭଙ୍ଗ ହୋଇ ଜାତକ ରାଜତୁଲ୍ୟ ହୁଏ ।

ଭାଗ୍ୟଯୋଗଃ

ଏକୋଽପି ଜୀବେନ୍ଦୁଜଭାର୍ଗବାନାଂ
ଭାଗ୍ୟଗୃହେ ଶୀତମୟୂଖଯୁକ୍ତଃ ।
କରୋତି ଭୂପଂ ବହୁଭାଗ୍ୟଯୁକ୍ତଂ
ମିହୈକ୍ଷିତଶ୍ଚେତ୍ସୁରରାଜତୁଲ୍ୟଃ ॥ ଜା. ଶି.

ବୁଧ, ବୃହସ୍ପତି କମ୍ବା ଶୁକ୍ର ଏକ ହେଲେ ନବମରେ ଚନ୍ଦ୍ରଯୁକ୍ତ ହୋଇ ରହିଲେ ଜାତକ ବହୁଭାଗ୍ୟଯୁକ୍ତ ଭୂପତି ହୁଏ । ଏହିପରି ଥିବା

ଚନ୍ଦ୍ରଙ୍କୁ ମିତ୍ରଗ୍ରହମାନେ ଦେଖିଲେ ଜାତକ ଇନ୍ଦ୍ରସଦୃଶ ଭୋଗ କରେ ।

ଲଗ୍ନାଦତୀବ ବସୁମାନ୍ ବସୁମାନ୍ ଶଶାଙ୍କଃ
ସୌମ୍ୟଗ୍ରହୈରୁପଚୟୋପଗତୈଃ ସମସ୍ତୈଃ ।
ଦ୍ୱାଭ୍ୟାଂ ସମୋଽଲ୍ପବସୁମାଂସ୍ତ ତଦୂନତାୟା
ମନ୍ୟେଷ୍ୱପୁତ୍ରଫଲେଷ୍ୱିଦମୁତ୍କଟେନ ॥ ବୃ. ଜା.

ଲଗ୍ନଠାରୁ ବା ଚନ୍ଦ୍ରଠାରୁ ତୃତୀୟ, ଷଷ୍ଠ, ଦଶମ, ଏକାଦଶରେ ସମସ୍ତ ଶୁଭଗ୍ରହମାନେ ରହିଲେ ଜାତକ ଖୁବ୍ ଧନୀ ହୁଏ । ଦୁଇଟି ଶୁଭଗ୍ରହ ରହିଲେ ମଧ୍ୟମ ଓ ଗୋଟିଏ ଶୁଭଗ୍ରହ ରହିଲେ ସାମାନ୍ୟ ଧନ ସଞ୍ଚୟ କରେ । ଲଗ୍ନ ଓ ଚନ୍ଦ୍ର ଉଭୟଙ୍କର ତୃତୀୟ, ଷଷ୍ଠ, ଦଶମ ବା ଏକାଦଶରେ ଶୁଭଗ୍ରହ ଥିଲେ ଜାତକ ଅତିଶୟ ଧନବାନ୍ ହୁଏ ।

କ୍ଷେତ୍ରାଧିପଦୃଷ୍ଟେ ଶଶିନି ନୃପଃ ତତ୍ସୁହୃଦ୍ଭିରପି ଧନବାନ୍ ।
ତଦ୍ଦ୍ରେକାଣାଂଶକପୈର୍ବାପ୍ରାୟଃ ସୌମ୍ୟୈଃ ଶୁଭଂ ଭବତନାନ୍ୟୈଃ ।
ଶ୍ରୀ. ପ୍ର.

ଚନ୍ଦ୍ର ଯେ ଗ୍ରହର ଗୃହରେ ଥିବେ, ସେହି ଗ୍ରହ ଚନ୍ଦ୍ରଙ୍କୁ ଦେଖିଲେ ଜାତକ ରାଜତୁଲ୍ୟ ହୁଏ । ତାହାର ମିତ୍ରଗ୍ରହ ଦେଖିଲେ ଧନୀ ହୁଏ । ସେହି ଗ୍ରହର ଦ୍ରେକ୍କାଣାଧିପ ବା ନବାଂଶାଧିପ ଚନ୍ଦ୍ରଙ୍କୁ ଦେଖିଲେ ମଧ୍ୟ ଜାତକ ଧନବାନ୍ ହୁଏ । ଶୁଭଗ୍ରହ ଚନ୍ଦ୍ରଙ୍କୁ ଦେଖିଲେ ଶୁଭ ଓ ପାପଗ୍ରହ ଦେଖିଲେ ଅଶୁଭ ହୁଏ ।

ପ୍ରବ୍ରଜ୍ୟା (ସନ୍ନ୍ୟାସ) ଯୋଗଃ

ଚତୁରାଦିଭିରେକସ୍ଥୈଃ ପ୍ରବ୍ରଜ୍ୟାଂ ସ୍ୱାଗ୍ରହଃ କରୋତି ବଲୀ ।
ବହୁଷ୍ୱାର୍ଯ୍ୟସ୍ତାବତ୍ୟଃ ପ୍ରଥମାଶାର୍ଯ୍ୟାଧିକସ୍ୟୈବ ॥

ତାପସ-ବୁଦ୍ଧ-ଶ୍ରାବକ-ରକ୍ତପଟ୍ଟା-ଜୀବୀ-ଭିକ୍ଷୁ ଚରକାଣାଂ
ନିର୍ଗ୍ରନ୍ଥାନାଞ୍ଚାର୍କାଦ୍ୟ ପରାଜିତୈଃ ପ୍ରଚ୍ୟୁତୈର୍ବଲିଭିଃ ॥

ଚାରୋଟି, ପାଞ୍ଚୋଟି ବା ଛ'ଟି ଗ୍ରହ ଏକ ରାଶିରେ ଥିଲେ ସନ୍ନ୍ୟାସ ଯୋଗ ହୁଏ । ଏମାନଙ୍କ ମଧ୍ୟରେ ଯେ ଗ୍ରହ ବଳବାନ୍ ଜାତକ ତାହାର ପ୍ରବ୍ରଜ୍ୟା ଧାରଣ କରେ । ରବି ବଳବାନ୍ ହେଲେ ଜାତକ ସୂର୍ଯ୍ୟ, ଗଣେଶ, ଦୁର୍ଗା ଓ ଗାୟତ୍ରୀର ଉପାସକ ହୁଏ । ଚନ୍ଦ୍ର ବଳବାନ୍ ହେଲେ ଭସ୍ମଧୂଳିମଣ୍ଡିତ ଶୈବସନ୍ନ୍ୟାସୀ, ମଙ୍ଗଳ ହେଲେ ରକ୍ତବସ୍ତ୍ରଧାରୀ, ବୁଧ ହେଲେ ସନ୍ନ୍ୟାସବେଶ ଧାରଣ କରି ଔଷଧାଦିର ବ୍ୟବସାୟୀ, ବୃହସ୍ପତି ହେଲେ ଦଣ୍ଡୀ ( ପରମହଂସାଦି ), ଶୁକ୍ର ହେଲେ ବୈଷ୍ଣବସମ୍ପ୍ରଦାୟଭୁକ୍ତ ପରସ୍ତ୍ରୀଲୋଲୁପ (ଚରକ) ଓ ଶନି ବଳବାନ୍ ହେଲେ ଭକ୍ଷ୍ୟାଭକ୍ଷ୍ୟ ବିଚାରହୀନ ପାଷଣ୍ଡ ବ୍ରତାନୁରକ୍ତ ହୁଏ । ପ୍ରବ୍ରଜ୍ୟାକାରକ ଗ୍ରହ ପରାଜିତ ହେଲେ ଜାତକ ସେଥିରୁ ଭ୍ରଷ୍ଟ ହୁଏ ।

## ଜୀବକାଧ୍ୟାୟଃ

ଅର୍ଥାପ୍ତିପିତୃପତ୍ନୀଶତ୍ରୁମିତ୍ରଭ୍ରାତ ସ୍ତ୍ରୀଭୃତ୍ୟଜନାଦ୍ଦିବାକରାଦ୍ୟୈଃ ।
ହୋରେନ୍ଦ୍ୱୋର୍ଦଶମଗତୈର୍ବିକଳ୍ପନୀୟା ଭେନ୍ଦ୍ୱର୍କାସ୍ପଦପତିଗାଂଶନାଥ-
ବୃତ୍ତ୍ୟା ॥ ବୃ. ଜା.

ଲଗ୍ନ କିମ୍ବା ଚନ୍ଦ୍ରଙ୍କ ଦଶମରେ ରବି ଥିଲେ ପିତୃଧନ, ଚନ୍ଦ୍ର ଥିଲେ ମାତୃଧନ, ମଙ୍ଗଳ ଥିଲେ ଶତ୍ରୁଧନ, ବୁଧ ଥିଲେ ମିତ୍ରଧନ, ବୃହସ୍ପତି ଥିଲେ ଭ୍ରାତୃଧନ, ଶୁକ୍ର ଥିଲେ ସ୍ତ୍ରୀଧନ ଓ ଶନି ଥିଲେ ଭୃତ୍ୟଧନଦ୍ୱାରେ ଜାତକ ଜୀବିକା ନିର୍ବାହ କରେ । ଲଗ୍ନ ଓ ଚନ୍ଦ୍ର ଉଭୟଙ୍କର ଦଶମରେ ଗ୍ରହ ଥିଲେ ଉଭୟଙ୍କ ମଧ୍ୟରୁ ଯେ ବଳବାନ୍ ସେହି ଗ୍ରହକୁ ଦେଖିବେ, ଏହି ଉପରୋକ୍ତ ସ୍ଥାନମାନଙ୍କରେ ଗ୍ରହ ନ ଥିଲେ ଚନ୍ଦ୍ର ଓ ରବିର ଦଶମାଧି-

ଯଉମାନେ ଯେଉଁ ଗ୍ରହର ନବାଂଶରେ ଥିବେ, ଜାତକ ସେହି ଗ୍ରହୋକ୍ତ ବୃତ୍ତି ଅବଲମ୍ବନ କରିବ ।

ଉଦୟାଚ୍ଛଶିନୋ ବାପି ଯେ ଗ୍ରହାଦଶମେ ସ୍ଥିତାଃ ।
ତେ ସର୍ବେଽର୍ଥପ୍ରଦା ଜ୍ଞେୟାଃ ସ୍ୱଦଶାସୁ ଯଥୋଦିତାଃ ।
ଲଗ୍ନାର୍କଶଶିନାଥେଭ୍ୟୋ ଦଶମାଧିପତଗ୍ରହଃ ।
ଯସ୍ମିନ୍ ନବାଂଶେ ତଜ୍ଜାଙ୍କ ବର୍ତ୍ତିତେ ତସ୍ୟ ଯଃ ପତିଃ ॥
ତଦ୍‌ବୃତ୍ତ୍ୟା ପ୍ରବଦେଦ୍ ବିତ୍ତଂ ଜାତସ୍ୟ ବହବୋ ଯଦା
ଭବନ୍ତି ବିତ୍ତଦାସ୍ତେଽପି ସ୍ୱଦଶାସୁ ଧନପ୍ରଦଂ ॥ ଭ. ଗା.

ଲଗ୍ନ ଓ ଚନ୍ଦ୍ରଙ୍କର ଦଶମସ୍ଥ ଗ୍ରହମାନଙ୍କର ଦଶାନ୍ତର୍ଦଶାରେ ଧନପ୍ରାପ୍ତି ହୁଏ । ଲଗ୍ନ, ଚନ୍ଦ୍ର ଓ ରବି ଏମାନଙ୍କର ଦଶମସ୍ଥ ଗ୍ରହମାନଙ୍କ ମଧ୍ୟରୁ ଯେ ଗ୍ରହ ବଳବାନ୍ ସେ ଗ୍ରହ ଯେଉଁ ଗ୍ରହର ନବାଂଶରେ ଥିବ, ଜାତକ ସେହି ଗ୍ରହୋକ୍ତ ବୃତ୍ତି ଅବଲମ୍ବନ କରିବ ।

ଧନଦା ଜନ୍ମସମୟେ ମିତ୍ରାରିସ୍ୱଗୃହୋପଗାଃ ।
ଯସ୍ୟ ତସ୍ୟ ଧନଂ ଦଦ୍ୟୁର୍ମିତ୍ରାରିସ୍ୱଗୃହୋଭବଂ ॥
ଧନଦୋ ସ୍ୱସ୍ଥଗେ ଯସ୍ୟ ଭୁଙ୍ଗେ ବଳସମନ୍ୱିତଃ ।
ଭବେଜ୍ଜନ୍ମନ ଯସ୍ୟ ସ୍ୟାଦ୍‌ବିତ୍ତମାସ୍ମୋଦ୍ୟମାର୍ଜ୍ଜିତଂ ॥
ଲବ୍ଧାର୍ଥଲଗ୍ନଗୈଃ ସୌମ୍ୟୈର୍ୟେନ ଯେନୈବ କର୍ମଣା ।
ଧନାର୍ଜ୍ଜନଂ ପ୍ରାର୍ଥୟତେ ତେନ ତାନ୍ ସ ସମଶ୍ନୁତେ ॥
ବୃ. ଜା.

ପୂର୍ବୋକ୍ତ ନବାଂଶାଧିପତି ମିତ୍ରଗୃହରେ ଅବସ୍ଥାନ କଲେ ମିତ୍ରଠାରୁ, ଶତ୍ରୁଗୃହରେ ଅବସ୍ଥାନ କଲେ ଶତ୍ରୁଠାରୁ, ସ୍ୱଗୃହରେ ଥିଲେ ସ୍ୱଗୃହରୁ ଜାତକ ଧନଲାଭ କରେ । ରବି ଧନଦାତା ହୋଇ

ଛଠରେ ଥିଲେ ଜାତକ ନିଜ ବାହୁବଳରେ ଧନାର୍ଜନ କରେ । ଏକାଦଶ, ଲଗ୍ନ ବା ଦ୍ୱିତୀୟ ସ୍ଥାନରେ ଶୁଭଗ୍ରହମାନେ ଥିଲେ ଜାତକ ବିବିଧ ଉପାୟ ଅବଲମ୍ବନ କରି ଧନାର୍ଜନ କରେ । ଏହି ଏହି ଗ୍ରହମାନଙ୍କର ଦଶାନ୍ତର୍ଦ୍ଦଶାରେ ସେହି ଗ୍ରହୋକ୍ତ ବୃତ୍ତି ଅବଲମ୍ବନ କରି ଜାତକ ଧନଲାଭ କରେ । ନିମ୍ନରେ ଗ୍ରହଦେଭୂକ ବୃତ୍ତି ଦେଖନ୍ତୁ ।

ଅର୍କାଂଶେ ତୃଣକନକୋର୍ଣ୍ଣଭେଷଜାଦ୍ୟୈ-
ଶ୍ଚନ୍ଦ୍ରାଂଶେ କୃଷିଜଲାଙ୍ଗନାଶ୍ରୟାଚ୍ଚ ।
ଧାତ୍ୱଗ୍ନିପ୍ରହରଣସାହସୈଃ କୁଜାଂଶେ
ସୌମ୍ୟାଂଶେ ଲିପିଗଣିତାଦିକାବ୍ୟଶିଳ୍ପୈଃ ॥ ବୃ. ଜା.

ପୂର୍ବକଥିତ ନବାଂଶାଧିପତି ରବି ହେଲେ ଜାତକ ସୁଗନ୍ଧି ଦ୍ରବ୍ୟ, ସ୍ୱର୍ଣ୍ଣ, ପଶମ ଓ ଔଷଧାଦିର ବ୍ୟବସାୟଦ୍ୱାରା; ଚନ୍ଦ୍ର ନବାଂଶାଧିପ ହେଲେ କୃଷିକର୍ମ କମ୍ବା ଶଙ୍ଖ, ମଣି ଓ ମୁକ୍ତାଦିର କ୍ରୟ ବିକ୍ରୟାଦିଦ୍ୱାରା; ମଙ୍ଗଳ ନବାଂଶାଧିପ ହେଲେ ଧାତୁ କ୍ରୟ ବିକ୍ରୟ, ଅସ୍ତ୍ରାଦିର ପରିଚାଳନା ଓ ନିଜର ସାହସଦ୍ୱାରା; ବୁଧ ନବାଂଶାଧିପ ହେଲେ ଲିଖନ କାର୍ଯ୍ୟ, ଗଣିତ (ଜ୍ୟୋତିଷ) ଶାସ୍ତ୍ରବିଚାର, କାବ୍ୟାଦି ପଠନ ଓ ଶିଳ୍ପବିଦ୍ୟାଦିଦ୍ୱାରା ଜାତକ ଧନଲାଭ କରେ ।

ଜୀବାଂଶେ ଦ୍ୱିଜବିବୁଧାକରାଦି ଧର୍ମୈଃ
କାବ୍ୟାଂଶେ ମଣିରଜତାଦିଗୋମହିଷ୍ୟୈଃ ।
ସୌର୍ଯ୍ୟଂଶେ ଶ୍ରମବଧଭାରନୀଚଶିଳ୍ପୈଃ
କର୍ମେଶାଧ୍ୟୁଷିତ ନବାଂଶକର୍ମସିଦ୍ଧିଃ । ବୃ. ଜା,

ବୃହସ୍ପତି ପୂର୍ବୋକ୍ତ ନବାଂଶାଧିପ ହେଲେ ବ୍ରାହ୍ମଣ ଦେଉରୁ ଦେବାର୍ଚ୍ଚନରୁ, ଖନିଜ ବ୍ୟବସାୟ ଓ ହୋମାଦି ଧର୍ମକର୍ମଦ୍ୱାରା ଜାତକ

ଧନାର୍ଜନ କରେ । ଶୁକ୍ର ନବାଂଶାଧିପ ହେଲେ ମଣି, ରୌପ୍ୟ, ଗୋମହିଷାଦିର ବ୍ୟବହାରରୁ ଓ ଶନି ନବାଂଶାଧିପ ହେଲେ କଠିନ ପରିଶ୍ରମ, ବଧକାର୍ଯ୍ୟ ଓ ନୀଚ ଶିଳ୍ପାଦିଦ୍ୱାରା ଜାତକ ଧନାର୍ଜନ କରେ । ଦଶମାଧିପତି ଯେଉଁ ଗ୍ରହର ନବାଂଶରେ ଥିବ, ସେହି ଗ୍ରହୋକ୍ତ ବୃତ୍ତିରେ ଜାତକ କର୍ମସିଦ୍ଧି କରିବ ।

ପଞ୍ଚମୋଽଧ୍ୟାୟଃ ସମାପ୍ତଃ ।



## ଷଷ୍ଠୋଽଧ୍ୟାୟଃ ।

## ଅନିଷ୍ଟଯୋଗାଃ

### ରାଜଯୋଗଭଙ୍ଗଃ

ନୀଚଗାଃ କୁଜଶମାର୍କସୁରଜ୍ୟୋଃ
ଲଗ୍ନଗା ନୃପତିଯୋଗଭଙ୍ଗଦାଃ ।
ବୃଶ୍ଚିକେ ଯଦି ନିଶାକରସ୍ତ୍ରୋ ଭବେ-
ନ୍ନୀର୍ଯ୍ୟତେ ନୃପତିଯୋଗସମ୍ଭବଃ ॥ ଜା. ଶି

ମଙ୍ଗଳ, ଶନି, ରବି ଓ ବୃହସ୍ପତି ସ୍ୱ ସ୍ୱ ନୀଚାଂଶଗତ ହୋଇଥିଲେ ଓ ସେହି ସେହି ରାଶି ଲଗ୍ନ ହୋଇଥିଲେ କିମ୍ବା ଚନ୍ଦ୍ର ବୃଶ୍ଚିକର ନୀଚାଂଶରେ ଥିଲେ ରାଜଯୋଗ ଭଙ୍ଗ ହୁଏ । ମନେ କର, ମଙ୍ଗଳ କର୍କଟର ୨୮ଅଂଶସ୍ଥ ଓ ଜାତଲଗ୍ନ କର୍କଟ, ତେବେ ଏହା ରାଜଯୋଗ ଭଙ୍ଗକାରକ ।

ନୀଚାଃ କେନ୍ଦ୍ରଗତା ନୀଚେ ବାରିଗେନ ଶୁଭେକ୍ଷିତାଃ ।
ଶୁଭଦା ବ୍ୟୟରନ୍ଧ୍ରସ୍ଥା ବା ଭଙ୍ଗୋ ନୃପତେର୍ଭବେତ୍ ॥ ଜା. ଶି.

ପାପଗ୍ରହମାନେ କେନ୍ଦ୍ରରେ ଥାଇ ନୀଚସ୍ଥ ବା ଶତ୍ରୁଗୃହସ୍ଥ ହେଲେ ଓ ଶୁଭଗ୍ରହମାନଙ୍କର ଦୃଷ୍ଟି ସେମାନଙ୍କ ପ୍ରତି ନ ଥିଲେ ବା ଶୁଭଗ୍ରହମାନେ ଷଷ୍ଠ, ଅଷ୍ଟମ ଓ ଦ୍ୱାଦଶରେ ଥିଲେ ରାଜଯୋଗ ଭଙ୍ଗ ହୁଏ ।

କୁମ୍ଭୋଦୟେ ସୂର୍ଯ୍ୟଗତେ ବୃହସ୍ପତୌ
ନିଭଗ୍ରହୈର୍ନୀଚସମାଶ୍ରିତୈର୍ବା ।
ନ କୋଽପିଭୁଙ୍କ୍ତେ ଶୁଭକର୍ମଭାବେ
ପାଥେ ନୃପୋ ବୈ ବଲୟଂ ପ୍ରୟାତି ॥ ଜା. ଶି.

କୁମ୍ଭ ଲଗ୍ନ ହୋଇଥିବ, ଲଗ୍ନରେ ରବି ଓ ବୃହସ୍ପତି ଥିବେ, ଅନୋନ୍ୟ ଗ୍ରହ ନୀଚ ହେବେ, କୌଣସି ଗ୍ରହ ଉଚ୍ଚ ହୋଇ ନ ଥିବେ କିମ୍ବା ନବମ ଓ ଦଶମରେ ପାପ ଗ୍ରହ ଥିଲେ ରାଜଯୋଗ ଭଙ୍ଗ ହୁଏ ।

ଲଗ୍ନସ୍ୟ ଦଶମେ ଶୂନ୍ୟେ ରବେରେକାଦଶେ ତଥା ।
ଚନ୍ଦ୍ରସ୍ୟ ଅଷ୍ଟମେ ଶୂନ୍ୟେ ନିଶୂନ୍ୟେ ଚ ଦରିଦ୍ରତା ॥
ପା. ହୋ.

ଲଗ୍ନର ଦଶମରେ, ରବିର ଏକାଦଶରେ ଓ ଚନ୍ଦ୍ରର ଅଷ୍ଟମରେ କୌଣସି ଗ୍ରହ ନ ଥିଲେ ଦାରିଦ୍ର୍ୟଯୋଗ ହୁଏ ।

ଚନ୍ଦ୍ରଂ ବା ଯଦି ବା ଲଗ୍ନଂ ଗ୍ରହୋନୈକୋଽପି ବୀକ୍ଷତେ ।
ତଥାପି ରାଜଯୋଗାନାଂ ଭଙ୍ଗମାହ ପରାଶରଃ ॥ ପା. ହୋ.

ଲଗ୍ନକୁ କିମ୍ବା ଚନ୍ଦ୍ରକୁ କୌଣସି ଗ୍ରହ ନ ଦେଖିଲେ ରାଜଯୋଗ ଭଙ୍ଗ ହୁଏ ।

କେନ୍ଦ୍ରେଷୁ ଶୂନ୍ୟେଷୁ ଶୁଭୈର୍ନଭୋଗୈ—
ରସ୍ତଂଗତୈର୍ନୀଚଗୃହସ୍ଥିତୈର୍ବା ।

ଚତୁର୍ଗ୍ରହୈର୍ବ୍ୟୋମଚରୈରସ୍ତୈ-
ର୍ନୃପାଳଯୋଗାଃ ଫଳଶୂନ୍ୟଂ ପ୍ରୟାନ୍ତି ॥ ପା. ହୋ.

କେନ୍ଦ୍ରରେ କୌଣସି ଗ୍ରହ ନ ଥିଲେ ଶୁଭଗ୍ରହଗଣ ନୀଚସ୍ଥ ବା ଅସ୍ତଗତ ହେଲେ କିମ୍ବା ଚାରିଗ୍ରହ ଶତ୍ରୁଗୃହଗତ ହେଲେ ରାଜଯୋଗ ଭଙ୍ଗ ହୁଏ ।

ସ୍ତ୍ରୀନାଶଯୋଗାଃ

ଉଗ୍ରଗ୍ରହୈଃ ଶିତଚତୁରସ୍ରସଂସ୍ଥିତୈ—
ର୍ମଧ୍ୟସ୍ଥିତେ ଭୃଗୁତନୟେଽଥବାଗ୍ରୟୋଃ ।
ସୌମ୍ୟଗ୍ରହୈରସହିତସଂନିରୀକ୍ଷିତେ
ଜାୟାବଧୋ ଦହନନିପାତପାଶଜଃ ॥ ବୃ. ଜା.

ଶନି, ରବି, ମଙ୍ଗଳ ଓ ଶୁକ୍ର ଚତୁର୍ଥ ସ୍ଥାନରେ ଥିଲେ ସ୍ତ୍ରୀ ଅଗ୍ନି-ହେତୁକ ପୀଡ଼ା ପାଇ ମରେ । ଶୁକ୍ର ପାପଗ୍ରହଦୃଷ୍ଟିରେ କିମ୍ବା ଶୁଭଗ୍ରହ ଦୃଷ୍ଟି ନ ଥାଇ ପାପମଧ୍ୟଗତ ହେଲେ ସେହି ବ୍ୟକ୍ତିର ସ୍ତ୍ରୀ ଅଗ୍ନିରେ ପୋଡି ମରେ ବା ବନ୍ଧୁଉଦେଇ ମରେ ।

ନୀଚେ ଗୁରୌ ମଦନଗେ ସତି ନଷ୍ଟଦାରୋ
ମୀନେ କଳତ୍ର ଭବନେ ରବିଜେ ତଥୈବ ॥ ଜ୍ୟୋ.

ନୀଚସ୍ଥ ବୃହସ୍ପତି ସପ୍ତମରେ ଥିଲେ କିମ୍ବା ମୀନରାଶିସ୍ଥ ଶନି ସପ୍ତମରେ ରହିଲେ ସ୍ତ୍ରୀନାଶ ହୁଏ ।

ଷଷ୍ଠେ ଚ ଭବନେ ଭୌମଃ ସପ୍ତମେ ରାହୁସମ୍ଭବଃ ।
ଅଷ୍ଟମେଽପି ଯଦା ସୌରିସ୍ତସ୍ୟ ଭାର୍ଯ୍ୟା ନ ଜୀବତି ॥
ଜ୍ୟୋ.

ଷଷ୍ଠରେ ମଙ୍ଗଳ, ସପ୍ତମରେ ରାହୁ ଓ ଅଷ୍ଟମରେ ଶନି ଥିଲେ ଜାତକର ଭାର୍ଯ୍ୟା ବଞ୍ଚେ ନାହିଁ ।

### ପୁତ୍ରନାଶଯୋଗାଃ

ଲଗ୍ନେ ଦେବଗୁରୌ ଯସ୍ୟ ପଞ୍ଚମେ ରବିକୋଣୟୋଃ ।
ପୁତ୍ରନାଶୋ ଭବେଦ୍ ତସ୍ୟ ଅନ୍ୟଥାପି ନ ବିଦ୍ୟତେ ॥ ଜା. ସ.

ଲଗ୍ନରେ ବୃହସ୍ପତି, ପଞ୍ଚମରେ ରବି ଓ ଶନି ଥିଲେ ଜାତକର ପୁତ୍ର ନାଶ ହୁଏ ।

ଲଗ୍ନେ ଶନୌ କୁଜେ ଷଷ୍ଠେ ସୂର୍ଯ୍ୟେ ତୌଲିନି ସଂଯୁତେ ।
ମୀନରାଶିଗତେ ଜୀବେ ପୁତ୍ରହୀନୋ ଭବେନ୍ନରଃ ॥ ଜା. ଚ.

ଲଗ୍ନରେ ଶନି, ଷଷ୍ଠରେ ମଙ୍ଗଳ, ତୁଳାରେ ରବି ଓ ମକରରେ ବୃହସ୍ପତି ଥିଲେ ଜାତକ ପୁତ୍ରହୀନ ହୁଏ ।

ପୁତ୍ରସ୍ଥାନଗତେ ସୂର୍ଯ୍ୟେ କୁଜେ ମନ୍ଦବିଲୋକିତେ ।
ଶତ୍ରୁଣା ବୀକ୍ଷିତେ ଚନ୍ଦ୍ରେ ନଷ୍ଟପୁତ୍ରୋ ଭବେନ୍ନରଃ ॥ ଜା. ଚ.

ମଙ୍ଗଳ ଓ ଶନିଙ୍କର ଦୃଷ୍ଟିରେ ରବି ପଞ୍ଚମରେ ଥିଲେ ଓ ଚନ୍ଦ୍ର ଶତ୍ରୁଗ୍ରହଦ୍ୱାରା ଦୃଷ୍ଟ ହେଲେ ଜାତକ ପୁତ୍ରକଷ୍ଟ ଭୋଗ କରେ ।

ଲଗ୍ନେ ଶୁକ୍ରସମାଯୁକ୍ତେ ଚନ୍ଦ୍ରେ ସୌରିବିଲୋକିତେ ।
ରନ୍ଧ୍ରାରିଗତେ ସୂର୍ଯ୍ୟେ ପୁତ୍ରହୀନୋ ଭବେନ୍ନରଃ ॥ ଜା. ଚ.

ଲଗ୍ନରେ ଶୁକ୍ର ଥିବେ, ଚନ୍ଦ୍ର ଶନିଙ୍କ ଦୃଷ୍ଟିରେ ଥିବେ, ରବି ଷଷ୍ଠ ବା ଅଷ୍ଟମରେ ଥିଲେ ଜାତକ ପୁତ୍ରହୀନ ହୁଏ ।

ଶୁକ୍ରକ୍ଷେତ୍ରଗତେ ମନ୍ଦେ ବୁଧେନ୍ଦୁରବିବୀକ୍ଷିତେ ।
ପାପକ୍ଷେତ୍ରଗତେ ଲଗ୍ନେ ବିପୁଂସଃ ସ୍ୟାତ୍ ଜନ୍ମତ ॥ ଜା. ଚ.

ଶନି ବୃଷରେ ବା ତୁଳାରେ ଥାଇ ବୁଧ, ଚନ୍ଦ୍ର ଓ ରବିକର୍ତ୍ତୃକ ଦୃଷ୍ଟ ହେଲେ ଜାତକ ଅପୁତ୍ରିକ ହୁଏ ।

ଚକ୍ଷୁର୍ନାଶଯୋଗାଃ

ପାପୈସ୍ତ୍ରିଭିର୍ଯଦା ସୋମୋ ଋଷ୍ଟଗେହେ ସମ୍ପସ୍ଥିତଃ ।
ଶୁଭଗ୍ରହାଃ ନ ପଶ୍ୟନ୍ତି ଚକ୍ଷୁର୍ନାଶୋ ଭବେଦ୍ଧ୍ରୁବଂ ॥ ପା. ହୋ.

ଚନ୍ଦ୍ର ତିନୋଟି ପାପଗ୍ରହଯୁକ୍ତ ହୋଇ ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ ଓ ତାହାଙ୍କୁ ଶୁଭଗ୍ରହ ଦେଖୁ ନ ଥିଲେ ଚକ୍ଷୁନାଶ ହୁଏ ।

ଅଷ୍ଟମସ୍ଥୋ ଯଦା ଭାନୁଃ ଶଶିଶୁକ୍ରାରବୀକ୍ଷିତଃ ।
ରିପୁଗେହେ ବିଶେଷେଣ କାଣଯୋଗୋ ଭବେଦ୍ଧ୍ରୁବଂ ॥
ଜା. ସଂ.

ରବି ଅଷ୍ଟମସ୍ଥ ହୋଇ ଚନ୍ଦ୍ର, ଶୁକ୍ର ଓ ମଙ୍ଗଳଦ୍ୱାରା ଦୃଷ୍ଟ ହେଲେ ଓ ଶତ୍ରୁଗୃହୀ ହୋଇଥିଲେ ଜାତକ ଅନ୍ଧ ହୁଏ ।

ଧନଭଂ ଦକ୍ଷିଣଂ ନେତ୍ରଂ ବ୍ୟୟଭଂ ବାମନେତ୍ରକଂ ।
ଯତ୍ର ତତ୍ର ସ୍ଥିତଃ କ୍ରୂରଃ ପ୍ରହାରଂ ପୀଡନଂ ସ୍ମୃତଂ । ଜା. ସଂ

ପାପଗ୍ରହ ଦ୍ୱିତୀୟରେ ଥିଲେ, ଦକ୍ଷିଣ ନେତ୍ର ଓ ଦ୍ୱାଦଶରେ ଥିଲେ ବାମ ନେତ୍ର ପୀଡ଼ାହେତୁରୁ ବା ପ୍ରହାରହେତୁରୁ ନଷ୍ଟ ହୁଏ ।

ଧନଗତା ରବିସହିତଶନୈଶ୍ଚର ଧନପତିର୍ଯଦିସ୍ୟାନ୍ମୁପାଗତଃ ।
ଖଲଯୁତୋଽଥ ନ ପଶ୍ୟତି ତଂ ଯଦା ଭବତି ଗୃହ ନରେନ୍ଦ୍ରଭୂକାଣକଃ ॥
ଜା. ପ,

ଦ୍ୱିତୀୟରେ ରବି, ରାହୁ ବା ଶନି ଥିବେ, ଦ୍ୱିତୀୟର ଅଧିପତି ଅସ୍ତ ବା ପାପଯୁକ୍ତ ହୋଇଥିବେ, ଶୁଭଗ୍ରହମାନେ ଦେଖୁ ନ ଥିବେ ତେବେ ଜାତକ ଅନ୍ଧ ହୁଏ ।

ଶୁକ୍ରଃ ସେନ୍ଦୁସ୍ତ୍ରିକସ୍ଥୋ ଜନୁଷି ଯଦି ନରଃ ପ୍ରାପ୍ନୁୟାଦନ୍ଧକତ୍ୱଂ
ଜନ୍ମାନ୍ଧଃ ସାର୍କଶୁକ୍ରସ୍ତନୁଭବନପତିଃ ସ୍ୟାତ୍ତଦାଣଂ ମନୁଷ୍ୟଃ ।
ଏବଂ ତାତାନୁଜାମ୍ବାସୁତଜନଗୃହିଣୀସ୍ଥାନନାଥାଃ ସ୍ଥିତାସ୍ତେ-
ବାଦେଶ୍ୟଂ ତଦ ତେଷାଂ ପ୍ରବରମତିଯୁତୈରନ୍ଧକତ୍ୱଂ ତଦାଣଂ ॥
ଜା. ଅ.

ଚନ୍ଦ୍ର ଓ ଶୁକ୍ର ଯଦି ଏକତ୍ର ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିବେ, ତେବେ ଜାତକ ଅନ୍ଧାରକଣା ହୁଏ । ଲଗ୍ନାଧିପତି ସହିତରେ ରବି ଓ ଶୁକ୍ର ଥିଲେ ଜାତକ ଜନ୍ମାନ୍ଧ ହୁଏ । ଏହିପରି ତୃତୀୟାଧିପ, ଚତୁର୍ଥାଧିପ ପଞ୍ଚମାଧିପ, ସପ୍ତମାଧିପ ଓ ଦଶମାଧିପମାନଙ୍କ ସହିତରେ ରବି, ଚନ୍ଦ୍ର ଓ ଶୁକ୍ର ଥିଲେ ଯଥାକ୍ରମେ ଭ୍ରାତା, ମାତା, ପୁତ୍ର, ସ୍ତ୍ରୀ ଓ ପିତା ଅନ୍ଧ ହୁଅନ୍ତି ।

ସୁତାମ୍ବୁଗୌ ପାପଖଗୌ ବିଶେଷାତ୍
ଚନ୍ଦ୍ରେଷ୍ଟରିଷ୍ଟାନ୍ତଗତେଽନ୍ଧତା ସ୍ୟାତ୍ ।
ଶୁଭଗ୍ରହାଣାମବଲୋକହୀନେ
ହିତୋ ଭବତ୍ୟେବ ଶୁଭୈର୍ନଦୋଷଃ ॥

ପାପଗ୍ରହମାନେ ଚତୁର୍ଥ ଓ ପଞ୍ଚମରେ ଥିଲେ ଓ ଶୁଭଗ୍ରହମାନଙ୍କ ଦ୍ୱାରା ଅଦୃଷ୍ଟ ହୋଇ ଚନ୍ଦ୍ର ଷଷ୍ଠ, ଅଷ୍ଟମ ବା ଦ୍ୱାଦଶରେ ଥିଲେ, ଜାତକ ଅନ୍ଧ ହୁଏ । ଚନ୍ଦ୍ର ଶୁଭଦୃଷ୍ଟ ହେଲେ କୌଣସି ଅନିଷ୍ଟ ଘଟେ ନାହିଁ ।

## ବଧିରଯୋଗାଃ

ସୌମ୍ୟେ ରିପୁକୁଟୁମ୍ବଗେ ଶନୌ ।
ସୁଖସ୍ଥୈରଷ୍ଟ ବଧିରତ୍ୱଯୋଗଃ ॥ ସା. ବ.

ବୁଧ ଷଷ୍ଠାଧିପ ହୋଇ ଚତୁର୍ଥସ୍ଥ ହୋଇ ଶନିଦୃଷ୍ଟିରେ ଥିଲେ ଜାତକ କାଲ ହୁଏ ।

ନବମାୟତୃତୀୟଧୀୟୁତା ନ ଚ ସୌମ୍ୟୈରଶୁଭା ନିରୀକ୍ଷିତାଃ ।
ନିୟମାଚ୍ଛ୍ରବଣୋପଘାତଦା ରଦବୈକୃତ୍ୟକରାଶ୍ଚ ସପ୍ତମେ ॥ ବୃ. ଜା.

ନବମ, ଏକାଦଶ, ତୃତୀୟ ଓ ପଞ୍ଚମରେ ପାପଗ୍ରହମାନେ ଥିଲେ ଓ ଶୁଭଗ୍ରହମାନଙ୍କର ଦୃଷ୍ଟି ସେହି ସେହି ସ୍ଥାନମାନଙ୍କୁ ନ ଥିଲେ ଜାତକ କର୍ଣ୍ଣରୋଗପୀଡ଼ିତ ହୁଏ । ପାପଗ୍ରହମାନେ ସପ୍ତମରେ ଥାଇ ଶୁଭଦୃଷ୍ଟି ହେଉ ନ ଥିଲେ ଜାତକ ଦନ୍ତୁର ହୁଏ ।

ନକ୍ତଂ ବୁଧେ ଶଶିଗୃହେ ଶିତେ ଚ ବ୍ୟୋମ୍ନି ସଂସ୍ଥିତେ ।
ଉଚ୍ଚୈଃ ସ୍ୱରେଣ ଶୃଣୁତେ ଶ୍ରବଣେ ଦକ୍ଷିଣୋତ୍ତରେ ॥ ସା. ବ.

ରାତ୍ରିଜନ୍ମାର ଲଗ୍ନର ଷଷ୍ଠରେ ବୁଧ ଓ ଦଶମରେ ଶୁକ୍ର ଥିଲେ ଉଚ୍ଚସ୍ୱରରେ କହିଲେ ଶୁଣେ ।

## ଖଞ୍ଜଯୋଗାଃ

କର୍କଟସ୍ଥୋ ଯଦା ସୌରିଃ ପାପଯୁକ୍ତୋ ଭବେଦ୍ଯଦି ।
ଶୁଭଗ୍ରହା ନ ପଶ୍ୟନ୍ତି ଖଞ୍ଜୋ ଭବତି ନାନ୍ୟଥା ॥ ଜା. ସ.

ପାପଯୁକ୍ତ ଓ ଶୁଭଗ୍ରହମାନଙ୍କଦ୍ୱାରା ଅଦୃଷ୍ଟ ଶନି କର୍କଟରେ ଥିଲେ ଜାତକ ଷେଣ୍ଢା ହୁଏ ।

କବିନା ସଂଯୁତୋ ମନ୍ଦଃ ଗୁରୁଣା ସଂଯୁତୋ ତମଃ ।
କେନ୍ଦ୍ରସ୍ଥୋ ପାପଦୃଷ୍ଟୋ ବା ପାଦଖଞ୍ଜୋ ଭବେନ୍ନରଃ ॥
ଜା. ପା.

ଶୁକ୍ର ଶନିଯୁକ୍ତ ଓ ପାପଦୃଷ୍ଟ ହୋଇ କେନ୍ଦ୍ରରେ ଥିଲେ ବୃହସ୍ପତି ରାହୁଯୁକ୍ତ ଓ ପାପଦୃଷ୍ଟ ହୋଇ କେନ୍ଦ୍ରରେ ଥିଲେ କିମ୍ବା ଜାତକ ଷେଣ୍ଢା ହୁଏ ।

ମେଷାଳିକର୍କିମୃଗମୀନଗତୌ ଶଶାଙ୍କ
ନ୍ଦୃଗନ୍ଧ୍ରତୌ ଭବତି ତେନ ନରସ୍ତୁ ଖଞ୍ଜଃ ॥ ପ. ସଂ.

ପାପଯୁକ୍ତ ଶନି ଓ ଚନ୍ଦ୍ର ମେଷ, ବୃଶ୍ଚ, କର୍କଟ, ମକର ବା ମୀନରେ ଥିଲେ ଜାତକ ଖଞ୍ଜ ହୁଏ ।

ଭାଗ୍ୟେ ବା ସପ୍ତମେ ବାପି ଗୁରୁକାବ୍ୟେନ ସଂଯୁତଃ ।
ଲଗ୍ନେ ବା ସପ୍ତମେ ସୌରିଃ ପାଦଖଞ୍ଜୋ ଭବେଦ୍ଧ୍ରୁବଂ ॥
ହୋ. ସା.

ବୃହସ୍ପତି ଶୁକ୍ର ସହ ନବମରେ କିମ୍ବା ସପ୍ତମରେ ଥିଲେ ଓ ଶନି ଲଗ୍ନରେ ବା ସପ୍ତମରେ ଥିଲେ ଜାତକ ଖଞ୍ଜ ହୁଏ ।

ଧନେ ବା କୋଣଗେ ପାପେ ଶନିଚନ୍ଦ୍ରଯୁତୋ ଯଦି ।
ବ୍ୟୟସ୍ଥାନେ ଯଦା ପାପଃ ପାଦଖଞ୍ଜୋ ଭବେଦ୍ଧ୍ରୁବଂ ॥ ହୋ. ସା.

ଦ୍ୱିତୀୟରେ ବା ନବମ, ପଞ୍ଚମରେ ପାପଗ୍ରହ ଥିଲେ ଓ ଚନ୍ଦ୍ରସହ ଶନି ଯୁକ୍ତ ହୋଇଥିଲେ ଜାତକ ଖଞ୍ଜ ହୁଏ ।

### ଶିରଚ୍ଛେଦନଯୋଗାଃ

ଶନଗେହେ ଯଦା ରାହୁଃ ଶଶୀ ସିଂହେ ଯଦା ସ୍ଥିତଃ ।
ଶିରଶ୍ଛେଦନଯୋଗୋଽୟଂ ବକ୍ତବ୍ୟୋ ନା ପରିକୀର୍ତ୍ତିତଂ ॥ ଢେ. ସା.

ମକର ବା କୁମ୍ଭରେ ରାହୁ ଏବଂ ଚନ୍ଦ୍ର ସିଂହରେ ଥିଲେ ଜାତକର ଶିରଶ୍ଛେଦନ ହୁଏ ।

ଅଷ୍ଟମସ୍ଥୌ ଯଦା ସୋମୋ ରବିଯୁକ୍ତୋ ଭବେଦ୍ୟଦି ।
ଶୁଭଗ୍ରହା ନ ପଶ୍ୟନ୍ତି ଶିରଚ୍ଛେଦୋ ଭବେନ୍ନୃଣାଂ ॥

ଚନ୍ଦ୍ର ଓ ରବି ଅଷ୍ଟମରେ ଥାଇ ପାପଦୃଷ୍ଟ ହେଉଥିଲେ ଜାତକର ମସ୍ତକ ଛେଦନ ହୁଏ ।

### ବନ୍ଧନଯୋଗାଃ

ଧର୍ମାର୍ଥାନ୍ତ୍ୟାତ୍ମଜସ୍ଥା ଯଦି ଖଲଖଚରା ବନ୍ଧବାକ୍ ପୁରୁଷଃ ସ୍ୟା-
ଦେବଂ ଲଗ୍ନେ କ୍ରିୟେ ବା ଧନୁଷି ଗବି ତଥା ରଶ୍ମିଜଂ
ବନ୍ଧନଂ ନୁ ॥ ଜା. ଅ.

ପାପଗ୍ରହମାନେ ଦ୍ୱିତୀୟ, ପଞ୍ଚମ, ନବମ ଓ ଦ୍ୱାଦଶରେ ଥିଲେ ସେହି ବ୍ୟକ୍ତି ବନ୍ଧନରେ ପଡ଼େ, ମେଷ, ବୃଷ ଓ ଧନୁରେ ପାପଗ୍ରହମାନେ ଥିଲେ ଜାତକ ବନ୍ଦୀ ହୁଏ ।

ପଶ୍ଚାଲ୍ଲଗ୍ନାତ୍ତାରକାଦ୍ବା ଯଦା ବା ବିତ୍ତରାଶିଗେ ।
ପଞ୍ଚମେ ନବମେ ବାପି ତଥା ଷଷ୍ଠେଽପି ଶ୍ରୃଷ୍ଟମେ ॥
ତୃତୀୟେକାଦଶେ ବିପ୍ରଃ ଚତୁର୍ଥେ ଦଶମେ ପିବା
ଗ୍ରହସାମ୍ୟେ ତଥା ବିପ୍ର ଏକମେକଂ ଦ୍ୱୟଂ ଦ୍ୱୟଂ ॥

ତଥା ହସ୍ତଂ ହସ୍ତଂ ତଦ୍ବେଦତଣ୍ଡତ୍ୟା ନଭଶ୍ଚରାଃ ।
ବଦ୍ଧୌ ଦ୍ୱୌ ଦ୍ୱାଦଶେ ଦ୍ୱୌ ଚ ତଥା ସ୍ୟାତ ହସ୍ତେ ହସ୍ତଂ ॥
ଇତି କ୍ରମେଣ ସାମ୍ୟେନ ବନ୍ଧକାରକ ଉଚ୍ୟତେ ।
ଶୃଙ୍ଖଳ.ବଦ୍ଧଯୋଗୋଽପି ଜାୟତେ ଦ୍ୱିଜସତ୍ତମ ॥ ପା. ହୋ.

ଲଗ୍ନଠାରୁ କିମ୍ବା ଆତ୍ମକାରକ ଗ୍ରହଠାରୁ ଦ୍ୱିତୀୟ ଓ ଦ୍ୱାଦଶ, ତୃତୀୟ ଓ ଏକାଦଶ, ନବମ ଓ ପଞ୍ଚମ, ଚତୁର୍ଥ ଓ ଦଶମ କିମ୍ବା ଷଷ୍ଠ ଓ ଅଷ୍ଟମ ଏହି ଏହି ସ୍ଥାନମାନଙ୍କରେ ଯଦି ସମାନସଂଖ୍ୟକ ଗ୍ରହ ଥିବେ, ତେବେ ଜାତକର ବନ୍ଧନ ହେବ । ଯଥା—ଦ୍ୱିତୀୟରେ ଯେତୋଟି ଗ୍ରହ ଦ୍ୱାଦଶରେ ସେତିକି ଗ୍ରହ—ଏହିପରି କ୍ରମେ ଅନ୍ୟାନ୍ୟ ସ୍ଥାନମାନଙ୍କରେ ଥିଲେ ଜାତକ ବନ୍ଦୀ ହୁଏ ।

କ୍ଷୀଣେ ଶଶାଙ୍କେ ଭୃଗୁଜେ କଳତ୍ରେ
ଲଗ୍ନେ ଶନୌ ଭ୍ରଂଶଦଶାନ୍ୱିତଃ ସ୍ୟାତ୍ ।
ଲଗ୍ନେ ଶନୌ କର୍ମଗତେ ଶଶାଙ୍କେ
ଶୁକ୍ରେକ୍ଷିତେ ବା ଯଦି ବନ୍ଧଯୋଗଃ ॥ ପା. ହୋ.

ଚନ୍ଦ୍ର କ୍ଷୀଣ ହୋଇଥିବେ, ଶୁକ୍ର ସପ୍ତମରେ ଥିବେ, ପୁଣି ଲଗ୍ନରେ ଶନି ଥିଲେ ଜାତକ ପତିତ ହୁଏ । ଲଗ୍ନରେ ଶନି ଓ ଦଶମରେ ଶୁକ୍ର-ଦୃଷ୍ଟ ଚନ୍ଦ୍ର ଥିଲେ ଜାତକ ବନ୍ଦୀ ହୁଏ ।

## ସର୍ପଘାତଯୋଗାଃ

ମୃତ୍ୟୁସ୍ଥୋ ଯଦି ବା ଭୌମଃ ଶତ୍ରୁଗେହେନ୍ଦୁସଂଯୁତଃ ।
ଏଷ ନାଶକରୋ ଯୋଗୋ ଦ୍ୱିଜହେନ ନ ସଂଶୟଃ ॥ ଜା. ପ.

ଷଷ୍ଠ ଗ୍ରହ ମଙ୍ଗଳ ଚନ୍ଦ୍ର ସହ ଅଷ୍ଟମରେ ଥିଲେ ଜାତକ ସର୍ପାଘାତରେ ବିନାଶ ହୁଏ ।

ଲଗ୍ନାତ ସପ୍ତମେ ସ୍ଥାନେ ଶନ୍ୟର୍କରାହୁସଂସ୍ଥିତେ ।
ସର୍ପେଣ ପୀଡ଼ିତସ୍ୟୋକ୍ତା ଶୟ୍ୟାୟାଂ ସ୍ୱପତୋଽପି ଚ ॥

ସପ୍ତମରେ ଶନି, ରବି ଓ ରାହୁ ଏକତ୍ରରେ ଥିଲେ ଜାତକକୁ ଶଯ୍ୟାରେ ସର୍ପାଘାତ ହୁଏ ।

ଜଲମଜ୍ଜନଯୋଗାଃ

ନୀରୁନ୍ଧ୍ରତେ ମୂର୍ତ୍ତିଯୁତେ ସୁଖସ୍ଥେ
ସପନ୍ନଗେ ବା ଜଲରାଶିସଂସ୍ଥେ ।
ତଦୀଶ୍ୱରେ ହୀନବଲେ ତଦାନୀଂ
ପତତ୍ୟସୌ କୂପତଡ଼ାଗମଧ୍ୟେ ॥ ଜେ. ପା.

ଲଗ୍ନଠାରୁ ଚତୁର୍ଥ ରାଶି ଜଳରାଶି ( ମକରର ଶେଷାର୍ଦ୍ଧ, କର୍କଟ, ମୀନ, କୁମ୍ଭ ) ହେଲେ ଏବଂ ତହିଁରେ ପାପଗ୍ରହ ନୀଚସ୍ଥ କିମ୍ବା ଶତ୍ରୁଗୃହସ୍ଥ ହୋଇ ଅବସ୍ଥାନ କଲେ ଏବଂ ଚତୁର୍ଥ ସ୍ଥାନାଧିପତି ବଳହୀନ ହେଲେ ଜାତକ କୂପ, ତଡ଼ାଗାଦିରେ ବୁଡ଼ି ମରେ ।

ଲଗ୍ନେଶ୍ୱରେ ହୀନବଲେ ସୁଖସ୍ଥେ
ନୀଚେଽର୍କଯୁକ୍ତେ ଯଦି ବା ସପାପେ ।
ଜଲଗ୍ରହେଣାପି ଯୁତେ ସୁଖେଶେ
ବଲେନ ହୀନେ ଜଲରାଶିମଗ୍ନଃ ॥

ଲଗ୍ନାଧିପତି ବଳହୀନ ହୋଇ ଚତୁର୍ଥରେ ଥିଲେ, ରବି ପାପଯୁକ୍ତ ବା ନୀଚ ହେଲେ, ଚତୁର୍ଥ ସ୍ଥାନାଧିପ ବଳହୀନ ହୋଇ ଶୁକ୍ର ଓ ଚନ୍ଦ୍ରଯୁକ୍ତ ହେଲେ ଜାତକର ଜଳମଜ୍ଜନ ହୁଏ ।

## ବାତାଦିରୋଗାଃ

ଲଗ୍ନାତ୍ ସପ୍ତମରାଶିଗୌ ଭୃଗୁକୁଜୌ ପାପେକ୍ଷିତୌ ବାତରୁକ୍
ପୀଡ଼ା କର୍କଟଗେ ରବୌ ଚ ଶଶିନା ଦୃଷ୍ଟେଽତ ବାତାର୍ଦ୍ଦିତଃ ।
ବ୍ୟୋମସ୍ଥାନଗତେ ରବୌ ଚ ଶଶିନା ଦୃଷ୍ଟେ ଯଦା ସୌରିଣା
ଜନ୍ତୁଃ ସନ୍ତତଜେନ ମାରୁତରୁଜା ଯୁକ୍ତୋଭବେତ୍ ନିଶ୍ଚିତଂ ॥

ଜା. ପା

ଲଗ୍ନର ସପ୍ତମରେ ଶୁକ୍ର ଓ ମଙ୍ଗଳ ଥାଇ ପାପଦୃଷ୍ଟି ହେଲେ ଜାତକ ବାତରୋଗାକ୍ରାନ୍ତ ହୁଏ । କର୍କଟସ୍ଥ ରବିଙ୍କୁ ଚନ୍ଦ୍ର ଦେଖିଲେ ବା ଦଶମସ୍ଥ ଚନ୍ଦ୍ରଙ୍କୁ ଶନି ଦେଖିଲେ ଜାତକ କୌଣସି ଅଘାତଦ୍ୱାରା ବାତରୋଗ ପୀଡିତ ହୁଏ ।

## ମୁଷ୍କବୃଦ୍ଧିଃ

ଅସ୍ତୂସ୍ଥାନୋପଯାତେ ଧରଣୀସୁତଯୁତେ ଭାର୍ଗବେ ବାତକୋପାତ୍
ଜାତବ୍ୟ ଭୌମେନ ଯୁକ୍ତେ କୁଜରବନଗତେ ଭୂମିଜା ମୁଷ୍କବୃଦ୍ଧିଃ ।
ଭୌମର୍କ୍ଷେ ଶୁକ୍ରଚନ୍ଦ୍ରୌ ସୁରପତିଗୁରୁଣା ସୂର୍ଯ୍ୟଜେନାଥ ଦୃଷ୍ଟୌ
ନୂନଂ ସ୍ୟାନ୍ମାନବାନାଂ ଜନୁଷି କଲିଲଜା ମୁଷ୍କବୃଦ୍ଧିର୍ନରାଣାଂ ॥

ଜା. ଅ.

ମଙ୍ଗଳ ଓ ଶୁକ୍ର ଅଷ୍ଟମରେ ଥିଲେ ବାତପ୍ରକୋପରୁ ଜାତକର (ହ୍ରବୃଦ୍ଧି) ହୁଏ । ମେଷରେ ଜନ୍ମ ବକ୍ଷରେ ମଙ୍ଗଳ ଓ ଶୁକ୍ର ଥିଲେ ସ୍ଥାନ ପରିବର୍ତ୍ତନାଦି ହେତୁରୁ ମୁଷ୍କବୃଦ୍ଧି ହୁଏ । ମେଷ ଜନ୍ମ ବକ୍ଷରେ ଶୁକ୍ର ଓ ଚନ୍ଦ୍ର ଥିଲେ ଓ ସେମାନେ ବୃହସ୍ପତି ଏବଂ ଶନିଙ୍କଦ୍ୱାରା ଦୃଷ୍ଟ ହେଉଥିଲେ ଗର୍ଭଜାତ ମୁଷ୍କବୃଦ୍ଧି ହୋଇଥାଏ

ଜଡ଼ଯୋଗାଃ

ଲଗ୍ନେ ଶନୌ ଶୃଙ୍ଗଗତେ ବନେଶେ
ଚନ୍ଦ୍ରେ ତ୍ରିକୋଣେ ଯଦି ବା ଧରାଜେ ।
ଉନ୍ମାଦବୁଦ୍ଧିଃ ସଜଡ଼ୋଽଥବା ସ୍ୟା
ଜ୍ଜାତୋ ହି ଚେଚ୍ଚଞ୍ଚଳବୁଦ୍ଧିଯୁକ୍ତଃ ॥

ଲଗ୍ନରେ ଶନି, ଦ୍ୱାଦଶରେ ରବି ଓ ନବମ ବା ପଞ୍ଚମରେ ଚନ୍ଦ୍ର ଅଥବା ମଙ୍ଗଳ ଥିଲେ, ଜାତକ ଉନ୍ମାଦ ବୁଦ୍ଧିଯୁକ୍ତ, ଜଡ଼ ଅଥବା ଚଞ୍ଚଳ ବୁଦ୍ଧିଯୁକ୍ତ ହୁଏ ।

ବୃକ୍ଷପତନଯୋଗଃ

ଶିତାସିତଗ୍ଳହେ ଭାନୁର୍ଯଦା ମଦନମୃତ୍ୟୁଗଃ ।
ଶିତଭୌମାର୍କିଭିର୍ଦୃଷ୍ଟୋ ବୃକ୍ଷାନ୍ମରଣମାଦିଶେତ୍ ॥
ଜା. ପ.

ରବି ଶୁକ୍ର ଅଥବା ଶନିଙ୍କ ଘରେ ରହିଥିବେ, ସେହି ସ୍ଥାନ ଲଗ୍ନରୁ ସପ୍ତମ ବା ଅଷ୍ଟମ ହୋଇଥିବ ଏବଂ ଶୁକ୍ର, ମଙ୍ଗଳ ଓ ଶନି ରବିଙ୍କୁ ଦେଖୁଥିବେ, ତେବେ ଜାତକ ବୃକ୍ଷରୁ ପଡ଼ି ମରେ ।

ବଜ୍ରପାତଯୋଗାଃ

କୁମ୍ଭେ ଚ ମୀନେ ମିଥୁନାଭିଧାନେ
ଶରାସନେଽପି ଯଦି ପାପଖେଟାଃ ।
କୁତେଷ୍ଟିତଃ ସ୍ୟାତ୍ତୁ ପୁରୁଷୋ ନିତାନ୍ତଂ
ବଜ୍ରେଣ ନୂନଂ ନିଧନଞ୍ଚ ତସ୍ୟ ॥

କୁମ୍ଭ ମୀନ, ମିଥୁନ ଓ ଧନୁ ରାଶିରେ ପାପଗ୍ରହମାନେ ଥିଲେ ଜାତକ କୁତ୍ସିତ କାର୍ଯ୍ୟରେ ମନୋନିବେଶ କରେ ଓ ବଜ୍ରପାତରେ ତାହାର ମୃତ୍ୟୁ ଘଟେ ।

ଷଷ୍ଠୋଽଧ୍ୟାୟଃ ସମାପ୍ତଃ ।



## ସପ୍ତମ ଅଧ୍ୟାୟଃ ।

### ସ୍ତ୍ରୀଜାତକବିଚାରଃ ।

ଯଦ୍ୟତ୍ର ଫଲଂ ନରଭବେ କ୍ଷମମଙ୍ଗନାନାଂ
ତତ୍ତଦ୍ଭବେ ପତିଷୁ ବା ସକଲଂ ବିଧେୟଂ ।
ତାସାଂ ତୁ ଭର୍ତ୍ତୃମରଣଂ ନିଧନେ ବପୁସ୍ତୁ
ଲଗ୍ନେନ୍ଦୁଗେ ଶୁଭଗତାସ୍ତମୟେ ପତିଶ୍ଚ ॥ ବୃ. ଜା,

ପୁରୁଷସ୍ୟ ଫଲଂ ଯାଦୃକ୍ ସ୍ତ୍ରିୟା ଏବ ଫଲଂ ତଥା ।
ବିଶେଷ ବଚନଂ ଯଦ୍ୟତ୍ର ତଦିଦାନୀଂ ନିଗଦ୍ୟତେ ॥
ଜା. ଚ.

ଯେଉଁ ଯେଉଁ ଯୋଗାଦିର ଫଳ ସ୍ତ୍ରୀମାନେ ଭୋଗ କରିବାକୁ ଅକ୍ଷମ, ସେହି ସେହି ଯୋଗଫଳମାନ ପୁରୁଷଠାରେ କହିବ । ରାଶିଗତ ଫଳ ବା ଭାବଗତ ଫଳ ସ୍ତ୍ରୀ ଓ ପୁରୁଷ ଉଭୟଙ୍କର ସମାନ; ତଥାପି, ବୈଧବ୍ୟ ଓ ସୌଭାଗ୍ୟାଦିର ବିଚାର ସ୍ତ୍ରୀଜାତକରେ କରାଯାଏ । ଲଗ୍ନରୁ ଓ ଚନ୍ଦ୍ରଠାରୁ ଚରିତ୍ର, ଅଷ୍ଟମରୁ ବୈଧବ୍ୟାଦିଦୋଷ ଓ ସପ୍ତମରୁ ପତିସୌଭାଗ୍ୟ ବିଚାର କରିବେ ।

ସ୍ୱର୍କ୍ଷେଷୁ ଲଗ୍ନଶଶିନୋ ପ୍ରକୃତିସ୍ଥିତା ସ୍ତ୍ରୀ
ସଚ୍ଛୀଳଭୂଷଣଯୁତା ଶୁଭଦୃଷ୍ଟୟୋଶ୍ଚ ।
ଔଜସ୍ଥୟୋଶ୍ଚ ମନୁଜାକୃତି ଶୀଳଯୁକ୍ତା ।
ପାପା ଚ ପାପଯୁତବୀକ୍ଷିତୟୋର୍ଗୁଣୋନା ॥

ବୃ. ଜା.

ଚନ୍ଦ୍ର ଓ ଲଗ୍ନ ସମରାଶିରେ ଥିଲେ ସେ ସ୍ତ୍ରୀ ଉତ୍ତମଚରିତ୍ରା ଓ ନାନାଲଙ୍କାରମଣ୍ଡିତା ହୁଏ । ଲଗ୍ନ ଓ ଚନ୍ଦ୍ର ବିଷମ ରାଶିରେ ଥିଲେ ସେ ସ୍ତ୍ରୀ ନିର୍ଲଜ୍ଜା ହୁଏ । ପାପ ଦୃଷ୍ଟିରେ ଚନ୍ଦ୍ର ଓ ଲଗ୍ନ ଥିଲେ ସ୍ତ୍ରୀ ଅସଚ୍ଚରିତ୍ରା ଓ ଶୁଭ ଦୃଷ୍ଟିରେ ଥିଲେ ସଚ୍ଚରିତ୍ରା ହୁଏ ।

## ବୈଧବ୍ୟଯୋଗାଃ

ଲଗ୍ନେ କ୍ରୂରପାପକୋ ଯସ୍ୟ କ୍ରୂରପାପୋ ବା ଯଦା ଭବେତ୍ ।
ପତିନାଶକରୋ ଯୋଗୋ ପାର୍ବତୀସଦୃଶୋ ଯଦି ॥ କେ. ସା.

ଲଗ୍ନରେ ଦୁଇଟି ବା ତତୋଧିକ ପାପଗ୍ରହ ଥିଲେ ସେ ସ୍ତ୍ରୀ ପାର୍ବତୀ ସଦୃଶୀ ହେଲେ ସୁଦ୍ଧା ବିଧବା ହୁଏ ।

କାମାର୍ତ୍ତା ବିଧବା କୁଲକ୍ଷୟକରୀ ପାପଦ୍ୱୟେ ସପ୍ତମଗେ
ବେଶ୍ୟା ଭର୍ତ୍ତୃବଧଂ କରୋତି କୁଲଟା ପାପତ୍ରୟେ ସପ୍ତମଗେ ।
ରାଜାମାତ୍ୟବରାଙ୍ଗନାଶୁଭଯୁତେ ଦ୍ୟୂନଂ ଗତେ କନ୍ୟକା
ଜାୟାତ୍ୱେଽପି ଶୁଭତ୍ରୟେ ପ୍ରଣୟିନୀ ରାଜ୍ଞୀ ଭବେଦ୍ଭୂପତେଃ ॥
କେ. ସା.

ଦୁଇଟି ପାପଗ୍ରହ ସପ୍ତମରେ ଥିଲେ ସ୍ତ୍ରୀ କାମାର୍ତ୍ତା, ବିଧବା ଓ କୁଳର କଳଙ୍କ ହୋଇଥାଏ । ତତୋଧିକ ପାପଗ୍ରହ ସପ୍ତମରେ ଥିଲେ

ସ୍ତ୍ରୀ ବିଧବା ହୋଇ ବେଶ୍ୟାଦି ନୀଚବୃତ୍ତି ଅବଲମ୍ବନ କରେ । ଦୁଇଟି ଶୁଭଗ୍ରହ ସପ୍ତମରେ ଥିଲେ ସେ ସ୍ତ୍ରୀ ଦୀର୍ଘାୟୁ ଓ ଗୁଣବାନ୍ ପତି ଲାଭ କରେ । ତତୋଽଧିକ ଶୁଭଗ୍ରହ ସପ୍ତମରେ ଥିଲେ ସେ ସ୍ତ୍ରୀ ରାଜରାଣୀତୁଲ୍ୟ ଉତ୍ତମ ସୁଖ ଓ ସମ୍ପଦ ଭୋଗ କରେ ।

କ୍ରୂରେଽଷ୍ଟମେ ବିଧବତା ନିଧନେଶ୍ୱରାଂଶେ
ଯସ୍ୟ ସ୍ଥିତୋ ବୟସି ତସ୍ୟ ସମେ ପ୍ରଦିଷ୍ଟା ।
ସତ୍ସ୍ୱର୍ଥଗେଷୁ ମରଣଂ ସ୍ୱୟମେବ ତସ୍ୟାଃ
କନ୍ୟାଲିଗୋହରିଷୁ ଚାଲ୍ପସୁତତ୍ୱମିନ୍ଦୌ ॥

ପାପଗ୍ରହ ଅଷ୍ଟମରେ ଥିଲେ କିମ୍ବା ଅଷ୍ଟମାଧିପତିର ନବାଂଶରେ ଥିଲେ ସେହି ଗ୍ରହର ଦଶାନ୍ତର୍ଦଶାରେ ସ୍ତ୍ରୀ ବିଧବା ହୁଏ । ଶୁଭଗ୍ରହ ଦ୍ୱିତୀୟରେ ଥିଲେ ସ୍ତ୍ରୀ ନିଜେ ଅଗ୍ରଗାମିନୀ ହୁଏ । କନ୍ୟା, ବୃଶ୍ଚିକ, ବୃଷ କିମ୍ବା ସିଂହରେ ଅଳ୍ପ ଅପତ୍ୟ ଜାତ ହୁଅନ୍ତି ।

ଧନେ ବ୍ୟୟେ ଚ ପାତାଳେ ଯାମିତ୍ରେ ଚାଷ୍ଟମେ କୁଜେ ।
କନ୍ୟାଭର୍ତ୍ତୁର୍ବିନାଶାୟ ଭର୍ତ୍ତୁଃ କନ୍ୟା ବିନଶ୍ୟତି ॥ କେ. ପା.

ଦ୍ୱିତୀୟ, ଦ୍ୱାଦଶ, ଚତୁର୍ଥ, ସପ୍ତମ ବା ଅଷ୍ଟମରେ ମଙ୍ଗଳ ଥିଲେ, ସ୍ତ୍ରୀ ଜାତକ ହେଲେ ପୁରୁଷର ମରଣ ଓ ପୁରୁଷ ଜାତକରେ ଏହି ଯୋଗ ହେଲେ ସ୍ତ୍ରୀର ମରଣ ହୁଏ ।

ଲଗ୍ନଚନ୍ଦ୍ରାଷ୍ଟମଗତାଃ କୁଜସୂର୍ଯ୍ୟଶନୈଶ୍ଚରାଃ ।
ସପ୍ତମେ ଭୂମିପୁତ୍ରଶ୍ଚ କନ୍ୟାବୈଧବ୍ୟଲକ୍ଷଣଂ ॥ ଜା. ଚ.

ଲଗ୍ନ କିମ୍ବା ଚନ୍ଦ୍ରର ଅଷ୍ଟମରେ ମଙ୍ଗଳ, ରବି କିମ୍ବା ଶନି ଥିଲେ କିମ୍ବା ସପ୍ତମରେ ମଙ୍ଗଳ ଥିଲେ କନ୍ୟା ବିଧବା ହୁଏ ।

## ସୌଭାଗ୍ୟଯୋଗାଃ

ଲଗ୍ନାଦିନ୍ଦୁଃ ଶୁକ୍ରୋ ବା ଯଦି ମଦନଗତୋ ଦ୍ୟୂନଜାୟୀ ବିଷାଖ୍ୟଂ
ଦୋଷଂ ଚୈବାନପତ୍ୟଂ ତଦନୁ ଚ ନିୟତଂ ହନ୍ତି ବୈଧବ୍ୟଦୋଷଂ ।
ଇତ୍ଥଂ ଜ୍ଞେୟଂ ଗ୍ରହଜ୍ଞୈଃ ସୁମତିଭିରଖିଲଂ ଯୋଗଜାତଂ ଗ୍ରହାଣା–
ମାଯୈର୍ଯ୍ୟସ୍ୱର୍ଯ୍ୟାନୁମତ୍ୟା ମତିମିହଗଦିତଂ ଜାତକେ ଜାତକାନାଂ ॥
ଜା. ସ.

ଲଗ୍ନର ସପ୍ତମରେ ଚନ୍ଦ୍ର ବା ଶୁକ୍ରଗ୍ରହ ଥିଲେ ସେ ସ୍ତ୍ରୀର ଜାତକରେ ଥିବା ଅନପତ୍ୟ, ଦାରିଦ୍ର୍ୟ ଓ ବୈଧବ୍ୟାଦି ଦୋଷ ଭଙ୍ଗ ହୋଇ ଶୁଭ ହୁଏ । ଗଣକମାନେ ଗ୍ରହମାନଙ୍କର ବଳାବଳ ବିବେଚନା କରି ତାହାର ସଦ୍‌ବୃଦ୍ଧ୍ୟାଦି ବିଚାର କରିବେ ।

ବୁଧୋ ବିଲଗ୍ନେ ଯଦି ଭୃଙ୍ଗସଂସ୍ଥୋ
ଲାଭସ୍ଥିତୋ ଦେବପୁରୋହିତଶ୍ଚ ।
ନରେନ୍ଦ୍ରପତ୍ନୀ ପ୍ରଥିତା ସୁସାଧ୍ୱୀ
ତଦା ପ୍ରସିଦ୍ଧା ଭବତୀହ ଭୂମୌ ॥ ଜା. ତ

ବୁଧ ଲଗ୍ନସ୍ଥ ହୋଇ ବୃଷରେ ଥିବେ ଓ ବୃହସ୍ପତି ଏକାଦଶରେ ଥିଲେ ସେ ସ୍ତ୍ରୀ ରାଜପତ୍ନୀ ଭୂଲ୍ୟ ସ୍ତ୍ରୀ ଓ ସାଧ୍ୱୀ ହୁଏ ।

କର୍କୋଦୟେ ସପ୍ତମଗେ ପତଙ୍ଗେ
ଶୀବେନ ଦୃଷ୍ଟେ ପରିପୂର୍ଣ୍ଣଦେହାଃ ।
ବିଦ୍ୟାଧରୀ ଗୃହ ଭବେତ୍ ପ୍ରବୀଣା
ଲକ୍ଷ୍ମୀ ଶୋଭାବସୁତମିଯୁକ୍ତା ॥ ଜା. ତ.

କର୍କଟ ଲଗ୍ନ ହୋଇଥିବ ଓ ରବି ସପ୍ତମସ୍ଥ ହୋଇ ବୃହସ୍ପତିକର୍ତ୍ତୃକ ଦୃଷ୍ଟ ହେଉଥିଲେ ସେ ସ୍ତ୍ରୀ ବିଦ୍ୟାଧରୀ ତୁଲ୍ୟ ସୁନେତ୍ରୀ, ଶତ୍ରୁହୀନା, ଧନ, ପୁତ୍ରଯୁକ୍ତା ଓ ଲକ୍ଷ୍ମୀତୁଲ୍ୟା ହୁଏ ।

ଲଭସ୍ଥିତଃ ଶୀତକରୋ ଭୃଗୁଷ୍ଟ
କଳତ୍ରଗଃ ସୋମସୁତେନ ଯୁକ୍ତଃ ।
ଜୀବେନ ଦୃଷ୍ଟୋ ଭବତି ହି ରାଜ୍ଞୀ
ଖ୍ୟାତା ଧରାୟାଂ ସକଳୈଃ ସୁତାଶ୍ଚ ॥

ଚନ୍ଦ୍ର ଏକାଦଶରେ ଥିବେ, ସପ୍ତମ ସ୍ଥାନରେ ଶୁକ୍ର ବୁଧଯୁକ୍ତ ହୋଇ ବୃହସ୍ପତିକର୍ତ୍ତୃକ ଦୃଷ୍ଟ ହେଲେ ସେ ସ୍ତ୍ରୀ ରାଜାତୁଲ୍ୟ ପତି ଲାଭ କରେ ଓ ଗୁଣବତୀ ହୁଏ ।

ବାଚସ୍ପତୌ ନବମପଞ୍ଚମକେନ୍ଦ୍ରସଂସ୍ଥେ
ଜାତାଙ୍ଗନା ଭବତି ପୂର୍ଣ୍ଣବିଭୂତିଯୁକ୍ତା ।
ସାଧ୍ୱୀ ସୁପୁତ୍ରଜନନୀ ସୁଖିନୀ ଗୁଣାଢ୍ୟା
ନୂନଂ କୁଳଦ୍ୱୟମହୋନ୍ନତକାରଣୀ ଚ ॥

ବୃହସ୍ପତି କେନ୍ଦ୍ର କିମ୍ବା ତ୍ରିକୋଣରେ ଥିଲେ ସେ ସ୍ତ୍ରୀ ସୁଖୀ, ସର୍ବ ଗୁଣଯୁକ୍ତା ଓ ପିତୃ ଏବଂ ଶ୍ୱଶୁର ଉଭୟ କୁଳର ମର୍ଯ୍ୟାଦା ବଢ଼ାଏ ।

ଲଗ୍ନାଦ୍ବିଧୋର୍ବା ଯଦି ଜନ୍ମକାଳେ
ଶୁଭଗ୍ରହୋ ବା ମଦନାଧିପୋ ବା ।
ଦ୍ୟୂନସ୍ଥିତୋ ହନ୍ତ୍ୟନପତ୍ୟଦୋଷଂ
ବୈଧବ୍ୟଦୋଷଞ୍ଚ ବିଷାଙ୍ଗନୋତ୍ଥଂ ॥

ଲଗ୍ନକୁ କିମ୍ବା ଚନ୍ଦ୍ରର ସପ୍ତମରେ ଶୁଭଗ୍ରହ ବା ସପ୍ତମ ସ୍ଥାନାଧିପତି ଥିଲେ ବିଷକନ୍ୟାଜନିତ ବୈଧବ୍ୟ ଦୋଷ ଓ ଅନପତ୍ୟ ଦୋଷ ହୁଏ ନାହିଁ ।

## ଚରିତ୍ରନିର୍ଣ୍ଣୟଃ

କନ୍ୟୈବ ଦୁଷ୍ଟା ବ୍ରଜତୀହ ଦାସ୍ୟଂ
ସାଧ୍ୱୀ ସମାୟ୍ୟା କୁଚରିତ୍ରଯୁକ୍ତା ।
ଭୂମ୍ୟାତ୍ମଜର୍କ୍ଷେ କ୍ରମଶୋଂଶକେଷୁ
ବକ୍ରାର୍କିଜୀବେନ୍ଦୁଜଭାର୍ଗବାନାଂ ॥ ବୃ. ଜା.

ମେଷ ବା ବୃଶ୍ଚିକ ଲଗ୍ନ ହେଲେ କିମ୍ବା ଏହି ଏହି ରାଶିମାନଙ୍କରେ ଚନ୍ଦ୍ର ରହିଲେ କିମ୍ବା ମଙ୍ଗଳ ତ୍ରିଂଶାଂଶରେ ଜନ୍ମ ହେଲେ ସ୍ତ୍ରୀ ଦୁଷ୍ଟା ହୁଏ । ଏହିପରି ମକର କିମ୍ବା କୁମ୍ଭଗତ ଲଗ୍ନ ବା ଚନ୍ଦ୍ର ହେଲେ ଅଥବା ଶନି ତ୍ରିଂଶାଂଶରେ ଜନ୍ମ ହେଲେ ସେ ସ୍ତ୍ରୀ ମଳିନା ଓ ଦାସୀ ହୁଏ । ଧନୁ ବା ମୀନ ରାଶିଗତ ଲଗ୍ନ ବା ଚନ୍ଦ୍ର ହେଲେ କିମ୍ବା ବୃହସ୍ପତି ତ୍ରିଂଶାଂଶରେ ଜନ୍ମିଲେ ସେ ସ୍ତ୍ରୀ ସାଧ୍ୱୀ ଓ ସଚ୍ଚରିତ୍ରା ହୁଏ । ମିଥୁନ ବା କନ୍ୟାରାଶିଗତ ଲଗ୍ନ ବା ଚନ୍ଦ୍ର ହେଲେ କିମ୍ବା ବୁଧ ତ୍ରିଂଶାଂଶରେ ଜନ୍ମ ହେଲେ ସେ ସ୍ତ୍ରୀ ମାୟାବିନୀ ହୁଏ । ବୃଷ ବା ତୁଳ ରାଶିଗତ ଲଗ୍ନ ବା ଚନ୍ଦ୍ର ହେଲେ କିମ୍ବା ଶୁକ୍ର ତ୍ରିଂଶାଂଶରେ ଜନ୍ମ ହେଲେ ସ୍ତ୍ରୀ ଦୁର୍ବୃତ୍ତା ହୁଏ ।

ସ୍ତ୍ରୀ ଜାତକପ୍ରକରଣଃ ସମାପ୍ତଃ ।

—※—

## ଅଷ୍ଟକବର୍ଗ ବିଚାରଃ

ଗ୍ରହର ଶୁଭାଶୁଭଜ୍ଞାନ ଓ ସମସ୍ତ ଭାବଗତ ଫଳ କହାଗଲା । ଗ୍ରହର ଶୁଭାଶୁଭଜ୍ଞାନ ଓ ଆୟୁର୍ନିର୍ଣ୍ଣୟ ନିମିତ୍ତ ଅନ୍ୟ ଏକ ପ୍ରକାର ଉପାୟ ଅଛି । ତାହାର ନାମ ଅଷ୍ଟକବର୍ଗ । ନିର୍ଦ୍ଦିଷ୍ଟ ସ୍ଥାନମାନଙ୍କରେ ରେଖା ଓ ବିନ୍ଦୁପାତ କରି ସମସ୍ତ ଗ୍ରହମାନଙ୍କର ବଳାବଳ ଚକ୍ରରେ ଶୁଭାଶୁଭ ଜ୍ଞାପନ କରାଯାଏ । ଏହି ଫଳ ଅଟେ ଜାଗତ । ସମସ୍ତ ଗ୍ରହର ଭିନ୍ନଭିନ୍ନ ଭାବେ, ରେଖା ବିନ୍ଦୁ ନିର୍ଦ୍ଧାର କରି ଥରେ ପରେ ସେ ସମସ୍ତ ଗୋଟିଏ ଚକ୍ରରେ

ସବିବେଚିତ କରି ସମସ୍ତ କର୍ମରେ କେଉଁ ଗ୍ରହ ଶୁଭଫଳଦାୟକ ତାହା ଠିକ୍ କରିବେ । ଅଷ୍ଟବର୍ଗର ଶ୍ଳୋକଗୁଡ଼ିକ କଷ୍ଟବୋଧ । ସର୍ବସାଧାରଣଙ୍କ ସୁଗମବୋଧାର୍ଥ ସେହି ଶ୍ଳୋକମାନଙ୍କର ନିର୍ଦ୍ଦିଷ୍ଟ ସ୍ଥାନ ସଂଖ୍ୟାମାନ ଲେଖାଗଲା ।

## ରବ୍ୟଷ୍ଟବର୍ଗଃ

ରବିଠାରୁ ୧,୨,୪,୭,୮,୯,୧୦,୧୧ ସ୍ଥାନସ୍ଥ ନକ୍ଷରେ ରେଖା, ଅନ୍ୟତ୍ର ବିନ୍ଦୁ
ଚନ୍ଦ୍ରଠାରୁ ୩,୬,୧୦,୧୧ „ „ „ „
ମଙ୍ଗଳଠାରୁ ୧,୨,୪,୭,୮,୯,୧୦,୧୧ „ „ „ „
ବୁଧଠାରୁ ୩,୫,୬,୯,୧୦,୧୧,୧୨ „ „ „ „
ବୃହସ୍ପତିଠାରୁ ୫,୬,୯,୧୧ „ „ „ „
ଶୁକ୍ରଠାରୁ ୬,୭,୧୨ „ „ „ „
ଶନିଠାରୁ ୧,୨,୪,୭,୮,୯,୧୦,୧୧ „ „ „ „
ଲଗ୍ନଠାରୁ ୩,୬,୧୦,୧୧ „ „ „ „

ରବ୍ୟଷ୍ଟବର୍ଗରେ ସମସ୍ତ ରେଖା ସଂଖ୍ୟା ୪୮ ହେବ ।

## ଚନ୍ଦ୍ରାଷ୍ଟବର୍ଗଃ

ରବିଠାରୁ ୩,୬,୭,୮,୧୦,୧୧ ସ୍ଥାନରେ ରେଖା ଅନ୍ୟସ୍ଥାନରେ ବିନ୍ଦୁ
ଚନ୍ଦ୍ରଠାରୁ ୧,୩,୬,୭,୧୦,୧୧ „ „ „ „
ମଙ୍ଗଳଠାରୁ ୨,୩,୫,୬,୯,୧୦,୧୧ „ „ „ „
ବୁଧଠାରୁ ୧,୩,୪,୫,୭,୮,୧୦,୧୧ „ „ „ „
ବୃହସ୍ପତିଠାରୁ ୧,୨,୪,୭,୮,୧୦,୧୧ „ „ „ „
ଶୁକ୍ରଠାରୁ ୩,୪,୫,୭,୯,୧୦,୧୧ „ „ „ „
ଶନିଠାରୁ ୩,୫,୬,୧୧ „ „ „ „
ଲଗ୍ନଠାରୁ ୩,୬,୧୦,୧୧ „ „ „ „

ଚନ୍ଦ୍ରାଷ୍ଟବର୍ଗରେ ରେଖା ସଂଖ୍ୟା ୪୯ ହେବ ।

## କୁଜାଷ୍ଟକବର୍ଗ

ରବିଠାରୁ ୩,୫,୬,୧୦,୧୧ ସ୍ଥାନରେ ରେଖା ଅନ୍ୟାନ୍ୟସ୍ଥାନରେ ବିନ୍ଦୁ
ଚନ୍ଦ୍ରଠାରୁ ୩,୬,୧୧ ” ” ” ”
ମଙ୍ଗଳଠାରୁ ୧,୨,୪,୭,୮,୧୦,୧୧ ” ” ” ”
ବୁଧଠାରୁ ୩,୫,୬,୧୧ ” ” ” ”
ବୃହସ୍ପତିଠାରୁ ୬,୧୦,୧୧,୧୨ ” ” ” ”
ଶୁକ୍ରଠାରୁ ୬,୮,୧୧,୧୨ ” ” ” ”
ଶନିଠାରୁ ୧,୪,୭,୮,୯,୧୦,୧୧ ” ” ” ”
ଲଗ୍ନଠାରୁ ୧,୩,୬,୧୦,୧୧ ” ” ” ”

କୁଜାଷ୍ଟକବର୍ଗର ସମସ୍ତ ରେଖା ସଂଖ୍ୟା ୩୯ ହେବ ।

## ବୁଧାଷ୍ଟକବର୍ଗ

ରବିଠାରୁ ୫,୬,୯,୧୧,୧୨ ସ୍ଥାନରେ ରେଖା ଅନ୍ୟାନ୍ୟସ୍ଥାନରେ ବିନ୍ଦୁ
ଚନ୍ଦ୍ରଠାରୁ ୨,୪,୬,୮,୧୦,୧୧ ” ” ”
ମଙ୍ଗଳଠାରୁ ୧,୨,୪,୭,୮,୯,୧୦,୧୧ ” ” ”
ବୁଧଠାରୁ ୧,୩,୫,୬,୯,୧୦,୧୧ ” ” ”
ବୃହସ୍ପତିଠାରୁ ୬,୮,୧୧,୧୨ ” ” ”
ଶୁକ୍ରଠାରୁ ୧, ୩,୪,୫,୮,୯,୧୧ ” ” ”
ଶନିଠାରୁ ୧,୨,୪,୭,୮,୯,୧୦,୧୧,୧୨ ” ”
ଲଗ୍ନଠାରୁ ୧,୨,୪,୬,୮,୧୦,୧୧ ” ” ”

ବୁଧାଷ୍ଟକବର୍ଗର ସମସ୍ତ ରେଖା ସଂଖ୍ୟା ୫୪ ହେବ ।

## ବୃହସ୍ପତ୍ୟଷ୍ଟବର୍ଗଃ

ରବିଠାରୁ ୧,୨,୩,୪,୭,୮,୯,୧୦,୧୧ ସ୍ଥାନରେ ରେଖା ଅନ୍ୟସ୍ଥାନରେ ବିନ୍ଦୁ
ଚନ୍ଦ୍ରଠାରୁ ୨,୫,୭,୯,୧୧ " " "
ମଙ୍ଗଳଠାରୁ ୧,୨,୪,୭,୮,୧୦,୧୧ " " "
ବୁଧଠାରୁ ୧,୨,୪,୫,୬,୯,୧୦,୧୧ " " "
ବୃହସ୍ପତିଠାରୁ ୧,୨,୩,୪,୭,୮,୧୦,୧୧ " "
ଶୁକ୍ରଠାରୁ ୨,୫,୬,୯,୧୦,୧୧ " " "
ଶନିଠାରୁ ୩,୫,୬,୧୨ " " "
ଲଗ୍ନଠାରୁ ୧,୨,୪,୫,୬,୭,୯,୧୦,୧୧ " " "

ବୃହସ୍ପତ୍ୟଷ୍ଟବର୍ଗର ସମସ୍ତ ରେଖା ୫୬ ହେବ ।

## ଶୁକ୍ରାଷ୍ଟବର୍ଗଃ

ରବିଠାରୁ ୮,୧୧,୧୨ ସ୍ଥାନରେ ରେଖା ଓ ଅନ୍ୟାନ୍ୟସ୍ଥାନରେ ବିନ୍ଦୁ
ଚନ୍ଦ୍ରଠାରୁ ୧,୨,୩,୪,୫,୮,୯,୧୧,୧୨ " "
ମଙ୍ଗଳଠାରୁ ୩,୪,୬,୯,୧୧,୧୨ " "
ବୁଧଠାରୁ ୩,୫,୬,୯,୧୧ " "
ବୃହସ୍ପତିଠାରୁ ୫,୮,୯,୧୦,୧୧ " "
ଶୁକ୍ରଠାରୁ ୧,୨,୩,୪,୫,୮,୯,୧୦,୧୧ " "
ଶନିଠାରୁ ୩,୪,୫,୮,୯,୧୦,୧୧ " "
ଲଗ୍ନଠାରୁ ୧,୨,୩,୪,୫,୮,୯,୧୧ " "

ଶୁକ୍ରାଷ୍ଟବର୍ଗରେ ସମସ୍ତ ରେଖା ୫୨ ହେବ ।

## ଶନ୍ୟଷ୍ଟବର୍ଗଃ

| | | | |
|---|---|---|---|
| ରବିଠାରୁ ୧,୨,୪,୭,୮,୧୦,୧୧ ସ୍ଥାନରେ | ରେଖା | ଅନ୍ୟାନ୍ୟ ସ୍ଥାନରେ | ବିନ୍ଦୁ |
| ଚନ୍ଦ୍ରଠାରୁ ୩,୬,୧୧ | ” | ” | ” |
| ମଙ୍ଗଳଠାରୁ ୩,୫,୬,୧୦,୧୧,୧୨ | ” | ” | ” |
| ବୁଧଠାରୁ ୬,୮,୯,୧୦,୧୧,୧୨ | ” | ” | ” |
| ବୃହସ୍ପତିଠାରୁ ୫,୬,୧୧,୧୨ | ” | ” | ” |
| ଶୁକ୍ରଠାରୁ ୬, ୧୧, ୧୨ | ” | ” | ” |
| ଶନିଠାରୁ ୩, ୫, ୬, ୧୧ | ” | ” | ” |
| ଲଗ୍ନଠାରୁ ୧,୩,୪,୬,୧୦,୧୧ | ” | ” | ” |

ଶନ୍ୟଷ୍ଟବର୍ଗରେ ସମସ୍ତ ରେଖା ସଂଖ୍ୟା ୩୯ ହେବ ।

## ଲଗ୍ନାଷ୍ଟବର୍ଗଃ

| | | | |
|---|---|---|---|
| ରବିଠାରୁ ୧,୨,୪,୭,୮,୧୦,୧୧ ସ୍ଥାନରେ | ରେଖା ଓ | ଅନ୍ୟ ସ୍ଥାନରେ | ବିନ୍ଦୁ |
| ଚନ୍ଦ୍ରଠାରୁ ୩, ୬, ୧୧ | ” | ” | ” |
| ମଙ୍ଗଳଠାରୁ ୩, ୫, ୬, ୧୧ | ” | ” | ” |
| ବୁଧଠାରୁ ୬, ୮, ୯, ୧୦, ୧୧ | ” | ” | ” |
| ବୃହସ୍ପତିଠାରୁ ୫, ୬, ୧୧, ୧୨ | ” | ” | ” |
| ଶୁକ୍ରଠାରୁ ୬, ୧୧, ୧୨ | ” | ” | ” |
| ଶନିଠାରୁ ୩, ୫, ୮, ୧୦, ୧୧ | ” | ” | ” |
| ଲଗ୍ନଠାରୁ ୧,୩,୪,୬,୧୦, ୧୧ | ” | ” | ” |

ଲଗ୍ନାଷ୍ଟବର୍ଗର ସମସ୍ତ ରେଖା ସଂଖ୍ୟା ୩୭ ହେବ ।

ଯାବନ୍ତି ଯାବନ୍ତି ରେଖା ଗ୍ରହାଣାମଷ୍ଟବର୍ଗକେ ।
ତାବନ୍ତି ଦ୍ୱିଗୁଣୀକୃତ୍ୟ ଗୃଷ୍ଟାଂଶଃ ପରିଶୋଧୟେତ୍ ॥

ପୂର୍ବୋକ୍ତ ପ୍ରଣାଳୀ ଅନୁସାରେ ପ୍ରତ୍ୟେକ ଗ୍ରହର ଅଷ୍ଟବର୍ଗ ଘର ଘର କ୍ରମରେ ଅଣିଲା ପରେ ଯେ ଘରେ ଯେତେ ରେଖା ପଡ଼ିବ ତାକୁ ଦୁଇଗୁଣ କରି ଅଠଦ୍ୱାରା ହରଣ କରିବେ ।

ଅଷ୍ଟୋପରି ଭବେଦ୍ରେଖା ଅଷ୍ଟାଭ୍ୟନ୍ତରବିନ୍ଦବଃ ।
ଶୋଣିତମ୍ଭୁ ଭବେଦ୍ଦନ୍ତ ଗ୍ରସ୍ତମଂ ପରିକୀର୍ତ୍ତିତଂ ॥
ଶୂନ୍ୟେ ଚ ବିନ୍ଦବଷ୍ଟାଷ୍ଟୌ ରେଖୈକେ ରସବିନ୍ଦବଃ ।
ଚତ୍ୱାରୋ ବିନ୍ଦବୋ ଯୁଗ୍ମେ ଦ୍ୱି ବିନ୍ଦୁ ର୍ଗୁଣରେଖକେ ॥
ସମା ରେଖା ଚତୁଷ୍କେଣ ପଞ୍ଚମେ ନେତ୍ରରେଖିକା ।
ଷଡ୍ରେଖସୁ ଚତୁଃରେଖା ସପ୍ତସୁ ଷଷ୍ଠରେଖିକା ॥ ଜା.ଚ.

ଅଠଦ୍ୱାରା ହରଣ କଲେ ଅବଶିଷ୍ଟ ଯାହା ରହିଯିବ, ସେହି ସଂଖ୍ୟାକୁ ସେହି ଘରେ ଲେଖିବ । ଦୁଇଗୁଣ କଲେ ଯଦି ଅଠରୁ କମ୍ ହେବ, ଯେତେ ମିଶାଇଲେ ଅଠ ହେବ ତାହା ସେହି ଘରେ ଲେଖିବେ । ଯଥା :— ଦୁଇଗୁଣ କଲେ ଯଦି ଅଠ ହେବ, ତେବେ ସେହି ଘରେ ସମ ଲେଖିବେ । ଯେ ଘରେ ରେଖା ଆଦୌ ନାହିଁ ସେ ଘରେ ୮ ବିନ୍ଦୁ ବୋଲି ଲେଖିବେ । ଯେଉଁ ଘରେ ଗୋଟିଏ ରେଖା ସେ ଘରେ ୬ ବିନ୍ଦୁ ଲେଖିବେ । ଦୁଇଟି ରେଖା ଥିଲେ ଚାରି ବିନ୍ଦୁ ଲେଖିବେ । ତିନୋଟି ରେଖା ଥିଲେ ଦୁଇବିନ୍ଦୁ ଲେଖିବେ । ଯେ ଘରେ ଚାରିଟି ରେଖା ସେ ଘରେ ସମ ଲେଖିବ । ଯେଉଁ ଘରେ ପାଞ୍ଚଟି ରେଖା ଥିବ, ସେଠାରେ ଦୁଇରେଖା ଲେଖିବେ । ଯେଉଁ ଘରେ ୬ଟି ରେଖା ପଡ଼ିଥିବ ସେହି ଘରେ ଚାରି ରେଖା ଲେଖିବେ । ଯେ ଘରେ ୭ଟି ରେଖା ପଡ଼ିବ ସେ ଘରେ ୬ ରେଖା ଲେଖିବେ ।

ଶୁଭ ରେଖା ସମାଖ୍ୟାତା ଅଶୁଭ ବିନ୍ଦବଃ ସ୍ମୃତାଃ
ଯତ୍ର ରେଖା ନ ବିନ୍ଦୁସ୍ତ ତତ୍ସମଂ ପରିକୀର୍ତ୍ତିତଂ ॥

ରେଖାର ଅଧିକରେ ଶୁଭ, ବିନ୍ଦୁର ଅଧିକରେ ଅଶୁଭ । ରେଖା କିମ୍ବା ବିନ୍ଦୁ ନ ଥିଲେ (ସମ) ଶୁଭାଶୁଭ ମିଶ୍ରଣ ଫଳ ହୁଏ । ଯେଉଁ ରାଶି ଯେତେ ପରିମାଣରେ ରେଖାଯୁକ୍ତ ସେହି ରାଶିସ୍ଥ ଗ୍ରହ ସେତେ ଅଧିକ ପରିମାଣରେ ଶୁଭ ଫଳ ଦାନ କରେ । ପ୍ରତ୍ୟେକ ଗ୍ରହର ଓ ଲଗ୍ନର ପୂର୍ବୋକ୍ତ ପ୍ରକାରରେ ଶୋଧିତ ରେଖା ବିନ୍ଦୁପାତ କରି ସାରି ଯେଉଁ ରାଶିରେ (ଅଷ୍ଟୋତ୍ତରୀୟ ଚକ୍ର) ଯେତେ ବିନ୍ଦୁ ଓ ଯେତେ ରେଖା ସେ ସମସ୍ତ ହିସାବ କରି ଗୋଟିଏ ରାଶିଚକ୍ରରେ ସେ ରାଶିର ବିନ୍ଦୁ ଓ ରେଖା ସଂଖ୍ୟା ଯାହା ତାହା ଲେଖିବେ । ଏହାର ନାମ ସର୍ବାଷ୍ଟକବର୍ଗ । ଏହା ପରେ ଜାତକରେ ଯେଉଁ ରାଶିରେ ଯେ ଗ୍ରହ ତାହା ସର୍ବାଷ୍ଟକବର୍ଗ ରାଶିଚକ୍ରରେ ଲେଖିବେ ।

ସ୍ୱୋଚ୍ଚମିତ୍ରାଦିବର୍ଗସ୍ଥା କେନ୍ଦ୍ରାଦିବଲସଂଯୁତାଃ ।
ଅନିଷ୍ଟଫଳଦାଃ ସର୍ବେ ଅଧିବିନ୍ଦୁଯୁତା ଯଦି ॥
ଦୁଷ୍ଟସ୍ଥାନସ୍ଥିତା ଯେ ଚ ଯେ ଚ ନୀଚାରିଭାଂଶଗାଃ ।
ତେ ସର୍ବେ ଶୁଭଦା ନିତ୍ୟଂ ବହୁରେଖାଯୁତା ଯଦି ॥

ଜା. ଚ.

ଗ୍ରହମାନେ ଉଚ୍ଚସ୍ଥ, ମିତ୍ରଗୃହସ୍ଥ, ସ୍ୱଗୃହସ୍ଥ କିମ୍ବା କେନ୍ଦ୍ରାଦି ବଳଯୁକ୍ତ ହୋଇଥିଲେ ମଧ୍ୟ ସେମାନେ ଥିବା ଗୃହରେ ବହୁବିନ୍ଦୁ ପଡ଼ିଲେ ସେହି ଗ୍ରହମାନେ ଅଶୁଭ ଫଳ ପ୍ରଦାନ କରନ୍ତି । ନୀଚସ୍ଥ, ଶତ୍ରୁଗୃହସ୍ଥ କିମ୍ବା ଅଶୁଭକ୍ଷେତ୍ରସ୍ଥ ହୋଇଥିଲେ ସୁଦ୍ଧା ବହୁରେଖା ଯୁକ୍ତରେ ଶୁଭଫଳ ପ୍ରଦାନ କରନ୍ତି ।

ରାଶିଶୁଭ ବିଚାରଃ

ତ୍ରିଂଶାଧିକଫଲା ଯେ ଚ ରାଶୟସ୍ତେ ଶୁଭା ମତାଃ ।
ପଞ୍ଚବିଂଶାଦତ୍ରିଂଶାନ୍ତଫଲମଧ୍ୟାଃ ପ୍ରକୀର୍ତ୍ତିତାଃ ।
ତତଃ କ୍ଷୀଣବଲା ଜନ୍ୟା ଅନୁପାତଃ ସ୍ଥିତଃ ପୁରଃ ॥ ଜା. ସ.

ମହାଷ୍ଟକବର୍ଗ ଚକ୍ରରେ ଯେଉଁ ରାଶିରେ ୨୪ ପର୍ଯ୍ୟନ୍ତ ରେଖା ପଡ଼ିବ, ସେହି ରାଶିର ବଳ କ୍ଷୀଣ, ୨୫ ଠାରୁ ୩୦ ପର୍ଯ୍ୟନ୍ତ ରେଖା ଯେଉଁ ରାଶିରେ ପଡ଼ିବ, ସେହି ରାଶି ମଧ୍ୟବଳ । ୩୦ ଠାରୁ ଯେ ରାଶିରେ ଅଧିକ ସଂଖ୍ୟକ ରେଖା ପଡ଼ିବ ସେହି ରାଶି ପୂର୍ଣ୍ଣବଳୀ । ସଂଖ୍ୟା ନ୍ୟୂନାଧିକ୍ୟରେ ଅନୁପାତରେ ଠିକ୍ କରିବାକୁ ହେବ । ସମସ୍ତ ରାଶି ମଧ୍ୟରେ ଯେ ରାଶି ଅଧିକ ରେଖାଯୁକ୍ତ ସେହି ରାଶି ଓ ସେହି ଲଗ୍ନରେ ସମସ୍ତ କର୍ମ କଲେ ଶୁଭ ହୁଏ ।

## ଗ୍ରହାଣାମଷ୍ଟବର୍ଗଫଳବିଚାରଃ

ରବିଃ—ଯେ ଭାବରେ ବହୁବିନ୍ଦୁଯୁକ୍ତ ହୋଇଥିବେ, ସେହି ଭାବଫଳ ଦାନ କରିବେ । ୫,୬,୭ ବା ୮ ବିନ୍ଦୁଯୁକ୍ତ ରବି କେନ୍ଦ୍ର ବା ତ୍ରିକୋଣରେ ଥିଲେ ଯଥାକ୍ରମେ ୨୨,୩୫,୩୦ ଓ ୩୬ ବର୍ଷଠାରେ ଜାତକର କିମ୍ବା ତାହାର ପିତାର ମୃତ୍ୟୁ ଘଟେ ।

ଚନ୍ଦ୍ର—ଚନ୍ଦ୍ରସ୍ଥିତ ରାଶି ୫ ବା ତତୋଽଧିକ ରେଖାଯୁକ୍ତ ହେଲେ ଜାତକ ବହୁସୁଖ ଭୋଗ କରେ ।

ମଙ୍ଗଳଃ—ମେଷ, ସିଂହ, ବୃଶ୍ଚିକ ଓ ମକରରାଶିସ୍ଥ ଲଗ୍ନଗତ ମଙ୍ଗଳ ୫ ରେଖାଯୁକ୍ତ ହେଲେ ରାଜାତୁଲ୍ୟ କରାଏ ।

ବୁଧଃ—ବୁଧର ଅଷ୍ଟବର୍ଗରେ ଯେ ରାଶି ବହୁରେଖାଯୁକ୍ତ, ସେହି ମାସରେ ବିଦ୍ୟାରମ୍ଭ କଲେ ଶୁଭ ହୁଏ ।

ବୃହସ୍ପତିଃ—ବୃହସ୍ପତିର ଅଷ୍ଟବର୍ଗରେ ଯେ ରାଶି ବିଶେଷ ରେଖାଯୁକ୍ତ, ସେହି ରାଶି ଓ ସେହି ଲଗ୍ନରେ ଗର୍ଭାଧାନ କଲେ ସତ୍ପୁତ୍ର ଜାତ ହୁଏ । ବୃହସ୍ପତି ଯେଉଁ ରାଶିରେ ଥିବେ, ସେହି ରାଶିର ପଞ୍ଚମ

ରାଶିରେ ଯେତେ ରେଖା ପଡ଼ିବ, ସେତିକି ପୂର୍ଣ୍ଣ ଜାତ ହେବେ । ସେହି ରାଶି ଯଦି ବୃହସ୍ପତିର ଉଚ୍ଚକ୍ଷେତ୍ର, ତେବେ ସେହି ରେଖା ସଂଖ୍ୟାର ଦୁଇଗୁଣ ପୁତ୍ର ଜାତ ହେବେ । ଏହି ସ୍ଥାନ ନୀଚକ୍ଷେତ୍ର ହୋଇଥିଲେ ରେଖାସଂଖ୍ୟକ ସନ୍ତାନ ଜନ୍ମି ନାଶ ହେବେ ।

ଶୁକ୍ର—ଯେଉଁ ରାଶି ଅଧିକ ରେଖାଯୁକ୍ତ ସେହି ରାଶିର ଯେ ଦିଗ ଜାତକର ସେହି ଦିଗରେ ବିବାହ ହେବ ।

ଶନି—ଯେଉଁ ରାଶି ବହୁବିନ୍ଦୁଯୁକ୍ତ ସେହି ରାଶିକୁ ଶନି ଆସିଲେ ଜାତକର ପୀଡ଼ା ହୁଏ । (ପ୍ରତ୍ୟେକ ଗ୍ରହର ଅଷ୍ଟକବର୍ଗ ସମ୍ବନ୍ଧରେ ଯାହା ଫଳ ଲେଖାଗଲା ତାହା ସେହି ସେହି ଗ୍ରହର ଅଷ୍ଟବର୍ଗରୁ ଦେଖିବେ) ।

## ଅଷ୍ଟବର୍ଗୋକ୍ତ ଆୟୁର୍ଦ୍ଦାନଂ

ଚନ୍ଦ୍ରାଦନ୍ୟତମସ୍ଥେ ଚ ଶଶିନ ଗ୍ରହସଂଯୁତେ ।
ଅଷ୍ଟବର୍ଗେଣ ଭିନ୍ନାୟୁର୍ଦ୍ଦଶମେ କ୍ରୂରସୌମ୍ୟକୈଃ ।
ରେଖାସ୍ୱାଂ ବତ୍ସରସ୍ତେଷ୍ୱଃ ସାର୍ଦ୍ଧସପ୍ତଦିନଂ ସମେ
ଅଷ୍ଟବର୍ଗେ ଗ୍ରହାୟୂଃ ସ୍ୟାଦ୍ଦିନଂ ଚତୁର୍ଦ୍ଧ୍ୱ ବିନ୍ଦୁଷୁ ॥

କେନ୍ଦ୍ରଭିନ୍ନ ଯେ କୌଣସି ଗ୍ରହଯୁକ୍ତ ଚନ୍ଦ୍ର ଅନ୍ୟ ଭାବରେ ଥିଲେ, ଦଶମରେ ଶୁଭଗ୍ରହ ଓ ପାପଗ୍ରହ ଥିଲେ ଜାତକ ଅଷ୍ଟବର୍ଗ ଆୟୁର ଅଧୀନ ହୁଏ । ମହାଷ୍ଟବର୍ଗରେ ଯେତେ ରେଖା ସେତେ ବର୍ଷ, ଯେତେ ସମ ରେଖା ପାଢ଼େ ସାତଦିନ ଓ ଯେତେ ଶୂନ୍ୟବିନ୍ଦୁ ତେତେ ଦିନ ଏପରି ସମସ୍ତ ରାଶିର କାଳ ମିଶାଇଲେ ଯାହା ହେବ ତାହା ଜାତକର ଆୟୁଷ ।

## ଆୟୁର୍ଦାୟନିର୍ଣ୍ଣୟଃ

ଆୟୁର୍ମୂଳଂ ଜନ୍ମିନାଂ ଜୀବନଂ ବା ସଜ୍ଜୀବାନାଂ ନିର୍ଜରାଣାଂ ସୁଧେବ ।
ଏବଂ ପ୍ରାହୁଃ ପୂର୍ବମାଚାର୍ଯ୍ୟବର୍ଯ୍ୟାସ୍ତସ୍ମାଦାୟୁର୍ଦାୟମେବଂ ପ୍ରବକ୍ଷ୍ୟେ ॥
ଜା. ଥ.

ପ୍ରାଣିମାତ୍ରେ ଆୟୁ ସେମାନଙ୍କର ମୂଳ ପଦାର୍ଥ । ପଦ୍ମମାନଙ୍କର ଜଳ ଯେପରି, ଦେବତାମାନଙ୍କର ଅମୃତ ଯେପରି, ମନୁଷ୍ୟମାନଙ୍କର ଆୟୁ ସେହିପରି ଅତି ଆବଶ୍ୟକ ଅଟେ । ଆୟୁ ନ ଥିଲେ କୌଣସି ଯୋଗ ବା ଶୁଭଲକ୍ଷଣ ଅନାବଶ୍ୟକ । ତେଣୁ ପୂର୍ବାଚାର୍ଯ୍ୟଗଣ କହନ୍ତି—

"ଆୟୁର୍ହୀନଂ ନରାଣାଂ ଲକ୍ଷଣୈ କିଂ ପ୍ରୟୋଜନଂ ।
ତସ୍ମାତ୍ପୂର୍ବପ୍ରଯତ୍ନେନ ଆୟୁର୍ଦାୟଂ ବିଚାରୟେତ୍ ॥

ଲଗ୍ନେ କେନ୍ଦ୍ରେ ତ୍ରିକୋଣେ ତନୁ
ନିଧନନଭଃସ୍ଥାନପାଃ ସଂସ୍ଥିତାଶ୍ଚେ-
ଦ୍ଦୀର୍ଘାୟୁଃ ପାପଖେଟାଃ ଷଣଷର
ହିବୁକା ତ୍ରିକସ୍ଥିତା ମଧ୍ୟମାୟୁଃ ।
ହୀନାୟୁଃ ପ୍ରୋକ୍ତମେତତ୍ ଯଦି
ଜନୁଷି ନୃଣାଂ ସୂର୍ଯ୍ୟସ୍ତଦାପୋକ୍ଲିମସ୍ଥ ।
ରନ୍ଧ୍ରସ୍ଥାନସ୍ଥିତାନାଂ ତନୁପତି
ଗଗନ ସ୍ୱାମିସୂର୍ଯ୍ୟାତ୍ମଜାନାଂ ॥ ଜା.

ଲଗ୍ନାଧିପତି ଏକାଦଶରେ, ଅଷ୍ଟମାଧିପତି କେନ୍ଦ୍ରରେ ବା ଦଶମାଧିପତି ତ୍ରିକୋଣରେ ଥିଲେ ଜାତକ ଦୀର୍ଘାୟୁ ହୁଏ । ପାପଗ୍ରହମାନେ ଦ୍ୱିତୀୟ, ତୃତୀୟ, ଚତୁର୍ଥ; ପଞ୍ଚମ ଅଷ୍ଟମ ଓ ଏକାଦଶରେ ଥିଲେ ଜାତକ ମଧ୍ୟାୟୁ ହୁଏ । ପାପ ଗ୍ରହମାନେ ତୃତୀୟ, ଷଷ୍ଠ, ଦ୍ୱାଦଶରେ,ଥିଲେ ଜାତକ

ସ୍ୱଳ୍ପାୟୁ ହୁଏ । ଅଷ୍ଟମସ୍ଥାନସ୍ଥ ଗ୍ରହ, ଲଗ୍ନାଧିପ, ଚନ୍ଦ୍ରମାଶ୍ରୟପତି ଓ ତ୍ରିଂଶପ ଏହିମାନଙ୍କ ଦଶାରେ ଆୟୁ ଶେଷ ହୁଏ ।

### ଆୟୁପରିମାଣଂ

ସମାଃଷଷ୍ଟୀ ଦ୍ୱିଘ୍ନା ମନୁଜକରଣାଂ ପଞ୍ଚ ଚ ନିଶା
ହୟାନାଂ ଦ୍ୱାତ୍ରିଂଶତ୍ ଖରକରଭୟୋଃ ପଞ୍ଚ ଚ କୃତିଃ ।
ବିରୂପା ସାପ୍ୟାୟୁର୍ବୃଷମହିଷୟୋର୍ଦ୍ୱାଦଶ ଶୁନଃ
ସ୍ମୃତଂ ଛାଗାଦୀନାଂ ଦଶକସହିତା ଷଟ୍ ଚ ପରମଂ ॥
ବୃ. ଜା. ।

ମନୁଷ୍ୟ ଓ ହସ୍ତିମାନଙ୍କର ପରମାୟୁ ୧୨୦ ବର୍ଷ ଓ ୫ ଅହୋରାତ୍ର । ଘୋଟକମାନଙ୍କର ପରମାୟୁ ୩୨ ବର୍ଷ । ଗର୍ଦ୍ଦଭ ଓ ଉଷ୍ଟ୍ରମାନଙ୍କର ପରମାୟୁ ୨୫ ବର୍ଷ । ମହିଷ, ବୃଷର ପରମାୟୁ ୨୦ ବର୍ଷ । ମେଷାଦଙ୍କର ପରମାୟୁ ୧୬ ବର୍ଷ ଅଟେ ।

### ଆୟୁର୍ବିଭାଗଃ

ତ୍ରିବିଧଂ ହ୍ୟାୟୁଷଂ ପ୍ରୋକ୍ତଂ ସ୍ୱଳ୍ପାୟୁର୍ମଧ୍ୟମୋତ୍ତମାଃ ।
ଦ୍ୱାତ୍ରିଂଶାତ୍ ପୂର୍ବମଳ୍ପାୟୁର୍ମଧ୍ୟମାୟୁସ୍ତତୋ ଭବେତ୍ ॥
ଚତୁଃଷଷ୍ଟ୍ୟା ପୁରସ୍ତାତ୍ତୁ ତତୋ ଦୀର୍ଘମୁଦାହୃତଂ ।
ଉତ୍ତମାୟୁଃ ଶତାଦୂର୍ଦ୍ଧ୍ୱଂ ଜ୍ଞାତବ୍ୟଂ ମୁନିସତ୍ତମ ॥
ଲଗ୍ନେଶରନ୍ଧ୍ରପତ୍ୟୋଶ୍ଚ ଲଗ୍ନେନ୍ଦୋର୍ଲଗ୍ନହୋରୟୋଃ ।
ପୂର୍ବାନ୍ୟେବଂ ପ୍ରଯୁଞ୍ଜୀୟାତ୍ ମନ୍ଦାଦଶାୟୁଷଂ ନୟଂ ॥

ଆୟୁ ତିନି ଭାଗରେ ବିଭକ୍ତ । (୧) ସ୍ୱଳ୍ପାୟୁ (୨) ମଧ୍ୟାୟୁ (୩) ଦୀର୍ଘାୟୁ । ୩୨ ବର୍ଷ ପର୍ଯ୍ୟନ୍ତ ଅଳ୍ପାୟୁ । ସେଠାରୁ ୬୪ ବର୍ଷ ପର୍ଯ୍ୟନ୍ତ

ମଧ୍ୟାୟୁ । ସେଠାରୁ ୧୦୦ ବର୍ଷ ପର୍ଯ୍ୟନ୍ତ ଦୀର୍ଘାୟୁ ବୋଲାଯାଏ । କେହି କେହି ୧୦୦ ବର୍ଷରୁ ଊର୍ଦ୍ଧ୍ୱକାଳକୁ ଉତ୍ତମାୟୁ କହନ୍ତି । ଲଗ୍ନାଧିପତି, ଅଷ୍ଟମାଧିପତି, ଚନ୍ଦ୍ର ଓ ହୋରା ଲଗ୍ନକୁ ନେଇ ଆୟୁ ବିଷୟର ଗଣନା ମହର୍ଷିମାନଙ୍କଦ୍ୱାରା ନିର୍ଦ୍ଧାରିତ ହୋଇଅଛି ।

## ଆୟୁର୍ନିର୍ଣ୍ଣୟଃ ।

ତ୍ରିଧା ଯୋଗାଃ ସମା ପ୍ରୋକ୍ତାଶ୍ଚିନ୍ତୟେଦ୍ ଗଣିତାଗ୍ରଣୀ ।
ଏକରୂପଂ ତ୍ରୟଂ ଯୋଗା ଆୟୁଷି ସୁବଶନ୍ତ୍ୟେତ୍ ॥
ଏକରୂପ ତ୍ରଯୋଗୌ ଦ୍ୱୌ ତୃତୀୟୋ ଭିନ୍ନରୂପକଃ ।
ଦ୍ୱୟୋର୍ଯୋଗେନ ସଗ୍ରାହ୍ୟଂ ନ ଗ୍ରାହ୍ୟଂ ଏକରୂପତଃ ॥

ଯୋଗେ ତ୍ରୟଂ ତ୍ରୟଂ ରୂପଭିନ୍ନଂ ଭିନ୍ନଂ ଭବେଦ୍ଦ୍ୱିଜ ।
ହୋରାଲଗ୍ନବିଲଗ୍ନାଭ୍ୟାଂ ପ୍ରାପ୍ତାୟୁର୍ଯୋଗନିଶ୍ଚିତଂ ॥

ପୂର୍ବୋକ୍ତ ଲଗ୍ନାଧିପତି, ଅଷ୍ଟମାଧିପତି, ଚନ୍ଦ୍ର ଏବ ହୋରା ଲଗ୍ନ ଏ ତିନି ପ୍ରକାରରେ ଆୟୁ ନିର୍ଣ୍ଣୟ କଲେ ଯଦି ଏକମତ ଆସିବ ତେବେ ସେହି ଆୟୁ ଗ୍ରାହ୍ୟ । ଦୁଇ ପ୍ରକାରରେ ଏକମତ ଆସିଲେ ତାହା ଗ୍ରାହ୍ୟ । ତିନି ପ୍ରକାର ଭିନ୍ନ ଭିନ୍ନ ଆସିଲେ ହୋରାଲଗ୍ନୋକ୍ତ ଆୟୁ ଗ୍ରାହ୍ୟ ।

ଲଗ୍ନସ୍ଥେ ମଦନେ ଚେନ୍ଦୌ ଚିନ୍ତୟେଲ୍ଲଗ୍ନଂ ଚନ୍ଦ୍ରତଃ ।
ଆୟୁର୍ଯୋଗଂ ମହାପ୍ରାଜ୍ଞ ଶୂନ୍ୟସ୍ଥେ ମନ୍ଦଚନ୍ଦ୍ରୟୋଃ ॥

ଚନ୍ଦ୍ର ଲଗ୍ନସ୍ଥ ସପ୍ତମସ୍ଥ ହେଲେ ଲଗ୍ନ ଓ ଚନ୍ଦ୍ରଦ୍ୱାରା ଯେ ଆୟୁ ଆସେ ତାହା ଗ୍ରାହ୍ୟ, ନତୁବା ଚନ୍ଦ୍ର ଓ ଶନିଙ୍କଠାରୁ ଆୟୁ ନିର୍ଣ୍ଣୟ କରିବା ବିଧି ।

ଚରେ ଚରସ୍ଥିରଦ୍ୱନ୍ଦାଃ ସ୍ଥିରେ ଦ୍ୱନ୍ଦଚରସ୍ଥିରାଃ ।
ଦ୍ୱନ୍ଦେ ସ୍ଥିରୋଭୟଚରା ଦୀର୍ଘମଧ୍ୟାଳ୍ପକାୟୁଷଃ ॥
ଚରେ ଚରସ୍ଥିତେ ଦ୍ୱୌ ଚ ଲଗ୍ନରନ୍ଧ୍ରାଧିପୌ ଯଦ ।
ପୂର୍ଣ୍ଣାୟୁର୍ଯୋଗବଜ୍ଜ୍ଞେୟଂ ନବିଂଶଙ୍କଂ ଦ୍ୱିଜୋତ୍ତମ ॥
ସ୍ଥିରର୍ଷେ ଲଗ୍ନନାଥୋ ହି ଲଽଧ୍ୟେଶୋ ଦ୍ୱନ୍ଦଭେ ସ୍ଥିତଃ ।
ତଦାୟୁଃ ପୂର୍ଣ୍ଣଯୋଗସ୍ଥ ସମ୍ବଦେତ୍ ଗଣିତାଗ୍ରଣୀଃ ॥
ରନ୍ଧ୍ରାଧୀଶେ ସ୍ଥିତେ ଦ୍ୱନ୍ଦେ ସ୍ଥିରେ ସ୍ଥିତେ ଲଗ୍ନାଧିପେ ।
ପୂର୍ଣ୍ଣାୟୁର୍ଯୋଗ ବଜ୍ଜ୍ଞେୟଂ ନବିଂଶଙ୍କଂ ଦ୍ୱିଜୋତ୍ତମ ॥

ପା. ହୋ ॥

ଲଗ୍ନାଧିପତି ଓ ଅଷ୍ଟମାଧିପତି ଉଭୟ ଗ୍ରହ ଚରରାଶିସ୍ଥ ହେଲେ ଅଥବା ଲଗ୍ନାଧିପତି ସ୍ଥିର ଓ ଅଷ୍ଟମାଧିପତି ଦ୍ୱାସ୍ୱିଭ ରାଶିରେ ରହିଲେ କିମ୍ବା ଅଷ୍ଟମାଧିପତି ସ୍ଥିରରାଶିରେ ଓ ଲଗ୍ନାଧିପତି ଦ୍ୱାସ୍ୱିଭରାଶିରେ ରହିଲେ ଜାତକ ଦୀର୍ଘାୟୁ ହୁଏ ।

ଚରେ ଲଗ୍ନାଧିପେ ଷପ୍ରସ୍ଥିରେ ରନ୍ଧ୍ରପତୌଯଦି ।
ତଦା ମଧ୍ୟାୟୁଷଂ ଜ୍ଞେୟଂ ଦ୍ୱୌ ଦ୍ୱନ୍ଦେ ମଧ୍ୟମାୟୁଷଂ ॥

ପା. ହୋ ॥

ଲଗ୍ନର ଅଧିପତି ଚରରାଶିସ୍ଥ ଓ ଅଷ୍ଟମ ସ୍ଥାନାଧିପତି ସ୍ଥିର-ରାଶିସ୍ଥ ହେଲେ କିମ୍ବା ଅଷ୍ଟମାଧିପତି ଚରରାଶିସ୍ଥ ଓ ଲଗ୍ନାଧିପତି ସ୍ଥିର-ରାଶିସ୍ଥ ହେଲେ ନୋଚେତ୍ ଲଗ୍ନ ଅଷ୍ଟମ ଉଭୟ ରାଶ୍ୟଧିପତି ଦ୍ୱାସ୍ୱିଭ-ରାଶିରେ ରହିଲେ ଜାତକ ମଧ୍ୟାୟୁ ହୁଏ ।

ଅଙ୍ଗାଧୀଶେ ଚରେ ଯସ୍ୟ ଦ୍ୱନ୍ଦଭେ ରନ୍ଧ୍ରନାୟକେ ।
ତସ୍ୟାଳ୍ପାୟୁର୍ମହାପ୍ରାଜ୍ଞ ନବିଂଶଙ୍କଂ ଦ୍ୱିଜୋତ୍ତମ ॥ ପା. ହୋ.

ଲଗ୍ନାଧିପତି ଚରରାଶିରେ ଓ ଅଷ୍ଟମାଧିପତି ସ୍ଥିରରାଶିରେ ରହିଲେ ଜାତକ ଅଳ୍ପାୟୁ ହୁଏ ।

ସ୍ଥିରେ ସ୍ଥିରେ ସ୍ଥିତେ ଦ୍ୱୌ ଚ ଲଗ୍ନରନ୍ଧ୍ରାଧିପୌ ଦ୍ୱିଜ ।
ଅଳ୍ପାୟୁସ୍ତତ୍ର ବକ୍ତବ୍ୟଂ ପରାଶରପ୍ରଣୋଦିତଂ ॥

ଲଗ୍ନାଧିପତି ଓ ଅଷ୍ଟମାଧିପତି ଉଭୟ ଗ୍ରହ ସ୍ଥିରରାଶିରେ ରହିଲେ ଜାତକ ଅଳ୍ପାୟୁ ହୁଏ । ଏହା ପରାଶର କହିଅଛନ୍ତି ।

ଚରେ ହୋରାଧିପୋ ଯସ୍ୟ ଅଳ୍ପାୟୁଃ ସ୍ୟାନ୍ନରୋ ଭବେତ୍ ।
ସ୍ଥିରେ ମଧ୍ୟ ଦ୍ୱିଶରୀରେ ଦୀର୍ଘମାୟୁର୍ବଦେଦ୍‌ବୁଧଃ ॥

ହୋରା ଲଗ୍ନାଧିପତି ଚରରାଶିରେ ଥିଲେ ଜାତକ ଅଳ୍ପାୟୁ ହୁଏ । ସ୍ଥିରରାଶିରେ ଥିଲେ ମଧ୍ୟାୟୁ ଓ ଦ୍ୱିସ୍ୱଭାବରାଶିରେ ଥିଲେ ଜାତକ ଦୀର୍ଘାୟୁ ହୁଏ ।

ଯେଉଁ ଗ୍ରହମାନଙ୍କୁ ଆୟୁର୍ଦ୍ଦାତା ବୋଲି ନିଶ୍ଚୟ କରିବେ ସେମାନଙ୍କର ବଳାବଳକୁ ନେଇ ଆୟୁର ଅଳ୍ପତା ଓ ପୂର୍ଣ୍ଣତା କହିବେ । ମନେ କରନ୍ତୁ, କୌଣସି ଜାତକର ଆୟୁର୍ଦ୍ଦାତା ଶନି ଓ ଜାତକକୁ ମଧ୍ୟାୟୁ ବୋଲି ନିଶ୍ଚୟ କରାଗଲା । ଶନି ଉଚ୍ଚସ୍ଥ, ସ୍ୱଗୃହସ୍ଥ, ଶୁଭଦୃଷ୍ଟ ଓ ମାରକ ଗ୍ରହର ସମ୍ବନ୍ଧ ରହିତ ହୋଇଥିଲେ ଜାତକ ଦୀର୍ଘାୟୁ ହେବ, କିନ୍ତୁ ଏହି ଶନି ନୀଚସ୍ଥ, ପାପକ୍ଷେତ୍ରସ୍ଥ, ବୈରିଦୃଷ୍ଟ ବା ମାରକ ଗ୍ରହ ସମ୍ପର୍କରେ ଥିଲେ ଜାତକ ଅଳ୍ପାୟୁ ହୋଇଯାଏ ।

ଜୈମିନିସୂତ୍ରାଦି ମତରେ ଆୟୁର୍ଦ୍ଦାୟ ଚିନ୍ତା ଅଷ୍ଟକାରକ ଗ୍ରହଠାରୁ କରାଯାଏ । ଅଷ୍ଟକାରକ ଗ୍ରହର ଅଷ୍ଟମ ସ୍ଥାନର ଅଧିପତି ଓ ଦ୍ୱିତୀୟ ସ୍ଥାନର ଅଧିପତି ମଧ୍ୟରୁ ଯେ ଗ୍ରହ ବଳବାନ୍ ସେ କେନ୍ଦ୍ରସ୍ଥ

ହେଲେ ଜାତକ ଦୀର୍ଘାୟୁ, ପଣଫରସ୍ଥ ହେଲେ ମଧ୍ୟାୟୁ ଓ ଅପୋକ୍ଲିମସ୍ଥ ହେଲେ ଅଳ୍ପାୟୁ ହୁଏ ।

ଆୟୁ ନିର୍ଣ୍ଣୟର ସାଧାରଣ ନିୟମ ଏହି ଯେ, ପ୍ରଥମେ ଜାତକ ଦୀର୍ଘାୟୁ ମଧ୍ୟାୟୁ ବା ଅଳ୍ପାୟୁ ତାହା ନିଶ୍ଚୟ କରିବେ । ତା ପରେ ଜାତକର ଜନ୍ମଲଗ୍ନରୁ କେଉଁ କେଉଁ ଗ୍ରହମାନେ ମାରକ ସେହି ଗ୍ରହମାନଙ୍କ ମଧ୍ୟରୁ କିମ୍ବା ମାରକ ବଳଯୁକ୍ତ ଅନ୍ୟ କୌଣସି ଗ୍ରହମାନଙ୍କ ମଧ୍ୟରୁ କାହାର ହେଲେ ଦଶା ଭୋଗ ହେବାକୁ ଏହି ଆୟୁ ମଧ୍ୟରେ ଅଛି କି ନା ଦେଖିବେ । ପୂର୍ବୋକ୍ତ ନିର୍ଣ୍ଣୀତ ଆୟୁ ମଧ୍ୟରେ ସେହି ମାରକ ଗ୍ରହର ଦଶା ଭୋଗ ହେବାକୁ ଥିଲେ; ସେହି ଦଶାର କେଉଁ ଅନ୍ତର୍ଦ୍ଦଶା ମାରକ ବଳଯୁକ୍ତ ତାହା ଦେଖି ଜାତକର ଆୟୁ ଠିକ୍ କରିବେ । କେଉଁ କେଉଁ ଗ୍ରହମାନେ କେଉଁ କେଉଁ ଲଗ୍ନରୁ ମାରକ ତାହା ପୂର୍ବେ କହାଯାଇଅଛି । ବର୍ତ୍ତମାନ ମାରକ ବଳଯୁକ୍ତ ଗ୍ରହମାନଙ୍କର ଦଶା ବିଷୟର କରାଯିବ ।

## ମାରକ ଗ୍ରହ ନିର୍ଣ୍ଣୟଃ ।

ଅଷ୍ଟମଂ ଆୟୁଷସ୍ଥାନମଷ୍ଟମାଦଷ୍ଟମଂ ଚ ଯତ୍ ।
ତୟୋରପି ବ୍ୟୟସ୍ଥାନଂ ମାରକସ୍ଥାନମୁଚ୍ୟତେ । ଜେ. ବ.

ଅଷ୍ଟମ ଓ ତୃତୀୟ ଏ ଦୁଇସ୍ଥାନ ଆୟୁସ୍ଥାନ । ସପ୍ତମ ଓ ଦ୍ୱିତୀୟ ଏ ଦୁଇସ୍ଥାନ ମାରକ ସ୍ଥାନ ଅଟେ ।

ଜାୟାକୁଟୁମ୍ବକାଧୀଶୌ ମାରକୌ ପରକୀର୍ତ୍ତିତୌ ।
ତନ୍ନ ଗତାଃ ଖଳା ସର୍ବେ ମାରକା ମାରକାଧିପାଃ । (ଜ୍ୟୋ. ଅ.)

ଦ୍ୱିତୀୟ ଓ ସପ୍ତମ ସ୍ଥାନ ଉଭୟର ଅଧିପତି ଗ୍ରହମାନେ ମାରକ ଗ୍ରହ । ରବି ଓ ଚନ୍ଦ୍ର ଦ୍ୱିତୀୟ ବା ସପ୍ତମର ଅଧିପତି ହୋଇଥିଲେ ମଧ୍ୟ ସେମାନଙ୍କଠାରେ ତେତେଦୂର ମାରକ ଦୋଷ ନାହିଁ ।

ମନ୍ଦଶ୍ଚେତ୍ ପାପସଂଯୁକ୍ତୋ ମାରକଗ୍ରହଯୋଗତଃ ।
ତରସ୍କୃତ୍ୟ ଗ୍ରହାନ୍ ସର୍ବାନ୍ ନିହନ୍ତା ପାପକୃଚ୍ଛନିଃ । ଲ. ପା.

ଯଦି ଶନି ତୃତୀୟ, ଷଷ୍ଠ କିମ୍ବା ଏକାଦଶର ଅଧିପତି ହୋଇ ମାରକ ଗ୍ରହ ସହିତ କିମ୍ବା ତାହାର ସମ୍ବନ୍ଧରେ ଥାଏ, ତେବେ ସେହି ଶନି ଜାତକର ପ୍ରବଳ ମାରକ ହୁଏ ।

ଜାୟାକୁଟୁମ୍ବକାଧୀଶୌ ଦ୍ୱାବେତୌ ମୁଖ୍ୟମାରକୌ ।
ଷଷ୍ଠାଷ୍ଟମେଶୌ ଦ୍ୱୌ ମୁଖ୍ୟୌ ପ୍ରବଲଶ୍ଚୋତ୍ତରୋତ୍ତରୌ । ଲ. ପା.

ସପ୍ତମାଧିପତି ଅପେକ୍ଷା ଧନାଧିପତି ଓ ଷଷ୍ଠାଧିପ ଅପେକ୍ଷା ଅଷ୍ଟମ ସ୍ଥାନାଧିପତିର ମାରକ ବଳ ବେଶି ହୁଏ ।

ଉକ୍ତାଶେଷ୍ୱପ୍ୟନ୍ୟ ଗତା ପାପିନସ୍ତୈନ ସଂଯୁତାଃ ।
ତେଷାଂ ଦଶାବିପାକେଷୁ ସମ୍ଭବେନ୍ନିଧନଂ ନୃଣାଂ ॥
ତେଷାମସମ୍ଭବେ ସାକ୍ଷାଦ୍ ବ୍ୟୟାଧୀଶଦଶାସ୍ୱପି ।
ପାପସମ୍ବନ୍ଧମାତ୍ରେଣ ବନ୍ଧମେଶୋଽପି ମାରକଃ ॥

ସପ୍ତମସ୍ଥାନାଧିପତି କିମ୍ବା ଧନାଧିପତିମାନଙ୍କର ଦଶା ନିର୍ଣ୍ଣୀତ ଆୟୁ ମଧ୍ୟରେ ଆସିଲେ ସେହିମାନଙ୍କର ଦଶାରେ ଓ ତୃତୀୟ, ଷଷ୍ଠ, ଏକାଦଶ ଅଧିପତିମାନଙ୍କ ମଧ୍ୟରୁ ଯେ ପାପଯୁକ୍ତ ତାହାର ଅନ୍ତର୍ଦଶାରେ ମାରକ ହୁଏ । ଉପରୋକ୍ତ ଦଶାମାନେ ଅସମ୍ଭବ ହେଲେ ଅର୍ଥାତ୍ ପର୍ବୋକ୍ତ

ଥିବୁ ମଧ୍ୟରେ ନ ଆସିଲେ ବ୍ୟୟାଧିପତି ତଥା ପାପଯୁକ୍ତ ତୃତୀୟାଧିପ ଦଶାରେ ମାରକ ହୁଏ ।

କେନ୍ଦ୍ରାଧିପତ୍ୟଦୋଷସ୍ତୁ ବଳବାନ୍ ଗୁରୁଶୁକ୍ରୟୋଃ ।
ମାରକତ୍ୱେଽପି ଚ ତୟୋର୍ମାରକସ୍ଥାନସଂସ୍ଥିତେ ॥

ବୃହସ୍ପତି ବା ଶୁକ୍ର କେନ୍ଦ୍ରାଧିପତି ହୋଇ ଦ୍ୱିତୀୟରେ ବା ସପ୍ତମରେ ଥିଲେ ମାରକ ହୁଅନ୍ତି ।

ଆତ୍ମକାରକ ଲଗ୍ନାଚ୍ଚ ଶକ୍ତସ୍ୟେଦ୍ୱିଜସତ୍ତମ !
ତ୍ରିତ୍ରି-ଷଷ୍ଠାଷ୍ଟମ-ଋଫଂ-ଧନ-ଦ୍ୟୂନାନ୍ତରେଷ୍ୱପି ।
ସର୍ବେଷାଂ ବଳବାନ୍ ଖେଟୋ ମାରକଗ୍ରହ ଉଚ୍ୟତେ
ସର୍ବୈର୍ବଳସମାନତ୍ୱେ ମାରକସଙ୍କକୋ ଗ୍ରହଃ ॥ ପା. ହୋ.

ଆତ୍ମକାରକ ଗ୍ରହଠାରୁ ତଥା ଲଗ୍ନଠାରୁ ଦ୍ୱିତୀୟ, ସପ୍ତମ, ତୃତୀୟ, ଷଷ୍ଠ, ଅଷ୍ଟମ ଓ ଦ୍ୱାଦଶ ଏହି ସମସ୍ତ ସ୍ଥାନରେ ଥିବା ଗ୍ରହମାନଙ୍କ ମଧ୍ୟରୁ ଯେ ଗ୍ରହ ବଳବାନ୍ ସେହି ଗ୍ରହ ମାରକ ହୁଏ । ଏହି ସମସ୍ତ ଗ୍ରହମାନଙ୍କର ବଳ ଏକପ୍ରକାର ହେଲେ ସେମାନଙ୍କ ମଧ୍ୟରେ ଯେ ଗ୍ରହ ମାରକ ସମ୍ପର୍କଯୁକ୍ତ ସେହି ଗ୍ରହ ମାରକ ହୁଏ । ଲଗ୍ନ ଓ ଆତ୍ମକାରକ ଗ୍ରହ ମଧ୍ୟରେ ଯେ ବଳବାନ୍ ତାହାଠାରୁ ଏହି ସ୍ଥାନମାନ ଦେଖିବେ ।

ଷଷ୍ଠସ୍ଥେ ପାପବାହୁଲ୍ୟେ ଷଷ୍ଠେଶୋ ମୁଖ୍ୟମାରକଃ ।
ମଧ୍ୟାୟୁଷି ସମାଯୋଗେ ଶକ୍ତସ୍ୟେଦ୍ ଦ୍ୱିଜସତ୍ତମ ॥

ମଧ୍ୟାୟୁଜାତ ବ୍ୟକ୍ତିମାନଙ୍କର ଲଗ୍ନର ଷଷ୍ଠରେ ପାପଗ୍ରହମାନେ ଥିଲେ ଷଷ୍ଠାଧିପ ପ୍ରଧାନ ମାରକ ହୁଏ ।

ଷଷ୍ଠେଶାଶ୍ରୟରାଶୀଶଦଶାୟାଂ ନିଧନଂ ଭବେତ୍ ।
ଷଷ୍ଠାତ୍ ଷଷ୍ଠେଶ୍ୱରସ୍ୟାପି ତ୍ରିକୋଣେଶୋଽପି ମାରକଃ ।
ଦୀର୍ଘାୟୁଷି ସମାଯୋଗେ ଶକ୍ତମଧ୍ୟଂ ଦ୍ୱିଜୋତ୍ତମ ॥

ଦୀର୍ଘାୟୁଜାତ ବ୍ୟକ୍ତିମାନଙ୍କର ଷଷ୍ଠାଧିପ ଯେ ରାଶିରେ ଥିବ ସେହି ରାଶ୍ୟଧିପତିର ଦଶାରେ ଅଥବା ଷଷ୍ଠସ୍ଥାନର ଷଷ୍ଠାଧିପ ଅଟେ ଯେ ଏକାଦଶର ଅଧିପତି ତାହାର ଦଶାରେ କିମ୍ବା ତାହାର ତ୍ରିକୋଣ ଯେ ଦଶମ ଓ ଦ୍ୱିତୀୟ ଏହି ସ୍ଥାନର ଅଧିପତିମାନଙ୍କ ଦଶାରେ ଜାତକର ମୃତ୍ୟୁ ଘଟେ ।

ରନ୍ଧ୍ରେଶେ ବ୍ୟୟରନ୍ଧ୍ରଯଂ ଗୃହଗେ ତତ୍ପାକଭୁକ୍ତୌ ମୃତଂ
ମନ୍ଦାକ୍ରାନ୍ତଗୃହେଶପାକସମୟେ ରନ୍ଧ୍ରେଶଭୁକ୍ତୌ ତଥା ।
ପାକେ ରନ୍ଧ୍ରଗୃହାଧିପସ୍ୟ ତଦନୁକ୍ରାନ୍ତସ୍ୟ ଭୁକ୍ତୌ ତୁ ବା
ଖେଟାନାଂ ବଲଦୁର୍ବଲେନ ସକଲଂ ସଞ୍ଚିନ୍ତ୍ୟ ଯତ୍ନାଦ୍ ବଦେତ୍ ॥
ଜ୍ୟୋ. ସା.

ଷଷ୍ଠ, ଅଷ୍ଟମ ଓ ଦ୍ୱାଦଶ ସ୍ଥାନସ୍ଥିତ ଅଷ୍ଟମାଧିପର ଦଶାରେ, ଶନିଯୁକ୍ତ ଅଷ୍ଟମାଧିପତିର ଦଶାରେ କିମ୍ବା ଅଷ୍ଟମାଧିପ ସହ ସମ୍ବନ୍ଧଯୁକ୍ତ ଗ୍ରହର ଦଶାନ୍ତର୍ଦଶାରେ ମାରକ ହୁଏ । ମାରକ ଗ୍ରହମାନଙ୍କର ବଳାବଳ ବିବେଚନା କରି ମାରକଗ୍ରହ ଠିକ୍ କରିବେ ।

ଲଗ୍ନେଶେ ନିଧନାରିରିଫଂଗୃହଗେ ସ୍ୱନ୍ତୌ ସକେତୌ ତୁ ବା
ହୋରାରନ୍ଧ୍ରପସଯୁତଗ୍ରହଦଶାଜାତସ୍ୟ ମୃତ୍ୟୁପ୍ରଦା ।
ତତ୍ଖେଟାନ୍ୱିତରାଶିନାୟକଦଶା ନାଶପ୍ରଦା ଦେହିନାଂ
ଖେଟାନାଂ ପ୍ରଥମାଗତସ୍ୟ ଫଣିନଃ ପାକାପହାରେ କ୍ରମାତ୍ ।

ରାହୁ କିମ୍ବା କେତୁଯୁକ୍ତ ଲଗ୍ନାଧିପତି ଷଷ୍ଠ, ଅଷ୍ଟମ ବା ଦ୍ୱାଦଶସ୍ଥ ହୋଇଥିଲେ ତାହାର ଦଶାରେ କିମ୍ବା ଅଷ୍ଟମ ଓ ଲଗ୍ନାଧିପ ସହ ସଂଯୁକ୍ତ

ଦଶାରେ, ଅଥବା ଅଷ୍ଟମାଧିପ ଯେ ରାଶିରେ ଥିବ ସେହି ରାଶ୍ୟଧିପ ଦଶାରେ ମାରକ ହୁଏ । ଅନ୍ୟାନ୍ୟ ମାରକ ଗ୍ରହଦଶାମାନଙ୍କର ଆରମ୍ଭରେ ଓ ରାହୁର ଶେଷଭାଗରେ ମାରକ ହୁଏ ।

ବ୍ୟାପାରରନ୍ଧ୍ରତନୁନାଥଶନୈଶ୍ଚରାଣାଂ
ମଧ୍ୟେ ବଧ୍ରନ୍ଧ୍ରଦଯୁତୋ ବଳବାନ୍ ଗ୍ରହୋ ଯଃ ।
ତତ୍ପାକଭୁକ୍ତି ସମୟେ ମରଣଂ ନରାଣାଂ
ତଦ୍‌ଯୁକ୍ତ-ବୀକ୍ଷକ-ନଭୋଗ ଦଶାନ୍ତରେ ବା ॥

ଜୋ. ସା.

୧୦ମ, ୮ମ, ଲଗ୍ନର ଅଧିପତିମାନେ ଅଥବା ଶନି ଏହି ଗ୍ରହମାନଙ୍କ ମଧ୍ୟରେ ଯେଉଁ ଗ୍ରହ ରାହୁଯୁକ୍ତ ଓ ବଳବାନ ସେହି ଗ୍ରହମାନଙ୍କର ଦଶାନ୍ତର୍ଦଶାଦିରେ ବା ସେମାନଙ୍କ ସହଯୁକ୍ତ ଦୃଷ୍ଟ ଗ୍ରହମାନଙ୍କର ଦଶାନ୍ତର୍ଦଶାରେ ଜାତକର ମୃତ୍ୟୁ ଘଟେ ।

ରନ୍ଧ୍ରେଶଯୋଗାନ୍ମରଣଂ ଦଶାସୁ ମନ୍ତର୍ଦଶାସୁାମଥବା ବଦନ୍ତି ।
ପିତ୍ରାଦିଭାବାଧିପଯୋଗଦୃଷ୍ଟ୍ୟା ପିତ୍ରାଦିକାନାଂ ମରଣଂ ତଥୈବ ॥

ଜ୍ୟୋ. ସା.

ଅଷ୍ଟମାଧିପତିର ଦଶା ଓ ଅନ୍ତରରେ ମାରକ ହୁଏ । ଦଶମାଧିପ, ଚତୁର୍ଥସ୍ଥାନାଧିପ, ତୃତୀୟ ସ୍ଥାନାଧିପ, ପଞ୍ଚମାଧିପ ଅଥବା ସପ୍ତମାଧିପତି ସହ ଅଷ୍ଟମାଧିପତିଯୁକ୍ତ ହୋଇଥିଲେ, ଅଥବା ଏମାନଙ୍କୁ ଦେଖୁଥିଲେ ସେହି । ଅଷ୍ଟମାଧିପତିର ଦଶାରେ ଯଥାକ୍ରମେ ପିତା, ମାତା, ଭ୍ରାତା, ପୁତ୍ର ଓ ସ୍ତ୍ରୀର ମରଣ ହୁଏ ।

ବୃଶ୍ଚିକେ ମକରେ ଜନ୍ମ ନୃଣାଂ ରାହୁର୍ମୃତପ୍ରଦଃ ।
ମହାମାରକସଙ୍କାଶୌ ମାନ୍ଦକେତୂ ଇତି ସ୍ମୃତଃ ॥

ବୃଶ୍ଚିକ କନ୍ୟା ମକର ଲଗ୍ନଜାତ ବ୍ୟକ୍ତିମାନଙ୍କର ଶନି ମାରକ ହୁଏ । ମାନ୍ଦିଯୁକ୍ତ ଗ୍ରହ ଓ କେତୁ ଜାତକର ପ୍ରଧାନ ମାରକ ହୁଅନ୍ତି ।

କ୍ରୂରସ୍ଥଶୌ ସ୍ଥିତଃ ପାପଃ ଷଷ୍ଠେ ଚ ନିଧନେ ତଥା ।
ଚନ୍ଦ୍ରସ୍ଥିତେନାରଣା ଦୃଷ୍ଟଃ ସ୍ୱପାକେ ମୃତ୍ୟୁଦୋ ଗ୍ରହଃ ॥
ଶ୍ରୀ. ଘ.

ପାପଗ୍ରହ ନବମ ରାଶିରେ ଥିଲେ ଓ ଲଗ୍ନକୁ ଷଷ୍ଠ ବା ଅଷ୍ଟମ ହୋଇଥିଲେ ତାହାର ଶତ୍ରୁର ଦୃଷ୍ଟିରେ ଥିଲେ ତାହାର ଦଶାନ୍ତର ମରଣ ହୁଏ ।

ଷଷ୍ଠାଷ୍ଟମସ୍ଥୋ ରିପୁଦୃଷ୍ଟମୂର୍ତ୍ତିଃ ପାପଗ୍ରହଃ ପାପଗୃହେ ଯଦି ସ୍ୟାତ୍ ।
ସ୍ୱାନ୍ତର୍ଦଶାୟାଂ ମରଣଂ ଚ ଜନ୍ତୋର୍ଜ୍ଜେୟଂ ସଯୁଦ୍ଧେ
ବିଜିତୋଯଦାନ୍ୟୈଃ ॥ ବୃ. ଜା.

ପାପଗ୍ରହମାନେ ଶତ୍ରୁଦୃଷ୍ଟ ହୋଇ ଷଷ୍ଠ, ଅଷ୍ଟମ କିମ୍ବା ଦ୍ୱାଦଶରେ ପାପଗ୍ରହର ଗୃହରେ ଥିଲେ ସେହିମାନଙ୍କର ସ୍ୱଦଶାନ୍ତର୍ଦଶାରେ ମରଣ ଘଟାନ୍ତି । ସେହି ପାପଗ୍ରହମାନେ ଯୁଦ୍ଧରେ ଜୟୀ ହୋଇଥିଲେ ତେତେଦୂର ମନ୍ଦଫଳ ଦିଅନ୍ତି ନାହିଁ ।

ଗ୍ରହଯୁଦ୍ଧ :—ମଙ୍ଗଳ, ବୁଧ, ବୃହସ୍ପତି, ଶୁକ୍ର ଓ ଶନି ଏମାନେ ଚନ୍ଦ୍ର ସଙ୍ଗରେ ଥିଲେ ସମାଗମ ଓ ପରସ୍ପର ମିଳିତ ହୋଇଥିଲେ ଯୁଦ୍ଧ ସଂଘଟିତ ହୁଏ । ଯୁଦ୍ଧ ନିଯୁକ୍ତ ଦୁଇଟି ଗ୍ରହର ମଧ୍ୟରେ ଯେ ଗ୍ରହ ଅଲ୍ପଜ୍ୟୋତିଃସମ୍ପନ୍ନ ହୋଇ ଦକ୍ଷିଣସ୍ଥ ହେବ ସେ ଗ୍ରହ ପରାଜିତ ହେବ, ଯେ ଗ୍ରହ ନିର୍ମଳ, ଅବିକୃତବର୍ଣ୍ଣ, ବୃହଦାକୃତି ଓ ଉତ୍ତରଦିଗସ୍ଥ ସେ ଜୟୀ ଅଟେ । ଦକ୍ଷିଣସ୍ଥ ହେଲେ ମଧ୍ୟ ନିର୍ମଳ ଓ ବୃହଦାକୃତି ଦିଶୁଥିଲେ ସେ ମଧ୍ୟ ଜୟୀ ଅଟେ । ଶୁକ୍ର ଦକ୍ଷିଣଦିଗସ୍ଥ ହେଲେ ଜୟୀ ଉଭିନ୍ନ ସମସ୍ତେ.

ଉକ୍ତ ଦଶାରେ ମୃତ୍ୟୁ ହୋଇଲେ କହନ୍ତି । ଗ୍ରହମାନଙ୍କ ଯୁଦ୍ଧ ପ୍ରକାର ଅଟେ ।
ଏଥିରେ ସୂର୍ଯ୍ୟସିଦ୍ଧାନ୍ତର ପ୍ରମାଣ ଦେଖନ୍ତୁ —

ତାରାଗ୍ରହାଣାଂ ସଂଯୋଗାତ୍ ସ୍ୟାତାଂ ଯୁଦ୍ଧସମାଗମୌ ।
ସମାଗମଂ ଶଶାଙ୍କେନ ସୂର୍ଯ୍ୟେଣାସ୍ତମନଂ ସହ ॥
ଉଲ୍ଲେଖସ୍ତାରକାସ୍ପର୍ଶାଦ୍ଭେଦେ ଭେଦଃ ପ୍ରକୀର୍ତ୍ତ୍ୟତେ ।
ଯୁଦ୍ଧମଂଶୁବିମର୍ଦ୍ଦାଖ୍ୟମଂଶୁଯୋଗେ ପରସ୍ପରଂ ।
ଅଂଶାଦୂନେ ପସବ୍ୟଂ ସ୍ୟାଦ୍ ଯୁଦ୍ଧମେକୋଽତ୍ର ଚେଦଣୁ । ସୂ. ସି ।
ବିଲଗ୍ନାଧିପତେ ଶତ୍ରୁର୍ଲଗ୍ନସ୍ୟାନ୍ତର୍ଦ୍ଦଶାଂ ଗତଃ ।
କରୋତ୍ୟକସ୍ମାନ୍ମରଣଂ ସତ୍ୟାଚାର୍ଯ୍ୟଃ ପ୍ରଭାଷତେ । ଶ୍ରୀ· ପ ।

ଲଗ୍ନାଧିପତିର ଶତ୍ରୁ ଲଗ୍ନାଧିପତିର ଦଶାରେ ଅନ୍ତର୍ଦ୍ଦଶା ହୋଇ ଥିଲେ ଅକସ୍ମାତ୍ ମୃତ୍ୟୁ ହେବ ବୋଲି ସତ୍ୟାଚାର୍ଯ୍ୟ କହୁଅଛନ୍ତି । ଲଗ୍ନାଧିପତିର ଶତ୍ରୁ ଅଧିଶତ୍ରୁ ହେବେ ଥିଲେ ମୃତ୍ୟୁ ହେବ; ନୋହେଲେ ପୀଡ଼ା ହେବ ।

ଯେଉଁ ଗ୍ରହ ମାରକ ବୋଲି ଠିକ୍ କରିବେ, ସେହି ଗ୍ରହର ଯେ ଯୋଗ ( କାରକ ତତ୍ତ୍ୱ ଦେଖ ) ସେହି ଯୋଗରେ ଜାତକର ମୃତ୍ୟୁ ଘଟିବ ବୋଲି ଠିକ୍ କରିବେ ।,

### ତୀର୍ଥମୃତ୍ୟୁଯୋଗାଃ

ଧର୍ମାଧିପଃ ପଶ୍ୟତି ଧର୍ମଭାବଂ ଲଗ୍ନାଧିପଃ ପଶ୍ୟତି ଚେଦ୍ ବିଲଗ୍ନଂ ।
ମୃତ୍ୟୁଂ ସଦା ପଶ୍ୟତି ମୃତ୍ୟୁନାଥସ୍ତଦା ସୁତୀର୍ଥେ ମରଣଂ ଧ୍ରୁବଂ ସ୍ୟାତ୍ ॥

ନବମାଧିପତି ନବମକୁ, ଲଗ୍ନାଧିପତି ଲଗ୍ନକୁ ଓ ଅଷ୍ଟମାଧିପତି ଅଷ୍ଟମକୁ ଦେଖୁଥିଲେ ଉତ୍ତମ ତୀର୍ଥରେ ମୃତ୍ୟୁ ହେବ ।

ଲଗ୍ନେଶଃ ପୂର୍ଣ୍ଣଦୃଷ୍ଟ୍ୟା ତୁ ମୃତ୍ୟୁଭାବଂ ପ୍ରପଶ୍ୟତି ।
ଲଗ୍ନଂ ବା ରନ୍ଧ୍ରଯୋ ମୃତ୍ୟୋ କାଶ୍ୟାଂ ମୃତ୍ୟୁଂ ସମାଦିଶେତ୍ ॥

ଲଗ୍ନାଧିପତି ଅଷ୍ଟମକୁ ପୂର୍ଣ୍ଣମାତ୍ରାରେ ଦେଖୁଥିଲେ ଏବଂ ଚନ୍ଦ୍ର ଲଗ୍ନରେ ବା ଅଷ୍ଟମରେ ଥିଲେ କାଶୀକ୍ଷେତ୍ରରେ ମରଣ ହୁଏ ।

ସୌମ୍ୟା ଗ୍ରହା ଯଦୈକସ୍ଥ ଶଶିଲଗ୍ନବିବର୍ଜିତାଃ ।
ଭୁକ୍ତ୍ୱା ଚ ବିବିଧାନ୍ ଭୋଗାନ୍ ମ୍ରିୟତେ ଜାହ୍ନବୀଜଲେ ॥

ଶୁଭୋକ୍ତ ଗ୍ରହ ଲଗ୍ନ ଓ ଚନ୍ଦ୍ର ଛଡ଼ା ଅନ୍ୟ କେଉଁଠାରେ ଏକତ୍ରରେ ଥିଲେ ଜାତକ ବିବିଧ ସୁଖଭୋଗ କରି ଶେଷରେ ଗଙ୍ଗାରେ ମୃତ୍ୟୁଲାଭ କରେ । ସେହି ଏକତ୍ରିତ ଶୁଭୋକ୍ତ ଗ୍ରହ ନିର୍ବଳ ହୋଇଥିଲେ ଜାତକର ଗଙ୍ଗାପ୍ରାପ୍ତି ଘଟେ ନାହିଁ ।

ଗୁରୁଣା ସହିତେ ଚନ୍ଦ୍ରେ ମୃତ୍ୟୁଦୃଷ୍ଟେ ଶୁଭଗ୍ରହୈ ।
ଲଗ୍ନପେ ମୃତ୍ୟୁପେ ଧର୍ମେ ମ୍ରିୟତେ ଜାହ୍ନବୀଜଲେ ॥

ବୃହସ୍ପତି ଓ ଚନ୍ଦ୍ର ଏକତ୍ର ଥିଲେ ଅଷ୍ଟମକୁ ଶୁଭଗ୍ରହ ଦେଖୁଥିଲେ, ଲଗ୍ନାଧିପ ଓ ଅଷ୍ଟମାଧିପତି ନବମରେ ଥିଲେ ଜାତକ ଗଙ୍ଗାରେ ମୃତ୍ୟୁଲାଭ କରେ ।

ସପ୍ତଭିର୍ବା ଚତୁର୍ଭିର୍ବା ନିଧନଂ ଯଦି ବୀକ୍ଷ୍ୟତେ ।
ତୀର୍ଥପୂତୋ ଭବେଦ୍ଦୀମାନନ୍ତେ ଭଜତି ଜାହ୍ନବୀଂ ॥

ସାତଟି ବା ଚାରିଟି ଗ୍ରହ ଅଷ୍ଟମ ସ୍ଥାନକୁ ଦେଖିଲେ ଜାତକ ନାନାତୀର୍ଥଭ୍ରମଣରେ ଶରୀର ପବିତ୍ର କରି ଶେଷରେ ଗଙ୍ଗାରେ ପ୍ରାଣତ୍ୟାଗ କରେ ।

ସପ୍ତମୋଽଧ୍ୟାୟଃ ସମାପ୍ତଃ ।

———

# ଅଷ୍ଟମ ଅଧ୍ୟାୟଃ

## ଦଶାନ୍ତର୍ଦଶାନିର୍ଣ୍ଣୟଃ

ଜାତକ ପ୍ରସ୍ତୁତପ୍ରଣାଳୀରେ ଅଷ୍ଟୋତ୍ତରୀ ଓ ବିଂଶୋତ୍ତରୀ ଉଭୟ ଦଶାର ଦଶାଶେଷ ଆନୟନ ନିୟମ କହିଅଛୁଁ । ବର୍ତ୍ତମାନ ଦଶାରେ ଅନ୍ତର୍ଦଶା କପରି ଆଣାଯାଏ ତାହା କହାଯିବ ।

### ଅଷ୍ଟୋତ୍ତରୀ ଅନ୍ତର୍ଦଶା ଆନୟନଂ

ସ୍ବଦଶାବ୍ଦର୍ଦଶାଂ ହତ୍ୱା ନବଭର୍ଗମାହରେତ୍ ।
ଲବ୍ଧାମାସସ୍ତୁ ତଚ୍ଛେଷଂ ପୂରୟିତ୍ୱା ତୁ ବିଂଶତାଂ ।
ଅର୍କେନ୍ଦୁର୍ହୃତା ଦିନଂ ଲବ୍ଧ୍ୟଂ ତଚ୍ଛେଷଂ ଷଷ୍ଟିପୂରିତଂ ।
ନବଭିଷ୍ଟ ହୃତଂ ଜ୍ଞେୟୋ ଲବ୍ଧ୍ୱାଦଣ୍ଡାନ୍ତଦନ୍ତରଂ ॥

ଅଷ୍ଟୋତ୍ତରୀ ଦଶାରେ ଯେଉଁ ଗ୍ରହର ଅନ୍ତର୍ଦଶା ଆଣିବାକୁ ହେବ, ସେହି ଗ୍ରହର ଦଶାବର୍ଷଦ୍ୱାରା ଯେ ଦଶା ତହାର ବର୍ଷକୁ ଗୁଣିଦେଇ ୯ରେ ହରଣ କରିବେ । ଯାହା ଲବ୍ଧ ଆସିବ ତାହା ମାସ । ଅଂଶ ଯାହା ରହିବ ତାହାକୁ ୩୦ରେ ଗୁଣିଦେଇ ୯ରେ ହରଣ କଲେ, ଲବ୍ଧ ଯାହା ଆସିଲା ତାହା ଦିନ । ଅଂଶକୁ ୬୦ରେ ଗୁଣିଲେ ଦଣ୍ଡ ହେବ। ୯ ରେ ହରଣକଲେ ଲବ୍ଧ ଦଣ୍ଡ ବାହାରି ଆସିବ ।

ଉଦାହରଣ—ରବିଦଶାରେ ଚନ୍ଦ୍ର ଅନ୍ତର୍ଦଶାକେତେ ?

ରବିର ଦଶାବର୍ଷ ୬ । ଏହାକୁ ଚନ୍ଦ୍ରର ଦଶାବର୍ଷ ୧୫ ରେ ଗୁଣିଲେ ହେଲା ୬ × ୧୫ = ୯୦ । ଏହାକୁ ୯ରେ ହରଣକଲେ

ଲବ୍ଧଅଙ୍କ ୯୦ ÷ ୯ = ୧୦ ମାସ ଅତଏବ ରବି ଦଶାରେ ଚନ୍ଦ୍ର- ଅନ୍ତର ବ ୦—୧୦-୦ ।

୧. ରବିସ୍ଥୂଳଦଶା ୬ବର୍ଷ

ରବି ଦଶାରେ —

| | | |
|---|---|---|
| ରବି ଅନ୍ତର୍ଦଶା | | ବ ୦-୪-୦ |
| ଚନ୍ଦ୍ର | , | ବ ୦-୧୦-୦ |
| ମଙ୍ଗଳ | ,, | ବ ୦-୫-୧୦ |
| ବୁଧ | ,, | ବ ୦-୧୧-୧୦ |
| ଶନି | ,, | ବ ୦-୬-୨୦ |
| ବୃହସ୍ପତି | ,, | ବ ୧-୦-୨୦ |
| ରାହୁ | ,, | ବ ୦-୮-୦ |
| ଶୁକ୍ର | ,, | ବ ୧-୨-୦ |

୨. ଚନ୍ଦ୍ରସ୍ଥୂଳ ଦଶାକାଳ ୧୫ ବର୍ଷ ।

ଚନ୍ଦ୍ର ଦଶାରେ :-

| | | |
|---|---|---|
| ଚନ୍ଦ୍ରଅନ୍ତର୍ଦଶା | ,, | ବ ୨-୧-୦ |
| ମଙ୍ଗଳ | ,, | ବ ୧-୧-୧୦ |
| ବୁଧ | ,, | ବ ୨-୪-୧୦ |
| ଶନି | ,, | ବ ୧-୪-୨୦ |
| ବୃହସ୍ପତି | ,, | ବ ୨-୭-୨୦ |
| ରାହୁ | ,, | ବ ୧-୮-୦ |
| ଶୁକ୍ର | ,, | ବ ୨-୧୧-୦ |
| ରବି | ,, | ବ ୦-୧୦-୦ |

୩. ମଙ୍ଗଳସ୍ଥୂଳଦଶା ୮ ବର୍ଷ

ମଙ୍ଗଳ ଦଶାରେ

| | | |
|---|---|---|
| ମଙ୍ଗଳ ଅନ୍ତର୍ଦଶା | | ବ ୦-୭-୩-୨୦ |
| ବୁଧ | ,, | ବ ୧-୩-୩-୨୦ |
| ଶନି | ,, | ବ ୦-୮-୨୬-୪୦ |
| ବୃହସ୍ପତି | ,, | ବ ୧-୪-୨୬-୪୦ |
| ରାହୁ | ,, | ବ ୦-୧୦-୨୦-୦ |
| ଶୁକ୍ର | ,, | ବ ୧-୬-୨୦-୦ |
| ରବି | ,, | ବ ୦-୫-୧୦-୦ |
| ଚନ୍ଦ୍ର | ,, | ବ ୧-୧-୧୦-୦ |

୪. ବୁଧ ସ୍ଥୂଳଦଶା ୧୭ ବର୍ଷ ।

ବୁଧ ଦଶାରେ—

| | | |
|---|---|---|
| ବୁଧ ଅନ୍ତର୍ଦଶା | | ବ ୨-୮-୩-୨୦ |
| ଶନି | ,, | ବ ୧-୬-୨୬-୪୦ |
| ବୃହସ୍ପତି | ,, | ବ ୨-୧୧-୨୬-୪୦ |
| ରାହୁ | ,, | ବ ୧-୧୦-୨୦-୦ |
| ଶୁକ୍ର | ,, | ବ ୩-୩-୨୦-୦ |
| ରବି | ,, | ବ ୦-୧୧-୧୦-୦ |
| ଚନ୍ଦ୍ର | ,, | ବ ୨-୪-୧୦ |
| ମଙ୍ଗଳ | ,, | ବ ୧-୩-୩-୨୦ |

୫. ଶନି ସ୍ଥୂଳଦଶା ୧୦ ବର୍ଷ ।

ଶନି ଦଶାରେ :

| | | |
|---|---|---|
| ଶନି ଅନ୍ତର୍ଦଶା | | ବ ୦-୧୧-୩୨୦ |
| ବୃହସ୍ପତି | ” | ବ ୧-୯-୩-୨୦ |
| ରାହୁ | ” | ବ ୧-୧-୧୦-୦ |
| ଶୁକ୍ର | ” | ବ ୧-୧୧-୧୦-୦ |
| ରବି | ” | ବ ୦-୭-୨୦-୦ |
| ଚନ୍ଦ୍ର | ” | ବ ୧-୪ ୨୦-୦ |
| ମଙ୍ଗଳ | ” | ବ ୦-୮-୨୭-୪୦ |
| ବୁଧ | ” | ବ ୧-[illegible]-୨୭-୪୦ |

୬. ବୃହସ୍ପତି ସ୍ଥୂଳଦଶା ୧୯ ବର୍ଷ ।

ବୃହସ୍ପତି ଦଶାରେ :—

| | | |
|---|---|---|
| ବୃହସ୍ପତି ଅନ୍ତର୍ଦଶା | | ବ ୩ ୪ ୩-୨୦ |
| ରାହୁ | ” | ବ ୨-୧-୧୦-୦ |
| ଶୁକ୍ର | ” | ବ ୩-୮-୧୦-୦ |
| ରବି | ” | ବ ୧-୦-୨୦-୦ |
| ଚନ୍ଦ୍ର | ” | ବ ୨-୭-୨୦-୦ |
| ମଙ୍ଗଳ | ” | ବ ୧-୪-୨୭-୪୦ |
| ବୁଧ | ” | ବ ୨-୧୧-୨୭-୪୦ |
| ଶନି | ” | ବ ୧-୯-୩ ୨୦ |

୭. ରାହୁ ସ୍ଥୂଳଦଶା ୧୨ ବର୍ଷ ।

ରାହୁ ଦଶାରେ :—

| | | |
|---|---|---|
| ରାହୁ ଅନ୍ତର୍ଦଶା | | ବ ୧-୪-୦ |
| ଶୁକ୍ର | ” | ବ ୨-୪-୯ |
| ରବି | ” | ବ ୦-୮-୦ |
| ଚନ୍ଦ୍ର | ” | ବ ୧-୮-୦ |
| ମଙ୍ଗଳ | ” | ବ ୦-୧୦-୨୦ |
| ବୁଧ | ” | ବ ୧-୧୦-୨୦ |
| ଶନି | ” | ବ ୧-୧-୨୦ |
| ବୃହସ୍ପତି | ” | ବ ୨-୧-୧୦ |

୮. ଶୁକ୍ର ସ୍ଥୂଳଦଶା ୨୧ ବର୍ଷ

ଶୁକ୍ର ଦଶାରେ :—

| | | |
|---|---|---|
| ଶୁକ୍ର ଅନ୍ତର୍ଦଶା | | ବ ୪-୧ ୦ |
| ରବି | ” | ବ ୧-୨-୦ |
| ଚନ୍ଦ୍ର | ” | ବ ୨-୧୧-୦ |
| ମଙ୍ଗଳ | ” | ବ ୧-୭-୨୦ |
| ବୁଧ | ” | ବ ୩-୩ ୨୦ |
| ଶନି | ” | ବ ୧-୧୧-୧୦ |
| ବୃହସ୍ପତି | ” | ବ ୩-୮-୧ |
| ରାହୁ | ” | ବ ୨-୪-୦ |

## ଅଷ୍ଟୋତ୍ତରୀ ପ୍ରତ୍ୟନ୍ତର୍ଦଶା ଆନୟନଂ

ଅନ୍ତର୍ଦଶାଦ୍ୟୁବୃନ୍ଦଞ୍ଚ ହନ୍ୟାନ୍ତୁ ସ୍ୱବୈର୍ଗ୍ରହସ୍ୟ ଚ ।
ଅଷ୍ଟୋତ୍ତରଶତନାପ୍ତଂ ଘସ୍ରଃଶେଷଂ ପଳାଦକଂ ॥

ଅନ୍ତର ମଧ୍ୟରେ କେଉଁ ପ୍ରତ୍ୟନ୍ତର କେତେ ଜାଣିବାକୁ ହେଲେ ଅନ୍ତରର ଦିନ କାଳ ଗ୍ରହର ଦଶା ( ଯାହାର ପ୍ରତ୍ୟନ୍ତର ଜାଣିବାକୁ ହେବ ) ବର୍ଷଦ୍ୱାରା ଗୁଣି ୧୦୮ ରେ ହରଣ କଲେ ଲବ୍ଧ ଦିନ ଆସିବ । ଅଂଶକୁ ୬୦ ରେ ଗୁଣି ୧୦୮ ରେ ହରଣ କଲେ ଲବ୍ଧ ଦଣ୍ଡ ଆସିବ ।

ଉ.ଦ:—ରବି ଦଶାରେ ରବି ଅନ୍ତର ୦-୪-୦ । ଏହାକୁ ଦିନ କଲେ ହେଲା ୪×୩୦=୧୨୦ ଦିନ । ଏଥିରେ ରବିର ପ୍ରତ୍ୟନ୍ତର କେତେ ଆବଶ୍ୟକ ତେଣୁ ଏହି ଦିନସଂଖ୍ୟାକୁ ଦିନ ସଂଖ୍ୟାକୁ ରବିର ବର୍ଷ ସଂଖ୍ୟା ୬ରେ ଗୁଣିବାରୁ ହେଲା ୧୨୦×୬=୭୨୦ ଦିନ । ଏହାକୁ ୧୦୮ରେ ହରଣ କଲେ ଲବ୍ଧ ପଞ୍ଚକ=୭୨୦÷୧୦୮=୬ ଅଂଶ ରହିଲା ୭୨ । ଏହାକୁ ୬୦ରେ ଗୁଣିବାରୁ ହେଲା=୭୨×୬୦= ୪୩୨୦ ଦଣ୍ଡ । ଏହାକୁ ୧୦୮ରେ ହରଣ କଲେ ଲବ୍ଧ ଆସିଲା ୪୩୨୦ ÷୧୦୮=୪୦ ଦଣ୍ଡ । ରବି ଦଶାରେ ରବି ଅନ୍ତରରେ ରବି ପ୍ରତ୍ୟନ୍ତର =୬ ଦିନ ୪୦ ଦଣ୍ଡ । ଏପରି ଅନ୍ୟାନ୍ୟ ପ୍ରତ୍ୟନ୍ତରମାନ ସାଧନ କରାଯିବ ।

## ବିଂଶୋତ୍ତରୀ ଅନ୍ତର୍ଦ୍ଦଶା ଆନୟନଂ

ଦଶାଂ ଦଶାହତା କାର୍ଯ୍ୟା ଦଶଭିର୍ଭାଗମାହରେତ୍ ।
ଲବ୍ଧଂ ଭବେନ୍ମାସଂ ତ୍ରିଂଶଦ୍ଘ୍ନେ ଚ ଦିନାନି ଚ ॥

ଦଶା ବର୍ଷକୁ ଅନ୍ତର୍ଦଶା ବର୍ଷରେ ଗୁଣି ଗୁଣଫଳକୁ ୧୦ରେ ହରଣ କରିବେ । ଲବ୍ଧ ଯାହା ଆସିବ ତାହା ମାସ । ଅଂଶ ଯାହା ରହିବ ତାକୁ ଦିନ କରି ୧୦ରେ ହରଣ କରିବେ ।

ଉ.ଦ:—ରବି ଦଶାରେ ରବି ଅନ୍ତର୍ଦ୍ଦଶା କେତେ ?

ରବିର ବର୍ଷ ସଂଖ୍ୟାକୁ ତାହାର ବର୍ଷ ସଂଖ୍ୟାରେ ଗୁଣିବାରୁ ହେଲା ୬ × ୬ = ୩୬ । ଏହାକୁ ୧୦ରେ ହରଣ କଲେ ଲବ୍ଧ ଆସିଲା ୩୬ ÷ ୧୦ = ୩, ଅଂଶ ରହିଲା ୬ । ଏହାକୁ ୩୦ରେ ଗୁଣିଲେ ଦିନ ହେଲା = ୩୦ × ୬ = ୧୮୦ ଦିନ । ଏହାକୁ ୧୦ରେ ହରଣ କରାଯିବାରୁ ଲବ୍ଧ ଆସିଲା ୧୮୦ ÷ ୧୦ = ୧୮ ଦିନ ।

ରବି ଦଶାରେ ରବି ଅନ୍ତର୍ଦ୍ଦଶା ବ ୦-୩-୧୮ ।

୧. ରବି ସ୍ଥୂଳଦଶା ୬ବର୍ଷ

ରବି ଦଶାରେ :

| | | |
|---|---|---|
| ରବି | ଅନ୍ତର୍ଦ୍ଦଶା | ବ ୦-୩-୧୮ |
| ଚନ୍ଦ୍ର | ,, | ବ ୦-୬-୦ |
| ମଙ୍ଗଳ | ,, | ବ ୦-୪-୬ |
| ରାହୁ | ,, | ବ ୦-୧୦-୨୪ |
| ବୃହସ୍ପତି | ,, | ବ ୦-୯-୧୮ |
| ଶନି | ,, | ବ ୦-୧୧-୧୨ |
| ବୁଧ | ,, | ବ ୦-୧୦-୬ |
| କେତୁ | ,, | ବ ୦-୪-୬ |
| ଶୁକ୍ର | ,, | ବ ୧-୦-୦ |

୨. ଚନ୍ଦ୍ର ସ୍ଥୂଳଦଶା ୧୦ ବର୍ଷ

ଚନ୍ଦ୍ରଦଶାରେ :—

| | | |
|---|---|---|
| ଚନ୍ଦ୍ର | ଅନ୍ତର୍ଦ୍ଦଶା | ବ ୦-୧୦-୦ |
| ମଙ୍ଗଳ | ,, | ବ ୦-୭-୦ |
| ରାହୁ | ,, | ବ ୧-୬-୦ |
| ବୃହସ୍ପତି | ,, | ବ ୧-୪-୦ |
| ଶନି | ଅନ୍ତର୍ଦ୍ଦଶା | ବ ୧-୭-୦ |
| ବୁଧ | ,, | ବ ୧-୫-୦ |
| କେତୁ | ,, | ବ ୦-୭-୦ |
| ଶୁକ୍ର | ,, | ବ ୧-୮-୦ |
| ରବି | ,, | ବ ୦-୬-୦ |

୩. ମଙ୍ଗଳ ସ୍ଥୂଳଦଶା ୭ବର୍ଷ

ମଙ୍ଗଳ ଦଶାରେ :—

| | | |
|---|---|---|
| ମଙ୍ଗଳ | ଅନ୍ତର୍ଦ୍ଦଶା | ବ ୦-୪-୨୭ |
| ରାହୁ | ,, | ବ ୧-୦-୧୮ |
| ବୃହସ୍ପତି | ,, | ବ ୦-୧୧-୬ |
| ଶନି | ,, | ବ ୧-୧-୯ |
| ବୁଧ | ,, | ବ ୦-୧୧-୨୭ |
| କେତୁ | ,, | ବ ୦-୪-୨୭ |
| ଶୁକ୍ର | ,, | ବ ୧-୨-୦ |
| ରବି | ,, | ବ ୦-୪-୬ |
| ଚନ୍ଦ୍ର | ,, | ବ ୦-୭-୦ |

## ୫. ରାହୁ ସ୍ଥୂଳଦଶା ୧୮ ବର୍ଷ

ରାହୁ ଦଶାରେ :

| | | |
|---|---|---|
| ରାହୁ ଅନ୍ତର୍ଦ୍ଦଶା | | ବ୨-୮-୧୨ |
| ବୃହସ୍ପତି | ,, | ବ୨-୪-୨୪ |
| ଶନି | ,, | ବ୨-୧୦-୬ |
| ବୁଧ | ,, | ବ୨-୬-୧୮ |
| କେତୁ | ,, | ବ୧-୦-୧୮ |
| ଶୁକ୍ର | ,, | ବ୩-୦-୦ |
| ରବି | ,, | ବ୦-୧୦-୨୪ |
| ଚନ୍ଦ୍ର | ,, | ବ୧-୬-୦ |
| ମଙ୍ଗଳ | ,, | ବ୧-୦-୧୮ |

## ୬. ବୃହସ୍ପତି ସ୍ଥୂଳଦଶା ୧୬ ବର୍ଷ

ବୃହସ୍ପତି ଦଶାରେ :—

| | | |
|---|---|---|
| ବୃହସ୍ପତି ଅନ୍ତର୍ଦ୍ଦଶା | | ବ୨-୧-୧୮ |
| ଶନି | ,, | ବ୨-୬-୧୨ |
| ବୁଧ | ,, | ବ୨-୩-୬ |
| କେତୁ | ,, | ବ୦-୧୧-୬ |
| ଶୁକ୍ର | ,, | ବ୨-୮-୦ |
| ରବି | ,, | ବ୦-୯-୧୮ |
| ଚନ୍ଦ୍ର | ,, | ବ୧-୪-୦ |
| ମଙ୍ଗଳ | ,, | ବ୦-୧୧-୬ |
| ରାହୁ | ,, | ବ୨-୪-୨୪ |

## ୭. ଶନି ସ୍ଥୂଳଦଶା ୧୯ ବର୍ଷ

ଶନି ଦଶାରେ—

| | | |
|---|---|---|
| ଶନି ଅନ୍ତର୍ଦ୍ଦଶା | | ବ୩-୦-୩ |
| ବୁଧ | ,, | ବ୨-୮-୯ |
| କେତୁ | ,, | ବ୧ ୧ ୯ |
| ଶୁକ୍ର | ,, | ବ୩-୨-୦ |
| ରବି | ,, | ବ୦-୧୧-୧୨ |
| ଚନ୍ଦ୍ର | ,, | ବ୧-୭-୦ |
| ମଙ୍ଗଳ | ,, | ବ୧-୧-୯ |
| ରାହୁ | ,, | ବ୨-୧୦-୬ |
| ବୃହସ୍ପତି | ,, | ବ୨-୬-୧୨ |

## ୮. ବୁଧ ସ୍ଥୂଳଦଶା ୧୭ ବର୍ଷ

ବୁଧ ଦଶାରେ—

| | | |
|---|---|---|
| ବୁଧ ଅନ୍ତର୍ଦ୍ଦଶା | | ବ୨-୪-୨୭ |
| କେତୁ | ,, | ବ୦-୧୧-୨୭ |
| ଶୁକ୍ର | ,, | ବ୨-୧୦-୦ |
| ରବି | ,, | ବ୦-୧୦-୬ |
| ଚନ୍ଦ୍ର | ,, | ବ୧-୫-୦ |
| ମଙ୍ଗଳ | ,, | ବ୦-୧୧-୨୭ |
| ରାହୁ | ,, | ବ୨-୬-୧୮ |
| ବୃହସ୍ପତି | ,, | ବ୨-୩-୬ |
| ଶନି | ,, | ବ୨-୮-୯ |

୮. କେତୁ ସ୍ଥୂଳଦଶା ୭ ବର୍ଷ

କେତୁ ଦଶାରେ :—

| | | |
|---|---|---|
| କେତୁ ଅନ୍ତର୍ଦଶା | ବ | ୦-୪-୨୭ |
| ଶୁକ୍ର ,, | ବ | ୧-୨ ୦ |
| ରବି ,, | ବ | ୦-୪-୬ |
| ଚନ୍ଦ୍ର ,, | ବ | ୦-୭-୦ |
| ମଙ୍ଗଳ ,, | ବ | ୦-୪-୨୭ |
| ରାହୁ ,, | ବ | ୧-୦ ୧୮ |
| ବୃହସ୍ପତି ,, | ବ | ୦-୧୧-୬ |
| ଶନି ,, | ବ | ୧-୧-୯ |
| ବୁଧ ,, | ବ | ୦-୧୧-୨୭ |

୯. ଶୁକ୍ର ସ୍ଥୂଳଦଶା ୨୦ ବର୍ଷ

ଶୁକ୍ର ଦଶାରେ :—

| | | |
|---|---|---|
| ଶୁକ୍ର ଅନ୍ତର୍ଦଶା | ବ | ୩-୪-୦ |
| ରବି ,, | ବ | ୧-୦-୦ |
| ଚନ୍ଦ୍ର ,, | ବ | ୧-୮-୦ |
| ମଙ୍ଗଳ ,, | ବ | ୧-୨-୦ |
| ରାହୁ ,, | ବ | ୩ ୦-୦ |
| ବୃହସ୍ପତି ,, | ବ | ୨-୮-୦ |
| ଶନି ,, | ବ | ୩-୨-୦ |
| ବୁଧ ,, | ବ | ୨ ୧୦-୦ |
| କେତୁ ,, | ବ | ୧-୨-୦ |

## ବିଂଶୋତ୍ତରୀ ପ୍ରତ୍ୟନ୍ତର୍ଦଶା ଆନୟନଂ

ଅନ୍ତର୍ଦଶାଂ ଦିନଂ କୃତ୍ୱା ସ୍ୱଦଶା ଭିର୍ଗୁଣେତ୍ ପୁନଃ ।
ବିଂଶୋତ୍ତରଶତେନାପ୍ତଂ ଘସ୍ରାଃ ଶେଷଂ ପଳାଦିକଂ ॥

ଯେଉଁ ଅନ୍ତରର ପ୍ରତ୍ୟନ୍ତର ଆଣିବାକୁ ହେବ, ସେହି ଅନ୍ତର କାଳକୁ ଦିନ କରି ପ୍ରତ୍ୟନ୍ତର ଦଶାବର୍ଷ ସଂଖ୍ୟାରେ ଗୁଣି ୧୨୦ ରେ ହରଣ କଲେ ପ୍ରତ୍ୟନ୍ତର କାଳ ବାହାରି ଆସିବ ।

ଉ. ଦ :—ରବି ଅନ୍ତରରେ ରବି ପ୍ରତ୍ୟନ୍ତର କେତେ ? ରବି ଦଶାରେ ରବି ଅନ୍ତର ୩ ମାସ ୧୮ ଦିନ—ଏହାକୁ ଦିନ କଲେ ହେଲା ୧୦୮ ଦିନ, ଦଶାବର୍ଷ ସଂଖ୍ୟା ୬ ରେ ଗୁଣିବାରୁ ହେଲା ୬୪୮ ଦିନ; ୧୨୦ରେ ହରଣ କଲେ ଲବ୍ଧ ଆସିଲା ୬୪୮ ÷ ୧୨୦ = ୫ ଦିନ, ଅଂଶ ରହିଲା ୪୮ ଦିନ, ଦିନକ ୬୦ ଦଣ୍ଡରେ ଗୁଣିବାରୁ ହେଲା

୨୮୮୦ ଦଣ୍ଡ । ୧୨୦ରେ ହରଣ କଲେ ଲବ୍ଧ ଆସିଲା ୨୮୮୦ ÷ ୧୨୦ =୨୪ ଦଣ୍ଡ । ରବି ଦଶାରେ ରବି ଅନ୍ତରରେ ରବି ପ୍ରତ୍ୟନ୍ତର ୫ ଦିନ ୨୪ ଦଣ୍ଡ । ଏହିପରି ଅନ୍ୟାନ୍ୟ ପ୍ରତ୍ୟନ୍ତରମାନ ସାଧନ କରିବେ ।

ଜାତକ ଦେଖିବାକୁ ହେଲେ ପ୍ରଥମେ ଜାତକର ବୟସ ନିଶ୍ଚୟ କରିବେ । ଜନ୍ମକାଳରୁ କେଉଁ ଦଶାରୁ କେତେ ବାକି ଥିଲା ଦେଖି ତାର ପର ପର ଦଶା ବର୍ତ୍ତମାନ ନିଶାଣି ବର୍ତ୍ତମାନ-କାଳର ନିକଟ ଦଶା ପର୍ଯ୍ୟନ୍ତ ଆଣି କେଉଁ ଦଶାରେ କେଉଁ ଅନ୍ତର ପଡୁଛି ହିସାବ କରି ଆଣିବେ । ଦଶାର ବଳାବଳ ଓ ଅନ୍ତରର ବଳାବଳ ସୂକ୍ଷ୍ମାନୁସୂକ୍ଷ୍ମ ଭାବେ ବିଚାର କରି ତାହା କେତେ ପରିମାଣରେ ଶୁଭଫଳଦାୟକ ଓ କେତେ ପରିମାଣରେ ଅଶୁଭ ଫଳଦାୟକ ଠିକ୍ କରି ଶୁଭାଶୁଭ ଫଳ କହିବେ ।

ରବିଦଶା ଶୁଭାଶୁଭଫଳବିଚାରଃ ।

ସୌର୍ଯ୍ୟାଂସ୍ବଂ ନଖଦନ୍ତଚର୍ମକନକକ୍ରୌର୍ଯ୍ୟାଧ୍ବଭୂପାହବି—
ତୈକ୍ଷ୍ୟଂ ଧୈର୍ଯ୍ୟଜୟୌ ମୁଦ୍ୟମରତଃ ଖ୍ୟାତପ୍ରତାପୋନ୍ନତଃ ।
ଭାର୍ଯ୍ୟାପୁତ୍ରଧନାରିଶସ୍ତ୍ରହୁତଭୁଗ ଭୂପୋଭବା ବ୍ୟାପଦ—
ସ୍ତ୍ୟାଗୀ ପାପରତଃ ସ୍ବଭୃତ୍ୟକଲହୋ ହୃଦ୍ରୋଗପୀଡ଼ାମୟଃ ॥
ବୃ. ଜା. ।

ରବି ଦଶା ଶୁଭ ହୋଇଥିଲେ ତାହାର ଦଶା ଭୋଗକାଳରେ ଜାତକ ସ୍ବର୍ଣ୍ଣ, ସୁଗନ୍ଧି ଦ୍ରବ୍ୟ, ନଖ, ଦନ୍ତ, ଚର୍ମ ଇତ୍ୟାଦି ବ୍ୟାପାରରୁ, କ୍ରୂରକର୍ମାଦିରୁ, ରାଜାଠାରୁ, ସଂଗ୍ରାମ ହେତୁରୁ, ଧୈର୍ଯ୍ୟ ଓ ନାନାପ୍ରକାର ଉଦ୍ୟମ ହେତୁରୁ ଧନାଦି ଲାଭ କରିଏ । ସମସ୍ତ ବିଷୟରେ ଉନ୍ନତି କରିଏ ।

ଅଶୁଭ ରବି ତାହାର ଦଶାଭୋଗକାଳରେ ଭାର୍ଯ୍ୟା ଓ ପୁତ୍ରଠାରେ ପୀଡ଼ା, ଶତ୍ରୁଠାରୁ ଉପଦ୍ରବ ପ୍ରାପ୍ତି, ରାଜା ସହ ଶତ୍ରୁତା, ଅଗ୍ନି ଉତ୍ପାତହେତୁକ କ୍ଷତି, ଉଦ୍ୟମହୀନତା, ପାପକାର୍ଯ୍ୟରେ ପ୍ରବେଶ, ନିଜର ଆତ୍ମୀୟ ଓ ଭୃତ୍ୟ ସହ କଳହ ହୁଏ । (ପାଠକଗଣ ଗ୍ରହର କାରକ ନିର୍ଣ୍ଣୟରୁ ରବି ପ୍ରଭୃତି ସମସ୍ତ ଗ୍ରହଙ୍କର କାରକ ବସ୍ତୁର ଦେଖି ଶୁଭାଶୁଭ ବସ୍ତୁର କଳ ଫଳ କହିବେ । ନିମ୍ନରେ ରବି ପ୍ରଭୃତି ସମସ୍ତ ଗ୍ରହଙ୍କର ଅନ୍ତର୍ଦ୍ଦଶାର ଶୁଭାଶୁଭ ଫଳ ଶ୍ଳୋକଗୁଡ଼ିକ ଲେଖାଗଲା । ଅନ୍ତର୍ଦ୍ଦଶା ଫଳଜ୍ଞାପକ ଶ୍ଳୋକଗୁଡ଼ିକ ନିତାନ୍ତ ସହଜ ହେବାରୁ ଅର୍ଥ ଦିଆଗଲା ନାହିଁ । ଶୁଭ ଫଳଦାୟକ ହେଲେ ଗ୍ରହ ଶୁଭ ଫଳ ପ୍ରଦାନ କରେ ଓ ଅଶୁଭ ଫଳଦାୟକ ହେଲେ ଗ୍ରହ ଅପର ଫଳ ପ୍ରଦାନ କରେ ଏହା ଜ୍ଞାନ କରିବା ନିମିତ୍ତ ଶ୍ଳୋକ ଆରମ୍ଭରେ ଯଥାକ୍ରମେ "ଶୁ" ଓ "ଅ" ଏହି ଦୁଇଟି ଅକ୍ଷର ଦିଆ ଯାଇଅଛି । ଯଥା—ଶୁ=ଶୁଭ ହୋଇଥିଲେ ଅ=ଅଶୁଭ ହୋଇଥିଲେ) ।

ର. ରବି (ଶୁ) ଶୋଭନଂ ସ୍ୱାନ୍ତରେ ଭାନୋର୍ବନ୍ଧୂନାମୁପକାରକୃତ୍ ।
ଲାଭଂ ତଥା ଧନଂ ସୌଖ୍ୟଂ ପୁତ୍ରଶତ୍ରୁଂ ସୁଖାବହଂ ॥
(ଅ) ଅର୍ଥନାଶଂ ମନସ୍ତାପୋ ବହ୍ନିବାଧା ନୃପାଦ୍ଭୟଂ ।
ପୁତ୍ରନାଶଂ ସୁହୃଦ୍‌କ୍ଳେଶଂ ସୂର୍ଯ୍ୟସ୍ୟାନ୍ତର୍ଗତେ ରବୌ ॥

ର. ଚନ୍ଦ୍ର (ଶୁ) ରିପୋର୍ବିନାଶଃ ସୌଖ୍ୟାପ୍ତିର୍ବାନ୍ୟବଋଦ୍ଧସ୍ୟାଦିକଂ ।
ରବେରନ୍ତର୍ଗତେ ଚନ୍ଦ୍ରଃ କରୋତି ମନସେପ୍ସିତଂ ॥
(ଅ) ପାପଚନ୍ଦ୍ରଦଶାୟାଂ ତୁ ଶୀତଜ୍ୱରସମାଗମଃ ।
ମାତୁର୍ବାସ୍ୟ ରୋଗାତ୍ତ ରଜାର୍ତ୍ତୌ ଧନନାଶକୃତ୍ ॥

ର. ମଙ୍ଗଳ (ଶୁ) ପ୍ରବାଳମୁକ୍ତାହେମାଦି ଧନଂ ପ୍ରାପ୍ନୋତି ଭୂପତେଃ ।
ରବେରନ୍ତର୍ଗତେ ଭୌମେ ବହୁଳସୁଖମଶ୍ନୁତେ ॥

(ଅ) ଅନ୍ତରେ ଭୂମିପୁତ୍ରସ୍ୟ ଗୃହସାରେ ଧନକ୍ଷୟଃ ।
ବ୍ରଣାଦ ସ୍ତ୍ରୀବିଧଶ୍ଚୈବ ପୈତ୍ର୍ୟରୋଗାଗମୋ ନୃଣାଂ ॥

ର. ରାହୁ (ଶୁ) ରୋଚନାଶଂ ମନଃସୌଖ୍ୟଂ ଧର୍ମଦ ନରତୋ ନରଃ ।
କାର୍ଯ୍ୟଲାଭଶ୍ଚ ଭବତି ସୂର୍ଯ୍ୟସ୍ୟାନ୍ତର୍ଗତେଽପ୍ୟହୌ ॥

(ଅ) ସର୍ବମପ୍ୟଫଳଂ ବ୍ୟର୍ଥଂ ବନ୍ଧୁନାଶଃ ପଶୁକ୍ଷୟଃ ।
ସୂର୍ଯ୍ୟସ୍ୟାନ୍ତର୍ଗତେ ରାହୌ ଶୌର୍ଯ୍ୟହାନିର୍ବଳକ୍ଷୟଃ ॥

ର. ବୃହସ୍ପତି (ଶୁ) କାର୍ଯ୍ୟଲାଭୋ ମନଃସୌଖ୍ୟଂ ଲୋକାନୁଗ୍ରହବୈଭବଃ ।
ସ୍ୱଜନସମ୍ମାନକୀର୍ତ୍ତିଶ୍ଚ ଗୁରୌ ରବିଦଶାଂଗତେ ॥

(ଅ) ପୁତ୍ରକ୍ଲେଶଂ ସୁହୃତ୍କ୍ଲେଶଂ ଗୃହାର୍ଥାଦ୍ୱନ୍ଦ୍ୱରେ ଭବେତ୍ ।
କଳହୋ ବନ୍ଧୁବର୍ଗେଣ ଗୁରୌ ରବିଦଶାଂଗତେ ॥

ର. ଶନି (ଶୁ) ଦାସୀଦାସସମାଯୋଗୋ କୃଷ୍ଣବସ୍ତୁସମାଗମଃ ।
ସ୍ୱଦେଶେ ଧନଲାଭଃ ସ୍ୟାତ୍ ଶନୌ ରବିଦଶାଂଗତେ ॥

(ଅ) ରାଜବାଧା କାର୍ଯ୍ୟହାନିଃ କଳହଃ ସହବାନ୍ଧବୈଃ ।
ବଳକ୍ଷୟୋ ଦୌର୍ମନସ୍ୟଂ ସୂର୍ଯ୍ୟସ୍ୟାନ୍ତର୍ଗତେ ଶନୌ ।

ର. ବୁଧ (ଶୁ) ଅର୍ଥଲାଭଃ ପଦାଧିକ୍ୟଂ ବସ୍ତ୍ରାଦ୍ୟାଭରଣାନି ଚ ।
ସମ୍ଭାବନା ସୁତୈର୍ଲୋକେ ସୂର୍ଯ୍ୟସ୍ୟାନ୍ତର୍ଗତେ ବୁଧେ ॥

(ଅ) ସୁଖାର୍ଥନାଶୋଽପ୍ୟୁରୁରୋଗଖିନ୍ନବୁଦ୍ଧ୍ୟମନସ୍ତ୍ୱଂ ବ୍ୟସନାଗମଶ୍ଚ ।
କୃପାନ୍ନଦାନେ ସକଳାର୍ଥନାଶୋ ବୁଧସ୍ୟ ତିଗ୍ମାଂଶୁଦଶାବିପାକେ ॥

ର. କେତୁ (ଶୁ) ପୁଣ୍ୟତୀର୍ଥାଦିଲାଭଶ୍ଚ ପୁରାଣପଠନାଦିକଂ ।
ଜ୍ୟୋତିଃଶାସ୍ତ୍ରପ୍ରସଙ୍ଗୋ ବା ରବେରନ୍ତର୍ଗତେ ଶିଖୀ ॥

(ଖ) ଦେଶତ୍ୟାଗୋ ବନ୍ଧୁନାଶଃ ବ୍ୟାଧିପୀଡ଼ାପରିପ୍ଲୁତଃ ।
ପଦଚ୍ୟୁତଃ ସ୍ଥାନନାଶୋ ନୀଚଦ୍ୱେଷୋଽଭିଜାୟତେ ॥

ର. ଶୁକ୍ର (ଶୁ) ସ୍ୱୀୟର୍କ୍ଷେ ଭୂମିଲାଭଶ୍ଚ ସ୍ତ୍ରୀବର୍ଗାଚ୍ଚ ଧନାଗମଃ ।
ଶ୍ୱେତଦ୍ରବ୍ୟୋପଲବ୍ଧିଶ୍ଚ ଛତ୍ରବସ୍ତ୍ରମବଭୂଷଣଂ ॥
(ଖ) ନୀଚକ୍ଷେ ନେତ୍ରରୋଗଶ୍ଚ ସ୍ତ୍ରୀପୀଡ଼ାପି ଧନକ୍ଷୟଃ ।
ମୃତ୍ୟୁର୍ଥିକଜ୍ୱରପ୍ରାପ୍ତୀ ରବେରନ୍ତର୍ଗତେ ଭୃଗୌ ॥
ରବି ଦଶାଫଳ ସମାପ୍ତ ।

---

ଚନ୍ଦ୍ରଦଶା ଶୁଭାଶୁଭଫଳବିସ୍ତରଃ ।
ଇନ୍ଦୋଃ ପ୍ରାପ୍ୟ ଦଶାଂ ଫଲାନି ଲଭତେ ମନ୍ତ୍ରଦ୍ୱିଜାତ୍ୟୁଦ୍ଭବା
ନ୍ୟିକ୍ଷୁକ୍ଷୀରବିକାରବସ୍ତ୍ରକୁସୁମକ୍ରୀଡ଼ାତିଳାନ୍ନଶ୍ରମୈଃ ।
ନିଦ୍ରାଲସ୍ୟମୃଦୁଦ୍ୱିଜାମରରତିଃ ସ୍ତ୍ରୀଜନ୍ମମେଧାବିତା
କୀର୍ତ୍ୟର୍ଥୋପଚୟକ୍ଷୟୌ ଚ ବଲଭଦ୍ବୈରଂ ସ୍ୱପକ୍ଷେଣ ଚ ॥
ବୃ. ଜା. ।

ଚନ୍ଦ୍ର ଦଶା ଶୁଭ ହୋଇଥିଲେ ଜାତକ ସେହି ଦଶାଭୋଗକାଳରେ ନାନାପ୍ରକାର ମନ୍ତ୍ରାଦି ପ୍ରୟୋଗ ହେତୁକ, ବ୍ରାହ୍ମଣର ସହାୟ ହେତୁରୁ, ପଟ୍ଟବସ୍ତ୍ରାଦିର କ୍ରୟବିକ୍ରୟରୁ ଧନାଦି ଲାଭ କରେ । ନାନା ପ୍ରକାର ଭୋଗ ବିଳାସ, ମିଷ୍ଟାନ୍ନାଦି ଭୋଜନ, ପୁଷ୍ପଚନ୍ଦନାଦି ବେଶ, ବୁଦ୍ଧିବୃତ୍ତିର ବୃଦ୍ଧି ଓ କନ୍ୟାଜନ୍ମାଦି ହୁଏ ।

ଅଶୁଭ ଚନ୍ଦ୍ର ତାହାର ଦଶାଭୋଗ କାଳରେ ପାପକର୍ମରେ ପ୍ରବେଶ, କୀର୍ତ୍ତିନାଶ, ଧନବ୍ୟୟ ଏବଂ ଆତ୍ମୀୟାଦିଙ୍କ ସହିତ ଶତ୍ରୁତା କରାଏ । (ଚନ୍ଦ୍ରର କାରକବଳର ବ୍ୟବହାର କରିବ) ।

## ଚନ୍ଦ୍ରାନ୍ତର୍ଦଶାଫଳବିଚାରଃ ।

ଚ. ଚନ୍ଦ୍ର (ଶୁ) ଆରୋଗ୍ୟଂ ଧନସମ୍ପତ୍ତିର୍ଭୂଷଣଂ ବାହନଂ ତଥା ।
ମିତ୍ରାଣାଂ ପୋଷଣଂ ତଦ୍‌ବଚ୍ଚନ୍ଦ୍ରସ୍ୟାନ୍ତର୍ଦ୍ଦଶାଫଳଂ ॥
(ଅ) ବୈରଂ ସ୍ୱମିତ୍ରୈର୍ନିଜବନ୍ଧୁଦାରୈଃ ସୌଖ୍ୟାର୍ଥନାଶଂ-
ପ୍ରକରୋତି ଶୀଘ୍ରଂ ।
ଶ୍ଲେଷ୍ମୋଦୟଂ ବାତକଫୋଦୟଞ୍ଚ କାନ୍ତିକ୍ଷୟଶ୍ଚନ୍ଦ୍ରଦଶାବିପାକେ ॥

ଚ. ମଙ୍ଗଳ (ଶୁ) ଶତ୍ରୂପଦ୍ରବନାଶଃ ସ୍ୟାନ୍ନିଜବନ୍ଧୁସମାଗମଃ ।
ଅନ୍ନପାନାଦିସୌଖ୍ୟଞ୍ଚ ଚନ୍ଦ୍ରସ୍ୟାନ୍ତର୍ଗତେ କୁଜେ ॥
(ଅ) ତ୍ୱଗ୍‌ଦୋଷଃ ପିତ୍ତପୀଡ଼ା ଚ ଶସ୍ତ୍ରାଗ୍ନିର୍ଜ୍ୱରସମ୍ଭବଃ ।
ନରାଣାଂ ସମ୍ଭବନ୍ତ୍ୟେତେ ଚନ୍ଦ୍ରସ୍ୟାନ୍ତର୍ଗତେ କୁଜେ ॥

ଚ. ରାହୁ (ଶୁ) ବୈରିନାଶସ୍ତଥା ସୌଖ୍ୟଂ ବନ୍ଧୁବର୍ଗସମାଗମଃ ।
ଚନ୍ଦ୍ରସ୍ୟାନ୍ତର୍ଗତେ ରାହୋର୍ଧନଲାଭଶ୍ଚ ନୈର୍ଋତାତ୍ ॥
(ଅ) ବୈରିବର୍ଗକୃତା ପୀଡ଼ା ବନ୍ଧୁନାଶୋ ଧନକ୍ଷୟଃ ।
ଚନ୍ଦ୍ରସ୍ୟାନ୍ତର୍ଗତେ ରାହୌ ସର୍ବଦା ସୁଖନାଶନଂ ॥

ଚ. ବୃହସ୍ପତି (ଶୁ) ରାଜପୂଜା ଧନପ୍ରାପ୍ତିର୍ବନ୍ଧୁଭୃତ୍ୟସମାଗମଃ ।
ଧର୍ମଲାଭସୁଖାନି ସ୍ୟୁର୍ବସନାଭରଣାଦିକଂ ॥
(ଅ) ଧନଧାନ୍ୟବିନାଶଶ୍ଚ ସୁତପୀଡ଼ା ପ୍ରଜାୟତେ ।
ପରିଜନ୍ୟୋ ରାଜପୀଡ଼ା ବିଧୋରନ୍ତର୍ଗତେ ଗୁରୌ ॥

ଚ. ଶନି (ଶୁ) ନାନାପ୍ରକାରମର୍ଥାପ୍ତିଂ ଧନଧାନ୍ୟାଦିବର୍ଦ୍ଧନଂ ।
ସ୍ୱଦେଶେ ଧନଲାଭଶ୍ଚ ଶନୌ ଚନ୍ଦ୍ରଦଶାଂଗତେ ॥

(ଅ) ନିଗଡ଼ଂ ମାନହାନିଃ ସ୍ୟାଦଭକ୍ଷସ୍ୟ ଚ ଭକ୍ଷଣଂ ।
ଅନ୍ୟକାଳେନ ସଂଯୋଗଂ ଚନ୍ଦ୍ରସ୍ୟାନ୍ତର୍ଗତେ ଶନୌ
ନିଗଡ଼ = ବନ୍ଧନ ।

ଚ. ବୁଧ (ଶୁ) ଶିଳ୍ପାଦିଜ୍ଞାନକୁଶଳଃ ପଠନାଦୌ ସଦା ରତଃ ।
ଜାୟତେ କନ୍ୟକାଲାଭୋ ଚନ୍ଦ୍ରସ୍ୟାନ୍ତର୍ଗତେ ବୁଧେ ॥
(ଅ) ବୁଦ୍ଧିହୀନୋ ବ୍ୟର୍ଥଚିନ୍ତା କଣ୍ଠେ ଶ୍ଳେଷ୍ମବିକାରଧୃକ୍ ।
ସ୍ୱଜପୀଡ଼ା ମାନହାନିଶ୍ଚନ୍ଦ୍ରସ୍ୟାନ୍ତର୍ଗତେ ବୁଧେ ॥

ଚ. କେତୁ (ଶୁ) ଚନ୍ଦ୍ରସ୍ୟ ପାକେ ଶିଖିନୋନ୍ତରସ୍ଥେତ୍
ମିତ୍ରାଦି ଧର୍ମାଦିକସୌଖ୍ୟମୁଚ୍ଚୈଃ ।
ଉଷ୍ଟ୍ରାଦିକୃଷ୍ଣାମ୍ବରଧାନ୍ୟଲବ୍ଧେ ଯାନାଦି ସର୍ବଂ ସୁପୁଣ୍ୟଲାଭଃ ॥
(ଅ) ଭୂତାବେଶଃ ସର୍ପଭୀତିଃ ସ୍ତ୍ରୀପୁତ୍ରାଦିବିୟୋଗିତା ।
ମୂତ୍ରକୃଚ୍ଛ୍ରାଦିରୋଗଶ୍ଚ ଚନ୍ଦ୍ରସ୍ୟାନ୍ତର୍ଗତେ ଧ୍ୱଜେ ॥

ଚ. ଶୁକ୍ର (ଶୁ) କନ୍ୟାଜନ୍ମସୁଖପ୍ରାପ୍ତିଃ ସ୍ତ୍ରୀସଙ୍ଗୋ ଜଳସ୍ଥଃ ସୁଖଂ ।
ସେବ୍ୟତେ ବନ୍ଧୁନାଶ୍ଚବିବାହୋ ବ୍ୟୟଶୂନ୍ୟତା ॥
(ଅ)ସ୍ୱବାନ୍ଧବୈର୍ମିତ୍ରସୁତୈଶ୍ଚ ବୈରଂ ଶତ୍ରୁଦ୍ଭୟଂ କାନ୍ତକଳାର୍ଥନାଶଂ ।
ପ୍ରବାଳମୁକ୍ତାରଜତାଦିକାନାଂ ନାଶଂ ବଦେତ୍ ତତ୍ରକଳତ୍ରକଷ୍ଟଂ ॥

ଚ. ରବି (ଶୁ) ଜନପ୍ରଭାବସୌଭାଗ୍ୟଂ ବ୍ୟାଧିନାଶୋ ରିପୁକ୍ଷୟଃ ।
ଐଶ୍ୱର୍ଯ୍ୟମତୁଳଂ ନିତ୍ୟଂ ଚନ୍ଦ୍ରସ୍ୟାନ୍ତର୍ଗତେ ରବୌ ॥
(ଅ) ଜ୍ୱରୋଷ୍ଟାଦିମହାପୀଡ଼ା ସ୍ୱଜନୈଃ କଳହୋ ଭବେତ୍ ।
ମିତ୍ରବନ୍ଧୁବିନାଶଶ୍ଚ ଚନ୍ଦ୍ରସ୍ୟାନ୍ତର୍ଗତେ ରବୌ ॥

ଚନ୍ଦ୍ରଦଶାଫଳ ସମାପ୍ତ ।

— —

ମଙ୍ଗଳଦଶାଫଳବିସ୍ତରଃ ।

ଭୌମସ୍ୟାବ୍ଦମର୍ଦ୍ଦଭୂପସଦନଜକ୍ଷିତ୍ୟାବକାଶୋବ୍ୟୈର୍ଧନଂ
ପ୍ରଦ୍ୱେଷଃ ସୁତମିତ୍ରଦାରସହଜୈର୍ବିଦ୍ୱଦ୍‌ଗୁରୁଦ୍ୱେଷ୍ଟୃତା ।
ତୃଷ୍ଣାସୃଗ୍‌ଜ୍ୱରପିତ୍ତଭଙ୍ଗଜନିତା ରୋଗା ପରସ୍ତ୍ରୀକୃତାଃ
ପ୍ରୀତିଃ ପାପରତୈରଧର୍ମନିରତଃ ପାରୁଷ୍ୟତୈକ୍ଷ୍ଣ୍ୟାନି ଚ ॥

ବୃ. ଜା.

ମଙ୍ଗଳ ଶୁଭ ହୋଇଥିଲେ ତାହାର ଦଶା ଭୋଗକାଳରେ ଜାତକ ଶତ୍ରୁଙ୍କୁ ପରାସ୍ତ କରିବାହେତୁ, ରାଜାଠାରୁ ଓ ଭ୍ରାତୃହେତୁ ଧନ ଓ ଭୂମି ଲାଭ କରେ ।

ଅଶୁଭ ହୋଇଥିଲେ ଜାତକ ସ୍ତ୍ରୀ, ପୁତ୍ର, ଭାର୍ଯ୍ୟା ଓ ଗଣ୍ୟମାନ୍ୟ ବ୍ୟକ୍ତିସହ ବିଦ୍ୱେଷ କରାଏ । ପିତ୍ତର ପ୍ରକୋପ ହୁଏ । ଜ୍ୱର, ବିସ୍ଫୋଟକ ଓ ପରସ୍ତ୍ରୀସଂସର୍ଗାଦିହେତୁକ ରୋଗାଦି ଜାତ ହୁଏ । ଖଳ ବ୍ୟକ୍ତି ସହ ମିତ୍ରତାସ୍ଥାପନ, ପାପକର୍ମରେ ପ୍ରବେଶ ଓ ଅପଖ୍ୟାତି ବଢ଼େ ।

ମ. ମଙ୍ଗଳ (ଶୁ) ଶରୀରଂ ପିତ୍ତସଂଯୁକ୍ତଂ ସ୍ୱଭୋଗସ୍ୟ ଦଶା କୁଜଃ ।
କାନ୍ତାପୁତ୍ରାଦିଷୁ ପ୍ରୀତିସ୍ତେଜବୃଦ୍ଧିର୍ଧରାଧିପାତ୍ ॥
(ଅ) ଭୌମେ ବନ୍ଧୁବିନାଶଃ ସ୍ୟାତ୍ କଲହୋ ବନ୍ଧୁଭିର୍ନୃଣାଂ ।
ସ୍ୱାନ୍ତରେ ବନ୍ଧୁପୀଡ଼ା ସ୍ୟାଦ୍‌ବୃଦ୍ଧିଶ୍ଚ ଗଣିକାରତଃ ॥

ମ. ଚନ୍ଦ୍ର (ଶୁ) ଧନବୃଦ୍ଧିଃ ସୁଖାଦେଶ୍ଚ ନାନାବସ୍ତ୍ରା ବରସ୍ତ୍ରିୟଃ ।
ପ୍ରାପ୍ନୋତି ବିପୁଲାଂ ଲକ୍ଷ୍ମୀଂ କୁଜସ୍ୟାନ୍ତର୍ଗତେ ଶଶିନି ।
(ଅ) କାର୍ଯ୍ୟାର୍ଥନାଶମୁଦ୍‌ବେଗଂ ବନ୍ଧୁଚୌରାଦିକଂ ଭୟଂ ।
କୁରୁତେ ଚନ୍ଦ୍ରକାପୁତ୍ରୋ ଭୌମସ୍ୟାନ୍ତର୍ଦଶାଗତଃ ॥

ମ. ବୃହସ୍ପତି (ଶୁ) ଦେବବ୍ରାହ୍ମଣସଙ୍ଗଶ୍ଚ ଧନଧାନ୍ୟାଦିସଙ୍ଗମଃ ।
ଐଶ୍ୱର୍ଯ୍ୟଂ ଚ ଭବେନ୍ନିତ୍ୟଂ ଗୁରୌ ଭୌମଦଶାଂଗତେ ॥

(ଅ) କୁଭୋଜନଂ ଭୂମିସୁତସ୍ୟ ପାକେ ଦଶା ପ୍ରପନ୍ନା ସୁରପୂଜିତସ୍ୟ ।
ଖଳୈର୍ବିବାଦଃ ସ୍ୱଜନୈର୍ବିରୋଧଃ ରୋଗୋଦୟଂ ରାଜଭୟଂ ବିପୂର୍ଣାଂ ॥

ମ. ଶନି (ଶୁ) ଭୌମସ୍ୟାନ୍ତର୍ଗତେ ମନ୍ଦେ ଶୁଭସ୍ଥେ ବା ଶୁଭେକ୍ଷିତେ ।
ଦାସୀଦାସସମାଯୋଗଃ ଶୂଦ୍ରବର୍ଗାଦ୍ଧନାଗମଃ ॥
(ଅ) ଦସ୍ୟୁଚୌରାଗ୍ନିଭୀତିଶ୍ଚ ରୋଗଶୋକଧନକ୍ଷୟଃ ।
ମହାଜନକୃତଦ୍ୱେଷଃ କୁଜସ୍ୟାନ୍ତର୍ଗତେ ଶନୌ ॥

ମ. ବୁଧ (ଶୁ) ପରମୈଶ୍ୱର୍ଯ୍ୟମତୁଲଂ ନାନାବିଧସୁଖାଶ୍ରୟଂ ।
ଲଭେତ ସୋମସୂନୁଶ୍ଚ କ୍ଷିତିଜାନ୍ତର୍ଦଶାଂଗତଃ ॥
(ଅ) ଭୂପାଗ୍ନିଚୌରପୀଡ଼ା ଚ ଭୟଂ ପରଜ୍ୱରାର୍ତ୍ତିତଃ ।
ଭୂମିଜାନ୍ତର୍ଗତେ ସୌମ୍ୟେ କଲହୋ ଦୁର୍ଜନାଦଭୂଃ ॥

ମ. କେତୁ (ଶୁ) ସୁଖାର୍ଥଜ୍ଞାନବୃଦ୍ଧିଶ୍ଚ ଶାସ୍ତ୍ରମାର୍ଗପ୍ରବର୍ତ୍ତିନଂ ।
ନୀଚଦ୍ୱେଷେ ଭାଗ୍ୟବୃଦ୍ଧିଃ କୁଜସ୍ୟାନ୍ତର୍ଗତେ ଶିଖୀ ॥
(ଅ) ନୀଚକୈଃ କଲହୋ ନିନ୍ଦନମପମାର୍ଗପ୍ରବର୍ତ୍ତିନଂ ।
ସୁଖାର୍ଥକାନ୍ତିହାନିଶ୍ଚ ଭୌମସ୍ୟାନ୍ତର୍ଗତେ ଧ୍ୱଜେ ॥

ମ. ଶୁକ୍ର (ଶୁ) ନାନାବିଧାନି ସୌଖ୍ୟାନି କାର୍ଯ୍ୟଂ ଭବତି ଶୋଭନଂ ।
ମଣିରତ୍ନାଦିଲବ୍ଧିସ୍ତୁ କୁଜସ୍ୟାନ୍ତର୍ଗତେ ଶତେ ॥
(ଅ) ଦେହରୋଗଭୟଂ ବ୍ୟାଧିର୍ଧନନାଶୋ ମତିକ୍ଷୟଃ ।
ବ୍ରଣରୋଗଭୟପ୍ରାପ୍ତିଃ କୁଜସ୍ୟାନ୍ତର୍ଗତେ ଶିତେ ॥

ମ. ରବି (ଶୁ) ନାନାରତ୍ନଞ୍ଚ ସୌଖ୍ୟଞ୍ଚ ଭୂମିଲାଭସ୍ତଥୈବ ଚ ।
ନୃପପ୍ରୀତିମବାପ୍ନୋତି କୁଜସ୍ୟାନ୍ତର୍ଗତେ ରବୌ ॥

(ଖ) ନେତ୍ରରୋଗଂ ଶିରୋରୋଗଂ ବନ୍ଧୁନାଶଂ ଧନକ୍ଷୟଂ ।
ତେଜୋହାନିଂ ମନୋଦୁଃଖଂ କୁଜସ୍ୟାନ୍ତର୍ଗତେ ରବୌ ॥

ମ. ଚନ୍ଦ୍ର (ଶୁ) ଧନଲାଭଂ ସୁଖଂ ଭୋଗଂ ଶରୀରାରୋଗ୍ୟମେବ ଚ ।
ଲୋକାନୁରାଗମାପ୍ନୋତି କ୍ଷିତିଜାନ୍ତର୍ଗତେ ବିଧୌ ॥
(ଖ) ହୃତପୁତ୍ରଦାରଧନାଃ ନିଃସ୍ୱାନ୍ତ ଦୁଃଖିତା ନରାଃ ।
ନୃରଦଶାସ୍ୱାମିନୋଽସ୍ତ କରୋତି ଫଳମୀଦୃଶଂ ॥
ମଙ୍ଗଳଦଶା ସମାପ୍ତ ।

---

ରାହୁଦଶାଫଳବିଚାରଃ ।

ଶୁଭେ ରାହୁଃ ସୁଖଂ ଦଦ୍ୟାତ୍ କରୋତି ସଫଳାଂ କ୍ରିୟାଂ ।
ରାଜସମ୍ମାନମର୍ଥାପ୍ତିଂ ଶତ୍ରୁନାଶୋ ଭବେତ୍ ଧ୍ରୁବଂ ॥
ଦୂଷଣଂ କଳହଶ୍ଚୈବ ବ୍ୟାଧିଗ୍ରସ୍ତଂ ଧନକ୍ଷୟଂ ।
ଅପମାନଂ ସ୍ଥାନନାଶମଶୁଭେ ତୁ ବିଧୁନ୍ତୁଦେ ॥

ରାହୁ ଶୁଭ ହୋଇଥିଲେ ଦଶା ଭୋଗକାଳରେ ସୁଖପ୍ରାପ୍ତି, ଉଦ୍ୟୋଗସିଦ୍ଧି, ରାଜସମ୍ମାନଲାଭ, ଧନଲାଭ ଓ ଶତ୍ରୁନାଶ କରାଏ । ଅଶୁଭ ହୋଇଥିଲେ ଅପବାଦଶ୍ରବଣ, କଳହ, ରୋଗପ୍ରାପ୍ତି, ଧନନାଶ, ଅପମାନ ଓ ସ୍ଥାନନାଶ କରାଏ । ରାହୁ ଯେଉଁ ଗ୍ରହର ଗୃହରେ ଥିବ ଶୁଭ ହୋଇଥିଲେ ସେହି ଗ୍ରହକାରକୋକ୍ତ ସମସ୍ତ ଶୁଭଭାବର ବୃଦ୍ଧି ଓ ଅଶୁଭରେ ଥିଲେ ଶୁଭଫଳର ବିନାଶ ଓ ରୋଗବୃଦ୍ଧି କରାଇବ ।

ରା. ରାହୁ (ଶୁ) ମାଙ୍ଗଲ୍ୟକାର୍ଯ୍ୟାଭ୍ୟୁଦୟଂ ସଦୈବ
ଦେବଦ୍ୱିଜାର୍ଚ୍ଚନୀୟକବନ୍ଦନଂ ଚ ।
ସ୍ଥାନାନ୍ତରାପ୍ତିଂ ଭୁଜଗସ୍ୟ ଭଙ୍ଗଃ
କରୋତି ରାହୋଃ ସ୍ୱଦଶାବିପାକେ ॥

(ଅ) ଲଗ୍ନୋରନ୍ଧ୍ରଦର୍ଶାୟାଂ ତୁ ପିତୃବନ୍ଧୁବିନାଶନଂ ।
ଧନନାଶୋ ବିଦେଶଃ ସ୍ୟାଦ୍ ଗମନଂ ଗୌରବଚ୍ୟୁତିଃ ॥

ରା. ବୃହସ୍ପତି (ଶୁ) ବ୍ୟାଧିଦୁଃଖପରିତ୍ୟାଗୋ ଦେବବ୍ରାହ୍ମଣପୂଜନଂ ।
କାର୍ଯ୍ୟସିଦ୍ଧିର୍ବେଦଭିଜ୍ଞା ଲଗ୍ନୋରନ୍ତର୍ଗତେ ଗୁରୌ ॥
(ଅ) ବ୍ୟାଧିଦୁଃଖସମାଯୁକ୍ତୋ ଦେବବ୍ରାହ୍ମଣଦୂଷକଃ ।
କଫବାତାଦିପୀଡ଼ା ସ୍ୟାଦ୍ରାହୋରନ୍ତର୍ଗତେ ଗୁରୌ ॥

ରା. ଶନି (ଶୁ) ନୃପମାନନମର୍ଥାପ୍ତିଃ ଲୋକପୂଜ୍ୟସ୍ତଥୈବ ଚ ।
କାର୍ଯ୍ୟଲାଭୋ ମନୋଧୈର୍ଯ୍ୟଂ ରାହୋରନ୍ତର୍ଗତେ ଶନୌ ॥
(ଅ) ସ୍ତ୍ରୀପୁତ୍ରୈଃ କଲହୋ ନିତ୍ୟଂ ବାନ୍ଧବୈଃ ସହ ବୈରିତା ।
ଭବେତ୍ତୁ ବହୁଧା ଦୁଃଖଂ ରାହୋରନ୍ତର୍ଗତେ ଶନୌ ॥

ରା. ବୁଧ (ଶୁ) ସଭୃତ୍ୟଂ ବନ୍ଧୁସମ୍ପତ୍ତି ବସ୍ତ୍ରଭୂଷଣସଙ୍ଗମଂ ।
ପ୍ରାପ୍ନୋତି ସକଲଂ ସୌଖ୍ୟଂ ରାହୋରନ୍ତର୍ଗତେ ବୁଧେ ॥
(ଅ) ଜ୍ୱରକୁଷ୍ଠ୍ୟାଦି ସପୀଡ଼ା କଲହଂ ସ୍ୱଜନୈଃ ସହ ।
ଭୃତ୍ୟ ପତ୍ୟେଷୁ ବିଦ୍ୱେଷଂ କୁର୍ଯ୍ୟାତ୍ପାତାନ୍ତରେ ବୁଧଃ ॥

ରା. କେତୁ (ଶୁ) ବେଶ୍ୟାଜନାଶ୍ରୟାତ୍ ସୌଖ୍ୟଂ ଭବେଦ୍ବିତ୍ତ ବିବର୍ଜିତଃ ।
ଲୁପ୍ତ ମାତମନା ନିତ୍ୟଂ ରାହୋରନ୍ତର୍ଗତେ ଶିଖୀ ।
(ଅ) ଶତ୍ରୁଶସ୍ତ୍ରମନସ୍ତାପୋ ଦ୍ରବ୍ୟହାନିସ୍ତଥୈବ ଚ ।
କାର୍ଯ୍ୟନାଶୋ ବିବାଦଶ୍ଚ ରାହୁରନ୍ତର୍ଗତେ ଧ୍ୱଜେ ॥

ରା. ଶୁକ୍ର (ଶୁ) ସୌହାର୍ଦ୍ଦ୍ୟଂ ବିପ୍ରଭୂପାଭ୍ୟାଂ ସ୍ତ୍ରୀସଙ୍ଗୋ ବିତ୍ତସଞ୍ଚୟଃ ।
କଲହୋ ବିଜୟୋ ଖ୍ୟାତି ରାହୋରନ୍ତର୍ଗତେ ଶିତେ ॥

(ଅ) ଶିରୋରୋଗଂ କୁଦେହଞ୍ଚ କୁର୍ଯ୍ୟାଦ୍ ଧର୍ଯ୍ୟାଞ୍ଚ ଚଞ୍ଚଳାଂ ।
ବାନ୍ଧବୈଃ କଲହୋ ନିତ୍ୟଂ ରାହୋରନ୍ତର୍ଗତେ ଭୃଗୌ ॥

ରା. ରବି (ଶୁ) ରିପୁନାଶଂ ଚ ଧୈର୍ଯ୍ୟଞ୍ଚ ଧନଲାଭେ ମନଃ ସୁଖଂ ।
ଖ୍ୟାତପୌରୁଷସିଦ୍ଧିଞ୍ଚ ରାହୋରନ୍ତର୍ଗତେ ରବୌ ॥
(ଅ) ଶିରୋରୋଗଂ ଭୟଂ ଘୋରଂ ମୃତ୍ୟୁଂ ଶୋକଞ୍ଚ ଦାରୁଣଂ ।
ବୃହଦଗ୍ନି ଭୟଂ କୁର୍ଯ୍ୟାତ୍ ରାହୋରନ୍ତର୍ଗତେ ରବିଃ ॥

ରା. ଚନ୍ଦ୍ର (ଶୁ) ଶ୍ରୀଲାଭେ ବନ୍ଧୁଲାଭେ ବା ମାନସ୍ୟ ଚ ନିବୃତଃ ।
ଦେବବ୍ରାହ୍ମଣପୂଜା ସ୍ୟାଦ୍ରାହୋରନ୍ତର୍ଗତେ ବିଧୌ ॥
(ଅ) ସ୍ତ୍ରୀପୁତ୍ରଂ କଲହଞ୍ଚୈବ ଧନନାଶୋ ମନଃକ୍ଷତଃ ।
କରୋତି ଶ୍ଳେଷ୍ମମତ୍ୟନ୍ତଂ ରାହୋରନ୍ତର୍ଗତେ ବିଧୌ ।

ରା. ମଙ୍ଗଳ (ଶୁ) ରୋଗନାଶୋ ମନସ୍ତୁଷ୍ଟିଃ ବସ୍ତ୍ରାଭରଣସମ୍ପଦଂ ।
କାର୍ଯ୍ୟଲାଭଂ ସ୍ୱଦୃଢ଼ୌଖ୍ୟଂ ରାହୋରନ୍ତର୍ଗତେ କୁଜେ ॥
(ଅ) ରକ୍ତପିତ୍ତକୃତା ପୀଡ଼ା ଜ୍ୱରପୀଡ଼ା ତଥୈବ ଚ ।
ଅଗ୍ନିରୋଗଭୟଂ ଘୋରଂ ରାହୋରନ୍ତର୍ଗତେ କୁଜେ ॥

ରାହୁଦଶା ସମାପ୍ତ ।



## ବୃହସ୍ପତିଦଶାଫଳବିଗ୍ରହଃ

ଜୈବ୍ୟାଂ ମାନଗୁଣୋଦୟୋମତିଚୟଃ କାନ୍ତିପ୍ରତାପୋନ୍ନତି–
ର୍ମାହାତ୍ମ୍ୟୋଦ୍ୟମମନ୍ତ୍ରନୀତି ଚ ନୃପାତ୍ ସ୍ୱାଧ୍ୟାୟ ମନ୍ତ୍ରୈର୍ଧନଂ ।
ହେମାଶ୍ୱାତ୍ମଜକୁଞ୍ଜରାମ୍ବରଚୟଃ ପ୍ରୀତିଶ୍ଚ ସଦ୍ଭୂମିପୈଃ
ସୂକ୍ଷ୍ମୋହାଗହନାଶ୍ରମଃ ଶ୍ରବଣରୁଗ୍ବୈରଂ ବିଧର୍ମାଶ୍ରିତୈଃ ॥ ବୃ. ଜା.

ବୃହସ୍ପତି ଶୁଭ ହୋଇଥିଲେ ତାହାର ଦଶାନ୍ତର୍ଦଶାରେ ଗୁଣ, ସମ୍ମାନ, କାନ୍ତି ଓ ପ୍ରତାପାଦିର ଉନ୍ନତି ହୁଏ ସେ ବ୍ୟକ୍ତି ବଡ଼ ଉଦ୍ୟମୀ ଓ ଖ୍ୟାତନାମା ହୁଏ ମନ୍ତ୍ରଣା କାର୍ଯ୍ୟଦ୍ୱାରା, ରାଜା ହେତୁରୁ ଓ ଶାସ୍ତ୍ରପଠନ ଓ ପାଠନ ହେତୁରୁ ଧନଲାଭ କରେ ରତ୍ନାଦି ଅଳଙ୍କାର, ଘୋଟକାଦି ବାହନ, ଉତ୍ତମ ପୁତ୍ର, ହସ୍ତୀ ଓ ଉତ୍ତମ ବସ୍ତ୍ରାଦି ଲାଭ ହୁଏ

ଅଶୁଭ ହୋଇଥିଲେ ବୃଥା ପରିଶ୍ରମ, କର୍ଣ୍ଣରୋଗ ଓ ବିଧର୍ମିସହ ବୈର ସଂସ୍ଥାପନ କରାଏ ।

ବୃ. ବୃହସ୍ପତି (ଶୁ) ପୁତ୍ରଲାଭୋ ମହାସୌଖ୍ୟଂ ରାଜହେତୋର୍ଧନାଗମଃ ।
ମିତ୍ରଲାଭଂ କାନ୍ତିବୃଦ୍ଧିଃ ସ୍ୱଦଶାୟାଂ ବୃହସ୍ପତେଃ ॥
(ଅ) ବେଶ୍ୟାଜନାଶ୍ରୟାତ୍ ସୌଖ୍ୟଂ ଭବେଦ୍ବିତ୍ତବିବର୍ଜିତଃ ।
ଲୁପ୍ତଧର୍ମକ୍ରିୟାନିତ୍ୟଂ ଗୁରୋରନ୍ତର୍ଗତେ ଗୁରୌ ॥

ବୃ. ଶନି (ଶୁ) ଧନଲାଭୋ ରାଜ୍ୟବୃଦ୍ଧିଃ ଶୁଭଂ ରିପୁବିନାଶନଂ ।
ତୀର୍ଥଯାତ୍ରାଦିଗମନଂ ଗୁରୋରନ୍ତର୍ଗତେ ଶନୌ ॥
(ଅ) ସ୍ତ୍ରୀହେତୋର୍ମନସନ୍ତାପଂ ଧନନାଶଂ ତଥା ମୃତଃ ।
ବସୁଧାଭ୍ରମଣପ୍ରାପ୍ତିର୍ଗୁରୋରନ୍ତର୍ଗତେ ଶନୌ ॥

ବୃ. ବୁଧ (ଶ୍ଳୋ) ସୌଖ୍ୟଂ ସୌଭାଗ୍ୟମାରୋଗ୍ୟଂ ଯଶଃସନ୍ତୋଷ-
ବୃଦ୍ଧୟଃ ।
ସୁହୃଦ୍‌ସ୍ଥାନାଦଲାଭଂ ସ୍ୟାଦ୍ ବୁଧେ ଗୁରୁଦଶାଂଗତେ ॥
(ଅ) ବନ୍ଧୁଦ୍ୱେଷୋ ବନ୍ଧହାନୀ ଶ୍ଚପୁତ୍ରାଦିବିୟୋଗିତା ।
ଶ୍ଳେଷ୍ମପିତ୍ତକୃତା ପୀଡ଼ା ଗୁରୋରନ୍ତର୍ଗତେ ବୁଧେ ॥

ବୃ. କେତୁ (ଶ୍ଳୋ) ଗୁରୋରନ୍ତର୍ଦଶାମଧ୍ୟେ କେତୋରନ୍ତର୍ଦଶା ଯଦି ।
ରାଜ୍ୟଲାଭଃ ସୁହୃତପ୍ରାପ୍ତିର୍ଗଙ୍ଗାସ୍ନାନାଦ୍ଧ ପୁଣ୍ୟଭାକ୍ ॥
(ଅ) ବସନସ୍ୱଭୟଂ ଚୈବ ଅଗ୍ନିଭୀତଂ ଚ ନାଶନଂ ।
ଅକସ୍ମାଦ୍ରୋଗମାପ୍ନୋତି ଗୁରୋରନ୍ତର୍ଗତେ ଧ୍ୱଜେ ॥

ବୃ. ଶୁକ୍ର (ଶ୍ଳୋ) ଈଶାନପର୍ବତେ ଲାଭଃ ପ୍ରଭୁମାନ୍ୟମୁତାଗମଃ ।
ତୀର୍ଥାର୍ଥଲାଭୋ ବହୁଶଃ ଗୁରୁରନ୍ତର୍ଗତେ ଭୃଗୌ ॥
(ଅ) କଳହଂ ବନ୍ଧୁଭିଃ ସାର୍ଦ୍ଧଂ ବିତ୍ତନାଶଂ ମନଃକ୍ଷତିଃ ।
ସ୍ତ୍ରୀବିୟୋଗଞ୍ଚ କୁରୁତେ ଜୀବସ୍ୟାନ୍ତର୍ଗତେ ସିତଃ ॥

ବୃ. ରବି (ଶ୍ଳୋ) ବହୁମିତ୍ରଂ ବହୁଧନଂ ସୌଭାଗ୍ୟଂ ରାଜବଲ୍ଲଭଂ ।
କୁରୁତେ ଭାସ୍କରଃ ଶାନ୍ତଂ ଗୁରୋରନ୍ତର୍ଦଶାଂ ଗତଃ ॥
(ଅ) ଶତ୍ରୁବୃଦ୍ଧିର୍ବିତ୍ତନାଶୋ ସ୍ଥାନନାଶୋ ଧନାଲ୍ପତା ।
ବ୍ୟଧିଦୁଃଖାଦଭିବ୍ୟାପ୍ତୋ ଜୀବସ୍ୟାନ୍ତର୍ଗତେ ରବୌ ।

ବୃ. ଚନ୍ଦ୍ର (ଶ୍ଳୋ) ଭୋଗାଢ୍ୟୋ ବହୁମିତ୍ରସ୍ୟାତ୍ପୁତ୍ରୋଗବବର୍ଜିତଃ ॥
ନୃପତୁଲ୍ୟୋ ଭବେଚ୍ଚନ୍ଦ୍ରେ ଗୁରୋରନ୍ତର୍ଦଶାଂଗତେ ।
(ଅ) ଦୌର୍ଭାଗ୍ୟଂ କାମିନୀନାଶୋ ପୁତ୍ରୋଗବବର୍ଦ୍ଧନଂ ।
ଦୌର୍ମନସ୍ୟଂ ଭବେନ୍ନିତ୍ୟଂ ଗୁରୋରନ୍ତର୍ଗତେ ବିଧୌ॥

ବୃ. ମଙ୍ଗଳ (ଶୁ) ତୀକ୍ଷ୍ଣବେଗ ଶତ୍ରୋର୍ହନ୍ତା ଗଜବନ୍ଧ୍ରୁମଦର୍ଶନଃ ।
ଶୁଭସୌଭାଗ୍ୟସଂଯୁକ୍ତୋ ଜୀବସ୍ୟାନ୍ତର୍ଗତେ କୁଜେ ॥

(ଅ) ଅଗ୍ନି ମାନ୍ଦ୍ୟଂ ଜ୍ୱରଂ ବାଧା ମନସ୍ତୋନ୍ତା ଚ ସଙ୍କଟଂ ।
ବାତପିତ୍ତପ୍ରକୋପଶ୍ଚ ଗୁରୋରନ୍ତର୍ଗତେ କୁଜେ ॥

ବୃ. ରାହୁ (ଶୁ) ଧନଂ ବାହନଲାଭଞ୍ଚ ରାଜପୂଜାଂ ତଥୈବ ଚ ।
ଲାଭଞ୍ଚ କୃଷ୍ଣବସ୍ତୂନାଂ ଗୁରୋରନ୍ତର୍ଗତେ ତମଃ ॥

(ଅ) ବନ୍ଧୁଦ୍ୱେଷଂ ମୃଷାବାଦଂ ସ୍ଥାନଭ୍ରଂଶଂ ଧନକ୍ଷୟଂ ।
କଲହଂ କାରଯେନ୍ନିତ୍ୟ ରାହୁଃ ଗୁରୋରନ୍ତର୍ଦଶାଂଗତଃ ॥

ବୃହସ୍ପତି ଦଶା ସମାପ୍ତ ।

---

ଶନିଦଶାଫଳ ବିଚାରଃ

ସୌରିଂ ପ୍ରାପ୍ୟ ଖଗେଶ ପକ୍ଷୀମହିଷୀବୃଦ୍ଧାଙ୍ଗନାବାପ୍ତୟଃ
ଶ୍ରେଣୀଗ୍ରାମପୁରାଧିକାରଜନିତା ପୂଜାକୁଧାନ୍ୟାଗମାଃ ।
ଶ୍ଳେଷ୍ମେର୍ଷ୍ୟାନିଲକୋପମୋହମଲିନବ୍ୟାପତ୍ତିତନ୍ଦ୍ରାଶ୍ରମା-
ନ୍ଭୃତ୍ୟାପତ୍ୟକଳତ୍ରଭର୍ତ୍ସନମପି ପ୍ରାପ୍ନୋତି ଚ ବ୍ୟଙ୍ଗତାଂ ॥
ବୃ. ଜା.

ଶନି ଶୁଭ ହୋଇଥିଲେ ତାହାର ଦଶାରେ ଗଧ, ଓଟ, ପକ୍ଷୀ, ମହିଷ ଏମାନଙ୍କର କ୍ରୟ ଓ ବିକ୍ରୟଦ୍ୱାରା ଧନଲାଭ ହୁଏ । ବୃଦ୍ଧା ସ୍ତ୍ରୀ ପ୍ରାପ୍ତି ହୁଏ । ଗ୍ରାମ ଓ କୁଳର ଆଧିପତ୍ୟ ମିଳେ । ଜାତକ ଲୋକପୂଜ୍ୟ ହୁଏ । କୃଷ୍ଣଧାନ୍ୟାଦି କୁତ୍ସିତ ଫସଲ ଯଥେଷ୍ଟ ଅମଦାନୀ ହୁଏ ।

ଅଶୁଭ ହୋଇଥିଲେ ଦଶାଭୋଗକାଳରେ ବାତାଦି ଧାତୁତ୍ରୟଙ୍କ ପ୍ରକୋପରେ ନାନାପ୍ରକାର ରୋଗ ଜନ୍ମେ । ନାନାପ୍ରକାର ବିପତ୍ତିରେ ଜାତକ ପଡ଼େ । ହୃଦ୍ରୋଗାଦି ଭଙ୍ଗ ହୁଏ । ସ୍ତ୍ରୀ, ପୁତ୍ରାଦିର ପୀଡ଼ା, ମିତ୍ରସହ ବୈର ଓ ଅପବାଦାଦି ଲାଭ ହୁଏ । ଅଙ୍ଗ ବୈକଲ୍ୟ ହୁଏ ।

ଶ. ଶନି (ଶୁ) ରାଜପୂଜା କୃଷେର୍ଲବ୍ଧିର୍ଧନଧାନ୍ୟାଦିବର୍ଦ୍ଧନଂ ।
ଆରୋଗ୍ୟମର୍ଥଲାଭଶ୍ଚ ଶନେରନ୍ତର୍ଗତେ ଶନୌ ॥

(ଅ) ବନ୍ଧୁ-ଦାର-ସୁତାର୍ଥାନାଂ ନାଶୋ ବା ପୀଡ଼ନଂ ଭବେତ୍ ।
ବିଦେଶଗମନଂ ଦୁଃଖଂ ସୌରେ ସ୍ୱାନ୍ତର୍ଦଶାଫଳଂ ॥

ଶ. ବୁଧ (ଶୁ) ଆରୋଗ୍ୟଂ ବିଜୟଂ ରାଜ୍ୟଂ ବନ୍ଧୁବର୍ଗାନ୍ ସୋମଜଃ ।
କରୋତି ଗୃହଦଂ ଲୋକେ ଶନେରନ୍ତର୍ଦଶାଂ ଗତଃ ॥

(ଅ) ସ୍ତ୍ରୀପୁତ୍ରମିତ୍ରାଦିକପୀଡ଼ନଂ ଚ ଶୀତଜ୍ୱରୋଦ୍ବେଗଗଦପ୍ରବୃତ୍ତିଃ ।
ମିତ୍ରଂ ଚ ଶତ୍ରୁ ଭବତି ସମସ୍ତାଂ ଶନେର୍ଦଶାୟାଂ ବୁଧସଂସ୍ଥିତେ ଚ ।

ଶ. କେତୁ (ଶୁ) ଜ୍ୟୋତିଃଶାସ୍ତ୍ରପ୍ରସଙ୍ଗେ ବା ତଦଭ୍ୟାସେ ମତିର୍ଭବେତ୍ ।
ପରାନ୍ନଭୋଜନଂ ଚୈବ ତିଳପିଷ୍ଟସ୍ୟ ଭକ୍ଷଣଂ ॥

(ଅ) ବାତପିତ୍ତକୃତା ପୀଡ଼ା ପୁତ୍ରଦାରାଦିବିଗ୍ରହଃ ।
ଶନେରନ୍ତର୍ଗତେ କେତୁର୍ନିତ୍ୟଂ ଦୁଃସ୍ୱପ୍ନଦର୍ଶନଂ ॥

ଶ. ଶୁକ୍ର (ଶୁ) ସୁହୃଦ୍‌ବନ୍ଧୁଧନୈଃ ପୂର୍ଣ୍ଣୋ ଭାର୍ଯ୍ୟାବିତ୍ତସମନ୍ୱିତଃ ।
ସ୍ୱର୍ଣ୍ଣଂ ସୁଖଞ୍ଚ ଲଭତେ ସୌରସ୍ୟାନ୍ତର୍ଗତେ ସିତେ ॥

(ଅ) କ୍ଲେଶାଗମଂ ସୌଖ୍ୟଧନାର୍ଥନାଶଂ କୁକର୍ମସିଦ୍ଧିଂ ପଶୁପୁତ୍ରହାନିଂ
କରୋତି ସୌରସ୍ୟ ଦଶାବିପାକେ ଭୃଗୋର୍ଦଶା ବାତବିଧାଂଶ୍ଚ ରୋଗାନ୍

ଶ. ରବି (ଶୁ) ରୋଗନାଶଂ ବିତ୍ତଲାଭଂ ରାଜପୂଜାତନୋଃ ସୁଖଂ ।
ଶନେରନ୍ତର୍ଗତେ ସ୍ୱେ ରବୌ ଚ ଶୁଭସଙ୍କେ ॥
(ଅ) ପରଦାରାଭିଗମନଂ କରୋତି ଖରବାଧିତଃ ।
ଜୀବନସ୍ୟ ଚ ସନ୍ଦେହଂ ଶନେରନ୍ତର୍ଦଶାଂ ଗତଃ ॥

ଶ ଚନ୍ଦ୍ର (ଶୁ) ଧର୍ମବୃଦ୍ଧିଂ ମନଃସୌଖ୍ୟଂ ଧନଧାନ୍ୟାଦିବର୍ଦ୍ଧନଂ ।
ସୌଭାଗ୍ୟଂ କୀର୍ତ୍ତିମାପ୍ନୋତି ଶନେରନ୍ତର୍ଗତେ ବିଧୌ
(ଅ) ମୃତ୍ୟୁଃ ସ୍ତ୍ରୀହରଣଂ ଦୁଃଖଂ ମିତ୍ରୈଶ୍ଚ କଲହୋ ଭବେତ୍
ଅମଙ୍ଗଳଂ ମହାରୋଗଃ ଶନେରନ୍ତର୍ଗତେ ବିଧୌ ॥

ଶ. ମଙ୍ଗଳ (ଶୁ) ସୌଭାଗ୍ୟସୌଖ୍ୟଂ ବିଜୟଂ ପ୍ରବାଧଂ
ସତ୍କାରମାନଂ ଧନଲାଭମେତି ।
ବସ୍ତ୍ରାଦି ଭୂଷାଭରଣାଦି ଲାଭଂ
ଶନେର୍ମହୀଜସ୍ୟ ଦଶା କରୋତି ॥
(ଅ) ଦେହକ୍ଷୈଣ୍ୟଂ ମହାରୋଗଂ ନାନାଦୁଃଖାନି ଭୂମିଜଃ ।
ଧନନାଶଂ କରୋତ୍ୟେବ ଶନେରନ୍ତର୍ଦଶାଂ ଗତଃ ॥

ଶ. ରାହୁ (ଶୁ) ଶୁଭଦୃଷ୍ଟିଗତୋ ବାପି ଶୁଭଯୁକ୍ତଗତୋଽପି ବା ।
ଧନଲାଭଂ ମହାସୌଖ୍ୟଂ ଶନେରନ୍ତର୍ଗତେ ତମଃ ॥
(ଅ) ନୃପାଦ୍ଭୟଂ ଜ୍ୱରଂ ଘୋରଂ ଦୁଃଖଞ୍ଚ ପ୍ରାଣସଂଶୟଂ ।
ଧନକ୍ଷୟଞ୍ଚ କୁରୁତେ ଶନେରନ୍ତଗତଃ ତମଃ ॥

ଶ. ବୃହସ୍ପତି (ଶୁ) ଦେବତାନୁରତିଂ ଶାନ୍ତିଂ ନାନାପ୍ରାପ୍ତିଂ କରୋତି ଚ
ବହୁସୌଖ୍ୟସମାଯୁକ୍ତଂ ଶନେରନ୍ତର୍ଗତୋ ଗୁରୁଃ ॥

(ଥ) ବ୍ୟାଧିଶତ୍ରୁଭୟୈର୍ଯୁକ୍ତୋ ବାନ୍ଧବୈଃ କଲହୋ ଭବେତ୍ ।
ନାନାପବାଦଂ କୁରୁତେ ଶନେରନ୍ତର୍ଗତୋ ଗୁରୁଃ ॥

ଶନିଦଶା ସମାପ୍ତ

---

ବୁଧଦଶାଫଳ ବିଚାରଃ ।

ବୌଧ୍ୟାନ୍ଦୌଯୁଦ୍ଧହୃଦ୍‌ଗୁରୁଦ୍ଵିଜଧନଂ ବନ୍ଦ୍ୟତ୍ତପ୍ରଶଂସା ଯଶୋ
ଯୁକ୍ତିଦ୍ରବ୍ୟସୁବର୍ଣ୍ଣବେସରମହୀସୌଭାଗ୍ୟସୌଖ୍ୟାପ୍ତୟଃ ।
ହାସ୍ୟୋପାସନକୌଶଲଂ ମତିରପ୍ୟେ ଧର୍ମକ୍ରିୟା ସିଦ୍ଧୟଃ ।
ପାରୁଷ୍ୟଂ ଶ୍ରମବନ୍ଧମାନସଶୁଚଃ ପୀଡ଼ା ଚ ଧାତୁ ତ୍ରୟୀତ୍ ।ବୃ. ଜା.

ବୁଧ ଶୁଭ ହୋଇଥିଲେ ତାହାର ଦଶାଭୋଗ କାଳରେ ଜାତକର ହୃଦ୍ୟତନୀଡ଼ାଦ୍ଵାରା ଓ ଗୁରୁ ବ୍ରାହ୍ମଣାଦିର ସହାୟ ହେତୁରୁ ଧନଲାଭ ହୁଏ । ନିଜର ବନ୍ଦ୍ୟତ୍ଵହେତୁରୁ ପ୍ରଶଂସା ଓ ଯଶ ଲାଭ କରେ । ସୁବର୍ଣ୍ଣ, କାଂସ୍ୟ ଓ ନାନାପ୍ରକାର ଅଳଙ୍କାରାଦିର ବ୍ୟବହାର ହେତୁରୁ ବିସ୍ତର ଧନ ଲାଭ କରେ । ଭୂମିଲାଭ ହୁଏ । ସୌଭାଗ୍ୟ ଓ ସୁଖ ଉଭୟର ବୃଦ୍ଧି ହୁଏ । ଅନେକଙ୍କର ହିତ କରେ । ନାନା ପ୍ରକାର କୌଶଳ ହେତୁରୁ ଧନ ଓ ଧର୍ମ ଉଭୟର ବୃଦ୍ଧି ହୁଏ ।

ବୁଧ ଅଶୁଭ ହୋଇଥିଲେ ଅପବାଦ ଲାଭ ହୁଏ । ବୃଥାଶ୍ରମ ହୁଏ । ବନ୍ଧନଭୟ ହୁଏ । ଚିତ୍ତ ଅସ୍ଥିର ହୁଏ ଓ ବାତାଦି ଧାତୁତ୍ରୟର ପ୍ରକୋପରେ ପୀଡ଼ା ହୁଏ ।

ବୁ. ବୁଧ (ଶୁ) ସ୍ତ୍ରୀଲାଭଂ ପରମଂ ମାନଂ ବୁଦ୍ଧିଲାଭଃ ସମାଗମଂ ।
ସୌଭାଗ୍ୟଂ ବିପୁଳଂ ଦତ୍ତେ ସ୍ଵଦଶାୟାଂ ବିଧୋଃ ସୁତଃ ॥

(ଅ)କଷ୍ଟୋଦୟଂ ସୌଖ୍ୟବଲାର୍ଥନାଶଂ କୀର୍ତ୍ତିକ୍ଷୟଂ ସ୍ୱେତରୁଜାର୍ତ୍ତିମୁଗ୍ରାଂ
ପ୍ରାପ୍ନୋତି ବୈରଂ ସ୍ୱଜନୈଶ୍ଚ କୁତ୍ସୈର୍ନିନ୍ଦୋବ୍ଦପାକେ ସ୍ୱଶଶାଙ୍କସୂନୁଃ ॥

ବୁ. କେତୁ (ଶୁ) ଅକସ୍ମାଦନଲଭୟଂ ଗୋଧନଂ ବିପୁଲଂ ଧନଂ ।
ବ୍ୟାଧିମୁକ୍ତଃ ସୁତଯୁତୋ ବୁଧସ୍ୟାନ୍ତର୍ଗତେ ଧ୍ୱଜେ ॥

(ଅ) ଦୁଃଖବେଗଭୟଂ କ୍ଲେଶଂ ଦାରିଦ୍ର୍ୟଂ ଧର୍ମନାଶନଂ ।
ବୁଧସ୍ୟାନ୍ତର୍ଗତେ କେତୌ ବଲହାନିଶ୍ଚ ଜାୟତେ ॥

ବୁ. ଶୁକ୍ର (ଶୁ) ଧନାଢ୍ୟଂ ବନ୍ଧୁପୁତ୍ରଞ୍ଚ ଧର୍ମବୃଦ୍ଧି ଧନାଗମଂ ।
କୁରୁତେ ଦାନବାଗୃହ୍ୟୈ ବୁଧପାକଦଶାଂଗତେ ॥

(ଅ ରୋଗୋଦ୍ଭବଃ କ୍ଲେଶବାଧା ରାଜଭୀତିଧନନାଶନଂ ।
ପରଦାରରତୋ ନିତ୍ୟଂ ବୁଧସ୍ୟାନ୍ତଗତେ ଭୃଗୌ ॥

ବୁ. ରବି (ଶୁ) ଶ୍ରିୟା ପରମୟା ଯୁକ୍ତଂ ଗଜବାଜିଧନାନ୍ୱିତଂ ।
ପ୍ରଭାକରଃ କରୋତ୍ୟାଶୁ ବୁଧପାକଦଶାଂ ଗତଃ ।

(ଅ) ଭୂମିନାଶୋ ବନ୍ଧୁନାଶୋ ବନ୍ଧନଂ ଗଣ୍ଡବେଦନଂ ।
ସ୍ତ୍ରୀପୁତ୍ରକୁଚ୍ଛ୍ରପୀଡ଼ା ଚ ବୁଧସ୍ୟାନ୍ତର୍ଗତେ ରବୌ ॥

ବୁ. ଚନ୍ଦ୍ର (ଶୁ ସୁହୃଦ୍‌ବାହନସଂଯୁକ୍ତଂ ସ୍ୱର୍ଣ୍ଣୀୟାଦିରଜସ୍ୱ ିତଂ ।
ସୁତସୌଭାଗ୍ୟକାମଞ୍ଚ ବୁଧସ୍ୟ ନ୍ତର୍ଗତୋ ବିଧୁଃ ॥

(ଅ) କଣ୍ଟକାଦି ପ୍ରବେଶଞ୍ଚ ଶୃଙ୍ଗିଭ୍ୟୋ ଭୟମେବ ଚ ।
ନିଶାକରଃ କରୋତ୍ୟାଶୁ ବୁଧପାକଦଶାଂଗତଃ ॥

ବୁ. ମଙ୍ଗଳ (ଶୁ ଭୋଜନାମ୍ବରସୌଖ୍ୟଞ୍ଚ ମନ୍ତ୍ରୀମାନନମେବ ଚ ।
ଦଦାତି ନୃପସତ୍କାରଂ ବୁଧସ୍ୟାନ୍ତର୍ଗତେ କୁଜେ ॥

(ଖ) କଫପିତ୍ତସମୁଦ୍ଭୂତାଂ ଶିରଃପୀଡ଼ାଂ ଭସ୍ମାବହ୍ନାଂ ।
ମଙ୍ଗଳଃ କୁରୁତେ ଶୋକଂ ବୁଧସ୍ୟାନ୍ତର୍ଦଶାଂ ଗତଃ ॥

ବୁ. ସନ୍ଧ (ଶୁ) ଅକସ୍ମାଦ୍ଧନଲାଭଞ୍ଚ ସର୍ବସିଦ୍ଧିଃ ପ୍ରଜାୟତେ ।
ପୁତ୍ରମିତ୍ରାଦ୍ଧକଂ ଲାଭଂ ବୁଧସ୍ୟାନ୍ତର୍ଗତେ ତମଃ ॥

(ଖ) ବନ୍ଧୁନାଶଂ ମନସ୍ତାପଂ ଦେଶତ୍ୟାଗଞ୍ଚ ବନ୍ଧନଂ ।
କରୋତି ବହୁଦୁଃଖାନି ବୁଧସ୍ୟାନ୍ତର୍ଗତେ ତମଃ ॥

ବୁ. ବୃହସ୍ପତି(ଶୁ)ବ୍ୟାଧିଶତ୍ରୁଭୟୈର୍ମୁକ୍ତୋ ଧନାଢ୍ୟୋ ନୃପବଲ୍ଲଭଃ ।
ଲଭେଦ୍ରାଜ୍ୟଂ ସୁପୁତ୍ରଞ୍ଚ ବୁଧସ୍ୟାନ୍ତର୍ଗତେ ଗୁରୌ ॥

(ଖ) କୃତ୍ୟାପତ୍ୟବସୁକ୍ତୋଽପି ବାନ୍ଧବୈଃ କଲହୋ ଭବେତ୍ ।
ବ୍ୟାଧିଶତ୍ରୁଭୟୈର୍ଯୁକ୍ତୋ ଗୁରୌ ବୁଧଦଶାଂଗତେ ॥

ବୁ. ଶନି (ଶୁ) ଧନଭୂଷଣଲାଭଶ୍ଚ ରାଜପୂଜ୍ୟୋ ଭବେନ୍ନୃଣାଂ ।
ସର୍ବ କର୍ମ ଭବେତ୍ସିଦ୍ଧିର୍ବୁଧସ୍ୟାନ୍ତର୍ଗତେ ଶନୌ ॥

(ଖ) ବାତଶ୍ଳେଷ୍ମକୃତା ପୀଡ଼ା କଲହୋ ବନ୍ଧୁଭିଃ ସହ ।
ପରଦେଶଗମନଞ୍ଚୈବ ବୁଧସ୍ୟାନ୍ତର୍ଗତେ ଶନୌ ॥

ବୁଧଦଶାଫଳଂ ସମାପ୍ତଂ ।

---

## କେତୁଦଶାଫଳ ବର୍ଣ୍ଣନ

ନାନାବିଭୂତିଧନବାହନକାର୍ଯ୍ୟଲାଭୋ
କ୍ଷେମପ୍ରତାପବଲବୁଦ୍ଧିଶୁଭଂ କରୋତି ।
ସର୍ବାଙ୍ଗରୋଗଭୟଦୁଃଖପରମ୍ପରା ଚ
ଘର୍ଯ୍ୟାବିୟୋଗ କୁରୁତେ ହ୍ୟଶୁଭସ୍ତୁ କେତୁଃ ॥

କେତୁ ଶୁଭ ହୋଇଥିଲେ ଦଶାନ୍ତର୍ଦଶାରେ ନାନା ଉପାୟ ଅବଲମ୍ବନ କରି ଧନଲାଭ, ବାହନଲାଭ ଓ କାର୍ଯ୍ୟଲାଭ କରିବ । ପ୍ରତାପ, ବଲ ଓ ବୁଦ୍ଧିର ବୃଦ୍ଧି ହୁଏ । କେତୁ ଯେଉଁ ଗ୍ରହର ଗୃହରେ ଥିବ ସେହି ଗ୍ରହର ସମସ୍ତ କାରକଦତ୍ତ ଶୁଭଫଳର ବୃଦ୍ଧି ହେବ ।

କେତୁ ଅଶୁଭ ହୋଇଥିଲେ ଦଶାଭୋଗକାଳରେ ସମସ୍ତ ଶରୀରରେ ରୋଗ ପ୍ରକାଶ, ବୃଥାଭୟ, ଦୁଃଖପ୍ରାପ୍ତି ଓ ସ୍ତ୍ରୀପୀଡ଼ା ହୁଏ । କେତୁ ଯେ ଗ୍ରହର ଗୃହରେ ଥାଏ ସେହି ଗ୍ରହର କାରକଦତ୍ତ ସମସ୍ତ ଅଶୁଭ ଫଳର ବୃଦ୍ଧି ହୁଏ ।

କେ. କେତୁ (ଶୁ)ଶୁଭସ୍ଥେ କେତୌ ସମ୍ପ୍ରାପ୍ତେ ଦାୟେ ସ୍ୱାନ୍ତରସଂସ୍ଥିତେ
ଭ୍ରାତୃବର୍ଗାଦି ସୌଖ୍ୟଞ୍ଚ ଯଜ୍ଞଦାନବିବର୍ଦ୍ଧନଂ ॥

(ଅ) ବୈକଲ୍ୟଂ କାର୍ଯ୍ୟହାନିଶ୍ଚ ବନ୍ଧୁଦ୍ୱେଷସ୍ତଥୈବ ଚ ।
ରାଜବାଧାର୍ଥହାନିଶ୍ଚ କେତୋଃ ସ୍ୱାନ୍ତର୍ଦଶାଫଲଂ ॥

କେ. ଶୁକ୍ର (ଶୁ) ସୌହାର୍ଦ୍ଦ୍ୟ ବିପ୍ରଭୂପାଭ୍ୟାଂ ସ୍ତ୍ରୀସଙ୍ଗୋ ବିତ୍ତସଞ୍ଚୟଃ ।
ସଶୁଭୋ ବିଜୟଃ ଖ୍ୟାତିଃ କେତୋରନ୍ତର୍ଗତେ ସିତେ ॥

(ଅ ତାପଜ୍ୱରାଦିରୋଗଃ ସ୍ୟାଦ୍ ଭାର୍ଯ୍ୟାରୋଗୋ ଧନକ୍ଷୟଃ ।
ବିପ୍ରେଣ ଚ ବିରୋଧଃ ସ୍ୟାତ୍କେତୋରନ୍ତର୍ଗତେ ଭୃଗୌ

କେ. ରବି (ଶୁ) ରୋଗନାଶୋ ବିତ୍ତଲାଭଃ ରାଜପୂଜା ତତୋଃ ସୁଖଂ ।
କେନ୍ଦ୍ରୋରନ୍ତର୍ଗତେ ସୂର୍ଯ୍ୟେ ସର୍ବଦା ଶୁଭଦର୍ଶନଂ ।

(ଅ) ଶୋକପୂର୍ବକଲତ୍ରାଣାଂ ପଶୁଦାରାର୍ଥନାଶନଂ ।
ଇଷ୍ଟବନ୍ଧୁବିନାଶଃ ସ୍ୟାତ୍କେନ୍ଦ୍ରୋ ରନ୍ତର୍ଗତେ ରବୌ ॥

କେ. ଚନ୍ଦ୍ର (ଶୁ) ସୁଖଂ ଶୌର୍ଯ୍ୟଂ ତଥା ସ୍ଥୈର୍ଯ୍ୟଂ ରୋଗନାଶସ୍ତଥୈବ ଚ
ସ୍ତ୍ରୀଲାଭୋ ବଲଲାଭଃ ସ୍ୟାତ୍କେନ୍ଦ୍ରୋରନ୍ତର୍ଗତେ ବିଧୌ ।

(ଅ) ଶତ୍ରୁଗ୍ରସ୍ତମିତ୍ରାବ୍ୟାଧିର୍ବନ୍ଧୁବିତ୍ତବିନାଶନଂ ।
କଳହୋ ବନ୍ଧୁବିଦ୍ୱେଷଃ କେନ୍ଦ୍ରୋରନ୍ତର୍ଗତେ ବିଧୌ ॥

କେ. ମଙ୍ଗଳ(ଶୁ)ତଥା ବୈଧ ଧର୍ମସୂନୋଃ ପାଦେଽଶୁଭଦ୍ରୁତସ୍ତଥା ।
କ୍ଷେତ୍ରାମ୍ବରସୁଖାବାପ୍ତିଃ ପଶୁବାହନଭୂଷଣଂ ॥

(ଅ) ଗୋତ୍ରଜୈଃ ସହ ବାଦଃ ସ୍ୟାତ୍ ଚୌରାଗ୍ନି ଭୟମେବ ଚ ।
ରକ୍ତପିତ୍ତଜ୍ୱରଶ୍ଚୈବ କେନ୍ଦ୍ରୋରନ୍ତର୍ଗତେ କୁଜେ ॥

କେ. ରାହୁ (ଶୁ) ଆରୋଗ୍ୟାର୍ଥଲାଭଷ୍ଟ ବିବାହ ସୁଖ ଧର୍ମଭାକ୍ ।
କ୍ଷେତ୍ରାମ୍ବରସୁଖାବାପ୍ତିଃ କେନ୍ଦ୍ରୋରନ୍ତର୍ଗତେଽପ୍ୟହୌ ॥

(ଅ) ଗୃହନାଶଂ ମନସ୍ତାପଂ ବନ୍ଧୁଭିଃ କଳହଂ ତଥା ।
ଦେଶତ୍ୟାଗଞ୍ଚ କୁରୁତେ କେନ୍ଦ୍ରୋରନ୍ତର୍ଗତେଽସୁରଃ ॥

କେ. ବୃହସ୍ପତି(ଶୁ)ଦ୍ୱିଜେନ୍ଦ୍ରୈଃ ସହ ସଂଯୋଗୋ ରାଜପୂଜା ଧନାଗମଃ ।
କଳତ୍ରପୁତ୍ରସୌଖ୍ୟଂ ଚ କେନ୍ଦ୍ରୋରନ୍ତର୍ଗତେ ଗୁରୌ ॥

(ଅ) ଭୂମିନାଶୋ ଦ୍ରବ୍ୟହାନିର୍ବନ୍ଧନଂ ଗୁପ୍ତଭେଦନଂ ।
ରଣଶସ୍ତ୍ରପ୍ରପୀଡ଼ା ଚ କେନ୍ଦ୍ରୋରନ୍ତର୍ଗତେ ଗୁରୌ ॥

କେ. ଶନି (ଶୁ) କଳତ୍ରସୁତସୌଖ୍ୟଞ୍ଚ ଧନଭୃତ୍ୟସମାଗମଃ ।
ଅସ୍ଥିରଂ ଜାୟତେ ଶତ୍ରୁଂ କେତୋରନ୍ତର୍ଗତେ ଶନୌ ॥

(ଅ) ବାୟୁଶୂଳାଦିରୋଗଃ ସ୍ୟାତ୍ ସ୍ତ୍ରୀଜନୈଃ ସହ ବିଗ୍ରହଃ ।
ବିଦେଶଗମନଞ୍ଚୈବ କେତୋରନ୍ତର୍ଗତେ ଶନୌ ॥

କେ. ବୁଧ (ଶୁ) ସୁହୃଦ୍ଗୁଣସମାଯୋଗୋ ବୁଦ୍ଧିବୋଧସମାଗମଃ ।
ସର୍ବଧର୍ମସମାୟୁକ୍ତଃ କେତୋରନ୍ତର୍ଗତେ ବୁଧେ ॥

(ଅ) ପରବିତ୍ତରତୋ ରୋଗୀ କୁଟୁମ୍ବୈଃ ସହ ବୈରତା ।
କ୍ଲେଶଂ ଲୋକଞ୍ଚ କୁରୁତେ କେତୋରନ୍ତର୍ଗତେ ବୁଧେ

କେତୁଦଶାଫଳ ସମାପ୍ତ ।

---

ଶୁକ୍ରଦଶାଫଳ ବିଚାରଃ

ଶେ ଜ୍ୟା' ଗୀତରତ୍ନପ୍ରମୋଦସୁରଭିଦ୍ରବ୍ୟାନ୍ନପାନାମ୍ବରଂ
ସ୍ତ୍ରୀରତ୍ନଦ୍ୟୁତମନ୍ମଥୋପକରଣଜ୍ଞାନେଷ୍ଟମିତ୍ରାଗମାଃ ।
କୌଶଲ୍ୟଂ କ୍ରୟବିକ୍ରୟେ କୃଷିନିଧିପ୍ରାପ୍ତିର୍ଧନସ୍ୟାଗମୋ
ବୃନ୍ଦୋର୍ବିଶନ୍ନଷୋଦଧର୍ମିରଦ୍ଧତୈର୍ବୈରଂ ଶୁଚଃ ସ୍ନେହତଃ ॥

ବୃ. ଜା.

ଶୁକ୍ର ଶୁଭ ହୋଇଥିଲେ ଦଶାଭୋଗକାଳରେ ଜାତକ ନାନା-ପ୍ରକାର ପ୍ରମୋଦବିଳାସରେ ଦିନ କଟାଏ । ସଙ୍ଗୀତ ଶାସ୍ତ୍ର ଗବେଷଣାରେ ମନୋ ନିବେଶ କରେ । ସୁଗନ୍ଧି ଦ୍ରବ୍ୟାଦି, ପଟ୍ଟବସ୍ତ୍ରାଦି ଓ ରତ୍ନାଦିର ବ୍ୟବହାରହେତୁକ ଯଥେଷ୍ଟ ଧନନାଶ କରେ । ଉତ୍ତମା ସ୍ତ୍ରୀ ଭୋଗ,

ମଣିମାଣିକ୍ୟ ଧାରଣ, କବିତ୍ୱସ୍ଫୁରଣ, ମିତ୍ରଲାଭ, କ୍ରୟବିକ୍ରୟ ପଟୁତା ଓ କୃଷିକାର୍ଯ୍ୟ ହେତୁରୁ ଧନଲାଭ ହୁଏ ।

ଶୁକ୍ର ଅଶୁଭ ହୋଇଥିଲେ ଦଶାଭୋଗକାଳରେ ସ୍ୱଜାତିସହ କଳହ, ଅକର୍ମରେ ପ୍ରବେଶ, ଧର୍ମହାନି ଓ ସ୍ନେହୀମାନଙ୍କ ସହ ବୈରତା ସମ୍ପାଦନ କରାଏ ।

ଶୁ, ଶୁକ୍ର (ଶୁ) ସମ୍ଭୋଗଂ ରାଜସମ୍ମାନଂ ଭୂଷଣଂ ପୁତ୍ରସମ୍ପଦଂ ।
ଧନଧାନ୍ୟଂ ରିପୋର୍ନାଶଂ ଶୁକ୍ରସ୍ୟାନ୍ତର୍ଦଶାଫଳଂ ॥

(ଅ) ପୁତ୍ରକ୍ଷତି ରୋଗଭୟଞ୍ଚ କଷ୍ଟଂ ସୁଖାର୍ଥନାଶଂ ସ୍ୱଜନୈର୍ବିରୋଧଂ ।
ପ୍ରାପ୍ନୋତି ପାପେ ଭୃଗୁଜେ ନିତାନ୍ତଂ ସ୍ୱମିତ୍ରଦାରାଦ ଭୟଂ ଚ ପୁଂସାଂ ।

ଶୁ, ରବି (ଶୁ) ସଂଗ୍ରାମକାର୍ଯ୍ୟେ ବିଜୟ୍ୟାନୁରକ୍ତଃ
ବସ୍ତ୍ରାଦିଲାଭଂ ଧନସଞ୍ଚୟଞ୍ଚ ।
ଭୃଗୋର୍ଦଶାୟାଂ ରବିସଂପ୍ରବିଷ୍ଟେ
ଲକ୍ଷ୍ମୀବିଳାସୈଃ ସହିତୋ ମନୁଷ୍ୟଃ ॥

(ଅ) ଦେହସ୍ତ୍ରୀବ୍ରଣାକ୍ରାନ୍ତ ଧନନାଶଂ ଭବେନ୍ନୃଣାଂ ।
ତ୍ୟକ୍ତଃ ସ୍ୟାଦ୍‌ବାନ୍ଧବୈଃ ସର୍ବୈର୍ଭାର୍ଗବାନ୍ତର୍ଗତେ ରବୌ ॥

ଶୁ. ଚନ୍ଦ୍ର (ଶୁ) ସ୍ତ୍ରୀଭୂଷଣାଢ୍ୟସଂଯୋଗୋ ରାଜୈଶ୍ୱର୍ଯ୍ୟ ସମାଗମଃ ।
ପୁତ୍ରପୁତ୍ରୀବିବାହଶ୍ଚ ଭାର୍ଗବାନ୍ତର୍ଗତେ ବିଧୌ ॥

(ଅ) ସମ୍ମାନନାଶୋ ରୋଗଶ୍ଚ କର୍ମନାଶଶ୍ଚ ନିତ୍ୟଶଃ ।
ଶୁକ୍ରସ୍ୟାନ୍ତର୍ଗତେ ଚନ୍ଦ୍ରେ ସ୍ତ୍ରୀନାଶୋ ନିଶ୍ଚିତଂ ଭବେତ୍ ॥

ଶୁ. ମଙ୍ଗଳ (ଶୁ) ଉତ୍ସାହୀ ଧନଧାନ୍ୟାଢ୍ୟଃ ବଳଶ୍ଚ ସୁମନାଃ ସୁଖୀ ।
ଭୂମିଲାଭୋ ଭବେଚ୍ଚୈବ ଶୁକ୍ରସ୍ୟାନ୍ତର୍ଗତେ କୁଜେ ॥

(ଅ) ଚତୁଷ୍ପଦଂ ଭୟଂଚାପି ନେତ୍ରରୋଗସ୍ତଥୈବ ଚ ।
ଦେଶଭ୍ରାନ୍ତନଷ୍ଟଲବ୍ଧଂ ଶୁକ୍ରସ୍ୟାନ୍ତର୍ଗତେ କୁଜେ ॥

ଶୁ. ରାହୁ (ଶୁ) ଧସ୍ତ୍ରଙ୍ଗକାମାଦ୍ଦଭୃଦ୍ଧିର୍ନ୍ନଗଣଂ
ବେଶ୍ୟାସଙ୍ଗୋ ଧର୍ମମାର୍ଗପ୍ରସଙ୍ଗଃ ।
ଉଷ୍ଟ୍ରାଦୈର୍ବା ଗୋମହିଷାଦକୈର୍ବା
ସମ୍ୟକ୍‌ପ୍ରାପ୍ତଂ ରାଜସମ୍ମାନନଂ ଚ ॥

(ଅ) ବନ୍ଧନଂ ବନ୍ଧୁସୁହାଦେର୍ବନ୍ଧୁନାଶୋ ରିପୋର୍ଭୟଂ ।
ଶରୀରଦୈନ୍ୟମାପ୍ନୋତି ରାହୋରନ୍ତର୍ଗତେ ଭୃଗୌ ॥

ଶୁ. ବୃହସ୍ପତି (ଶୁ) ରାଜପୂଜା ସୁଖଂ ପ୍ରୀତିଃ କନ୍ୟାଜନନମେବ ଚ ।
ଗୁର୍ବାନ୍ତର୍ଗତେ ଜୀବେ ଚୌରାନ୍ନଷ୍ଟଞ୍ଚ ଜାୟତେ ॥
(ଅ) ଧନଧାନ୍ୟବହ୍ନିନଷ୍ଟ ଶତ୍ରୁଣାମୁଦୟଂ ତଥା ।
କଲହଂ ସ୍ୱଜନୈଃ ସାର୍ଦ୍ଧଂ ଭୃଗୋରନ୍ତର୍ଗତେ ଗୁରୌ ॥

ଶୁ. ଶନି (ଶୁ) ଶତ୍ରୁକ୍ଷୟମବାପ୍ନୋତି ମିତ୍ରବୃଦ୍ଧିଶ୍ଚ ଜାୟତେ ।
ଚୌରାଦ୍‌ବିତ୍ତସ୍ୟ ଲାଭଃ ସ୍ୟାଚ୍ଛୁକ୍ରସ୍ୟାନ୍ତଗତେ ଶନୌ ॥
(ଅ) ଅର୍ଥନାଶୋ ସୁହୃନ୍ନାଶୋ ନଷ୍ଟୁରଃ କ୍ରୂରକର୍ମକୃତ୍ ।
ଜ୍ଞାତେର୍ବୈରିତ୍ୱମାପ୍ନୋତି ଶୁକ୍ରସ୍ୟାନ୍ତର୍ଗତେ ଶନୌ ॥

ଶୁ. ବୁଧ (ଶୁ) ସର୍ବତ୍ର ଲଭତେସୌଖ୍ୟଂ ମାନସଞ୍ଚସୁଭୂଷଣଂ ।
ଭାର୍ଯ୍ୟାମିତ୍ରାର୍ଥଲାଭଞ୍ଚ ଶୁକ୍ରସ୍ୟାନ୍ତର୍ଗତେ ବୁଧେ ॥
(ଅ) ସର୍ବତ୍ର ଲଭତେ ହାନଂ ଦୁଷ୍କୀର୍ତ୍ତିଂ ଚ ପରାଜୟଂ ।
ରାଜପୀଡ଼ାମନସ୍ତାପ ଶୁକ୍ରସ୍ୟାନ୍ତର୍ଗତେ ବୁଧେ ॥

ଶୁ. କେତୁ (ଶୁ) ରାଜସମ୍ମାନନଂ ସୌଖ୍ୟଂ ସର୍ବରୋଗବିନାଶନଂ ।
ଧନଧାନ୍ୟାଦଲାଭଂ ଚ ଭୃଗୋରନ୍ତର୍ଗତେ ଶିଖୀ ॥

(ଥ) କାର୍ଯ୍ୟନାଶୋ ମନସ୍ତାପଃ ଧନଧାନ୍ୟାଦିନାଶନଂ ।
ବାତପିତ୍ତକୃତା ପୀଡ଼ା ଭୃଗୋରନ୍ତର୍ଗତେ ଧ୍ୱଜେ ॥

ଶୁକ୍ରଦଶାଫଳ ସମାପ୍ତ ।

---

ଗ୍ରହର ଶୁଭାଶୁଭକୁ ନିଶ୍ଚୟ କରି ପୂର୍ବୋକ୍ତ ପ୍ରକାରେ ଫଳାଫଳ କହିବେ । ଶୁଭ ଅଶୁଭ ଉଭୟର ବର୍ଗର ହେଲେ ଅନୁପାତରେ ଶୁଭାଶୁଭମିଶ୍ରିତ ଫଳ କହିବେ । ଦଶା ଓ ଅନ୍ତରର ଅବସ୍ଥା ଅନୁଯାୟୀ କେତେକ ସ୍ୱତନ୍ତ୍ର ଫଳ ଦେଖାଯାଏ ; ତାହା ନିମ୍ନରେ ପ୍ରଦତ୍ତ ହେଲା ।

## ଦଶାନ୍ତର୍ଦଶାସ୍ଥିତଫଳଂ

ଅନ୍ୟୋନ୍ୟଷଷ୍ଠାଷ୍ଟମଦାୟକାଲେ ନୃପାଦ୍ଭୟଂ ଭୃତ୍ୟଜନୈର୍ବିରୋଧଂ ।
ସ୍ତ୍ରିୟାଂ ବିରୋଧଂ ସୁତଦାରନାଶଂ ଚୌରାଗ୍ନିବନ୍ଧାଦିମନୋବିକାରଂ ॥
ସ. ର.

ଦଶା ଅନ୍ତରକୁ ଷଷ୍ଠାଷ୍ଟମ ହୋଇଥିଲେ ସେହି ଦଶାଭୋଗ-କାଳରେ ସେହି ଅନ୍ତରଟି ଥିଲେ ରାଜଭୟ, ଭୃତ୍ୟାଦି ଦାସ ଓ ସେମାନଙ୍କ ସହ ବିରୋଧାସମ୍ପାଦନ, ସ୍ତ୍ରୀ ଓ ପୁତ୍ରାଦିର ପ୍ରାଣାନ୍ତକ ପୀଡା, ଚୌର, ଅଗ୍ନି, ବନ୍ଧନଭୟ ଓ ମାନସିକ ପୀଡ଼ା ହୁଏ । ଦଶା ଅନ୍ତର ପରସ୍ପର ଅଷ୍ଟମସ୍ଥ ହେଲେ ଉପରୋକ୍ତ ସମସ୍ତ ଅଶୁଭ ହୁଏ ।

ଅନ୍ତର୍ଦଶାୟାଂ ମଦନସ୍ଥିତସ୍ୟ ଖଗେଶ୍ୱରଣଃ ସ୍ୱାନ୍ତରଣଂ ଦଶାୟାଂ ।
ରୋଗଃ କୁଭୋଗଃ କଲହାଦିଭଙ୍ଗଃ ସଙ୍ଗସ୍ୟ ଜନୈର୍ହରଣଂ ଧନସ୍ୟ ॥
ଶ. ହୋ.

ଦଶା ଓ ଅନ୍ତର ପରସ୍ପର ସମସପ୍ତମଭାବେ ଅବସ୍ଥାନ କଲେ ସେହି ଦଶାରେ ସେହି ଅନ୍ତର ଭୋଗକାଳରେ ପୀଡ଼ା, କଳହ, ଶତ୍ରୁଜୟ, କନ୍ୟା ଓ ଧନହାନି ହୁଏ । ପରସ୍ପର ଅଷ୍ଟଶତ୍ରୁ ହୋଇଥିଲେ ଏହି ଅଶୁଭଫଳ ହୁଏ ।

**ଜନନରାଶିଜନୁସ୍ତନୁନାଥୟୋ ରିପୁଦଶାସମୟେ ମତିବିଭ୍ରମଃ ।**
**ଭୟମରେରପି ରାଜ୍ୟପରିଚ୍ୟୁତିଃ ଖଳଜନୈଃ କଳହୋ ବଳହୀନତା ॥**
**ଜା. ଭ.**

ଜନ୍ମରାଶିର ଅଧିପତି କିମ୍ବା ଲଗ୍ନାଧିପତିଙ୍କର ଦଶାରେ ଷଷ୍ଠାଧିପତି ଗ୍ରହ ଅନ୍ତର୍ଦଶା ହୋଇ ଆସିଲେ କିମ୍ବା ଷଷ୍ଠାଧିପତିର ଦଶାରେ ରାଶ୍ୟଧିପତି କିମ୍ବା ଲଗ୍ନାଧିପତି ଅନ୍ତର୍ଦଶା ହୋଇ ଆସିଲେ ମତିବିଭ୍ରମ, ବୃଥାଭୟ, ଧନନାଶ, ସ୍ଥାନାନ୍ତର ଓ ଦୁଷ୍ଟସହ କଳହ ଓ ବଳହାନି ହୁଏ ।

**ଦଶାଧିପେନାପି ଯୁତସ୍ୟ ଭୁକ୍ତୌ ସ୍ତ୍ରୀପୁତ୍ରଭୃତ୍ୟାର୍ଥକୃଷେର୍ବିନାଶଂ ।**
**ଉଦ୍ୟୋଗଭଙ୍ଗଂ ସ୍ୱଜନୈର୍ବିରୋଧମାକସ୍ମିକଂ ଦୂଷଣମେତି କାଳେ ॥**
**ସ. ଚ.**

ଦଶା ଓ ଅନ୍ତର ଏକତ୍ର ଥିଲେ ତାହାର ଅନ୍ତର୍ଦଶାଭୋଗ କାଳରେ ସ୍ତ୍ରୀ ଓ ପୁତ୍ରପୀଡ଼ା, କୃଷିହାନି, ଧନ ଓ ଭୃତ୍ୟବିନାଶ, ଉଦ୍ୟୋଗଭଙ୍ଗ, ଆତ୍ମୀୟବିରୋଧ ଓ ଆକସ୍ମିକ ଅପବାଦ ଲାଭ ହୁଏ ।

**ଅଷ୍ଟମେନ୍ଦୋର୍ଦଶାମୃତ୍ୟୁଂ ବନ୍ଧମସ୍ତମିତସ୍ୟ ଚ ।**
**ଶୁଭସ୍ୟ ବକ୍ରିଣୋ ରାଜ୍ୟଂ ପାପସ୍ୟ ବ୍ୟସନାଟନେ ॥ ଶ୍ରୀ. ସୀ.**

ଅଷ୍ଟମସ୍ଥ ଚନ୍ଦ୍ରଦଶା କିମ୍ବା ଅସ୍ତଗତ ଗ୍ରହର ଦଶା ମୃତ୍ୟୁ ବା ବନ୍ଧନାଦିର ଭୟ ଜନ୍ମାଏ । ଶୁଭଗ୍ରହର ବକ୍ରଦଶା ଶୁଭଫଳ ପ୍ରଦାନ କରେ । ବକ୍ର ପାପଦଶା ବୃଥାଭ୍ରମଣ ଓ ବ୍ୟସନାସକ୍ତ କରାଏ ।

ପାପଗ୍ରହଦଶାୟାନ୍ତୁ ପାପସ୍ୟାନ୍ତର୍ଦ୍ଦଶା ଯଦି ।
ଅରିଯୋଗେ ଭବେନ୍ମୃତ୍ୟୁର୍ମିତ୍ରଯୋଗେ ଚ ସଂଶୟଃ । ଶ. ହୋ.

ପାପ ଗ୍ରହର ଦଶାରେ ପାପ ଗ୍ରହର ଅନ୍ତର ମାରାତ୍ମକ ପୀଡ଼ା ହିଏ । ଯଦି ଉଭୟ ଗ୍ରହ ପରସ୍ପର ଶତ୍ରୁ ହୋଇଥିବେ ତେବେ ଉପରୋକ୍ତ ଫଳ ଅଟେ । ଉଭୟ ମିତ୍ର ହୋଇଥିଲେ ପୀଡ଼ା ହୁଏ ।

ଦଶାଧିପାଦ୍‌ବିତ୍ତଗତସ୍ୟ ଭୁକ୍ତୌ ମୃଦନ୍ନପାନାମ୍ବରଗନ୍ଧମାଲ୍ୟଂ ।
ପରୋପକାରଂ ସ୍ୱଜନସ୍ୟ ସୌଖ୍ୟଂ ସ୍ତ୍ରୀପୁତ୍ରବନ୍ଧ୍ୱାମ୍ରମନୋବିଳାସଂ ॥
ସ. ଚ.

ଦଶାର ଦ୍ୱିତୀୟସ୍ଥ ଗ୍ରହର ଅନ୍ତର୍ଦ୍ଦଶା ଉତ୍ତମ ସୌଖ୍ୟଲାଭ, ପରୋପକାର, ସ୍ୱଜନସୌଖ୍ୟ, ସ୍ତ୍ରୀ ପୁତ୍ର ମିତ୍ରାଦି ହେତୁରୁ ସୁଖପ୍ରାପ୍ତି ଓ ଭୋଗ କରାଏ ।

ପୁତ୍ରଦାରାଦିସଂପ୍ରାପ୍ତିର୍ନୃପପୂଜା ମହତ୍ତରା ।
ଯଚ୍ଚତୁର୍ଥେ ତୁଙ୍ଗଗେହା ଶୁଭସ୍ୱାମିଗ୍ରହୋଽଥବା ॥ ଜା. ସଂ.

ଦଶାର ଚତୁର୍ଥରେ ଯେ କୌଣସି ଗ୍ରହ ଉଚ୍ଚ ହୋଇଥିଲେ କିମ୍ବା ସ୍ୱଗୃହସ୍ଥ ହୋଇଥିଲେ ବା ଶୁଭଗ୍ରହର ଗୃହରେ ଥିଲେ ସେହି ଅନ୍ତର୍ଦ୍ଦଶାରେ ରାଜସମ୍ମାନ, ପୁତ୍ରଲାଭ ଓ ଧନଲାଭ ହୋଇଥାଏ ।

ବାହନୋ ଗ୍ରାମଲାଭଶ୍ଚ ପଶୁବୃଦ୍ଧିଶ୍ଚ ଭୂୟସୀ ।
ଚନ୍ଦ୍ର ଚନ୍ଦ୍ରାଂଶଃ ଲାଭଃ ସ୍ୟାତ୍ ବହୁଧାନ୍ୟାଦିଭିର୍ଯୁତଃ । ଜା. ସଂ.

ଚନ୍ଦ୍ର ଯେଉଁ ରାଶିରେ ଥିବେ, ସେହି ରାଶିର ଅଧିପତି ଯେଉଁ ଗ୍ରହର ଚତୁର୍ଥରେ ବାସ କରୁଥିବ, ସେହି ଗ୍ରହର ଦଶାଭୋଗ କାଳରେ

ଏହି ଚତୁର୍ଥସ୍ଥ ଗ୍ରହର ଅନ୍ତର୍ଦଶା ଭୋଗ ସମୟରେ ବାହନ, ଗ୍ରାମ, ପଶୁ ଓ ବସ୍ତ୍ରଧାନ୍ୟ ଲାଭ ହୁଏ ।

ପରସ୍ପରଦଶାୟାଂ ଭୁକ୍ତୌ ସୂର୍ଯ୍ୟକଜାର୍ଗବୌ ।
ବ୍ୟତ୍ୟୟେନ ବିଶେଷେଣ ପ୍ରଦଶେତାଂ ଶୁଭାଶୁଭଂ ॥

• ଜେ. ବି.

ଶୁକ୍ରଦଶାରେ ଶନି ଅନ୍ତର ଓ ଶନିଦଶାରେ ଶୁକ୍ର ଅନ୍ତର ଶୁଭଫଳ ପ୍ରଦାନ କରନ୍ତି ।

ପଞ୍ଚମେଶଦଶାୟାଂଞ୍ଚ କର୍ମପାନ୍ତରସଂଯୁତା ।
ଅତୀବ ଶୁଭଦା ପ୍ରୋକ୍ତା କାଲବିଦ୍ଭିର୍ମୁନୀଶ୍ବରୈଃ ॥ ପ. ସଂ.

ପଞ୍ଚମାଧିପତିର ଦଶାରେ ଦଶମାଧିପତିର ଅନ୍ତର ଅତ୍ୟନ୍ତ ଶୁଭଫଳ ହୁଏ । ଏହା ତ୍ରିକାଳଜ୍ଞ ମୁନିମାନେ କହିଅଛନ୍ତି ।

ବିଦ୍ୟାର୍ଥଧର୍ମସତ୍କର୍ମଖ୍ୟାତିପୌରୁଷସିଦ୍ଧୟଃ ।
ଯତଃ ପଞ୍ଚମକାମାରିଗତାଃ ସ୍ପୋଟଶୁଭଗ୍ରହାଃ ॥

ଯେଉଁ ଗ୍ରହଠାରୁ ୫ମ, ୬ଷ୍ଠ, ୭ମରେ ଉଚ୍ଚସ୍ଥ, ସ୍ୱକ୍ଷେତ୍ରଗତ ଶୁଭଗ୍ରହମାନେ ଥାଆନ୍ତି, ସେମାନଙ୍କର ଅନ୍ତର୍ଦଶା ପୂର୍ବୋକ୍ତ ଗ୍ରହର ଦଶା ଭୋଗକାଳରେ ଧନଲାଭ, ବିଦ୍ୟାପ୍ରାପ୍ତି ଧର୍ମଲାଭ, ସତ୍କର୍ମ, ଖ୍ୟାତି ଓ ପୌରୁଷ ସିଦ୍ଧ କରାନ୍ତି ।

ଗ୍ରହବର୍ଣ୍ଣାନୁରୂପେଣ ଦିଗ୍‌ଦେଶକାଲଭେଦତଃ ।
କାରଣସ୍ୟ ଫଳଂ ଦୃଷ୍ଟ୍ୱା ଶୁଭାଶୁଭବିନିଶ୍ଚୟଃ ॥

ଗ୍ରହମାନଙ୍କର ଶୁଭାଶୁଭ ଜାଣିବା ପାଇଁ ଦେଶ, କାଳ, ପାତ୍ର ବିଚାର କରି, କାରକଫଳର ସଙ୍ଗତ ବ୍ୟବହାର କରି ଶୁଭାଶୁଭ ଫଳ କହିବାକୁ ହୁଏ ।

ଦଶାନ୍ତର୍ଦଶାବିଚାର ସମାପ୍ତ ।

---

## ନବମୋଽଧ୍ୟାୟଃ

### ମୁଂଥାଫଳ ବିଚାରଃ

ସ୍ୱଜନ୍ମଲଗ୍ନାତ୍ ପ୍ରତିବର୍ଷମେକୈକରାଶିଭୋଗାନ୍ମୁଥହା କ୍ରମେଣ ।
ସ୍ୱଜନ୍ମଲଗ୍ନଂ ରବିତସ୍ତଥା ତଂ ଗତାବ୍ଦଯୁକ୍ତଂ ଭମୁଣ୍ଟୋଂଥହାସ୍ୟାତ୍ ॥
ତା. ନୀ.

ଜନ୍ମଲଗ୍ନର ନାମ ମୁଂଥା (ପାରସିକ) ଅଟେ । ତାହା ପ୍ରତ୍ୟେକ ବର୍ଷ ଏକ ଏକ ରାଶିକ୍ରମରେ ଭ୍ରମଣ କରେ । ମନେ କର, ଗୋଟିଏ ବାଳକ ମିଥୁନ ଲଗ୍ନରେ ଜନ୍ମ ହେଲା । ତାହାର ପ୍ରଥମ ବର୍ଷପର୍ଯ୍ୟନ୍ତ ସେହି ଲଗ୍ନ । ଦ୍ୱିତୀୟ ବର୍ଷ ବୟସକ୍ରମେ ଲଗ୍ନ ହେଲା କର୍କଟ । ତୃତୀୟ ବର୍ଷ ସିଂହଲଗ୍ନ । ଏହି କ୍ରମେ ତ୍ରୟୋଦଶ ବର୍ଷରେ ହେବ ମିଥୁନ । ଚତୁର୍ଦଶ ବର୍ଷରେ ହେବ କର୍କଟ ଲଗ୍ନ । ଏହିପରି ଲଗ୍ନବିଚାର କରାଯାଏ । ଯେଉଁ ବର୍ଷର ବାର୍ଷିକ ଫଳ ବିଚାର କରିବାକୁ ହେବ ସେହି ବର୍ଷର ପୂର୍ବ ବର୍ଷର ଜାତକର ବୟସ ସଂଖ୍ୟା ଯାହା ସେଥିରେ ଚଳିତ ବର୍ଷକୁ ଯୋଗକଲେ ବର୍ଷ ଲଗ୍ନସଂଖ୍ୟା ଯାହା ତାହା ମିଶାଇବ । ଏହି ମିଶ୍ରଣଫଳକୁ ୧୨ରେ ହରଣ କଲେ ଯାହା ଅଂଶ ରହିବ, ସେହି ଅଂଶ ସଂଖ୍ୟାପଠିତ ରାଶି ମୁଂଥାଲଗ୍ନ ହୁଏ । ଜନ୍ମକାଳରେ ଜାତକସ୍ଥ ଗ୍ରହଚକ୍ରକୁ ନେଇ ବଳାବଳ ବିଚାରରେ ଆବଶ୍ୟକ ବର୍ଷର ଶୁଭାଶୁଭ ଫଳ ଠିକ୍ କରାଯାଏ ।

ଉଦାହରଣ :—ମିଥୁନ ଲଗ୍ନଜାତ ବ୍ୟକ୍ତିର ଅଷ୍ଟାଦଶ ବର୍ଷର ମୁଂଥାଲଗ୍ନ କଣ ?

ପୂର୍ବ ବର୍ଷସଂଖ୍ୟା = ୧୭
ବର୍ଷ ଲଗ୍ନସଂଖ୍ୟା = ୮ (ବୃଷ)
ମୋଟ = ୧୭ + ୮ = ୨୫

ଏହାକୁ ୧୨ ରେ ହରଣ କଲେ ୨୫ ÷ ୧୨ = ଲବ୍ଧ ଅଧିକ ୨ ଅଂଶ ରହିଲା ୧ ।

ଏଥିରୁ ସ୍ପଷ୍ଟ ଜଣାଗଲା ଯେ, ମେଷ ଜାତକର ୧୮ ବର୍ଷର ମୁଂଥାଲଗ୍ନ ।

ସ୍ୱାମିସୌମ୍ୟେକ୍ଷଣାତ୍ସୌଖ୍ୟଂ କ୍ଷୁତଦୃଷ୍ଟ୍ୟାଽସ୍ୟାରୁଜଂ ।
ଭାବାଲୋକନସଂଯୋଗାତ୍ ଫଳମସ୍ୟା ନିରୂପ୍ୟତେ ॥ ତା. ନୀ

ମୁଂଥାଲଗ୍ନ ଅଣିଲା ପରେ ସେହି ବର୍ଷର ଫଳ କପରି ଅଣାଯାଏ, ତାହା ବର୍ତ୍ତମାନ କହାଯିବ । ମୁଂଥାଲଗ୍ନ ଯେ ରାଶିରେ ହେବ ସେହି ରାଶିର ଅଧିପତିକୁ ମୁଂଥେଶ କହନ୍ତି । ମୁଂଥାଲଗ୍ନ ସ୍ୱସ୍ୱାମୀ କିମ୍ବା ଶୁଭଗ୍ରହ-ଯୁକ୍ତ ହୋଇଥିଲେ କିମ୍ବା ସ୍ୱସ୍ୱାମୀ ବା ଶୁଭଗ୍ରହଦ୍ୱାରା ଦୃଷ୍ଟ ହେଉଥିଲେ ସେହି ବର୍ଷର ଫଳ ଶୁଭ ହୁଏ । ମୁଂଥେଶ ଶତ୍ରୁଯୁକ୍ତ ହେଲେ କିମ୍ବା ଚଳଗୃହ ଓ ଅଳ୍ପବଳୀ ଗ୍ରହକର୍ତ୍ତୃକ ଦୃଷ୍ଟ ହେଲେ ସେହି ବର୍ଷ ଅଶୁଭଫଳ ହୁଏ । ଏହି ବର୍ଷଫଳ ବିଶ୍ୱରରେ ଜାତକ ପରଦୃଷ୍ଟି ଓ ଯୁକ୍ତିର ବିଶ୍ୱର କରିବେ ।

ବର୍ଷଲଗ୍ନାତ୍ ସୁଖସ୍ଥାଂତ୍ୟାରସୁରନ୍ଧ୍ରେ ସୁଶୋଭନା ।
ପୁଣ୍ୟକର୍ମାୟଗା ସୌଖ୍ୟଂ ଦତ୍ତେନ୍ୟହୋଦ୍ୟମାଦନଂ ॥
ତା. ନୀ.

ମୁଂଥାଲଗ୍ନ ବର୍ଷଲଗ୍ନର ଚତୁର୍ଥ, ସପ୍ତମ, ଦ୍ୱାଦଶ, ଷଷ୍ଠ ବା ଅଷ୍ଟମରେ ଥିଲେ ଶୁଭଫଳ ହୁଏ ନାହିଁ । ନବମ, ଦଶମ, ଏକାଦଶରେ ଥିଲେ ନାନାପ୍ରକାର ଶୁଭ ହୁଏ । ଲଗ୍ନ, ଦ୍ୱିତୀୟ, ତୃତୀୟ, ପଞ୍ଚମରେ ଥିଲେ ଉଦ୍ୟୋଗଦ୍ୱାରା ସେହି ବର୍ଷ ଧନଲାଭ ହୁଏ ।

ଶତ୍ରୁକ୍ଷୟଂ ମାନସତୁଷ୍ଟିଲାଭଂ ପ୍ରତାପବୃଦ୍ଧିଂ ନୃପତେଃ ପ୍ରସାଦଂ ।
ଶରୀରପୁଷ୍ଟିଂ ଧନଧାନ୍ୟମାଂଶ୍ଚ ଦଦାତି ବର୍ଷଂ ମୁଥହା ତନୁସ୍ଥା ॥

ଉପରେ ବର୍ଷଲଗ୍ନଠାରୁ ମୁଂଥାଲଗ୍ନ କେଉଁ ସ୍ଥାନରେ ଥିଲେ କ ଫଳ ହୁଏ, ତାହା ମୋଟାମୋଟି କହାଗଲା । ବର୍ତ୍ତମାନ ତାହା ସ୍ପଷ୍ଟ-ଭାବେ କହାଯାଉଅଛି । ମୁଂଥାଲଗ୍ନ ବର୍ଷ ଲଗ୍ନରେ ହେଲେ ସେହି ବର୍ଷ ଶତ୍ରୁକ୍ଷୟ, ମନପ୍ରଫୁଲ୍ଲ, ଧନଲାଭ, ପ୍ରତାପବୃଦ୍ଧି, ରାଜସମ୍ମାନ, ଶରୀର ସୌନ୍ଦର୍ଯ୍ୟ ଓ ଉଦ୍ୟୋଗସିଦ୍ଧି ହୁଏ ।

ଉତ୍ସାହତୋର୍ଥାଗମନଂ ଯଶଶ୍ଚ ସୁବନ୍ଧୁସମ୍ମାନନୃପାଶ୍ରୟାଶ୍ଚ ।
ମିଷ୍ଟାନ୍ନଭୋଗୋ ବଲପୁଷ୍ଟିସୌଖ୍ୟଂ ସ୍ୟାଦର୍ଥଭାବେ ମୁଂଥହା ଯଦାହେ ॥
ତା. ନୀ.

ବର୍ଷଲଗ୍ନର ଦ୍ୱିତୀୟ ସ୍ଥାନରେ ମୁଂଥା ହେଲେ ଧନପ୍ରାପ୍ତି, ଉତ୍ସାହଲାଭ, ଯଶବୃଦ୍ଧି, ବନ୍ଧୁସମ୍ମାନ, ରାଜାର ଆଶ୍ରୟପ୍ରାପ୍ତି, ମିଷ୍ଟାନ୍ନ-ଭୋଜନ, ବଳପୁଷ୍ଟି ଓ ସୌଖ୍ୟଲାଭ ହୁଏ ।

ପରାକ୍ରମାଦ୍ୱିତ୍ତଯଶଃସୁଖାନି ସୌନ୍ଦର୍ଯ୍ୟସୌଖ୍ୟଂ ଦ୍ୱିଜଦେବପୂଜା ।
ପରୋପକାରସ୍ତନୁପୁଷ୍ଟିକାନ୍ତି ନୃପାଶ୍ରୟାଶ୍ଚେନ୍ମୁଥହା ତୃତୀୟା ॥

ବର୍ଷଲଗ୍ନର ତୃତୀୟ ସ୍ଥାନରେ ମୁଂଥା ହେଲେ ନିଜର ପରାକ୍ରମ-ଦ୍ୱାରା ଧନ, ଯଶ ଓ ସୁଖବୃଦ୍ଧି ହୁଏ । ଦେବବ୍ରାହ୍ମଣ ପୂଜା, ପରୋପକାର, ଶରୀରର ତେଜବୃଦ୍ଧି ଓ ରାଜାଶ୍ରୟ ପ୍ରାପ୍ତି ହୁଏ ।

ଶରୀରପୀଡ଼ାଽସୁଭିଃ ସ୍ବବର୍ଗଂ ବୈରଂ ମନସ୍ତାପନରୁଦ୍ୟମହେ ।
ସ୍ୟାନ୍ମୁଥହାଖ୍ୟାଂ ସୁଖଭବଗାୟାଂ ଜନାପବାଦାମୟବୃଦ୍ଧିଦୁଃଖଂ ॥

ବର୍ଷଲଗ୍ନର ଚତୁର୍ଥ ସ୍ଥାନରେ ମୁଂଥା ହେଲେ ଦେହପୀଡ଼ା ସମସ୍ତଙ୍କ ସହ ବୈର, ସନ୍ତାପବୃଦ୍ଧି, ଆଲସ୍ୟ ହେତୁରୁ ଉଦ୍ଯୋଗହାନି, ମିଥ୍ୟା କଳଙ୍କ, ଅପବାଦ, ଦୁଃଖବୃଦ୍ଧି ଓ ନାନା ପ୍ରକାର ରୋଗ ଜାତ ହୁଏ ।

ଯଦଂଥିହା ପଞ୍ଚମଗାବ୍ଦଦେଶେ ସଦ୍ବୁଦ୍ଧି ସୌଖ୍ୟାତ୍ମଜବିତ୍ତଲାଭଃ ।
ପ୍ରତାପବୃଦ୍ଧିର୍ବିବିଧା ବିଳାସା ଦେବଦ୍ବିଜାର୍ଚ୍ଚା ନୃପତେଃ ପ୍ରସାଦାତ୍ ॥

ବର୍ଷଲଗ୍ନର ପଞ୍ଚମରେ ମୁଂଥା ହେଲେ ଉତ୍ତମ ବୁଦ୍ଧି ହୁଏ । ସୁଖ ପୁତ୍ର ଓ ଧନଲାଭ ହୁଏ । ପ୍ରତାପ ବୃଦ୍ଧି, ନାନାପ୍ରକାର ବିଳାସ, ଦେବ-ବ୍ରାହ୍ମଣ ସେବା ଓ ରାଜସମ୍ମାନାଦି ପ୍ରାପ୍ତି ହୁଏ ।

କୃଶତ୍ବମଙ୍ଗେଷ୍ବରିପୂଦୟଶ୍ଚ ଭୟଂ ରୁଜସ୍ତସ୍କରତୋନୃପାଦ୍ବା ।
କାର୍ଯ୍ୟାର୍ଥନାଶୋ ମୁଥହାରିଗା ଚେଦ୍ଦୁର୍ବୃତ୍ତିବୃତ୍ତିଃ ସ୍ବକୃତୋନୁତାପଃ ।
ତା. ନୀ.

ବର୍ଷଲଗ୍ନର ଷଷ୍ଠରେ ମୁଂଥା ହେଲେ ସେହି ବର୍ଷ ନାନାପ୍ରକାର ରୋଗଦ୍ୱାରା ଶରୀର କ୍ଷୀଣ ହୁଏ । ଶତ୍ରୁଭୟ, ଚୌରଭୟ ଓ ରାଜଭୟ ହୁଏ । କାର୍ଯ୍ୟ ଓ ଧନନାଶ ହୁଏ । ଧୃଷ୍ଟତା ବୃଦ୍ଧି ହୁଏ । ନିଜର କୃତକର୍ମରେ ପଶ୍ଚାତ୍ତାପ ଭୋଗିବାକୁ ପଡ଼େ ।

କଳହବନ୍ଧ ବ୍ୟସନାରିଭୀତିରୁତ୍ସାହଭଙ୍ଗୋ ଧନଧର୍ମନାଶଃ ।
ଦ୍ୟୂନୋପଗାଚ୍ଚେନ୍ମୁଥହାତନୌ ସ୍ୟା
ଦ୍ଗ୍ଲାମନୋମୋହବିରୁଦ୍ଧଚେଷ୍ଟଃ ॥

ବର୍ଷଲଗ୍ନର ସପ୍ତମରେ ମୁନ୍ଥା ହେଲେ ସେହି ବର୍ଷ କଳହପୀଡ଼ା ବନ୍ଧୁ ଓ ଶତ୍ରୁଠାରୁ ଭୟପ୍ରାପ୍ତି ବ୍ୟସନାସକ୍ତି, ଉତ୍ସାହଭଙ୍ଗ, ଧନ ଓ ଧର୍ମର ବିନାଶ, ନାନାପ୍ରକାର ରୋଗ ମନରେ ନାନାପ୍ରକାର ଚିନ୍ତାର ଉଦୟ ଓ ଦ୍ରବ୍ୟଭ୍ରଷ୍ଟ ହୁଏ ।

ଭୟଂ ରିପୋସ୍ତସ୍କରତୋବିନାଶୋ ଧର୍ମାର୍ଥୟୋର୍ଦୁର୍ବ୍ୟସନାମୟଶ୍ଚ ।
ମୁଥଶିଳା ଚାସ୍ତେ ଯଦା ନରାଣାଂ ବଲକ୍ଷୟଂ ସ୍ୟାଦ୍ଗମନଂ ସୁଦୂରେ ॥

ବର୍ଷଲଗ୍ନର ଅଷ୍ଟମରେ ମୁନ୍ଥା ହେଲେ ଶତ୍ରୁ ଓ ଚୋର ହେତୁରୁ ଯନ୍ତ୍ରଣା ହୁଏ । ଧର୍ମ ଓ ଧନନାଶ ହୁଏ । ନାନାପ୍ରକାର କୁତ୍ସିତ ବ୍ୟସନ ହେତୁରୁ ଧନକ୍ଷୟ, ବଳକ୍ଷୟ ଓ ବିଦେଶ ଗମନ ହୁଏ ।

ସ୍ୱାମିତ୍ୱମର୍ଥାପଗମୋ ନୃପେଭ୍ୟୋ ଧର୍ମୋତ୍ସବଃ ପୁତ୍ରକଳତ୍ରସୌଖ୍ୟଂ ।
ଦେବଦ୍ୱିଜାର୍ଚ୍ଚା ପରମଂ ଯଶଶ୍ଚ ଭାଗ୍ୟୋଦୟୋ ଭାଗ୍ୟଗତେଂଥିହାୟାଂ ॥

ବର୍ଷଲଗ୍ନର ନବମରେ ମୁନ୍ଥା ହେଲେ ସେହି ବର୍ଷ ଅଧିକାରପ୍ରାପ୍ତି ରାଜଦତ୍ତ ଧନପ୍ରାପ୍ତି ଧର୍ମକର୍ମରେ ମନୋଯୋଗ, ସ୍ତ୍ରୀ ପୁତ୍ର ସୌଖ୍ୟ, ଦେବ-ବ୍ରାହ୍ମଣପୂଜା, ଯଶପ୍ରାପ୍ତି ଓ ଭାଗ୍ୟ ବିକାଶ ହୁଏ ।

ନୃପପ୍ରସାଦଂ ସ୍ୱଜନୋପକାରଂ ସତ୍କର୍ମସିଦ୍ଧିଂ ଦ୍ୱିଜଦେବଭକ୍ତିଂ ।
ଯଶୋଭିବୃଦ୍ଧିଂ ବିବିଧାର୍ଥଲାଭଂ ଦଦେ୍ୟବରସ୍ଥାମୁଥହାପଦାପ୍ତିଂ ॥

ବର୍ଷଲଗ୍ନର ଦଶମରେ ମୁନ୍ଥା ହେଲେ ରାଜସାହାଯ୍ୟ ମିଳେ । ନିଜଲୋକର ଉପକାର ହୁଏ । ସତ୍କର୍ମ ସିଦ୍ଧି ହୁଏ । ଯଶ ବୃଦ୍ଧି ହୁଏ । ନାନା ଉପାୟରେ ଧନଲାଭ ହୁଏ । ଉତ୍ତମ ସ୍ଥାନରେ କାର୍ଯ୍ୟପ୍ରାପ୍ତି ହୁଏ ।

**ଯଦଂଥିତା ଲଭଗତା ବଲାସସୌଭାଗ୍ୟନୈରୁଜ୍ୟମନଃପ୍ରସାଦଃ ।**
**ଭବନ୍ତ୍ୱରାଜାଶ୍ରୟତୋଧନାନ ସନ୍ନିଜସ୍ୱଜନାଭିମତାପ୍ରସୂଷ୍ଟ ॥**

ବର୍ଷଲଗ୍ନର ଏକାଦଶରେ ମୁଂଥା ହେଲେ ନାନାପ୍ରକାର ବ୍ୟାପାର ବିଳାସରେ ମନଃ ପ୍ରହୃଷ୍ଟ ହୁଏ । ସୌଭାଗ୍ୟର ଉଦୟ ହୁଏ । ଶରୀର ରୋଗଶୂନ୍ୟ ହୁଏ । ମନ ସର୍ବଦା ପ୍ରଫୁଲ୍ଲ ରହେ । ରାଜାର ଆଶ୍ରୟ ହେତୁରୁ ଧନଲାଭ ହୁଏ । ଉତ୍ତମ ମିତ୍ର ଓ ପୁତ୍ରଲାଭ ହୁଏ ।

**ବ୍ୟୟୋଽଧିକଦୁଷ୍ଟଜନସ୍ୟ ସଙ୍ଗୋ ରୁଜାତନୌବିକ୍ରମତୋପ୍ୟସିଦ୍ଧିଃ ।**
**ଧର୍ମାର୍ଥହାନମୁଥହାବ୍ୟୟସ୍ଥା ଯଦା ତଦା ସ୍ୟାତ୍ସ୍ୱଜନତୋଽପି ବୈରଂ ॥**

ବର୍ଷ ଲଗ୍ନର ଦ୍ୱାଦଶରେ ମୁଂଥା ହେଲେ ବୃଥା ଧନବ୍ୟୟ ହୁଏ । ଦୁଷ୍ଟ ସଙ୍ଗ କରାଏ । ନାନା ପ୍ରକାର ରୋଗ ଜନ୍ମେ । ଉଦ୍‌ଯୋଗ ଭଙ୍ଗ ହୁଏ । ଧର୍ମ ଓ ଧନର ହାନି ହୁଏ । ସମସ୍ତ କ୍ଷେତ୍ରରେ ଶତ୍ରୁତା ଉପସ୍ଥିତ କରାଏ ।

ମୁଂଥାର ଭାବଫଳ କହାଗଲା । ମୁଂଥାପତିର ଶୁଭାଶୁଭ ବିଚାର ଠିକ୍ କରାଯାଇ ଜାତକ ପର ସମସ୍ତ ଭାବର ଫଳର ବିଚାର କରିବେ ।

**କ୍ରୂରୈର୍ଦୃଷ୍ଟଃ ଯୁତଦ୍ୱଶାପୋଥବା ମୁଥହାଽନ ଚେତ୍ ।**
**ଶୁଭଂ ତଦ୍ଭାବଜଂ ନଶ୍ୟେଦଶୁଭଞ୍ଚାପି ବର୍ଦ୍ଧତେ**

ମୁଂଥା ଯେଉଁ ସ୍ଥାନରେ ଥିବ ସେହି ସ୍ଥାନରେ ପାପଗ୍ରହ ଥିଲେ ବା ପାପଗ୍ରହ ମୁଂଥାକୁ ଦେଖୁଥିଲେ ଭାବଫଳର ହାନି ହୁଏ । ଶୁଭ ଯୁକ୍ତ ହେଲେ ବା ଶୁଭ ଦୃଷ୍ଟିରେ ସେହି ଭାବ ଶୁଭ ହୁଏ ।

ଯୋ ଯୋ ଭାବଃ ସ୍ୱାମିଦୃଷ୍ଟୋ ଯୁତୋ ବା ସୌମ୍ୟୈର୍ଦୃଷ୍ଟୋ ଯୁକ୍ତୋ ସମେଧତେ ।
ପାପଦୃଷ୍ଟଯୁତୈର୍ନାଶୋ ମିଶ୍ରେ ମିଶ୍ରଫଳପ୍ରଦଃ । ତା. ନୀ.

ମୁନ୍ଥା ନିଜର ଅଧିପତିଯୁକ୍ତ ହେଲେ କିମ୍ବା ଶୁଭଗ୍ରହଯୁକ୍ତ ହେଲେ ଭାବୋକ୍ତ ସମସ୍ତ ଶୁଭ ଫଳର ବୃଦ୍ଧି ହୁଏ । ପାପଯୁକ୍ତ ବା ପାପଦୃଷ୍ଟ ହେଲେ ସେହି ଭାବୋକ୍ତ ଶୁଭଫଳର ହାନି ଓ ଅଶୁଭ ଫଳର ବୃଦ୍ଧି ହୁଏ । ପାପ ଶୁଭ ଉଭୟ ଯୁକ୍ତ ବା ଉଭୟ ପ୍ରକାର ଗ୍ରହର ଦୃଷ୍ଟିଗତ ହେଲେ ମିଶ୍ରଫଳ ଅର୍ଥାତ୍ ଶୁଭାଶୁଭ ଫଳ ପ୍ରଦାନ କରେ ।

ମୁନ୍ଥା ବର୍ଷଫଳ ସମାପ୍ତଂ

---

## ପ୍ରଶ୍ନବିଚାରଃ ।

ଶୁଭାଶୁଭ ବିଚାର ଓ ନଷ୍ଟଦ୍ରବ୍ୟାଦି ଦ୍ରବ୍ୟଲାଭ ସମ୍ବନ୍ଧେ ନାନାପ୍ରକାର ପ୍ରଶ୍ନ ଲୋକେ ପଚାରିଥାଆନ୍ତି । ଜାତକରେ ଯେପରି ଜନ୍ମକାଳୀନ ଲଗ୍ନ ଅତ୍ୟନ୍ତ ପ୍ରୟୋଜନ ଏଥିରେ ମଧ୍ୟ ସେହିପରି । ପ୍ରଶ୍ନକାଳୀନ ଲଗ୍ନକୁ ନେଇ ତାହାଠାରୁ ଗ୍ରହସ୍ଥିତି କରି ଶୁଭାଶୁଭ ବିଚାରର ଫଳ କହିବାକୁ ହୁଏ ।

କେନ୍ଦ୍ରୋପଗା ନବମପଞ୍ଚମଗାଶ୍ଚ ସୌମ୍ୟାଃ
କେନ୍ଦ୍ରାଷ୍ଟବର୍ଜ୍ଜମଶୁଭାଃ ଜିଷଡ଼ାୟସଂସ୍ଥାଃ ।
ସର୍ବାର୍ଥସାଧନକରା ପରିପୃଚ୍ଛତାଂ ସ୍ୟୁ—
ରେଭିର୍ବିପର୍ଯ୍ୟୟଗତୈସ୍ତୁ ବିପର୍ଯ୍ୟୟଃ ସ୍ୟାତ୍ ॥

ଜାତକଚକ୍ରରେ ଗ୍ରହ ସନ୍ନିବେଶ କଲାପରି ପ୍ରଶ୍ନଚକ୍ରରେ ଗ୍ରହସ୍ଫୁଟ ଲେଖିବେ । ପ୍ରଶ୍ନ ଲଗ୍ନର କେନ୍ଦ୍ର ବା ତ୍ରିକୋଣରେ ଶୁଭଗ୍ରହମାନେ ଥିଲେ କେନ୍ଦ୍ର ଓ ଅଷ୍ଟମ ପାପଶୂନ୍ୟ ହୋଇଥିଲେ, ପାପଗ୍ରହମାନେ ତୃତୀୟ, ଷଷ୍ଠ ଓ ଏକାଦଶରେ ଥିଲେ ପ୍ରଶ୍ନକର୍ତ୍ତାର ପ୍ରଶ୍ନ ବିଷୟ ଶୁଭ ହୁଏ । ବିପରୀତ ହେଲେ ପ୍ରଶ୍ନବିଷୟ ଅଶୁଭ ହୁଏ ।

ଲଗ୍ନାଧିନାଥୋ ଯଦି କେନ୍ଦ୍ରଗଃ ସ୍ୟାତ୍
ତନ୍ମିତ୍ରମେତସ୍ୟ ଚ କେନ୍ଦ୍ରଗୋ ବା ।
ବ୍ୟୟାଷ୍ଟକେନ୍ଦ୍ରାଣ୍ୟପହାୟ ପାପା
ଅନ୍ୟତ୍ର ଯାତା ଯଦି ତଚ୍ଛୁଭଂ ସ୍ୟାତ୍ । ଜ୍ୟା. ସୂ.

ପ୍ରଶ୍ନ ଲଗ୍ନାଧିପତି କେନ୍ଦ୍ରଗତ ହେଲେ ଅଥବା ପ୍ରଶ୍ନ ଲଗ୍ନାଧିପତିର ମିତ୍ର ଗ୍ରହ ପ୍ରଶ୍ନ ଲଗ୍ନର କେନ୍ଦ୍ରରେ ରହିଲେ, ପାପ ଗ୍ରହମାନେ କେନ୍ଦ୍ର, ଅଷ୍ଟମ ଓ ଦ୍ୱାଦଶରେ ନ ଥିଲେ ପ୍ରଶ୍ନକର୍ତ୍ତାର କାର୍ଯ୍ୟ ସିଦ୍ଧି ହେବ । ଅନ୍ୟ ସ୍ଥାନରେ ଥିଲେ କାର୍ଯ୍ୟସିଦ୍ଧି ହେବ ନାହିଁ ।

ଆଦ୍ୟୋ ଲଗ୍ନାଧିପୋ କାର୍ଯ୍ୟେ ଲଗ୍ନେ କାର୍ଯ୍ୟାଧିପୋ ଯଦି ।
ଦ୍ୱିତୀୟୋ ଲଗ୍ନପୋ ଲଗ୍ନେ କାର୍ଯ୍ୟେ କାର୍ଯ୍ୟାଧିପୋ ଯଦି ।
ଲଗ୍ନପଃ କାର୍ଯ୍ୟପଶ୍ଚାପି ଲଗ୍ନେ ଯଦି ତୃତୀୟକଃ ।
ଚତୁର୍ଥଃ କାର୍ଯ୍ୟଗୌ ସ୍ୟାତାଂ ଯଦି ଲଗ୍ନପକାର୍ଯ୍ୟଗୌ ॥

କାର୍ଯ୍ୟସିଦ୍ଧି ଯୋଗଚତୁଷ୍ଟୟ (୧) କାର୍ଯ୍ୟପତି (ଦ୍ୱାଦଶ ଭାବ ମଧ୍ୟରୁ ପ୍ରଶ୍ନଟି ଯେଉଁ ଭାବର ତାହାର ଅଧିପତି ) ପ୍ରଶ୍ନ ଲଗ୍ନରେ ଓ ଲଗ୍ନାଧିପତି କାର୍ଯ୍ୟ ସ୍ଥାନରେ ଥିଲେ କାର୍ଯ୍ୟସିଦ୍ଧି ହୁଏ । (୨) ଲଗ୍ନାଧିପତି ଲଗ୍ନରେ ଓ କାର୍ଯ୍ୟାଧିପତି କାର୍ଯ୍ୟ ସ୍ଥାନରେ ଥିଲେ କାର୍ଯ୍ୟସିଦ୍ଧି ହୁଏ । (୩) ଲଗ୍ନାଧିପତି ଓ କାର୍ଯ୍ୟାଧିପତି ଲଗ୍ନଗତ ରେ ଥିଲେ କାର୍ଯ୍ୟସିଦ୍ଧି ହୁଏ ।

(୪) ଲଗ୍ନାଧିପତି ଓ କାର୍ଯ୍ୟାଧିପତି କାର୍ଯ୍ୟସ୍ଥଳରେ ଥିଲେ କାର୍ଯ୍ୟସିଦ୍ଧି ହୁଏ । ଏହି ସମ୍ବନ୍ଧରେ ୫ଟି ପ୍ରଶ୍ନ ପଚାରିଯାଇ ପାରେ । କେଉଁ ପ୍ରଶ୍ନଟି କେଉଁ ଭାବ ସହ ସଂଶ୍ଳିଷ୍ଟ ତାହା ଦେଖି ସେହି ଭାବାଧିପତି ଓ ପ୍ରଶ୍ନ ଲଗ୍ନାଧିପତିର ବଳାବଳ ଓ ଦୃଷ୍ଟିଯୁକ୍ତ ଜାତକ ପରି ଠିକ୍ ଉତ୍ତର ଦେବେ । ପ୍ରଶ୍ନ ବିଷୟରେ ବିଶେଷ ବିବରଣ ପ୍ରଶ୍ନକଳ୍ପତରୁ ଓ ତାଜକ-ନୀଳକଣ୍ଠୀରେ ମିଳେ ।

### ସନ୍ତାନପ୍ରଶ୍ନେ ବିଶେଷଃ ।

ପଞ୍ଚମେଶୋଽଥ ଲଗ୍ନେଶୋ ବିଷମସ୍ଥାନଗୋ ଯଦା ।
ପୁଂ ଜନ୍ମପ୍ରଦଙ୍କେଜ୍ଞେୟୌ କନ୍ୟାନାଂ ସମରାଶିଗୌ । ତା. ନୀ.

ପଞ୍ଚମ ସ୍ଥାନର ଅଧିପତି ବା ଲଗ୍ନାଧିପତି ବିଷମ ସ୍ଥାନ (୧, ୩, ୫, ୭, ୯, ୧୧) ରେ ଥିଲେ ପୁତ୍ରଜନ୍ମ ଓ ସମସ୍ଥାନ ୨, ୪, ୬, ୮, ୧୦, ୧୨ ) ରେ ଥିଲେ କନ୍ୟା ଜନ୍ମ ହୁଏ ।

ବିଷମୋପଗତେ ଲଗ୍ନାକ୍ଷନଃ ପୁଂସୁତପ୍ରଦଃ ।
ସମଭେ ଯୋଷିତାଂ ଜନ୍ମ ବିଶେଷୋ ଜାତକୋକ୍ତିବତ୍ । ତା.ନୀ.

ପ୍ରଶ୍ନଲଗ୍ନର ବିଷମସ୍ଥାନରେ ଶନି ଥିଲେ ପୁତ୍ର ଓ ସମସ୍ଥାନରେ ଶନି ଥିଲେ କନ୍ୟା ଜନ୍ମ ହୁଏ । ପଞ୍ଚମ ସ୍ଥାନପ୍ରତି ପୁରୁଷ ଗ୍ରହ ଓ ସ୍ତ୍ରୀ ଗ୍ରହମାନଙ୍କର ଦୃଷ୍ଟିବଳ ବିଚାର କରିବେ ।

ବିହାୟ ଲଗ୍ନଂ ବିଷମର୍କ୍ଷସଂସ୍ଥଃ ସୌରୋଽପି ପୁଂ ଜନ୍ମକରୋ ବିଲଗ୍ନାତ୍ ।
ପ୍ରୋକ୍ତ ଗ୍ରହଣାମବଲୋକନେନ ବାଚ୍ୟଃ ପ୍ରସୂତୋ ପୁରୁଷୋଽଙ୍ଗନା ବା ॥
ବୃ. ଜା.

ତାଜକ ନୀଳକଣ୍ଠୀର ପୂର୍ବୋକ୍ତ ମତରୁ ବୃହଜ୍ଜାତକର ମତର କୌଣସି ପ୍ରଭେଦ ନାହିଁ ।

ଯୁଗ୍ମରାଶିଗତେ ଲଗ୍ନେ ଯଦା ତତ୍ର ଶୁଭଗ୍ରହାଃ ।
ଗର୍ଭେ ଯମତ୍ୟଦ୍ୱୟଂ ବାଚ୍ୟଂ ଦୈବଜ୍ଞେନ ବିପଶ୍ଚିତାଃ । ତା. ନୀ.

ଲଗ୍ନ ସମରାଶିରେ ହୋଇଥିଲେ ତହିଁରେ ଶୁଭଗ୍ରହମାନେ- ଥିଲେ ଯମଜ ସନ୍ତାନ ଜନ୍ମ ହୁଅନ୍ତି ।

ପ୍ରଶ୍ନ ବିଷୟ ସମାପ୍ତଂ ।

---

## ସାମୁଦ୍ରିକବିଷୟଃ

ଗ୍ରହଗଣ ଅନ୍ତରୀକ୍ଷରେ ପରିଭ୍ରମଣ କରି ଯେପରି ଶୁଭାଶୁଭ ବିଷୟରେ ବଳାବଳ ପ୍ରୟୋଗ କରି ଶୁଭାଶୁଭ ଫଳ ପ୍ରଦାନ କରନ୍ତି, ଠିକ୍ ସେହିପରି ମାନବର ଅଙ୍ଗପ୍ରତ୍ୟଙ୍ଗରେ ଶୁଭାଶୁଭସୂଚକ ଚିହ୍ନ ପରିଲକ୍ଷିତ ହୁଏ । ଏହା ତିନି ପ୍ରକାର । (୧) ସାମୁଦ୍ରିକ (କରରେଖା ବିଷୟ ) (୨) ଲଲାଟାଦିର ଦର୍ଶନ (୩) ଆକୃତି ଦର୍ଶନରେ ଚରିତ୍ର ଅନୁମାନ । ପ୍ରତ୍ୟେକ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ବିଦ୍ୟାରୂପେ ପରିଚିତ । ସମୁଦ୍ରନାମା ଋଷି ଏହି ଶାସ୍ତ୍ରର ଉଦ୍ଭାବକ ବୋଲି ଏହାର ନାମ ସାମୁଦ୍ରିକ ହୋଇଅଛି ବୋଲି କାହାରି କାହାରି ମତ । ଏହି ସମସ୍ତ ବିଷୟଦ୍ୱାରା ମାନବଜୀବନର ଶୁଭାଶୁଭ ବିଷୟ କହିଯାଇ ପାରେ । ସାମୁଦ୍ରିକ ଓ ଚରିତ୍ରାନୁମାନବିଦ୍ୟା ଭାରତ ଓ ୟୁରୋପ ମହାଦେଶର ବିଶିଷ୍ଟ ସ୍ଥାନମାନଙ୍କରେ ପ୍ରଚଳିତ । ୟୁରୋପରେ ସାମୁଦ୍ରିକକୁ (Palmistry ) ପାମିଷ୍ଟ୍ରି ଓ ଚରିତ୍ରାନୁମାନ ବିଦ୍ୟାକୁ ( Physio

nomy ) ଫିଜିଅଗ୍ନମି କହନ୍ତି । ଏହି ସମସ୍ତ ବିଷୟମାନଙ୍କର ଅବତାରଣା ଏପରି ପୁସ୍ତିକାରେ ଅସମ୍ଭବ; ତନ୍ମାତ ଏହାର କେତେକ ପ୍ରଧାନ ବିଷୟ ଏଥିରେ ଆଲୋଚିତ ହେବ ।

ସାମୁଦ୍ରିକ ଲକ୍ଷଣ ପୁରୁଷର ଦକ୍ଷିଣ ହସ୍ତ ଓ ସ୍ତ୍ରୀର ବାମ ହସ୍ତରେ ବିଚାର କରାଯାଏ ।

## ଅଙ୍ଗୁଳିବିଚାରଃ ।

ପ୍ରତ୍ୟେକ ହସ୍ତର ଅଙ୍ଗୁଷ୍ଠମାନଙ୍କର ନାମ (୧) ବୃଦ୍ଧାଙ୍ଗୁଷ୍ଠ, (୨) ତର୍ଜନୀ, (୩) ମଧ୍ୟମା, (୪) ଅନାମିକା, (୫) କନିଷ୍ଠା । ଯଥାକ୍ରମେ ଶୁକ୍ର, ବୃହସ୍ପତି, ଶନି, ରବି ଓ ବୁଧ ଏହିମାନଙ୍କର ଅଧିପତି ।

ନିର୍ଦ୍ଦିଷ୍ଟ ଅଧିକାରୀ ଗ୍ରହମାନଙ୍କର ସ୍ଥାନ ଅଙ୍ଗୁଷ୍ଠିର ମୂଳଦେଶ ।

୧—ତର୍ଜନୀ ମଧ୍ୟମାଙ୍ଗୁଷ୍ଠର ଲମ୍ବ ହେଲେ ସେ ବ୍ୟକ୍ତି ଗର୍ବୀ ଓ ନିର୍ଦ୍ଦ୍ଦୟ ହୁଏ । ଏହି ଅଙ୍ଗୁଷ୍ଠ ଛୋଟ ହେଲେ ସେ କର୍ମକୁଶଳ ଓ କ୍ଷମୀ ହୁଏ ।

ତର୍ଜନୀର ମୂଳଦେଶରେ ତାରକା, ଚତୁଷ୍କୋଣ ବା ତ୍ରିକୋଣ ଚିହ୍ନ ଥିଲେ ସେ ବ୍ୟକ୍ତି ରାଜପ୍ରିୟ ହୁଏ । ମୂଳ ସ୍ଥାନ ଉଚ୍ଚ ହେଲେ ସେ ବ୍ୟକ୍ତି ଉଚ୍ଚାଭିଳାଷୀ, ଯଶସ୍ୱୀ ଓ ଆମୋଦପ୍ରିୟ ହୁଏ ।

୨—ବୃଦ୍ଧାଙ୍ଗୁଷ୍ଠର ପ୍ରଥମ ପର୍ବ ଲମ୍ବ ହେଲେ ମାନବ ବୁଦ୍ଧିମାନ୍, ଉତ୍ତମସ୍ୱଭାବବିଶିଷ୍ଟ ଓ ସତ୍ୟବାଦୀ ହୁଏ । ଦ୍ୱିତୀୟ ପର୍ବ ଲମ୍ବ ହେଲେ ମାନବ ଗର୍ବିତମନା, କ୍ରୋଧୀ ଓ ବଳିଷ୍ଠ ହୁଏ । ମୂଳଦେଶ ଉଚ୍ଚ ହେଲେ ସ୍ତ୍ରୈଣ ଓ ସଙ୍ଗୀତ ଶାସ୍ତ୍ରାଭ୍ୟାସୀ ହୁଏ । ଉଭୟ ପର୍ବ ମଧ୍ୟରେ ଯବଚିହ୍ନ ଥିଲେ ମାନବ ବିଦ୍ୱାନ୍ ଓ ବକ୍ତା ହୁଏ ।

୩—ମଧ୍ୟମା ବକ୍ର ହେଲେ ମାନବ ଉଦ୍ଧାନ୍ତ, ପରେ ଅଟଳବାଗ୍ମୀ ଓ ଲୁବ୍ଧ ହୁଏ । ମୂଳ ଉଚ୍ଚ ଥିଲେ ବେପାରୀ, ପରପୀଡ଼କ ଓ ଉଦ୍‌ବେଗ୍ନମନା ହୁଏ । ପବ ମଧ୍ୟରେ ଯବଚିହ୍ନ ଥିଲେ ଧନୀ ହୁଏ । ଶେଷ ପବରେ ଚକ୍ରଚିହ୍ନ ଥିଲେ ଜାତକ ସହୃଷ୍ଟ ହୁଏ ।

୪—ଅନାମିକା ତର୍ଜନୀଠାରୁ ଲମ୍ବ ହେଲେ ମାନବ କୀର୍ତ୍ତିକ ଓ ଧନୀ ହୁଏ । ମଧ୍ୟମାଠାରୁ ଲମ୍ବ ହେଲେ ଦ୍ୟୁତକ୍ରୀଡ଼ାନିପୁଣ ଓ ଶୃଙ୍ଗାରବାକ୍ୟ ପରିହାସବାଦ ଭୂଷିତ ହୁଏ । ମୂଳସ୍ଥାନ ଉଚ୍ଚ ହେଲେ ରାଜବଂଶଜ, ପିତୃଭକ୍ତ ଦେଶପ୍ରିୟ ହୁଏ ।

(୫) କନିଷ୍ଠା ମଧ୍ୟମାଠାରୁ ଲମ୍ବ ହେଲେ ସେ ବ୍ୟକ୍ତି ପଠନପ୍ରିୟ, ଉପଯୁକ୍ତ କର୍ମୀ ଓ ବୁଦ୍ଧିମାନ୍ ହୁଏ । ଅତି କ୍ଷୁଦ୍ର ହେଲେ ମାନବ ବୁଦ୍ଧିମାନ୍, ନିରଳସ ଓ ବଧିର ହୁଏ । ଅଙ୍ଗୁଷ୍ଠ ଅଗ୍ର ମୋଟା ହେଲେ ତାହାଠାରେ ଅନେକ ଗୁପ୍ତଜ୍ଞାନ ଥାଏ । ଅଙ୍ଗୁଷ୍ଠମାନଙ୍କର ଶେଷପବ-ମାନଙ୍କରେ ଚକ୍ରଚିହ୍ନ କିମ୍ବା ମୂଳଦେଶରେ ତାରକା, ଚତୁଷ୍କୋଣ ବା ତ୍ରିକୋଣ ଚିହ୍ନ ଥିଲେ ସେ ବ୍ୟକ୍ତି କାର୍ଯ୍ୟଦକ୍ଷ ଓ ଚତୁର ହୁଏ ।

କନିଷ୍ଠାଙ୍ଗୁଳି ଓ ଆୟୁରେଖା ମଧ୍ୟରେ ( କରତଳର ପ୍ରାନ୍ତ ) ଯେତେ ରେଖା ଥାଏ, ମାନବ ସେତିକି କନ୍ୟା ବିବାହ କରେ । ଆୟୁରେଖାର ତଳ ପ୍ରାନ୍ତରେ ଯେତେକ କ୍ଷୁଦ୍ର ରେଖା ଥାଏ ସେତିକି ସନ୍ତାନ ଜନ୍ମ ହୁଅନ୍ତି ।

## ରେଖାବିଚାରଃ ।

ପ୍ରତ୍ୟେକ ମାନବର ହସ୍ତରେ ପ୍ରଧାନତଃ ଆଠଟି ବିସ୍ତୃତ ରେଖା ଦେଖାଯାଏ । (୧) ଆୟୁରେଖା (୨) ଊର୍ଦ୍ଧ୍ୱରେଖା (୩) ପିତୃରେଖା

(୪) ମାତୃରେଖା । [ରେଖା ଚିହ୍ନିବା ନିମିତ୍ତ ଚିତ୍ର ଦେଖ] । ମଣିବନ୍ଧର ଊର୍ଦ୍ଧ୍ୱଦେଶରୁ ଗୋଟିଏ ରେଖା ବକ୍ରଭାବେ ବୃଦ୍ଧାଙ୍ଗୁଷ୍ଠ ଅଡ଼କୁ ଗତି କରିଥାଏ, ତାହାକୁ କେହି କେହି ଭୋଗରେଖା କହନ୍ତି ।

(୧) ଆୟୁରେଖା—କନିଷ୍ଠାଙ୍ଗୁଳିର ମୂଳଠାରୁ ଆରମ୍ଭ କରି ଯେ ରେଖାଟି ତର୍ଜନୀର ମୂଳଦେଶ ଅଡ଼କୁ ଗତି କରିଅଛି, ସେ ରେଖାର ନାମ ଆୟୁରେଖା, ଏହି ରେଖାଟି ତର୍ଜନୀର ମୂଳ ପର୍ଯ୍ୟନ୍ତ ଅଛିନ୍ନ ଭାବରେ ଥିଲେ ସେ ବ୍ୟକ୍ତି ପୂର୍ଣ୍ଣାୟୁ । ମଧ୍ୟମା ପର୍ଯ୍ୟନ୍ତ ଥିଲେ ୬୦, ଓ ଅନାମିକା ପର୍ଯ୍ୟନ୍ତ ଥିଲେ ୪୦, ଓ କନିଷ୍ଠା ପର୍ଯ୍ୟନ୍ତ ଥିଲେ ୨୦ ବର୍ଷ ଆୟୁଷ ହୁଏ । ଯେଉଁ ଯେଉଁ ସ୍ଥାନରେ ଗର୍ତ୍ତ ବା କୃଷ୍ଣବର୍ଣ୍ଣ ଚିହ୍ନ ଥିବ ସେହି ସ୍ଥାନ ପୀଡ଼ାର ଚିହ୍ନ ବୋଲି ଠିକ୍ କରି, ପୂର୍ବୋକ୍ତ ନିର୍ଦ୍ଦିଷ୍ଟ ଆୟୁ ବର୍ଷ ପରିମାଣ-ଦ୍ୱାରା ରେଖାକୁ ଭାଗ ଭାଗ କରି ସେହି ଗର୍ତ୍ତ ବା କୃଷ୍ଣବିନ୍ଦୁଠାରେ କେତେ ବର୍ଷ ହେଲା ଦେଖି, ସେତିକି ବର୍ଷଠାରେ ପୀଡ଼ା ହେବାର କହିବେ । ଚିହ୍ନ ଓ ଗର୍ତ୍ତର ଅଳ୍ପ ବହୁଳତା ବିଚାରରେ ରୋଗର ଅଳ୍ପାଧିକ ପରିମାଣ ଠିକ୍ କରିବେ ।

ଏହି ଆୟୁରେଖା ମଧ୍ୟରେ ଯେଉଁ ସ୍ଥାନ ଛିନ୍ନବିଚ୍ଛିନ୍ନ ବା ଅନେକ କ୍ଷୁଦ୍ରରେଖାବିଶିଷ୍ଟ, ଅନୁପାତରେ ସେହି ସ୍ଥାନକୁ ଯେତେ ବର୍ଷ ହେବ ତ ସେତିକି ବର୍ଷ ସମୟରେ ଅର୍ଥକ୍ଷତି ଓ ଅପମାନ ହୁଏ ।

ଏହି ରେଖାର କୌଣସି ଏକ ପ୍ରାନ୍ତ ଯଦି ଦୁଇ ବା ତତୋଽଧିକ ଭାଗରେ ବିଭକ୍ତ ହୋଇଥାଏ ତେବେ ସେ ବ୍ୟକ୍ତି ଭାଗ୍ୟବାନ୍, ଧନସ୍ୱୀ ଓ ଉଚ୍ଚମନା ହୁଏ ।

ଅଗ୍ନିରେଖା ସ୍ପଷ୍ଟଭାବେ ଦେଖା ନ ଯାଇ ବନ୍ଧୁ ସମଷ୍ଟିପର ସ୍ଥାନ ହେଲେ ମାନବ ଅତ୍ୟନ୍ତ କପଟୀ ହୁଏ । ସ୍ତ୍ରୀର ଏପରି ଭାବ ଥିଲେ ସେ ବ୍ୟଭିଚାରିଣୀ ହୁଏ ।

(୨) ଊର୍ଦ୍ଧ୍ୱରେଖା—କରତଳ ମଧ୍ୟଦେଶରେ ଊର୍ଦ୍ଧ୍ୱମୁଖୀ ହୋଇ ଯେଉଁ ରେଖାଟି ଥାଏ ତାହାର ନାମ ଊର୍ଦ୍ଧ୍ୱରେଖା । ଏହି ରେଖା ମଧ୍ୟମାର ମୂଳପର୍ଯ୍ୟନ୍ତ ଥିଲେ ମାନବ ସୌଭାଗ୍ୟଶାଳୀ ହୁଏ । ନିମ୍ନ ନିମ୍ନକୁ କ୍ରମରେ ସୌଭାଗ୍ୟର ଅଳ୍ପତା ବିବେଚନା କରାଯାଏ ।

ତର୍ଜନୀର ମୂଳଦେଶକୁ ଊର୍ଦ୍ଧ୍ୱରେଖା ଯାଇଥିଲେ ସେ ବ୍ୟକ୍ତି ଧନବାନ ହୁଏ । ଊର୍ଦ୍ଧ୍ୱରେଖା ପରିଷ୍କାର ଓ ସରଳ ହେଲେ ମାନବ ସ୍ୱାସ୍ଥ୍ୟ, ବୁଦ୍ଧି ଓ ଧନସମ୍ପନ୍ନ ହୁଏ । ଏହି ରେଖା ସବଳଭାବରେ ଊର୍ଦ୍ଧ୍ୱକୁ ଯାଇଥିଲେ ମନୁଷ୍ୟ କ୍ଷମତାଶାଳୀ, ବିବେଚକ ଓ ପରର ସାହାଯ୍ୟ ଅପେକ୍ଷା ନ କରି ସକଳ କାର୍ଯ୍ୟ କରି ପାରେ ।

ଏହି ରେଖା ତରଙ୍ଗାୟିତ ଓ ବକ୍ରଭାବେ ଉଠିଥିଲେ ମନୁଷ୍ୟ ସକଳକର୍ମରେ ପରର ସାହାଯ୍ୟ ଗ୍ରହଣ କରେ । ଊର୍ଦ୍ଧ୍ୱରେଖା ସନ୍ନିହିତରେ ତ୍ରିକୋଣ, ଧନୁ, ଚତୁଷ୍କୋଣ ଚିହ୍ନ ଥିଲେ ମାନବ ଧନୀ ହୁଏ ।

(୩) ପିତୃରେଖା—ଅଗ୍ନିରେଖାର ତଳେ ଏହି ରେଖା ଥାଏ । ଏହି ରେଖା ଯୋଡ଼ା ହେଲେ ମାନବ ସୁଖଭୋଗ କରେ । ଏହି ରେଖା ଛିନ୍ନବିଚ୍ଛିନ୍ନ ହେଲେ ମାନବ ପିତୃସୁଖ ଭୋଗ କରି ନ ପାରେ । ନକ୍ଷତ୍ର ଚିହ୍ନ ଥିଲେ ମନୁଷ୍ୟ ସ୍ତ୍ରୀପ୍ରିୟ ଓ ଗୀତନୃତ୍ୟାଭ୍ୟାସୀ ହୁଏ । ଅନେକ ନକ୍ଷତ୍ର ଚିହ୍ନ ଥିଲେ ସ୍ତ୍ରୀହେତୁକ ଅପମାନ ଓ ଅର୍ଥକ୍ଷୟ ହୁଏ ।

(୪) ମାତୃରେଖା—ପିତୃରେଖାର ତଳେ ଥାଏ । ଏହି ରେଖା ବକ୍ର ହୋଇ ଆସି ପିତୃରେଖାର ସହ ମିଶିଥିଲେ ମନୁଷ୍ୟ ଅନେକ ଆକସ୍ମିକ ଘଟଣାଦ୍ୱାରା କ୍ଷତିଗ୍ରସ୍ତ ହୁଏ । ଏହି ରେଖା ବିସ୍ତୃତ ଥିଲେ ମାନବ ଦୀର୍ଘଜୀବୀ ଓ ସୁଖୀ ହୁଏ । ମାତୃରେଖା ଯୋଡ ହୋଇଥିଲେ ମଧ୍ୟ ବୟସରେ ବିପୁଳ ସମ୍ପତ୍ତିର ଅଧିକାରୀ ହୁଏ ।

କରତଳରେ ଚକ୍ର, ତ୍ରିଶୂଳ, ପଦ୍ମ, ଅର୍ଦ୍ଧଚନ୍ଦ୍ର, ତ୍ରିକୋଣ, ପ୍ରାଚୀର ଓ ମତ୍ସ୍ୟରେଖା ଥିଲେ ମନୁଷ୍ୟ ଭାଗ୍ୟବାନ୍, ପୁତ୍ରସୁଖ ଓ ବିଳାସୀ ହୁଏ । ମତ୍ସ୍ୟରେଖା ଊର୍ଦ୍ଧ୍ୱରେଖାର ନିମ୍ନଦେଶରେ ଥାଏ । ଏହି ମତ୍ସ୍ୟରେଖା ଠିକ୍ ମତ୍ସ୍ୟାକାର ହୋଇଥିଲେ ମାନବ ନିଶ୍ଚୟ ଭୂସ୍ୱାମୀ ହୁଏ ।

ହସ୍ତରେଖାର ସମସ୍ତ ବିଷୟର ବିଚାର ପୂର୍ବେ ଆୟୁର୍ଦାୟ ବିଚାରଣୀୟ । କାରଣ ଆୟୁ ନ ଥିଲେ ଅନ୍ୟ ଶୁଭ ଲକ୍ଷଣ ନିଷ୍ପ୍ରୟୋଜନ ।

## କରତଳ ଚିହ୍ନ


କ—ସ୍ତ୍ରୀରେଖା ସ୍ଥାନ
ଖ—ଅୟୁରେଖା
ଗ—ସନ୍ତାନରେଖା ସ୍ଥାନ
ଘ—ହୃଦ୍‌ରେଖା
ଙ—ମାତୃରେଖା
ଚ—ଊର୍ଦ୍ଧ୍ୱରେଖା
ଛ—ହେତୁରେଖା
କ
ଖ
ଗ
ଘ
ଙ
ଚ
ଛ
ତାରକା
ଚତୁଷ୍କୋଣ
ରେଖା
ଯବ
ତ୍ରିକୋଣ

# ତିଳଚିହ୍ନାଦିର ବିଚାର ।

କପାଳର ମଧ୍ୟସ୍ଥଳରେ ରକ୍ତବର୍ଣ୍ଣ କମ୍ବା ସାଧାରଣ ରକ୍ତବର୍ଣ୍ଣର ତିଳଚିହ୍ନ ଥିଲେ ମନୁଷ୍ୟ ସୁଖୀ ଓ ଧନବାନ୍ ହୁଏ ।

ଗଳଦେଶରେ ତିଳଚିହ୍ନ ଥିଲେ ମନୁଷ୍ୟ ନାନା ଉପାୟରେ ଧନାର୍ଜ୍ଜନ କରେ ଓ ମନସ୍ୱୀ ହୁଏ ।

ଚକ୍ଷୁର ପତା ଉପରେ ତିଳଚିହ୍ନ ଥିଲେ ମନୁଷ୍ୟର ଉତ୍ତମ ଭାଗ୍ୟ ହୁଏ, ସେ ନିର୍ଭୀକ ଓ ତେଜସ୍ୱୀ ହୁଏ । ଅନ୍ତକାଳରେ ସୁଖଭୋଗ କରେ ।

ଭ୍ରୂଲତାର ନିକଟରେ ତିଳଚିହ୍ନ ଥିଲେ ପୁତ୍ର, ମିତ୍ର ଓ ଧନଯୁକ୍ତ ହୁଏ ।

ଚକ୍ଷୁକୋଣରେ ତିଳଚିହ୍ନ ଥିଲେ ମାନବ ବୁଦ୍ଧିମାନ୍ ଓ ସର୍ବକର୍ମରେ ଧୁରନ୍ଧର ହୁଏ ।

ଗାଲରେ ତିଳଚିହ୍ନ ଥିଲେ ମାନବ ଧନୀ, ନିର୍ଭୀକ ଓ ଉଚ୍ଚଭକ୍ତା ହୁଏ ।

ସ୍କନ୍ଧଦେଶରେ ତିଳଚିହ୍ନ ଥିଲେ ବୁଦ୍ଧିମାନ୍, ଦୟାଳୁ ଓ ପରୋପକାରୀ ହୁଏ ।

ନାସାରନ୍ଧ୍ରର ସ୍ଥାନରେ ସିଧାଭାବରେ ତିଳୋଷ୍ଠ ବା ଓଷ୍ଠୋଷ୍ଠ ତିଳଚିହ୍ନ ଥିଲେ ମାନବ ଧନବାନ୍ ଓ ମନ୍ତ୍ରଣାଶକ୍ତିଯୁକ୍ତ ହୁଏ ।

ବାହୁରେ କମ୍ବା କହୁଣୀ ଓ କଟିର ମଧ୍ୟରେ ତିଳଚିହ୍ନ ଥିଲେ ମାନବ ଈଶ୍ୱରଭକ୍ତ, ଦାନୀ, ବୁଦ୍ଧିମାନ୍ ଓ ସନ୍ତାନଯୁକ୍ତ ହୁଏ ।

ବକ୍ଷସ୍ଥଳରେ ତିଳଚିହ୍ନ ଥିଲେ ମନୁଷ୍ୟ ସ୍ୱଳ୍ପସନ୍ତାନଯୁକ୍ତ ହୁଏ । ଏହି ବ୍ୟକ୍ତି ବଳବାନ୍ ହୁଏ

ଅଙ୍ଗୁଳିରେ ତିଳଚିହ୍ନ ଥିଲେ ମାନବ ଧନବାନ୍, ଶାନ୍ତସୁଖ ଓ ଜ୍ଞାନୀ ହୁଏ ।

ପୁରୁଷର ତିଳଚିହ୍ନମାନ ଡାହାଣ ବଗରେ ଓ ସ୍ତ୍ରୀର ତିଳଚିହ୍ନମାନ ବାମ ବଗରେ ଥିଲେ ଶୁଭ ହୁଏ । ଏହାଠାରୁ ଅଧିକ ତିଳଚିହ୍ନ ଥିଲେ କୌଣସି ନିର୍ଦ୍ଦିଷ୍ଟ ଫଳ ଲଭେ ନାହିଁ ।

## ଅଙ୍ଗଲକ୍ଷଣମ୍

ମୁଖ :—ଯାହାର ମୁଖମଣ୍ଡଳ ସୁନ୍ଦର, ଅକର୍କଶ ଓ ସମଲୋମଯୁକ୍ତ ସେ ଭାଗ୍ୟବାନ୍ ଓ ଶାନ୍ତ ହୁଏ ।

ମୁଖମଣ୍ଡଳ ଲମ୍ବଣ ଦେଖାଗଲେ ସେ ବ୍ୟକ୍ତି ନାନାପ୍ରକାର ମାନସିକ ପୀଡ଼ା ଭୋଗ କରେ ।

ସ୍ତ୍ରୀର ମୁଖପରି ଦେଖାଗଲେ ସେ ବ୍ୟକ୍ତି ସନ୍ତାନହୀନ ଓ ମଧ୍ୟଭାଗରେ କଷ୍ଟଭୋଗ କରେ ।

ଯାହାର ମୁଖ ଗୋଲାକାର ସେ ଧନୀ ହୁଏ । ଲମ୍ବା ହେଲେ ବଳବାନ୍ ଓ ଗରୀବ ହୁଏ ।

ମୁଖ ଛନଛନିଆ, ପୂର୍ଣ୍ଣ ଓ କାନ୍ତିଯୁକ୍ତ ହେଲେ ଲୋକ ସ୍ନେହଶୀଳ ଓ ସରଳମନା ହୁଏ ।

କପାଳ :—କପାଳ ଉନ୍ନତ ଓ ସମୟେ ସମୟେ ସ୍ୱେଦଯୁକ୍ତ ହୋଇଥିଲେ ସେ ବ୍ୟକ୍ତି ବହ୍ୱାଶୀ, ନିଷ୍ଠୁର ଓ ଧୈର୍ଯ୍ୟଶାଳୀ ହୁଏ ।

କପାଳ ଅତ୍ୟନ୍ତ ଛୋଟ ହେଲେ ସେ ଧୂର୍ତ୍ତ, ଶଠ, ପାପକର୍ମକର୍ତ୍ତା ଓ ନିଷ୍ଠୁର ହୁଏ ।

କପାଳର ଦୁଇ ଶେଷଭାଗ ମାଂସଳ ହେଲେ ସାହସୀ, ପରସ୍ତ୍ରୀରତକାମୀ, ଦସ୍ୟୁଭାବ, ପରତନ୍ତ୍ରୀ ଓ ମିତବ୍ୟୟୀ ହୁଏ ।

ଯାହାର କପାଳ ଉନ୍ନତ ଓ ମଧ୍ୟଭାଗ ଈଷତ୍ ନମ୍ର ସେ ବ୍ୟକ୍ତି ସରଳମନା ଓ ଗମ୍ଭୀର ହୁଏ ।

କପାଳସ୍ଥ ରେଖା ସରଳ ହେଲେ ସେ ବ୍ୟକ୍ତି ଧର୍ମପରାୟଣ, ଦାତା ଓ ଗୁଣଗ୍ରାହୀ ହୁଏ ।

ଲଲାଟରେ ପାଞ୍ଚୋଟି ରେଖା ସ୍ପଷ୍ଟଭାବରେ ଦେଖାଯାଉଥିଲେ ସେ ବ୍ୟକ୍ତି ଦୀର୍ଘାୟୁ ହୁଏ । ଛଅଟି ରେଖା ଦେଖାଯାଉଥିଲେ ୮୦ ବର୍ଷ, ତିନୋଟି ରେଖା ଦେଖାଯାଉଥିଲେ ୭୦ ବର୍ଷ, ଦୁଇଟି ରେଖା ଦେଖାଯାଉଥିଲେ ୪୦ବର୍ଷ ଓ ଗୋଟିଏ ରେଖା ଥିଲେ ୨୦ବର୍ଷ ଆୟୁଷ ହୁଏ । ରେଖା ଆଦୌ ନ ଥିଲେ ଆୟୁ ୨୫ ବର୍ଷ ହୁଏ ।

ଛିନ୍ନଭିନ୍ନ ଅନେକ ରେଖା ଦେଖାଗଲେ ମାନବର ଅପମୃତ୍ୟୁ ଘଟେ ।

ଲଲାଟଦେଶରେ ଅର୍ଦ୍ଧଚନ୍ଦ୍ର, ତ୍ରିଶୂଳ, ଦେଖାଯାଉଥିଲେ ମାନବ ଧନବାନ୍ ଓ ଧାର୍ମିକ ହୁଏ ।

ଲଲାଟ ଉନ୍ନତ ହେଲେ ମନୁଷ୍ୟ ଧନୀ ଓ କପଟୀ ହୁଏ ।

କର୍ଣ୍ଣ :—କର୍ଣ୍ଣ ଲମ୍ବା ହେଲେ ମାନବ ପ୍ରଥମ ବୟସରେ ସୁଖ ଓ ଶେଷକାଳରେ କଷ୍ଟଭୋଗ କରେ । କର୍ଣ୍ଣ ମାଂସଲ ଓ ବିସ୍ତୃତ ହେଲେ ମାନବ ଭାଗ୍ୟବାନ୍ ହୁଏ । ମୂଷିକ କର୍ଣ୍ଣ ପରି ହେଲେ ମେଧାବୀ, ଗଜକର୍ଣ୍ଣ ସଦୃଶ ହେଲେ ସୁପଣ୍ଡିତ ଓ ବରାହକର୍ଣ୍ଣ ପରି ଦେଖାଗଲେ ନିର୍ବୋଧ ହୁଏ । କାନ ଦୁଇଟି ପଦାକୁ ବାହାରି ପଡ଼ି ମୋଟ ମୋଟ ହୋଇଥିଲେ ମାନବ ପରନିନ୍ଦକ ହୁଏ ।

ଚକ୍ଷୁ :—ଚକ୍ଷୁଦ୍ୱୟ ମୟୂର ଓ ନକୁଳ ଚକ୍ଷୁ ପରି ସ୍ୱଚ୍ଛ ଦେଖାଗଲେ ସୁଲକ୍ଷଣାକ୍ରାନ୍ତ ହୁଏ ।

ଯାହାର ଚକ୍ଷୁ ବିଡ଼ାଳ ଚକ୍ଷୁପରି ପିଙ୍ଗଳ ବର୍ଣ୍ଣ ସେ ବ୍ୟକ୍ତି କ୍ରୂରକର୍ମା ହୁଏ । ସ୍ତ୍ରୀର ଚକ୍ଷୁ ଏପରି ଦେଖାଗଲେ ସେ ଦରିଦ୍ରା ଓ ବିଧବା ହୁଏ ।

ଚକ୍ଷୁଗୋଳକ ସଦୃଶ ଦେଖାଗଲେ ମାନବ ଭାଗ୍ୟବାନ୍ ଓ ଦୟାଳୁ ହୁଏ ।

ଚକ୍ଷୁ ଲାଲ ଦେଖାଗଲେ ମାନବ ପାପକର୍ମାସକ୍ତ ଓ ପରନିନ୍ଦକ ହୁଏ । ଚକ୍ଷୁ ଗୋଲ ହୋଇ ଉପରକୁ ବାହାର ପଡ଼ିଥିଲା ପରି ଦିଶିଲେ ମନୁଷ୍ୟ ଖୁବ୍ ଉପାର୍ଜନ କରେ ଓ ସେପରି ମୁକ୍ତ ହସ୍ତରେ ବ୍ୟୟ କରେ ।

ଚକ୍ଷୁର ଡ଼ୋଳା ଶ୍ୱେତ ଓ କଣ୍ଟିଲଯାଗ ପରି ବିସ୍ତୀର୍ଣ୍ଣ ହେଲେ ସେ ବ୍ୟକ୍ତି ସହୃଷ୍ଟ, ଧୈର୍ଯ୍ୟଶାଳୀ ଓ ମଦ୍ୟପ ହୁଏ ।

ଯେ ବ୍ୟକ୍ତି ସର୍ବଦା କଣେଇ କରି ଶୃଙ୍ଗେ; ଶଙ୍କିତପ୍ରାୟ ବାରମ୍ବାର ଦୃଷ୍ଟି ନିକ୍ଷେପ କରେ, ଭ୍ରୂଲତା ସର୍ବଦା ମନ୍ଥନ କରେ, ହେ ବ୍ୟକ୍ତି, ଚଞ୍ଚଳମନା, ଲମ୍ପଟ ଓ ଅଳ୍ପ କାର୍ଯ୍ୟ କରି ବହୁତ କଥା କହେ ।

ନାସିକା—ଶୁକନାସା ହେଲେ ମାନବ ସୁଖୀ, ଭୋଗୀ ଓ ପ୍ରଭୂତ ଲାଭ କରେ । ନାସିକା ଅତ୍ୟନ୍ତ କ୍ଷୁଦ୍ର ହେଲେ ମାନବ ଅଧାର୍ମିକ ହୁଏ । ନାସିକା ଉଚ୍ଚ ହେଲେ ମାନବ ବନ୍ଧୁଜନପ୍ରିୟ ହୁଏ ।

ଜିହ୍ୱା—ଅତ୍ୟନ୍ତ ଶ୍ୱେତ ବା କୃଷ୍ଣବର୍ଣ୍ଣ ହେଲେ ମାନବ କପଟୀ, ପରନାଶକାମୀ. ବୃଥାକ୍ରୋଧଯୁକ୍ତ ହୁଏ । ଜିହ୍ୱା ଲମ୍ବ ଓ ଆରକ୍ତ ବର୍ଣ୍ଣ—ହେଲେ କଥକ, ମନସ୍ୱୀ ଓ ବନ୍ଧୁପ୍ରିୟ ହୁଏ ।

ବକ୍ଷ—ଲୋମଶୂନ୍ୟ ହେଲେ ମାନବ ଅବିଶ୍ୱାସୀ ଓ କଳହପ୍ରିୟ ହୁଏ । ବକ୍ଷ ବିସ୍ତୃତ ଓ ଲୋମଯୁକ୍ତ ହେଲେ ପରିଶ୍ରମୀ ହୁଏ ।

ପାଦ—ପଦତଳେ ବୃଦ୍ଧାଙ୍ଗୁଷ୍ଠଠାରୁ ପାଦ ଶେଷ ପର୍ଯ୍ୟନ୍ତ ବିସ୍ତୃତ ରେଖା ଦେଖାଯାଉଥିଲେ ମାନବ ଭାଗ୍ୟବାନ୍ ହୁଏ ।

ଯାହାର ପାଦଦ୍ୱୟ ସ୍ଫୀତ ଫାଟିଛି ସେ ଅତ୍ୟନ୍ତ କଷ୍ଟ ଭୋଗ କରେ ।

ଗମନକାଳରେ ଏକ ପାଦ ଅପର ପାଦ ସହ ଘଷି ହେଲେ ମାନବ ଭୀରୁ ଓ ନୀଚକର୍ମାସକ୍ତ ହୁଏ ।

କରତଳରେ ଯେ ସକଳ ଚିହ୍ନ ଥିଲେ ଶୁଭ ବୋଲି କହାଗଲା; ପଦତଳରେ ସେ ସକଳ ଚିହ୍ନ ଥିଲେ ଶୁଭ ହୁଏ ।

ସାମୁଦ୍ରିକ ପୁସ୍ତକପାଠରେ ସାମୁଦ୍ରିକ ବିଷୟରେ ଜ୍ଞାନ ଲାଭ କରାଯାଇ ପାରେ ନାହିଁ । ଅଭ୍ୟାସବଶତଃ ଏହି ଜ୍ଞାନ ବୃଦ୍ଧି ହୁଏ ।

ସାମୁଦ୍ରିକବିଷୟ ସମାପ୍ତଃ ।

---*---

## ଦଶମୋଽଧ୍ୟାୟଃ

### ଗ୍ରହଶାନ୍ତିପ୍ରକରଣଂ

ଗ୍ରହମାନଙ୍କର କାରକ ବଳାନୁସାରେ ଅଶୁଭରେ ମାନବର ଶକ୍ତି ହ୍ରାସ ଓ ନାନାପ୍ରକାର ରୋଗବୃଦ୍ଧି ହୁଏ । ଏହି ଦୋଷ ଶାନ୍ତିନିମିତ୍ତ ନିଜ ଶକ୍ତି ବିଷୟରେ ରତ୍ନଧାରଣ, ମୂଳଧାରଣ, ହୋମ, ଦେବାର୍ଚ୍ଚନ, ଗ୍ରହପୂଜା, କବଚଧାରଣ ଓ ଦାନ ଇତ୍ୟାଦି କରାଯାଏ । ପୂର୍ବାଚାର୍ଯ୍ୟଗଣ କହନ୍ତି—

ଦେବତା ଗ୍ରହରୂପେଣ ମନୁଷ୍ୟାଣାଂ ଶୁଭାଶୁଭଂ ।
ଫଳଂ ପ୍ରାଗାର୍ଜିତଂ ଯଚ୍ଚ ତଦ୍ଦଦାତି ସ୍ୱକାଯ୍ୟକଂ ॥
ଗୋଚରେ ବା ବିଲଗ୍ନେ ବା ଯେ ଗ୍ରହା ରିଷ୍ଟସୂଚକାଃ ।
ପୂଜୟେତ୍ତାନ୍ ପ୍ରୟତ୍ନେନ ପୂଜିତାଃ ସ୍ୟୁଃ ଶୁଭାବହାଃ ॥

ଅଥ ରତ୍ନଧାରଣମାହ—

ମାଣିକ୍ୟଂ ତପୁଣେ ସୂର୍ଯ୍ୟେ ବୈଦୂର୍ଯ୍ୟଂ ଶଶଲାଞ୍ଛନେ ।
ପ୍ରବାଳଂ ଭୂମିପୁତ୍ରେ ଚ ପଦ୍ମରାଗଂ ଶଶାଙ୍କଜେ ।

ଗୁରୌ ମୁକ୍ତାଂ ଭୃଗୌ ବଜ୍ରମିନ୍ଦ୍ରନୀଳଂ ଶନୈଶ୍ଚରେ ।
ରାହୌ ଗୋମେଦକଂ ଧାର୍ଯ୍ୟଂ କେତୌ ମରକତଂ ତଥା ॥

ରବି ଅଶୁଭ ହେଲେ ମାଣିକ୍ୟ, ଚନ୍ଦ୍ର ଅଶୁଭରେ ବୈଦୂର୍ଯ୍ୟ, ମଙ୍ଗଳ ଅଶୁଭରେ ପ୍ରବାଳ (ପୋହଳା) ବୁଧ ଅଶୁଭରେ ପଦ୍ମରାଗ, ବୃହସ୍ପତି ଅଶୁଭରେ ମୁକ୍ତା, ଶୁକ୍ର ଅଶୁଭରେ ହୀରକ (ବଜ୍ର) ଶନି ଅଶୁଭରେ ଇନ୍ଦ୍ରନୀଳ ରାହୁ ଅଶୁଭରେ ଗୋମେଦ ଓ କେତୁଙ୍କର ଅଶୁଭରେ ମରକତମଣି ଧାରଣ କରିବ ।

## ଧାତୁଧାରଣଂ

ଦୋଷୋ ନ ସ୍ୟାଦ୍ ଗ୍ରହାଣାମଶିଶିରକିରଣେ ତାମ୍ରମିନ୍ଦୌ ଚ ଶଙ୍ଖଂ
ପୃଥ୍ୱୀପୁତ୍ରେ ପ୍ରବାଳଂ ଶଶଧରତନୟେ ଶାତକୁମ୍ଭଂ ଭ୍ରମେଣ ॥
ଦେବାଚାର୍ଯ୍ୟେ ଚ ମୁକ୍ତାଂ ମଣିମସୁରଗୁରୌ ସୀସକଂ ସୂର୍ଯ୍ୟସୂନୌ
ସ୍ୱର୍ଭାନୌ ସାରଂ ଗିରୀଣାଂ କମଳଜତନୟେ ରାଜପଟ୍ଟଂ ବଦନ୍ତି ॥

ରବି ଅଶୁଭ ହେଲେ ତାମ୍ର ଧାରଣ କରିବ । ଏହିପରି ଚନ୍ଦ୍ରଙ୍କର ଶଙ୍ଖ, ମଙ୍ଗଳଙ୍କର ପ୍ରବାଳ, ବୁଧଙ୍କର ସ୍ୱର୍ଣ୍ଣ, ବୃହସ୍ପତିଙ୍କର ମୁକ୍ତା, ଶୁକ୍ରଙ୍କର ମଣି, ଶନିଙ୍କର ସୀସା ରାହୁଙ୍କର ଲୌହ ଓ କେତୁ ଅଶୁଭ ହେଲେ ତାହାଙ୍କର ଦୋଷ ଶାନ୍ତିନିମିତ୍ତ କଷଟି ପଥର ଧାରଣ କରିବେ ।

## ମୂଳଧାରଣଂ

ମୂଳଂ ଧାର୍ଯ୍ୟଂ ହି ଶୂଳ୍ୟାଃ ସବିତରି ବିଗୁଣେ କ୍ଷୀରିକାମୂଳମିନ୍ଦୌ
ଜିହ୍ୱାହ୍ୱେଭୂମିପୁତ୍ରେ ରଜନିକରସୁତେ ବୃଦ୍ଧଦାରସ୍ୟ ମୂଳଂ ।
ଭାର୍ଗ୍ୟା ଜୀବେଽଥ ଶୁକ୍ରେ ଭବତି ଶୁଭକରଂ ହି ହସ୍ତପୁଚ୍ଛସ୍ୟ ମୂଳଂ ।
ବାଟ୍ୟାଳଂ ସୂର୍ଯ୍ୟପୁତ୍ରେ ତମସି ମଲୟଜଂ କେତୁଦୋଷେଽଶ୍ୱଗନ୍ଧଂ ॥

ରବିଙ୍କର ଅଶୁଭରେ ମହାକାଳ, ଚନ୍ଦ୍ରଙ୍କର ଅଶୁଭରେ ଖୀର-କୋଳ, ମଙ୍ଗଳଙ୍କର ଅଶୁଭରେ ସୁଗନ୍ଧ, ବୁଧଙ୍କର ଅଶୁଭରେ ବୃଦ୍ଧଦାରକ, ବୃହସ୍ପତିଙ୍କର ଅଶୁଭରେ ବ୍ରାହ୍ମଣଯଷ୍ଟି, ଶୁକ୍ରଙ୍କର ଅଶୁଭରେ ଅନନ୍ତମୂଳ ଓ ଶନିଙ୍କର ଅଶୁଭରେ ବାଡ଼ଅଁଳାମୂଳ ଧାରଣ-କରିବେ । ରାହୁଙ୍କର ଅଶୁଭରେ ଚନ୍ଦନ ଓ କେତୁଙ୍କର ଅଶୁଭରେ ଅଶ୍ୱଗନ୍ଧା ଧାରଣ କରିବ । ପୂର୍ବୋକ୍ତ ସମସ୍ତ ଧାତୁ ଓ ମୂଳମାନ ପୁରୁଷ ଦକ୍ଷିଣବାହୁରେ ଓ ସ୍ତ୍ରୀ ବାମବାହୁରେ ଧାରଣ କରିବ ।

## ଗ୍ରହଦୋଷଶାନ୍ତ୍ୟର୍ଥସ୍ନାନଂ

ସିଦ୍ଧାର୍ଥଲୋଧ୍ରରଜନୀଦ୍ୱୟମୁସ୍ତଧାନ୍ୟଂ
ଶମଙ୍କକଂ ସଫଲିନୀ ସବଚ୍ଚ ଚ ମାଂସୀ ।
ସ୍ନାନଂ କୁରୁ ଗ୍ରହଗଣପ୍ରଶମାୟ ନିତ୍ୟଂ
ସର୍ବେ ରବିପ୍ରଭୃତୟଃ ସୁମୁଖା ଭବନ୍ତି ॥

ଗ୍ରହମାନଙ୍କର ଦୋଷଶାନ୍ତି ନିମନ୍ତେ ଶ୍ୱେତ ସର୍ଷପ, ଲୋଧ୍ର, ହଳଦୀ, ଦାରୁହଳଦୀ, ମୁଥା, ଧାନ୍ୟ, ବେଣାମୂଳ, ପ୍ରିୟଙ୍ଗୁ, ବଚ ଓ ଜଟାମାଂସୀ ସମପରିମାଣରେ ନେଇ ଜଳରେ ପକାଇ ସେହି ଜଳରେ ସ୍ନାନ କରିବ ।

## ହୋମପରିମାଣଂ

ଏକୈକସ୍ୟ ତ୍ୱଷ୍ଟଶତମଷ୍ଟାବିଂଶତିରେବ ବା ।
ହୋତବ୍ୟା ମଧୁସର୍ପିର୍ଭ୍ୟାଂ ଦଧ୍ନା ଚାଷ୍ଟସଂଯୁତା ॥
ଅର୍କଃ ପଲାଶଖଦିରସ୍ତ୍ୱପାମାର୍ଗୋଽଥ ପିପ୍ପଲଃ ।
ଔଦୁମ୍ବରଃ ଶମୀ ଦୂର୍ବା କୁଶାଶ୍ଚ ସମିଧଃ କ୍ରମାତ୍ ॥

ଅଶୁଭ କାରକ ପ୍ରତ୍ୟେକ ଗ୍ରହଙ୍କୁ ପୂର୍ବୋକ୍ତ ନିର୍ଦ୍ଦିଷ୍ଟ ୧୦୦୮ କିମ୍ବା ୧୦୮ ଅଥବା ପକ୍ଷରେ ୨୮ ଲେଖାଏଁ ଅର୍ଘ୍ୟ ପ୍ରଦାନ କରିବେ । ରବିଙ୍କର ଅର୍କ, ଚନ୍ଦ୍ରଙ୍କର ପଳାଶ, ମଙ୍ଗଳଙ୍କର ଖଇର, ବୁଧଙ୍କର ଅପାମାର୍ଗ, ବୃହସ୍ପତିଙ୍କର ଅଶ୍ୱତ୍ଥ, ଶୁକ୍ରଙ୍କର ଉଦୁମ୍ବର, ଶନିଙ୍କର ଶମୀ, ରାହୁଙ୍କର ଦୂର୍ବା ଓ କେତୁଙ୍କର କୁଶ ସମିଧ ଅଟେ ।

ଗ୍ରହ ଦାନଂ

ମାଣିକ୍ୟ-ଗୋଧୂମ-ସବତ୍ସ ଧେନୁଃ
କୁସୁମ୍ଭ-ବସ୍ତ୍ରଂ ଗୁଡ଼-ହେମ ତାମ୍ରଂ ।
ଆରକ୍ତକଂ ଚନ୍ଦନମମ୍ବୁଜଞ୍ଚ
ବଦନ୍ତି ଦାନାନ୍ତ ବିରୋଚନାୟ ॥ ଶା. ଦୀ.

ରବି ଅଶୁଭ ହେଲେ ନିଜ ଶକ୍ତି ବଳରେ ମାଣିକ୍ୟ, ଗୋଧୂମ, ବତ୍ସା ସହ ଗାଈ କୃତ୍ରିମ ରକ୍ତବର୍ଣ୍ଣ ବସ୍ତ୍ର, ଗୁଡ଼, ସ୍ୱର୍ଣ୍ଣ, ତାମ୍ର, ରକ୍ତଚନ୍ଦନ ଓ ପଦ୍ମଫୁଲ ଦାନ କରିବେ ।

ସଦ୍‌ବଂଶପାତ୍ରସ୍ଥିତତଣ୍ଡୁଳାଂଶ୍ଚ
କର୍ପୂରମୁକ୍ତାଫଳଶୁଭ୍ରବସ୍ତ୍ରଂ ।
ଯୁଗୋପଯୁକ୍ତଂ ବୃଷଭଞ୍ଚ ରୌପ୍ୟଂ
ଚନ୍ଦ୍ରାୟ ଦଦ୍ୟାତ୍‌ ଘୃତପୂର୍ଣ୍ଣକୁମ୍ଭଂ ॥ ଶା. ଦୀ.

ଉତ୍ତମ ବାଉଁଶିଥରେ ଭରତି କରି ଚାଉଳ, କର୍ପୂର, ମୁକ୍ତା, ଶୁକ୍ଳ ଲୁଗା, କାଳ ବଳଦରେ ଗୋଟିଏ ବୃଷଭ, ରୌପ୍ୟ ଓ ଘୃତପୂର୍ଣ୍ଣ କୁମ୍ଭ ଚନ୍ଦ୍ରଙ୍କ ଅଶୁଭରେ ଦାନ କରିବ ।

ପ୍ରବାଳଗୋଧୂମମସୁରକାଶ୍ଚ
ବୃଷୋରୁଣଶ୍ଚାପି ଗୁଡ଼ୋ ସୁବର୍ଣ୍ଣଂ ।

ଆରକ୍ତବସ୍ତ୍ରଂ କରବୀରପୁଷ୍ପଂ
ତାମ୍ରଂ ଚ ଭୌମାୟ ବଦନ୍ତି ଦାନଂ ॥ ଶା. ଦୀ.

ମଙ୍ଗଳଙ୍କ ଅଶୁଭ ଶାନ୍ତିନିମିତ୍ତ ପୋଦଲା, ଗହମ, ମସୁର, ଢଡା ବୃଷ, ଗୁଡ଼, ସୁବର୍ଣ୍ଣ, ରକ୍ତବସ୍ତ୍ର, କନିଅର ଫୁଲ ଓ ତମ୍ବା ଦାନ କରିବେ ।

ଚେଲଞ୍ଚ ନୀଳଂ କଲଧୌତକାଂସ୍ୟ—
ମୁଦ୍ଗାଜ୍ୟଗୌରୁତ୍ମକସର୍ବପୁଷ୍ପଂ ।
ଦ୍ରାକ୍ଷା ଚ ଦନ୍ତୋ ଦ୍ୱିରଦସ୍ୟନୂନଂ ।
ବଦନ୍ତି ଦାନଂ ବିଧୁନନ୍ଦନାୟ ॥

ବୁଧଙ୍କ ଅଶୁଭ ଶାନ୍ତି ନିମିତ୍ତ ନୀଳବସ୍ତ୍ର, ସ୍ୱର୍ଣ୍ଣ, କଂସା, ମୁଗ, ଘୃତ, କର୍ପୂର, ନାନାପ୍ରକାର ଫୁଲ ଦ୍ରାକ୍ଷା ଓ ହସ୍ତିଦନ୍ତ ଦାନ କରିବେ ।

ଶର୍କରା ଚ ରଜନୀ ତୁରଙ୍ଗମଃ
ପୀତଧାନ୍ୟମପି ପୀତମମ୍ବରଂ ।
ପୁଷ୍ପରାଗଲବଣଂ ଚ କାଞ୍ଚନଂ
ପ୍ରୀତୟେ ସୁରଗୁରୋଃ ପ୍ରଦୀୟତାଂ ॥

ବୃହସ୍ପତିଙ୍କ ଅଶୁଭ ଶାନ୍ତିନିମିତ୍ତ ଶର୍କରା, ହଳଦୀ, ଘୋଟକ, ହଳଦିଆ ଧାନ, ହଳଦିଆ ଲୁଗା, ପୁଷ୍ପରାଗ, ଲବଣ ଓ ସ୍ୱର୍ଣ୍ଣଦାନ କରିବେ ।

ଚିତ୍ରାମ୍ବରଂ ଶୁଭ୍ରତୁରଙ୍ଗୋ
ଧେନୁଶ୍ଚ ବଜ୍ରଂ ରଜତଂ ସୁବର୍ଣ୍ଣଂ ।

ସୁଚନ୍ଦନ୍ତ୍ରଲାକ୍ଷ୍ୟାତ୍ତମଗନ୍ଧଯୁକ୍ତଂ
ବଦନ୍ତି ଦାନଂ ଭୃଗୁନନ୍ଦନାୟ ॥ ଶା. ସା.

ଶୁକ୍ରଙ୍କ ଅଶୁଭ ଶାନ୍ତି ନିମିତ୍ତ ଚିତ୍ରବସ୍ତ୍ର, ଶୁକ୍ଳ ଘୋଟକ, ଗାଈ, ହୀରକ, ରୌପ୍ୟ ସୁବର୍ଣ୍ଣ, ଉତ୍ତମ ଚନ୍ଦନ ଓ ଉତ୍ତମ ଗନ୍ଧଯୁକ୍ତ ଘିଅ ଦାନ କରିବେ ।

ମାଷାଶ୍ଚ ତୈଳଂ ବିମଲେନ୍ଦ୍ରନୀଲଂ
ତିଳାଃ କୁଳତ୍ଥା ମହିଷୀ ଚ ଲୌହଂ ।
କୃଷ୍ଣା ଚ ଧେନୁଃ ପ୍ରବଦନ୍ତି ନୂନଂ
ଦୁଷ୍ଟାୟ ହି ଦାନଂ ରବିନନ୍ଦନସ୍ୟ ॥

ଶନିଙ୍କର ଅଶୁଭରେ ବିରି, ତେଲ, ଇନ୍ଦ୍ରନୀଳ, ରାଶି, କୋଳଥ, ମହିଷ, ଲୌହ ଓ କୃଷ୍ଣବର୍ଣ୍ଣ ଗାଈ ଦାନ କରିବେ ।

ଗୋମେଦରତ୍ନଞ୍ଚ ତୁରଙ୍ଗମଞ୍ଚ
ସୁନୀଳଚେଲାନି ଚ କମ୍ବଳଂ ଚ ।
ତିଳାଶ୍ଚ ତୈଳଂ ଖଳୁ ଲୌହଯୁକ୍ତଂ
ସ୍ୱର୍ଭାନବେ ଦାନମିଦଂ ବଦନ୍ତି ॥

ରାହୁଙ୍କର ଅଶୁଭ ଶାନ୍ତି ନିମିତ୍ତ ଗୋମେଦ, ରତ୍ନ, ଘୋଟକ, ନୀଳବର୍ଣ୍ଣ ବସ୍ତ୍ର, କମ୍ବଳ, ରାଶି, ଲୌହଖଣ୍ଡ ପ୍ରକ୍ଷିପ୍ତ ତୈଳପାତ୍ର ଦାନ କରିବେ ।

ବୈଦୁର୍ଯ୍ୟରତ୍ନଂ ସତିଲଞ୍ଚ ତୈଳଂ
ସକମ୍ବଳଞ୍ଚାପି ମଦୋମୃଗସ୍ୟ ।
ଶସ୍ତ୍ରଞ୍ଚ କେତୋଃ ପରିତୋଷହେତୋ
ରୁଦୀରିତଂ ଦାନମିଦଂ ମୁନୀନ୍ଦ୍ରୈଃ ॥

କେତୁଙ୍କର ଅଶୁଭ ଶାନ୍ତି ନିମିତ୍ତ ବୈଦୂର୍ଯ୍ୟ, ରତ୍ନ, ତୀଳତେଲ, କମ୍ବଲ, ମୃଗନାଭ କସ୍ତୁରୀ ଓ ଶସ୍ତ୍ର ଦାନ କରିବେ ।

ଜପପରିମାଣଂ

ରବେଃ ସପ୍ତସହସ୍ରାଣି ଚନ୍ଦ୍ରସ୍ୟୈକାଦଶ ସ୍ମୃତା ।
ଭୌମେ ଦଶସହସ୍ରଞ୍ଚ ବୁଧେ ଦଶସହସ୍ରକଂ ॥
ଏକୋନବିଂଶତି ଜୀବେ ଭୃଗୋ ନୃପ ସହସ୍ରକଂ ।
ତ୍ରୟୋବିଂଶତି ସୌରେଶ୍ଚ ସ୍ୱର୍ଭାନୋରଷ୍ଟାଦଶ ସ୍ମୃତାଃ ।
କେତୋଃପଂଷ୍ଟସହସ୍ରଞ୍ଚ ଜପସଂଖ୍ୟା ପ୍ରକୀର୍ତ୍ତିତା ॥ ଶା. ତ,

ରବିଙ୍କର ଅଶୁଭ ଶାନ୍ତିନିମିତ୍ତ ରବିଙ୍କର ମୂଳମନ୍ତ୍ର ୭୦୦୦ ଜପ କରିବେ । ଚନ୍ଦ୍ରଦୋଷ ଶାନ୍ତିନିମିତ୍ତ ତାହାଙ୍କର ମୂଳମନ୍ତ୍ର ୧୧,୦୦୦ ଜପ କରିବେ । ମଙ୍ଗଳଙ୍କ ଦୋଷ ଶାନ୍ତିନିମିତ୍ତ ତାହାଙ୍କର ମୂଳମନ୍ତ୍ର ୧୦,୦୦୦ ଜପ କରିବେ । ବୁଧଙ୍କ ଦୋଷ ଶାନ୍ତିସକାଶେ ତାହାଙ୍କର ମୂଳମନ୍ତ୍ର ୧୦,୦୦୦ ଜପ କରିବେ । ବୃହସ୍ପତିଙ୍କ ଦୋଷ ଶାନ୍ତିନିମିତ୍ତ ତାହାଙ୍କର ମୂଳମନ୍ତ୍ର ୧୯,୦୦୦ ଜପ କରିବେ । ଶୁକ୍ରଙ୍କ ଦୋଷ ଶାନ୍ତି ନିମିତ୍ତ ତାହାଙ୍କ ମୂଳମନ୍ତ୍ର ୧୬,୦୦୦ ଜପ କରିବେ । ଶନିଙ୍କ ଦୋଷ ଶାନ୍ତି ନିମିତ୍ତ ୨୩,୦୦୦ ମୂଳମନ୍ତ୍ର ଜପ କରିବେ । ରାହୁଙ୍କର ଦୋଷ ଶାନ୍ତି ନିମିତ୍ତ ତାହାଙ୍କ ମୂଳମନ୍ତ୍ର ୧୮,୦୦୦ ଜପ କରିବେ । କେତୁଙ୍କର ଦୋଷ ଶାନ୍ତି ନିମିତ୍ତ ତାହାଙ୍କର ମୂଳମନ୍ତ୍ର ୮୦୦୦ ଜପ କରିବେ ।

ବାଳରକ୍ଷା ଶାନ୍ତ୍ୟର୍ଥଂ ଦ୍ରବ୍ୟାଦିଧାରଣଂ—

ମୟୂରଚୂଳିକାମୂଳମାଦିତ୍ୟଗ୍ରହଣୋଦ୍ଧୃତଂ ।
ବାଳସ୍ୟ ତୁ ଗଳେ ବଦ୍ଧଂ ସମସ୍ତଗ୍ରହଦୋଷହୃତ୍ ॥ ଜ୍ୟୋ.ପ୍ର.

ସୂର୍ଯ୍ୟଗ୍ରହଣ କାଳରେ ମୟୂରଚୂଳିକା ମୂଳ ଆଣି ବାଳକର ଗଳାରେ ବାନ୍ଧିଲେ ସମସ୍ତ ଗ୍ରହଦୋଷ ଶାନ୍ତ ହୁଏ । ( ମୟୂରଚୂଳିକା = ଚୋଟମୂଳ, ସାଧାରଣତେ ଚୋଟାମାନଙ୍କରେ ଦେଖାଯାଏ ) ।

ଶଙ୍ଖୋତ୍ପଲ ବଚ୍ କୁଷ୍ଠ କୃଷ୍ଣଲୌହ ବିଧାରଣାତ୍ ।
ସର୍ବୋପଦ୍ରବତୋ ବାଲଃ ଦ୍ୱେଡ୍ରାଦପି ଚ ରକ୍ଷ୍ୟତେ ॥ ଜ୍ୟୋ. ସ୍ତୁ.

ଶଙ୍ଖ, ଉତ୍ପଳ, ବଚ, କୁଷ୍ଠ, କୃଷ୍ଣସର୍ପ ଓ ଲୌହ ଧାରଣ କଲେ ବାଳକ ଦୁଷ୍ଟ ପ୍ରୟୋଗାଦି ସମସ୍ତ ଉପଦ୍ରବରୁ ରକ୍ଷା ପାଏ ।

ଅର୍କଦୁଗ୍ଧଂ ବଚା ଶୁଣ୍ଠୁ ଗୋଘୃତେନ ବିଲେପନଂ ।
ସର୍ବୋପଦ୍ରବଦୋଷେଭ୍ୟୋ ବାଲଂ ରକ୍ଷତି ସନ୍ତତଂ ।ଶ.ତ.॥

ଅରଖକ୍ଷୀର ହଳଦୀ ଓ ଶୁଣ୍ଠ ସହ ଗାଈଘିଅ ମିଶାଇ ବାଳକର ଶରୀରରେ ଲେପନ କଲେ ବାଳକ ସମସ୍ତ ଉପଦ୍ରବରୁ ରକ୍ଷା ପାଏ ।

ମାଗଧିକାସୈନ୍ଧବସୁରଭିପିତ୍ତମଧୁମରିଚରଜତମତପ୍ରକୃଷ୍ଟଂ ।
ଭୂତଗ୍ରହମଞ୍ଜନମିଦଂ ଦୁର୍ଦ୍ଧର୍ଷ ଗ୍ରହଦର୍ପ ବିଦାରଣଂ । ଜ୍ୟୋ ସ୍ତୁ.

ପିପ୍ପଳୀ, ସୈନ୍ଧବଲୁଣ, ଗୋରୋଚନା, ମଧୁ, ମରିଚ ଏହି ସମସ୍ତ ଦ୍ରବ୍ୟ ସମପରିମାଣରେ ନେଇ ଅଞ୍ଜନ କରି ଲଗାଇଲେ ଭୂତାବେଶ ଆଶଙ୍କା ଓ ବାଳଗ୍ରହାଦିର ଭୟ ରହେ ନାହିଁ ।

ସମାପ୍ତୋଽୟଂ ଗ୍ରନ୍ଥଃ ।



# ଉତ୍ପାତ ପରିଶିଷ୍ଟଂ



## କୂର୍ମଚକ୍ରଂ

ପ୍ରାଙ୍ମୁଖୋ ଭଗବାନ୍ ଦେବଃ କୂର୍ମରୂପୀ ବ୍ୟବସ୍ଥିତଃ ।
ଆକ୍ରମ୍ୟ ଭାରତଂ ବର୍ଷଂ ନବଭେଦଂ ଯଥାକ୍ରମଂ ।୧।
ମଧ୍ୟ ପ୍ରାଗଗ୍ନି ଯାମ୍ୟାଦ କୃତ୍ତିକାଦ କ୍ରମଂ କ୍ରମୈଃ ।
କ୍ରୂରବେଧଯୁତୈସ୍ତୈସ୍ତୁ ପୀଡ୍ୟନ୍ତେ ତନ୍ନିବାସିନଃ । ୨ ।

ନବଭାଗରେ ବିଭକ୍ତ ଭାରତବର୍ଷକୁ ଆକ୍ରମଣପୂର୍ବକ, କୂର୍ମରୂପୀ ଭଗବାନ ପୂର୍ବମୁଖ ହୋଇ ଅବସ୍ଥାନ କରୁଅଛନ୍ତି । ନଅଟି ଭାଗ ଯଥା— ମଧ୍ୟ, ପୂର୍ବ, ଅଗ୍ନି, ଦକ୍ଷିଣ, ନୈର୍ଋତ, ପଶ୍ଚିମ, ବାୟୁ, ଐଶାନ୍ୟ । ପ୍ରତ୍ୟେକ ବିଭାଗରେ କୃତ୍ତିକାଦି କ୍ରମେ ତିନୋଟି ତିନୋଟି ନକ୍ଷତ୍ର କଳ୍ପନା କରାଯାଇ ଅଛି । ଯଥା:—ମଧ୍ୟ ଭାଗରେ କୃତ୍ତିକା, ରୋହିଣୀ, ମୃଗଶିରା; ପୂର୍ବଭାଗରେ ଆର୍ଦ୍ରା, ପୁନର୍ବସୁ, ପୁଷ୍ୟା; ଅଗ୍ନିକୋଣରେ ଅଶ୍ଳେଷା, ମଘା, ପୂର୍ବାଫାଲ୍ଗୁନୀ; ଦକ୍ଷିଣ ଭାଗରେ ଉତ୍ତରଫାଲ୍ଗୁନୀ, ହସ୍ତା, ଚିତ୍ରା; ନୈଋତକୋଣରେ ସ୍ୱାତୀ, ବିଶାଖା ଓ ଅନୁରାଧା; ପଶ୍ଚିମଭାଗରେ ଜ୍ୟେଷ୍ଠା, ପୂର୍ବାଷାଢ଼ା ଓ ମୂଳା; ବାୟୁକୋଣରେ ଉତ୍ତରାଷାଢ଼ା, ଶ୍ରବଣା ଓ ଧନିଷ୍ଠା; ଉତ୍ତର ଭାଗରେ ଶତଭିଷା, ପୂର୍ବଭାଦ୍ରପଦ ଓ ଉତ୍ତର ଭାଦ୍ରପଦ; ଐଶାନ୍ୟ କୋଣରେ ରେବତୀ, ଅଶ୍ୱିନୀ ଓ ଦ୍ୱିଜା ନକ୍ଷତ୍ର କଳ୍ପିତ । ଏହି ସମସ୍ତ ନକ୍ଷତ୍ର ପାପଗ୍ରହଯୁକ୍ତ ବା ପାପଗ୍ରହଦ୍ୱାରା ବେଧ

ହେଲେ ସେହି ସେହି ଦିଗସ୍ଥ ଦେଶବାସୀମାନେ ପୀଡ଼ିତ ହୁଅନ୍ତି । ସେହି ସେହି ଦେଶରେ ଭୂକମ୍ପ, ଯୁଦ୍ଧ, ଦୁର୍ଭିକ୍ଷ ଓ ମହାମାରୀ ଉପସ୍ଥିତ ହୁଏ ।

ପୂର୍ବାପରେ ଭବେଦ୍‌ବେଧୋ ବେଧସ୍ତୋତ୍ତରଦକ୍ଷିଣେ ।
ଈଶାନରକ୍ଷସୋର୍ବେଧୋ ବେଧସ୍ତଗ୍ନେୟମାରୁତେ ।୩।
ତାସବନ୍ୟାନ୍ୱିତଂ ଚନ ସୌରଂ ଯତ୍ନେନ ଚିନ୍ତୟେତ୍ ।

## ବେଧ ନିର୍ଣ୍ଣୟ ଉପାୟ ।

ପୂର୍ବଭାଗସ୍ଥ ନକ୍ଷତ୍ରମାନଙ୍କ ସହିତ ପଶ୍ଚିମ ଭାଗସ୍ଥ ନକ୍ଷତ୍ରସ୍ଥିତ ଗ୍ରହର ବେଧ, ତଥା ପଶ୍ଚିମଭାଗସ୍ଥ ନକ୍ଷତ୍ରମାନଙ୍କ ସହିତ ପୂର୍ବଭାଗସ୍ଥ ନକ୍ଷତ୍ରସ୍ଥିତ ଗ୍ରହର ବେଧ ହେବ । ଏହିପରି ସର୍ବତ୍ର ଦେଖି ବେଧସ୍ଥାନର ନକ୍ଷତ୍ରମାନଙ୍କର ପରସ୍ପର ବେଧ ବୁଝିବାକୁ ହେବ । ଉତ୍ତର ଓ ଦକ୍ଷିଣ, ଐଶାନ୍ୟ ଓ ନୈର୍ଋତ, ଅଗ୍ନିକୋଣ ଓ ବାୟୁକୋଣ ପରସ୍ପର ବେଧ ହୁଏ ।

ଉଦାହରଣ :—ମୂଳା ନକ୍ଷତ୍ରରେ ଶନି ଥିଲେ ପୂର୍ବଭାଗସ୍ଥ, ଆର୍ଦ୍ରା, ପୁନର୍ବସୁ ଓ ପୁଷ୍ୟା ନକ୍ଷତ୍ରର ବେଧ ହେବାରୁ ପୂର୍ବଭାଗସ୍ଥ ମଗଧାଦି ଦେଶବାସିଗଣ କଷ୍ଟଭୋଗ କରିବେ । ପାପଗ୍ରହ ବେଧ ହେବାରୁ ଯେପରି ଅଶୁଭ ହୁଏ, ପାପଗ୍ରହ ସେହି ସେହି ନକ୍ଷତ୍ରରେ ଥିଲେ ମଧ୍ୟ ସେହିପରି ମନ୍ଦଫଳ ଘଟିଥାଏ । କୂର୍ମଚକ୍ରରେ କୂର୍ମର କେଉଁ ଅଙ୍ଗରେ ଶନି ଅବସ୍ଥାନ କରିଅଛନ୍ତି ( ନକ୍ଷତ୍ରନିରୂପଣାନୁସାରେ ) ଦେଖି ଫଳ କହିବେ ।

ନାଭିଶୀର୍ଷଚତୁଷ୍ପାଦକକ୍ଷପୁଚ୍ଛେ ତୁ ସଂସ୍ଥିତଂ ।
ଅତିବୃଷ୍ଟିରନାବୃଷ୍ଟିଃ ଶଲଭା ମୂଷିକାଃ ଖଗାଃ ।୪।

ସ୍ୱଚକ୍ରଂ ପରଚକ୍ରଂ ଚ ସପ୍ତୈବୈ ସମ୍ୱବନ୍ତ ଚ ।
ଏଙ୍କ ଦେଶଗୃହଗ୍ରାମକ୍ଷେତ୍ରନାମର୍କ୍ଷତୋ ବଦେତ୍ ।୫।
ଯତ୍ର ଯତ୍ର ଚ ନକ୍ଷତ୍ରେ ଦିବ୍ୟ ପାର୍ଥିବନାଭସାଃ ।
ଦୃଶ୍ୟନ୍ତେ ଧୂମକେତ୍ୱାଦ୍ୟାଃ ସ୍ଥାଂ ଦେଶଂ ତତ୍ର ପୀଡ଼ୟେତ୍ ।୬।

ଶନି କୂର୍ମର ନାଭିଦେଶ ( ମଧ୍ୟଭାଗ ) ରେ ଥିଲେ ଅତିବୃଷ୍ଟି, ମୁଖଭାଗ ( ପୂର୍ବଭାଗ ) ରେ ଥିଲେ ଅନାବୃଷ୍ଟି, ଚରଣରେ ( ଅଗ୍ନି ପ୍ରଭୃତି କୋଣଚତୁଷ୍ଟୟରେ ) ଥିଲେ ( ଝିଣ୍ଟିକା ପ୍ରଭୃତି ଦୁଷ୍ଟ କୀଟ ପ୍ରଦୁର୍ଭାବ ହେତୁ ଶସ୍ୟ ନଷ୍ଟ ) ଓ ମୂଷିକଦ୍ୱାରା ନଷ୍ଟ ଓ ପକ୍ଷୀମାନଙ୍କଦ୍ୱାରା ନଷ୍ଟ ହୁଏ । କୂର୍ମର କକ୍ଷଦେଶରେ (ଦକ୍ଷିଣୋତ୍ତର ଭାଗରେ) ଶନି ଥିଲେ ସ୍ୱଦେଶୀୟ ବ୍ୟକ୍ତିଙ୍କଦ୍ୱାରା ରାଜ୍ୟ ମଧ୍ୟରେ ଗଣ୍ଡଗୋଳ ଏବଂ ପୁଚ୍ଛଭାଗରେ (ପଶ୍ଚିମ) ଥିଲେ ପରରାଜ ସମ୍ପର୍କରେ ଯୁଦ୍ଧାଦି ଘଟେ । ଏହିପରି ଦେଶ, ଗୃହ, କ୍ଷେତ୍ର, ଗ୍ରାମ ପ୍ରଭୃତିର ନାମାନୁସାରେ ଶତପଦ ଚକ୍ରରୁ ନକ୍ଷତ୍ରୋଦ୍ଧାର କରି ତଦନୁସାରେ ସେମାନଙ୍କର ଶୁଭାଶୁଭଙ୍କୁ କହିବେ । ଅର୍ଥାତ୍ ତତ୍ତ୍ୱନକ୍ଷତ୍ର ପାପବିଦ୍ଧ ବା ପାପଯୁକ୍ତ ହେଲେ ତତ୍ତ୍ୱଦେଶ ଗ୍ରାମାଦିର ନଷ୍ଟ ହେବ ଏବଂ ଯେଉଁ ନକ୍ଷତ୍ରମାନଙ୍କରେ ଦିବ୍ୟ, ଭୌମ ଓ ଆକାଶ ସମ୍ଭୂତ କୌଣସି ପ୍ରକାର ଉତ୍ପାତ ହେବ ସେ ନକ୍ଷତ୍ରକଳ୍ପିତ ସ୍ଥାନସମୂହ ଉପଦ୍ରୁତ ହେବ ।

ଶୌରବଳାଧିକୋ ଦୁଷ୍ଟଃ ସ୍ୱଳ୍ପବୀର୍ଯ୍ୟଃ ଶୁଭାବହଃ ।
ଏକଦା ପୀଡ଼ୟେଦ୍ ଯତ୍ର ଭାନୁଜଃ କୂର୍ମପଞ୍ଚକେ ।୭।
ତତ୍ର ସ୍ଥାନେ ମହାବିଘ୍ନୋ ଜାୟତେ ନାତ୍ର ସଂଶୟଃ ।
ଦୁଷ୍ଟ ସ୍ଥାନଗତେ ମନ୍ଦେ କର୍ତ୍ତବ୍ୟଂ ଶାନ୍ତପୌଷ୍ଟିକଂ ।୮।

ବଳବାନ୍ ଶନଇଶ୍ଚର ତତ୍ ନକ୍ଷତ୍ର ବିଦ୍ଧ ହେଲେ ଅଶୁଭ ହୁଏ । କିନ୍ତୁ ଶନି ଦୁର୍ବଳ ହୋଇ ବେଧକାରକ ହେଲେ ଶୁଭ ହୋଇଥାଏ ।

କୂର୍ମଚକ୍ରସ୍ଥିତ ଯେ କୌଣସି ଦେଶର ପାଞ୍ଚଟି ବିଷୟ (ସ୍ୱନକ୍ଷତ୍ର, ରାଶି, ସ୍ୱର, ବର୍ଣ୍ଣ, ଦେଶର ନାମ) ଶନିକର୍ତ୍ତୃକ ଉତ୍ପୀଡ଼ିତ ହେଲେ ସେ ଦେଶରେ ମହାବିପଦ (ଯୁଦ୍ଧ, ଦୁର୍ଭିକ୍ଷ, ଭୂକମ୍ପ, ମହାମାରୀ ପ୍ରଭୃତି) ହୋଇଥାଏ । ଶନି ଯେଉଁ ସ୍ଥାନରେ ଥାଇ ବିପଦକାରକ ହୋଇଅଛି ସେହି ସ୍ଥାନକୁ (ସେହି ନକ୍ଷତ୍ର) ଚନ୍ଦ୍ର ଆସିଲେ ଶାନ୍ତି ବା ପୌଷ୍ଟିକ କାର୍ଯ୍ୟ କରିବେ ।

## କୂର୍ମାଙ୍ଗସ୍ଥଦେଶାନାହ—

ମଧ୍ୟେ ସାରସ୍ୱତା ମତ୍ସ୍ୟାଃ ଶୂରସେନାଃ ସମାଥୁରାଃ ।
ପାଞ୍ଚାଳ-ଶାଲ୍ୱ-ମାଣ୍ଡବ୍ୟ-କୁରୁକ୍ଷେତ୍ର-ଗଜାହ୍ୱୟାଃ । ୯ ।
ମରୁନୈମିଷବିନ୍ଧ୍ୟାଦ୍ରି ପାଣ୍ଡ୍ୟଘୋଷାଃ ସଯାମୁନାଃ ।
କାଶ୍ୟଯୋଧ୍ୟାପ୍ରୟାଗଶ୍ଚ ଗୟାବୈଦେହକାଦୟଃ । ୧୦ ।
ପ୍ରାଚ୍ୟାଂ ମାଗଧଶୋଣୌ ଚ ବାରେନ୍ଦ୍ର ଗୌଡ଼ରାଢ଼କାଃ ।
ବର୍ଦ୍ଧମାନତମୋଲିପ୍ତପ୍ରାଗ୍‌ଜ୍ୟୋତିଷୋଦୟାଦ୍ରୟଃ । ୧୧ ।
ଆଗ୍ନେୟ୍ୟାମଙ୍ଗବଙ୍ଗୋପବଙ୍ଗତ୍ରୈପୁର କୋଶଳାଃ ।
କଳିଙ୍ଗୌଡ୍ରାନ୍ଧ୍ରକିଷ୍କିନ୍ଧ୍ୟାବିଦର୍ଭଶବରାଦୟଃ । ୧୨ ।
ଦକ୍ଷିଣେଽବନ୍ତୀମାହେନ୍ଦ୍ରମଲୟାଋଷ୍ୟମୂକକାଃ ।
ଚିତ୍ରକୂଟମହାରଣ୍ୟକାଞ୍ଚୀସିଂହଳକୋଙ୍କଣାଃ । ୧୩ ।
କାବେରୀ ତାମ୍ରପର୍ଣ୍ଣୀ ଚ ଲଙ୍କା ତ୍ରିକୂଟକାଦୟଃ ।
ନୈର୍‌ଋତେ ଦ୍ରାବିଡ଼ାନର୍ତ୍ତମହାରାଷ୍ଟ୍ରାଶ୍ଚ ରୈବତା । ୧୪ ।
ଯବନଃ ପହ୍ଳବଃ ସିନ୍ଧୁଃ ପାରସୀକାଦୟୋ ମତାଃ ।
ପଶ୍ଚିମେ ହୈହୟାସ୍ତାଦ୍ରମ୍ଳେଚ୍ଛବାସଣକାଦୟଃ । ୧୫ ।
ବାୟବ୍ୟେ ଗୁର୍ଜରଟଶ୍ଚ ନାଟଜାଳନ୍ଧରାଦୟଃ ।
ଉତ୍ତରେ ଚୀନନେପାଳହୂଣକୈକେୟମନ୍ଦରାଃ । ୧୬ ।

ଗାନ୍ଧାରହୁଂବକ୍ରୌଞ୍ଚଗନ୍ଧମାଦନମାଳବାଃ ।
କୈଳାସମଦ୍ରକାଶ୍ମୀରମ୍ଳେଚ୍ଛଦେଶାଃ ଖଶାଦୟଃ । ୧୭ ।
ଈଶାନେ ସ୍ୱର୍ଣ୍ଣଭୌମଶ୍ଚ ଗଙ୍ଗାଦ୍ୱ ଲଞ୍ଚ ଟଙ୍କନଃ ।
ମ୍ଳେଚ୍ଛବାସ ବ୍ରହ୍ମପୁରକଗତା ଦରଦାଦୟଃ । ୧୮ ।

କୂର୍ମର ଶରୀରସ୍ଥ ଦେଶ ଯଥା:—କୂର୍ମର ନାଭଦେଶ (ମଧ୍ୟଭାଗ) ରେ ସାରସ୍ୱତ, ମତ୍ସ୍ୟଦେଶ, ଶୂରସେନ, ମଥୁରା, ପାଞ୍ଚାଳ, ଶାଲ୍ୱ, ମାଣ୍ଡବ୍ୟ ମାଡ୍ରୋୟାର ) କୁରୁକ୍ଷେତ୍ର, ଗଙ୍ଗାଦ୍ୱୟ, ମରୁଦେଶ, ନୈମିଷାରଣ୍ୟ, ବିନ୍ଧ୍ୟପର୍ବତ, ପାଣ୍ଡ୍ୟ, ଘୋଷଦେଶ, ଯମୁନା, କାଶୀ, ଅଯୋଧ୍ୟା, ପ୍ରୟାଗ, ଗୟା ବିଦେହରାଜ୍ୟ (ମିଥିଳା) ପ୍ରଭୃତି ଦେଶ ଅଛି ।

କୂର୍ମର ମୁଖଭାଗରେ (ପୂର୍ବଭାଗ) ମଗଧ (ବିହାର) ଶୋଣ, ବଡ୍ରେନ୍ଦ୍ରଭୂମି, ବଙ୍ଗଦେଶ, ଗୌଡ଼ଦେଶ ବର୍ଦ୍ଧମାନ, ତମୋଲୁକ, ପ୍ରାଗ୍‌ଜ୍ୟୋତିଷ (ଆସାମ) ଉଦୟାଚଳ ପ୍ରଭୃତି ଦେଶ ଅଛି । କୂର୍ମର ସମ୍ମୁଖର ଦକ୍ଷିଣ ପଦରେ (ଅଗ୍ନିକୋଣେ) ଅଙ୍ଗ, ବଙ୍ଗ, ଉପବଙ୍ଗ ତ୍ରିପୁରା, କୋଶଳ, କଳିଙ୍ଗ, ଉତ୍କଳ, ଅନ୍ଧ୍ର, ବିଦର୍ଭ, ବିଦର୍ଭ ଓ ଶବରାଦି ଦେଶ ଅଛି ।

କୂର୍ମର ଦକ୍ଷିଣ ପାର୍ଶ୍ୱରେ ଅବନ୍ତୀ, ମହେନ୍ଦ୍ର, ମଳୟ, ଋଷ୍ୟମୂକ ଚିତ୍ରକୂଟ, ମହାରଣ୍ୟ, କାଞ୍ଚୀ, ସିଂହଳ, କୋଙ୍କଣ, କାବେରୀ, ତାମ୍ରପର୍ଣ୍ଣୀ, ଲଙ୍କାଦ୍ୱୀପ ଓ ତ୍ରିକୂଟକାଦ ଦେଶ ଅଛି । କୂର୍ମର ନୈର୍ଋତ ଭାଗରେ ଦ୍ରାବିଡ଼, ଆନର୍ତ୍ତ, ମହାରାଷ୍ଟ୍ର, ରୈବତକ, ଯବନ, ପହ୍ଲବ, ସିନ୍ଧୁ ଓ ପାରସ୍ୟ ଦେଶ ଅଛି ।

କୂର୍ମର ପଶ୍ଚିମ (ପୃଷ୍ଠଭାଗ)ରେ ବୈଦେହ, ଅସ୍ତାଚଳ ଓ ମ୍ଳେଚ୍ଛମାନଙ୍କ ବାସଭୂମି ଖଣାଦ ଦେଶ ଅଛି ।

କୂର୍ମର ପଶ୍ଚାଭାଗର ବାମଚରଣରେ (ବାୟୁକୋଣରେ) ଗୁଜରାଟ, ନାଟ, ଜାଲନ୍ଧର ପ୍ରଭୃତି ଦେଶ ବିଦ୍ୟମାନ ।

କୂର୍ମର ବାମ ପାର୍ଶ୍ୱରେ (ଉତ୍ତରରେ) ଚୀନ, ନେପାଳ, ହୂଣ, କୈକେୟ, ମଦ୍ର, ଗାନ୍ଧାର (କାନ୍ଦାହାର) ହିମାଳୟ, କ୍ରୌଞ୍ଚ (କୁଚବିହାର) ଗନ୍ଧମାଦନ, ମାଳବ, କୈଳାସ, ମଦ୍ରଦେଶ, କାଶ୍ମୀର ଓ ଖଶ ପ୍ରଭୃତି ମ୍ଳେଚ୍ଛମାନଙ୍କର ବାସଭୂମି ଅବସ୍ଥିତ ।

କୂର୍ମର ସମ୍ମୁଖ ଦିଗର ବାମଚରଣ (ଈଶାନ୍ୟ)ରେ ସ୍ୱର୍ଣ୍ଣଭୂମି, ଗଙ୍ଗାଦ୍ୱାର, କଙ୍କଣ ମ୍ଳେଚ୍ଛବାସ, ବ୍ରହ୍ମପୁର, ବିରାଟ ଓ ଦରଦଦେଶ ଅବସ୍ଥିତ ।

ଉପର୍ଯ୍ୟୁକ୍ତ ଦେଶମାନଙ୍କ ଛଡ଼ା ନକ୍ଷତ୍ରସ୍ଥିତ ଦିଗରେ ଯେ ଦେଶ ଅଛି, ସେହି ଦେଶମାନଙ୍କର ଶୁଭାଶୁଭ ଚିନ୍ତା କରିବେ । ଯେଉଁ ଯେଉଁ ସ୍ଥାନର ନଦୀମାନଙ୍କର ନାମ କହାଗଲା ସେହିଠାରେ ନଦୀ ତଟସ୍ଥିତ ଦେଶ ବୋଲି ବିଚାର କରିବେ ।

ଯଦା ଜୀବଯୁତୋ ମନ୍ଦୋ ଜୀବାଦ୍ୱା ସପ୍ତମେ ସ୍ଥିତଃ ।
ତଦା ପ୍ରଜା ବିନଶ୍ୟନ୍ତି ଭୂପାଶ୍ଚାନ୍ୟ ପରକ୍ଷୟଃ । ୧୯ ।

ବୃହସ୍ପତି ଓ ଶନି ଏକତ୍ର ଥିଲେ କିମ୍ବା ବୃହସ୍ପତିର ସପ୍ତମରେ ଶନି ଥିଲେ ପ୍ରଜାମାନଙ୍କର ବିନାଶ ହୁଏ ଓ ରାଜାମାନେ ମଧ୍ୟ କ୍ଷୟ ହୁଅନ୍ତି ।

କର୍କମୀନମୃଗସ୍ଥୌଷୁ ଶନିଭୌମୌ ଯଦା ସ୍ଥିତୌ
ତଦା ଯୁଦ୍ଧାକୁଳା ପୃଥ୍ୱୀ ଧନଧାନ୍ୟବିବର୍ଜିତା । ୨୦ ।

ଶନି ଓ ମଙ୍ଗଳ ଉଭୟେ କର୍କଟ, ମୀନ, ମକର କିମ୍ବା କନ୍ୟା-ରାଶିରେ ଏକତ୍ର ଥିଲେ ଘୋର ଯୁଦ୍ଧ ହୁଏ ଓ ଧନଧାନ୍ୟାଦି ନ୍ୟୂନ ହୁଏ ।

ମିଥୁନସ୍ଥୋଧନୁର୍ମୀନସ୍ତଣୌ ମନ୍ଦଃ ସମାଶ୍ରିତଃ
ତଦା ଭୂପା ବିନଶ୍ୟନ୍ତି ପୃଥ୍ୱୀ ଶୋଣିତପୂରିତା । ୨୧ ।

ଶନି ମିଥୁନ, କନ୍ୟା, ଧନୁ ବା ମୀନ ରାଶିରେ ରହିଲେ ରାଜାଗଣ ବିନାଶ ହୁଅନ୍ତି ଓ ପୃଥିବୀ ରକ୍ତପୂର୍ଣ୍ଣ ହୁଏ ।

ରବିଶୁକ୍ରସୁରଗୁର୍ଯ୍ୟା ଯଦ୍ୟେକତ୍ର ସମାଶ୍ରିତାଃ
ରାଜ୍ୟଭ୍ରଂଶଂ ପ୍ରଜାନାଶଃ ସର୍ବଶସ୍ୟମହାର୍ଘ୍ୟତା ।୨୨।

ରବି, ଶୁକ୍ର, ବୃହସ୍ପତି ଏକତ୍ର ହେଲେ ରାଜ୍ୟନାଶ, ପ୍ରଜାନାଶ ଓ ସର୍ବପ୍ରକାର ଶସ୍ୟ ଦୁର୍ମୂଲ୍ୟ ହୁଏ ।

ଏକରାଶିଂ ଗତା ହ୍ୟେତେ ଭୌମସୂର୍ଯ୍ୟସୁର୍ଯ୍ୟଜାଃ
ତଦା ଭୂପା ବିନଶ୍ୟନ୍ତି ପ୍ରଜାନାଂ ଜାୟତେ ମହାନ୍ ।୨୩।

ମଙ୍ଗଳ, ଶୁକ୍ର, ଶନି ଏମାନେ ଏକ ରାଶିରେ ରହିଲେ ରାଜା ଓ ପ୍ରଜା ଉଭୟେ ବିନଷ୍ଟ ହୁଅନ୍ତି ।

ଚନ୍ଦ୍ରନାଥେନ୍ଦୁଗୁରବୋ ଯଦୈକତ୍ର ସମାଶ୍ରିତାଃ
ଉତ୍ତରସ୍ୟାଂ ଦିଶି ଭୟଂ ପ୍ରଜାଃ କନ୍ଦନ୍ତି ନିତ୍ୟଶଃ । ୨୪ ।

ରବି, ଚନ୍ଦ୍ର, ବୃହସ୍ପତି ଏକତ୍ର ଥିଲେ ଉତ୍ତରସ୍ଥ ଦେଶମାନଙ୍କରେ ଭୟ ଜାତ ହୁଏ । ପ୍ରଜାମାନେ ଶୋକାଭିଭୂତ ହୁଅନ୍ତି ।

ରବୀନ୍ଦୁଶୁକ୍ରେଜ୍ୟଶଶାଙ୍କପୁତ୍ରାଃ
ଯଦୈକସ୍ଥଶୌ ସହିତା ଭବନ୍ତି ।
ମେଘା ନ ବର୍ଷନ୍ତି ମହାର୍ଘତା ସ୍ୟାତ୍
ପ୍ରଜା ବିନାଶୋ ଦଶି ନୈର୍ଋତାସ୍ୟାଂ । ୨୫ ।

ରବି, ଚନ୍ଦ୍ର, ଶୁକ୍ର, ବୃହସ୍ପତି ଓ ବୁଧ ଏକ ରାଶିଗତ ହେଲେ ବୃଷ୍ଟି ହୁଏ ନାହିଁ, ମହର୍ଘ ହୁଏ । ନୈର୍ଋତଦିଗ ଦେଶସ୍ଥ ପ୍ରଜାମାନେ ବିନାଶ-ପ୍ରାପ୍ତ ହୁଅନ୍ତି ।

ଶନିରାହୂ ଯଦୈକସ୍ଥ ଭବେତାଂ ସହିତୌ ତଦା
ସର୍ବଧାନ୍ୟମହାର୍ଘ୍ୟତ୍ୱଂ ରାଜାନୋ ଭୟବିହ୍ୱଳାଃ । ୨୬ ।

ଶନି ଏବଂ ରାହୁ ଏକତ୍ର ଥିଲେ ସମସ୍ତ ପ୍ରକାର ଶସ୍ୟ ମହର୍ଘ ହୁଏ ଓ ରାଜାମାନେ ଭୀତ ତ୍ରସ୍ତ ହୋଇ ପଡ଼ନ୍ତି ।

ସପ୍ତ ଗ୍ରହା ଯଦୈକସ୍ଥା ଗୋଳଯୋଗସ୍ତଦା ଭବେତ୍
ଦୁର୍ଭିକ୍ଷଂ ରାଷ୍ଟ୍ରପୀଡ଼ା ଚ ତସ୍ମିନ୍ କାଲେ ନୃପକ୍ଷୟଃ । ୨୭ ।

ସାତଟି ଗ୍ରହ ଏକରାଶିଗତ ହେଲେ ଗୋଳଯୋଗ ହୁଏ । ଏହି ଯୋଗରେ ଦୁର୍ଭିକ୍ଷ, ରାଷ୍ଟ୍ରଭଙ୍ଗ ଓ ରାଜାର ବିନାଶ ହୁଏ ।

ମେଷେ ସମାଶ୍ରିତୋ ଭାନୁର୍ବୃଷେ ଚ ଧରଣୀସୁତଃ ।
ଭୟବ୍ୟାଧିଯୁତା ଲୋକା ନୃପାଣାଂ ବିଗ୍ରହୋ ମହାନ୍ ॥

ମେଷରେ ରବି ଏବଂ ବୃଷରେ ମଙ୍ଗଳ ଥିଲେ ଲୋକମାନେ ଭୟ ( ବ୍ୟାଘ୍ରାଦି ହିଂସ୍ର ପଶୁହେତୁକ ) ଓ ରୋଗପ୍ରାପ୍ତ ହୁଅନ୍ତି ।

ବୃଷରାଶୌ ଯଦୈକସ୍ଥା ଶନିଭାର୍ଗବଭୂମିଜାଃ ।
ଦୁର୍ଭିକ୍ଷଂ ରାଜ୍ୟଭଙ୍ଗଞ୍ଚ ଲୋକାନାଂ ଭୟମାଦିଶେତ୍ ।୨୯।

ବୃଷ ରାଶିରେ ଶନି, ଶୁକ୍ର ଓ ମଙ୍ଗଳ ଏକତ୍ର ରହିଲେ ଦୁର୍ଭିକ୍ଷ ରାଜ୍ୟଭଙ୍ଗ ଓ ଲୋକଭୟ ଉପସ୍ଥିତ ହୁଏ ।

ମୀନରାଶିଗତୋ ମନ୍ଦଃ କର୍କଟସ୍ଥୋ ବୃହସ୍ପତିଃ ।
ତୁଲାରାଶିଗତୋ ଭୌମସ୍ତଦା ଦୁର୍ଭିକ୍ଷମାଦିଶେତ୍ ।୩୦।

ମୀନ ରାଶିରେ ଶନି, କର୍କଟ ରାଶିରେ ବୃହସ୍ପତି ଏବଂ ତୁଳା ରାଶିରେ ମଙ୍ଗଳ ରହିଲେ ଦୁର୍ଭିକ୍ଷ ହୁଏ ।

ଯଦା ମଳମ୍ଳୁଚେ ମାସି ଭୌମୋ ରାଶ୍ୟନ୍ତରଂ ବ୍ରଜେତ୍ ।
ଗୁରୁଞ୍ଚ ମହତୀ ବୃଷ୍ଟିରଥବା ଲୋକସଂକ୍ଷୟଃ ।୩୧।

ମଳ ମାସରେ ମଙ୍ଗଳ ବା ବୃହସ୍ପତି ଏକ ରାଶିରୁ ଅନ୍ୟ ରାଶିକୁ ଗଲେ ଅତ୍ୟଧିକ ବୃଷ୍ଟି ବା ଲୋକକ୍ଷୟ ହୁଏ ।

ଭୂମିପୁତ୍ରାହ୍ୱଭୃଗବସ୍ତୁଲାରାଶି ସମାଶ୍ରିତାଃ ।
ତଦା ଯୁଦ୍ଧଂ ମହାଘୋରଂ ରାଜ୍ଞାଞ୍ଚୈବ ପରସ୍ପରଂ ।୩୨।

ମଙ୍ଗଳ, କେତୁ, ଶୁକ୍ର ତୁଳା ରାଶିରେ ଏକତ୍ର ରହିଲେ ରାଜାମାନଙ୍କ ମଧ୍ୟରେ ଘୋରଯୁଦ୍ଧ ହୁଏ ।

ଶନିସୂର୍ଯ୍ୟସମାଯୋଗେ ପଞ୍ଚମେଧରଣୀସୁତଃ ।
ନବମେଽଥ ଭବେଦ୍ରାହୁର୍ଭୂମିକମ୍ପସ୍ତଦା ଭବେତ୍ ।୩୩।

ଶନି ଓ ରବି ଏକତ୍ର ଥିବେ, ସେମାନଙ୍କର ପଞ୍ଚମରେ ମଙ୍ଗଳ ଓ ନବମରେ ରାହୁ ଥିଲେ ଭୂମିକମ୍ପ ହୁଏ ।

ଯଦା ଚ ଜାୟତେ ପକ୍ଷସ୍ତ୍ରୟୋଦଶଦିନାତ୍ମକଃ ।
ତଦା କାଲେନ ଘୋରେଣ ଭ୍ରାନ୍ତ ମୁଣ୍ଡମାଳିନୀ ମେଦିନୀ ।୩୪।

ପକ୍ଷ ତେର ଦିନରେ ଶେଷ ହେଲେ ଅର୍ଥାତ୍ କ୍ଷୟ ପକ୍ଷ ହେଲେ ପୃଥିବୀ ମୁଣ୍ଡମାଳା ପରିବେଷ୍ଟିତା ହୁଏ ।

ଯଦ୍ ମାସେ ରବେର୍ବାରାଃ ପଞ୍ଚ ଦୈବାତ୍ ଭବନ୍ତି ହି ।
ତନ୍ମାସେ ରୋଗ ଦୁର୍ଭିକ୍ଷ ମରକଂ ରାଜବିଗ୍ରହାଃ । ୩୫ ।

ଯେଉଁ ମାସରେ ପାଞ୍ଚୋଟି ରବିବାର ପଡ଼େ, ସେହି ମାସରେ ବିଶେଷ ଲୋକ ମରକାଦି ରୋଗ ଗ୍ରସ୍ତ ହୁଅନ୍ତି । ରାଜବିଗ୍ରହ ହୁଏ ଓ ଦୁର୍ଭିକ୍ଷ ହୁଏ ।

ଯଦି ଭବତି କଦାଚିତ୍ କାର୍ତ୍ତିକେ ନଷ୍ଟଚନ୍ଦ୍ରେ
ରବିରବିଜକୁଜାହେ ସ୍ୱାତିମାର୍ତ୍ତଣ୍ଡଯୋଗଃ ।
ଖଗମନୁଜପଶୂନାଂ ସ୍ଥାବରାଣାଂ ଚରାଣାଂ
ଭବତି ନିଧନଯୋଗୋ ବାୟୁନା ବାରିଣା ବା । ୩୬ ।

କାର୍ତ୍ତିକ ଅମାବାସ୍ୟା ଦିନ ଯଦି ରବି, ଶନି କିମ୍ବା ମଙ୍ଗଳବାର ହୋଇଥାଏ, ପୁଣି ସ୍ୱାତୀ ନକ୍ଷତ୍ରରେ ଯଦି ରବି ଥାଏ ତେବେ ବାୟୁଦ୍ୱାରା ବା ବୃଷ୍ଟିଦ୍ୱାରା ପକ୍ଷୀ, ମନୁଷ୍ୟ, ବୃକ୍ଷ ଓ ପଶୁମାନେ ବିନଷ୍ଟ ହୁଅନ୍ତି ।

ସିଂହେ ମୀନେ ଯୁବତ୍ୟାଂ ଧନୁଷି ମିଥୁନକେ ସୂର୍ଯ୍ୟସୂନୌ ମସ୍ତକେ
ଭବେଦ୍ଦୁର୍ଭିକ୍ଷପୀଡ଼ା ବହୁଜନମରଣଂ ଭୂତଚୌରୋପସର୍ଗଃ ।
ଗ୍ରାମଚ୍ଛନ୍ନୋଜନାନାଂ ବହୁନରନଗରାଣ୍ୟୁଚ୍ଛିମାଲାସ୍ତ ଦେଶାଃ
ପୃଥ୍ୱୀ କଙ୍କାଳମାଳା ତୁରଗପରିବୃତା ଭୂରିଦା ବାରିରୋଧଃ । ୩୭ ।

ସିଂହ, ମୀନ, କନ୍ୟା, ଧନୁ, କୁମ୍ଭ ମିଥୁନ ରାଶିରେ ଶନି ଓ ମଙ୍ଗଳ ଥିଲେ ଦୁର୍ଭିକ୍ଷପୀଡ଼ା, ବହୁଲୋକର ମରଣ, ଭୂତ ଓ ଚୌରାଦିହେତୁକ ନାଶ, ଗ୍ରାମ ନଗର ଓ ଦେଶ ବିନାଶ, ପୃଥିବୀ ଅସ୍ଥିକଙ୍କାଳପରିପୂର୍ଣ୍ଣା ଓ ଯୁଦ୍ଧାଗ୍ନିଦ୍ୱାରା ବେଷ୍ଟିତା ହୁଏ । ବୃଷ୍ଟି ମଧ୍ୟ ଊଣା ହୁଏ ।

ତିଥିନକ୍ଷତ୍ରଯୋଗାନାଂ କ୍ଷୟଶ୍ଚୈକଦିନେ ଯଦା
ମହାମାରୀ ଭବେତ୍ପୃଥ୍ୱୀଂ ପୂରୟେନ୍ମୃତବିଗ୍ରହୈଃ । ୩୮ ।

ତିଥି, ନକ୍ଷତ୍ର ଓ ଯୋଗ ଯଦି ଏକଦିନରେ କ୍ଷୟ ହୁଏ ତେବେ ମହାମାରୀ ହୁଏ, ବହୁତ ଲୋକ ମରନ୍ତି ।

ଯଦା ବିଶାଖାସୁ ମହେନ୍ଦ୍ରମନ୍ତ୍ରୀ
ସୁତଶ୍ଚ ଭାନୋର୍ଦହନର୍କ୍ଷ ଯାତଃ ।
ତଦା ପ୍ରଜାନାମନୟୋଽତିଘୋରଃ
ପୁରପ୍ରଭେଦୋ ଗତୟୋର୍ଭମେକଂ । ୩୯ ।

ବିଶାଖା ନକ୍ଷତ୍ରରେ ବୃହସ୍ପତି ଓ କୃତ୍ତିକା ନକ୍ଷତ୍ରରେ ଶନି ଥିଲେ କିମ୍ବା ଉଭୟେ ବିଶାଖା ବା କୃତ୍ତିକା ନକ୍ଷତ୍ରରେ ଯୁକ୍ତ ହେଲେ ଦେଶଭଙ୍ଗ ହୁଏ ଓ ପ୍ରଜାମାନେ ସଙ୍କଟରେ ପଡ଼ନ୍ତି ।

ଧ୍ରୁବେଷୁ ବୈଷ୍ଣବେ ହସ୍ତେ ମୂଲେ ସଞ୍ଚରତେ କୁଜଃ
ସଦ୍ୟଃ କରୋତ୍ୟନାବୃଷ୍ଟିଂ କୃତ୍ତିକାସୁ ମଘାସୁ ଚ ।୪୦।

ଉତ୍ତରଫାଲ୍ଗୁନୀ, ଉତ୍ତରାଷାଢ଼ା, ଉତ୍ତରଭାଦ୍ରପଦ, ରୋହିଣୀ, ଶ୍ରବଣା, ହସ୍ତା, ମୂଳା, କୃତ୍ତିକା ବା ମଘା ନକ୍ଷତ୍ରରେ ମଙ୍ଗଳ ସଞ୍ଚାର କଲେ ଅନାବୃଷ୍ଟି ହୁଏ ।

କୁଜପୃଷ୍ଠଗତୋ ଭାନୁର୍ଭାନୁପୃଷ୍ଠଗତଃ କୁଜଃ
କୁଜେନ ସହିତୋ ଭାନୁଃ ସମୁଦ୍ରମପି ଶୋଷୟେତ୍ ।୪୧।

ଅବ୍ୟବହିତ ରାଶିଦ୍ୱୟରେ ରବି ଓ ମଙ୍ଗଳ ଅବସ୍ଥାନ କଲେ ତଥା ମଙ୍ଗଳ ଓ ରବି ଏକତ୍ର ଅବସ୍ଥାନ କଲେ ଜଳର ଅଭାବ ହୁଏ ।

ଏକରାଶିଗତାବେତୌ ଧରାପୁତ୍ରାଙ୍ଗିରସସୁତୌ
ତଦା ମେଘା ନ ବର୍ଷନ୍ତି ବର୍ଷାକାଲେ ନ ସଂଶୟଃ ।୪୨।

ବର୍ଷାକାଳରେ ମଙ୍ଗଳ ଓ ବୃହସ୍ପତି ଏକରାଶିଗତ ହେଲେ ବର୍ଷା ହୁଏ ନାହିଁ ।

ଅଥାଦ୍ଭୁତଂ

ଅଦ୍ଭୁତସାଗରେ, ଅଥର୍ବଣାଦ୍ଭୁତବଚନଂ—
"ପ୍ରକୃତିବିରୁଦ୍ଧମଦ୍ଭୁତମାପଦଃ ପ୍ରାକ୍ ପ୍ରବୋଧାୟ ଦେବାଃ ସୃଜନ୍ତି ॥"

ଇତି ତେନ ଭୂମ୍ୟାଦୀନାଂ ପୂର୍ବସ୍ୱଭାବପ୍ରତ୍ୟବୋ ଦେବକର୍ତ୍ତୃକୋଽଦ୍ଭୁତ । ଇତି । ଏ ବଞ୍ଚ ବୁଧୋଦୟପର୍ବାଣି ଗ୍ରହାଦୀନାଂ ଗଣିତାଗତତ୍ୱେନ ପ୍ରକୃତାନମପି ଯଦୁତ୍ପାତତ୍ୱମୁକ୍ତଂ ତଭ୍ରାନ୍ତମ୍ । ୧ ।

ଯାହା ପ୍ରକୃତିବିରୁଦ୍ଧ ତାହାକୁ ଅଦ୍ଭୁତ କହନ୍ତି । ଦେବଗଣ ଭାବୀ ଅମଙ୍ଗଳ ଘଟିବ ବୋଲି ଜାଣି ତାହା ପୂର୍ବରୁ ଲୋକସମାଜରେ ପ୍ରକଟ କରିବା ନିମିତ୍ତ ଉତ୍ପାତ ସୃଷ୍ଟି କରନ୍ତି । ଏହି ବାକ୍ୟଦ୍ୱାରା ଅଦ୍ଭୁତର ଏହିରୂପ ଲକ୍ଷଣ ହେଉଅଛି । ଯଥା—ଦେବଗଣକର୍ତ୍ତୃକ ଭୂମି ପ୍ରଭୃତି ପଦାର୍ଥମାନଙ୍କର ପୂର୍ବ ସ୍ୱଭାବର ପରିବର୍ତ୍ତନ ନାମ ଅଦ୍ଭୁତ । ବୁଧୋଦୟ ପ୍ରଭୃତି ଗ୍ରହଘଟିତ ବ୍ୟାପାରସମୂହ ଗଣିତାଗତ ହେବାରୁ ସେ ସମସ୍ତ ଅଦ୍ଭୁତ ଗୌଣ ଅଟେ । ୧ ।

ତତ୍କାରଣଞ୍ଚ ଗର୍ଗସଂହିତାବାର୍ହସ୍ପତ୍ୟୟୋଃ—

ଅତିଲୋଭାଦସତ୍ୟାଦ୍ୱା ନାସ୍ତିକ୍ୟାଦ୍ୱାପ୍ୟଧର୍ମତଃ
ନରାପଚାରାନ୍ନିୟତମୁପସର୍ଗାଃ ପ୍ରବର୍ତ୍ତତେ । ୨ ।
ତତୋଽପଚାରାନ୍ନିୟତମପରଜ୍ୟନ୍ତି ଦେବତାଃ
ତାଃ ସୃଜନ୍ତ୍ୟଦ୍ଭୁତାନ୍‌ଭାବାନ୍ ଦିବ୍ୟନାଭସଭୂମିଜାନ୍ । ୩ ।
ତଏବ ତ୍ରିବିଧା ଲୋକେ ଉତ୍ପାତାଦେବନିର୍ମିତାଃ
ବିଚରନ୍ତି ବିନାଶାୟ ରୂପୈଃ ସମ୍ବୋଧୟନ୍ତି ଚ । ୪।
ତାଂଶ୍ଚ ପରଂ ନ ଦର୍ଶୟେଦିତ୍ୟାହ ବଶିଷ୍ଠଃ—

"ନୋତ୍ପାତଂ ଦର୍ଶୟେତ୍ତୁ ॥" ଇତି ।

ଗର୍ଗସଂହିତା ଓ ବାର୍ହସ୍ପତ୍ୟ ଗ୍ରନ୍ଥରେ ଉତ୍ପାତନିମିତ୍ତ ନିମ୍ନଲିଖିତ କାରଣମାନ ଦେଖାଯାଏ । ଯଥା—ଲୋକମାନଙ୍କ ଅତିରିକ୍ତ ଲୋଭ, ମିଥ୍ୟା ବ୍ୟବହାର, ନାସ୍ତିକ୍ୟ ( ଶାସ୍ତ୍ରୋକ୍ତବିଷୟମାନରେ ଅବିଶ୍ୱାସ ) ଅଧର୍ମ ପ୍ରଭୃତି ଅନାଚାର ହେଲେ ଉତ୍ପାତ ଘଟିଥାଏ । (ବିଶେଷତଃ ସମସ୍ତ ଅତ୍ୟାଚାର ହେତୁରୁ ପୃଥିବୀରେ ଅମଙ୍ଗଳ ଘଟେ । ସୁତରାଂ ଦେବଗଣ ଉପେକ୍ଷାଭାବରେ ସେ ଅମଙ୍ଗଳ ବିନାଶ କରିଦେଲେ, ଅମଙ୍ଗଳ ବୀଜ-ସ୍ୱରୂପ ପାପ ନଷ୍ଟ ନ ହୋଇ ଶାନ୍ତିଲାଭ ହୋଇ ନ ପାରେ । ଅତଏବ ମନୁଷ୍ୟର ଅତ୍ୟାଚାରସମ୍ଭୂତ ବିଘ୍ନବିନାଶ ନିମିତ୍ତ ଉତ୍ପାତ ଦେଖାଇ ଭାବୀ ଅମଙ୍ଗଳର ସୂଚନା କରନ୍ତି । ମାନବଗଣ ଏହି ଉତ୍ପାତମାନଙ୍କର ଶାନ୍ତି ବିଧାନ ନିୟମିତ ଭାବେ ସମ୍ପାଦନ କଲେ କୌଣସି ପ୍ରକାର ଅନିଷ୍ଟ ହୁଏ ନାହିଁ । ) ମାନବର ଅତ୍ୟାଚାରରେ ଦେବଗଣ ବିରକ୍ତ ହୋଇ ( ଉତ୍ପାତର ତାରତମ୍ୟାନୁସାରେ ) ଦିବ୍ୟ, ନାଭସ ଓ ଭୂମିଜ ଏହି ତ୍ରିବିଧ ଉତ୍ପାତ ସୃଷ୍ଟି କରନ୍ତି । ଦେବସୃଷ୍ଟ ଏହି ତ୍ରିବିଧ ଉତ୍ପାତ ମନୁଷ୍ୟର ଭାବୀ ଅମଙ୍ଗଳ ସୂଚନା କରେ । ଉତ୍ପାତର ଉପଯୁକ୍ତ ଶାନ୍ତି

ନ ଦେଲେ ଲୋକର ଅନିଷ୍ଟ ସଂଘଟିତ ହୁଏ । ବିଷ୍ଣୁ କହନ୍ତି—ଅନ୍ୟ ବ୍ୟକ୍ତିଙ୍କୁ ଉତ୍ପାତ ଦର୍ଶନ କରାଇବ ନାହିଁ । ୨. ୩- ୪

## ତନବେଳାନକ୍ଷତ୍ର ମଣ୍ଡଳ ନିରୂପଣଂ

ପ୍ରାକ୍‌ଦ୍ଵିନ ଚତୁର୍ଥଯାମେଷ୍ଟୁ ଦ୍ୟୁନଶୋରଭୁକ୍ତେଷୁ ସର୍ବେଷୁ ।
ଅନିଲାଗ୍ନି ଶକ୍ରବରୁଣାମଣ୍ଡଲପତୟଃ ଶୁଭଶ୍ଚସଚେଷ୍ଟ । ୫ ।

ଦିବା ଶମ୍ମା ରାତ୍ରିରେ ଯଥାକ୍ରମେ ବାୟୁ, ଅଗ୍ନି, ଇନ୍ଦ୍ର ଓ ବରୁଣ ଏରଙ୍କ ଯାମର ଅଧିପତି ହୁଅନ୍ତି । ୫ ।

ଅର୍ଯ୍ୟମ୍ଣାଦି ଚତୁଷ୍କ ଚନ୍ଦ୍ର ଭୁରଗାଦିତ୍ୟେଷୁ ବାୟୁର୍ଭବେତ୍
ଦେବେଜ୍ୟାଜ-ବିଶାଖ-ଯାମ୍ୟଯୁଗଳେ ପିତ୍ର୍ୟଦ୍ଵୟେ ଚାନଳଃ ।
ବିଷ୍ଣ୍ଵାଦିତ୍ରୟ-ଧାତୃମୈତ୍ର-ଯୁଗଳେଷ୍ଵିନ୍ଦ୍ରେ ଭବେନ୍ମଣ୍ଡଳଃ ।
ସର୍ପୋପାନ୍ତ୍ୟ-ଶତାନ୍ତ୍ୟ-ମୂଳଯୁଗଳେଶାନେଷ୍ୱପାମୀଶ୍ଵରଃ । ୬ ।

ଉତ୍ତରାଫାଲ୍ଗୁନୀ, ହସ୍ତା, ଚିତ୍ରା, ସ୍ଵାତୀ, ମୃଗଶିରା, ଅଶ୍ଵିନୀ ଓ ପୁନର୍ବସୁ ନକ୍ଷତ୍ର ବାୟୁମଣ୍ଡଳ, ପୁଷ୍ୟା, ପୂର୍ବଭାଦ୍ରପଦ, ବିଶାଖା, କୃତ୍ତିକା, ଭରଣୀ, ମଘା ଓ ପୂର୍ବାଫାଲ୍ଗୁନୀ ନକ୍ଷତ୍ର ଅଗ୍ନିମଣ୍ଡଳ; ଉତ୍ତରାଷାଢ଼ା, ଶ୍ରବଣା, ଧନିଷ୍ଠା, ରୋହିଣୀ, ଅନୁରାଧା ଓ ଜ୍ୟେଷ୍ଠା ନକ୍ଷତ୍ର ଇନ୍ଦ୍ରମଣ୍ଡଳ; ଅଶ୍ଳେଷା, ଉତ୍ତରଭାଦ୍ରପଦ, ଶତଭିଷା, ରେବତୀ, ମୂଳା, ପୂର୍ବାଷାଢ଼ା ଓ ଆର୍ଦ୍ରା ନକ୍ଷତ୍ରକୁ ବରୁଣ ମଣ୍ଡଳ କହାଯାଏ । ୬

ପବନଦହନୌ ନେଷ୍ଟୌ ଯୋଗସ୍ତୟୋରତିଦୁସ୍ତରଃ ।
ସୁରପ-ବରୁଣୌ ଶସ୍ତୌ ଯୋଗସ୍ତୟୋରତିଶୋଭନଃ । ୭ ।
ସବରୁଣମରୁନ୍ମିଶ୍ରଃ ଶକ୍ରସ୍ତଥାଗ୍ନି-ସମାଯୁତଃ ।
ଫଳବିରହିତଃ ସେନ୍ଦ୍ରୋ ବାୟୁସ୍ତଥାଗ୍ନିଯୁତୋଽମ୍ବୁପଃ । ୮ ।

ଯନ୍ମଣ୍ଡଲେଽଦ୍ଭୁତଂ ଜାତଂ ଶାନ୍ତିସ୍ତଦ୍ଦେବତାଶ୍ରୟା ।
ତଥାଽଶାନ୍ତିଦ୍ୱୟଂ କାର୍ଯ୍ୟଂ ମଣ୍ଡଲଦ୍ୱୟସମ୍ଭବେ । ୯ ।

ବାୟୁ ଓ ଅଗ୍ନିମଣ୍ଡଳ ଅଶୁଭ, ଏହି ଦୁଇ ମିଳିତ ହେଲେ ଅତି ଅଶୁଭ ହୁଏ । ଇନ୍ଦ୍ର ଓ ବରୁଣମଣ୍ଡଳ ଶୁଭ ଏହି ଦୁଇଟିର ମିଳନ ଅତ୍ୟନ୍ତ ଶୁଭକାରକ । ବାୟୁ ଓ ବରୁଣମଣ୍ଡଳର ଯୋଗରେ ଉତ୍ପାତ ହେଲେ ମିଶ୍ରଫଳ । ଇନ୍ଦ୍ର ଓ ଅଗ୍ନିମଣ୍ଡଳର ଯୋଗଦ୍ୱାରା କିଛି ଫଳ ହୁଏ ନାହିଁ । ଏହିପରି ଇନ୍ଦ୍ର ଓ ବାୟୁ,ଅଗ୍ନି ଓ ବରୁଣମଣ୍ଡଳ ଯୋଗରେ କୌଣସି ଉତ୍ପାତ ସଂଘଟନ ହେଲେ ଶୁଭାଶୁଭ ଫଳ କିଛି ଘଟେ ନାହିଁ । ଯେଉଁ ଦେବତାମଣ୍ଡଳରେ ଅଦ୍ଭୁତ ଦେଖାଯାଏ ସେହି ଦେବତାଙ୍କ ଉଦ୍ଦେଶ୍ୟରେ ହୋମାଦି ଶାନ୍ତିକର୍ମ କରିବ । ଦୁଇ ମଣ୍ଡଳରେ ଉତ୍ପାତ ହେଲେ ଦୁଇ ଦେବତାଙ୍କ ଉଦ୍ଦେଶ୍ୟରେ ଶାନ୍ତି କରିବେ । ୭,୮,୯ ।

## ଉତ୍ପାତନିରୂପଣଂ

ଗ୍ରହର୍କ୍ଷବୈକୃତଂ ଦିବ୍ୟମାନ୍ତରୀକ୍ଷଂ ନିବୋଧ ମେ
ଉଲ୍‌କାପାତୋ ଦିଶାଂ ଦାହଃ ପରିବେଷସ୍ତଥୈବ ଚ । ୧୦ ।
ଗନ୍ଧର୍ବନଗରଞ୍ଚୈବ ବୃଷ୍ଟିଶ୍ଚ ବିକୃତା ତଥା ।
ଏବମାଦୀନି ଲୋକେଽସ୍ମିନ୍ ନାଭସାନି ବିନିର୍ଦ୍ଦିଶେତ୍ । ୧୧ ।

ଗ୍ରହ ଓ ନକ୍ଷତ୍ରମାନଙ୍କର ବିକୃତିକୁ ଦିବ୍ୟ ଉତ୍ପାତ କହନ୍ତି । ଉଲ୍କାପାତ, ଦିଗଦାହ (ଚତୁର୍ଦ୍ଦିଗରେ ଅଗ୍ନି ଜଳଲା ପରି ଦେଖାଯିବା) ଉପସୂର୍ଯ୍ୟ, ଗନ୍ଧର୍ବନଗର ( ଆକାଶରେ ସର୍ବଜନଶୂନ୍ୟ ନଗରପରି ପ୍ରାସାଦଶ୍ରେଣୀର ସମାବେଶ ) ରକ୍ତବୃଷ୍ଟି, କର୍ଦ୍ଦମବୃଷ୍ଟି ପ୍ରଭୃତି ଅଲୌକିକ ବୃଷ୍ଟି, ରାତ୍ରିକାଳରେ ଇନ୍ଦ୍ରଧନୁ ପ୍ରଭୃତି ଅନ୍ତରୀକ୍ଷଜାତ ଉତ୍ପାତମାନଙ୍କୁ ନାଭସ ଉତ୍ପାତ କହନ୍ତି । ୧୦. ୧୧,

ଚରସ୍ଥିରଭବଂ ଭୌମଂ ଭୂକମ୍ପନାନ୍ତ ଭୂମିଜଂ ।
ଜଳାଶୟାନାଂ ବୈକୃତ୍ୟଂ ଭୌମଂ ତଦପି କୀର୍ତ୍ତିତଂ । ୧୨ ।

ଭୂମି ପ୍ରଭୃତି ସ୍ଥାବର ଓ ମନୁଷ୍ୟାଦି ଜଙ୍ଗମ ପଦାର୍ଥ ଓ ଜଳଜାତ ଉତ୍ପାତକୁ ଭୌମ ଉତ୍ପାତ କହନ୍ତି । ଏହି ଉତ୍ପାତରେ ଭୂମିକମ୍ପ, ଜଳର ବିକୃତି ପ୍ରଭୃତି ଉତ୍ପାତ ହୁଏ । ୧୨ ।

ଭୌମଂ ସ୍ୱଳ୍ପଫଳଂ ଜ୍ଞେୟଂ ଚିରେଣ ପରି ପଚ୍ୟତେ ।
ନାଭସଂ ମଧ୍ୟଫଳଦଂ ମଧ୍ୟକାଳଫଳପ୍ରଦଂ ।
ଦିବ୍ୟଂ ତୀବ୍ରଫଳଂ ଜ୍ଞେୟଂ ଶୀଘ୍ରକାରି ତଥୈବ ଚ । ୧୩ ।

ଭୌମ ଉତ୍ପାତର ଫଳ ଅତି ସାମାନ୍ୟ ଓ ବିଳମ୍ବରେ ସେହି ଫଳ ଦେଖାଯାଏ । ଅନ୍ତରୀକ୍ଷ ଉତ୍ପାତର ଫଳ ମଧ୍ୟମ ପ୍ରକାର ଓ ତାହା ମଧ୍ୟକାଳରେ ସୁସମ୍ପନ୍ନ ହୁଏ । ଦିବ୍ୟ ଉତ୍ପାତର ଫଳ ଗୁରୁତର ଏବଂ ତାହା ଶୀଘ୍ର ସୁସମ୍ପନ୍ନ ହୁଏ । ୧୩ ।

ଶୀତୋଷ୍ଣତା ବିପର୍ଯ୍ୟାସା ଋତୂନାଂ ଋତୁଜଂ ଭୟଂ ।
ପୁଷ୍ପେ ଫଳେ ଚ ବିକୃତେ ସନ୍ନିମୃତ୍ୟୁଂ ତଥାଦିଶେତ୍ ।
ଅକାଳପ୍ରସବା ନାର୍ଯ୍ୟଃ କାଳାତୀତପ୍ରଜାସ୍ତଥା ।
ବିକୃତପ୍ରସବାଶ୍ଚୈବ ଯୁଗ୍ମପ୍ରସବନଂ ତଥା ।
ହୀନାଙ୍ଗା ଅଧିକାଙ୍ଗାଶ୍ଚ ଜାୟନ୍ତେ ଯଦି ବା ସ୍ତ୍ରିୟଃ ।
ପଶବଃ ପକ୍ଷିଣଶ୍ଚୈବ ତଥୈବ ଚ ସରୀସୃପାଃ ।
ବିନାଶଂ ତସ୍ୟ ଦେଶସ୍ୟ କୁଳସ୍ୟ ଚ ବିନିର୍ଦ୍ଦିଶେତ୍ । ୧୪ ।

ଯେ ଋତୁରେ ଯାହା ହୁଏ, ତାହାର ବିପରୀତ ଘଟିଲେ ଋତୁ-ଭୟ ହୁଏ । ପୁଷ୍ପ ଓ ଫଳର ବିକୃତି ( ଏକ ବୃକ୍ଷରେ ଅନ୍ୟ ରକମ

ପୁଷ୍ପ ବା ଫଳ, ପୁଷ୍ପସ୍ଥାନ ବୃକ୍ଷରେ ପୁଷ୍ପ କିମ୍ବା ଫଳସ୍ଥାନ ବୃକ୍ଷରେ ଫଳ କିମ୍ବା ଏକ ଫଳ ମଧ୍ୟରେ ଅନ୍ୟ ଏକ ରକମ ଫଳ ) ଦେଖାଗଲେ ରାଜାର ମୃତ୍ୟୁ ହୁଏ । ଅସମୟରେ ପ୍ରସବ କିମ୍ବା ଦ୍ୱାଦଶମାସାନ୍ତରେ ପ୍ରସବ, ପୃଷ୍ଠଦେଶରେ ଚକ୍ଷୁ, ଏକ ଦେହରେ ଦର୍ଶଟି ଲୋକର ହସ୍ତପଦ, ଏକ ଇନ୍ଦ୍ରିୟ ସ୍ଥାନରେ ଅପର ଏକ ଇନ୍ଦ୍ରିୟ ଇତ୍ୟାଦି ବିକୃତ ସନ୍ତାନ ପ୍ରସବ, ଯମଳ ପ୍ରସବ, ହୀନାଙ୍ଗ ବା ଅଧିକାଙ୍ଗ ସନ୍ତାନଜନ୍ମ, ମାନୁଷୀର ଗର୍ଭରୁ ପଶୁ, ପକ୍ଷୀ, ସରୀସୃପ ବା ବୃକ୍ଷାଦିର ଜନ୍ମ ହେଲେ ସେହି ଦେଶର ଓ ସେହି କୁଳର ବିଶେଷ ଅନିଷ୍ଟ ହୁଏ । ୧୪ ।

ପ୍ରଦୋଷେ କୁକ୍କୁଟରବୋ ହେମନ୍ତେ ଽପି କୋକିଲାଃ ।
ଅର୍କୋଦୟେଽର୍କାଭିମୁଖଃ ଶ୍ୱାରବୋ ନୃଭୟଂ ଦିଶେତ୍ ॥
ଉଲୂକୋ ବସତେ ଯତ୍ର ନିପତେଦ୍‌ବା ତଥା ଗୃହେ ।
ଜ୍ଞେୟୋ ଗୃହପତେର୍ମୃତ୍ୟୁର୍ଧନନାଶସ୍ତଥୈବ ଚ ॥
ଗୃଧ୍ରଃ କଙ୍କଃ କପୋତଶ୍ଚ ଉଲୂକଃ ଶ୍ୟେନ ଏବ ଚ ।
ଚିଲ୍ଲଶ୍ଚ ଚର୍ମଚିଲ୍ଲଶ୍ଚ ଭାସଃ ପାଣ୍ଡୁର ଏବ ଚ ॥
ଗୃହେ ଯସ୍ୟ ପତନ୍ତ୍ୟେତେ ଗେହଂ ତସ୍ୟ ବିପଦ୍ୟତେ ।
ପକ୍ଷାନ୍ମାସାତ୍ତଥା ବର୍ଷାନ୍ମୃତ୍ୟୁଃ ସ୍ୟାଦ୍ ଗୃହମେଧିନଃ ॥
ପତ୍ନ୍ୟାଃ ପୁତ୍ରସ୍ୟ ବା ମୃତ୍ୟୁର୍ଦ୍ରବ୍ୟଞ୍ଚାପି ବିନଶ୍ୟତି ।
ବ୍ରାହ୍ମଣାୟ ଗୃହଂ ଦତ୍ୱା ଦତ୍ୱା ତନ୍ମୂଲ୍ୟମେବ ବା ॥
ଗୃହ୍ଣୀୟାଦ୍ ଯଦି ରୋଚେତ ଶାନ୍ତିଞ୍ଚେମାଂ ସମାଚରେତ୍ ।
ମାଂସାସ୍ଥୀନି ସମାଦାୟ ଶ୍ମଶାନାଦ୍ ଗୃଧ୍ରବାୟସାଃ ।
ଶ୍ୱା ଶୃଗାଲୋଽଥବା ମଧ୍ୟେ ପୁରସ୍ୟ ପ୍ରବିଶନ୍ତି ଚେତ୍ ।
ବିକିରନ୍ତି ଗୃହାଦୌ ଚ ଶ୍ମଶାନଂ ସା ମହୀ ଭବେତ୍ ॥

ଚୌରେଣ ହନ୍ୟତେ ଲୋକଃ ପରଚକ୍ରସମାଗମଃ ।
ସଂଗ୍ରାମଶ୍ଚ ମହାଘୋରୋ ଦୁର୍ଭିକ୍ଷଂ ମରକଂ ତଥା ॥
ଅଦ୍ଭୁତାନି ପ୍ରସୂୟନ୍ତେ ତତ୍ର ଦେଶସ୍ୟ ଉପଦ୍ରବଃ ।
ଅକାଲେ ଫଲପୁଷ୍ପାଣି ଦେଶୋପଦ୍ରବକାରଣଂ । ୧୫ ।

ସନ୍ଧ୍ୟା ସମୟରେ କୁକ୍କୁଟରାବ ହେଲେ କିମ୍ବା ହେମନ୍ତକାଳରେ କୋକିଳଗଣ ରାବ କଲେ ଅଥବା ସୂର୍ଯ୍ୟୋଦୟ ସମୟରେ ସୂର୍ଯ୍ୟାଭିମୁଖରେ କୁକ୍କୁରଗଣ ଭୋଭୋ କରି ରଡ଼ିଲେ, ମନୁଷ୍ୟର ଭୟ ହୁଏ । ଯାହାର ଗୃହରେ ପେଚକ ବସା କରେ, କିମ୍ବା ବିନା କାରଣରେ ଗୃହରେ ପତିତ ହେଲେ ଗୃହସ୍ୱାମିର ମୃତ୍ୟୁ ଓ ଧନହାନି ହୁଏ । ଗୃଧ୍ର, କଙ୍କ(ହାଡ଼ଗିଲା) ବନ୍ୟ କପୋତ, ପେଚକ, ଶ୍ୟେନ (ବାଜପକ୍ଷୀ) ଚିଲ, ଚର୍ମଚିଲ, (ବାଦୁଡ଼ି) ବନ୍ୟ କୁକ୍କୁଟ, ପାଣ୍ଡୁର (ଗୋଠକୁକୁଡ଼ା) ଏହି ପକ୍ଷୀମାନଙ୍କ ମଧ୍ୟରୁ କୌଣସି ଏକ ପକ୍ଷୀ ବିନାକାରଣରେ ଗୃହ ମଧ୍ୟରେ ପଡ଼ିଲେ ଗୃହ ନଷ୍ଟ ହୁଏ । ପକ୍ଷ, ମାସ ବା ବର୍ଷ ମଧ୍ୟରେ ଗୃହସ୍ୱାମୀ, ପତ୍ନୀ ଅଥବା ପୁତ୍ରର ମରଣ ହୁଏ ଓ ଧନନାଶ ହୁଏ । ଏହି ଗୃହ ଅଥବା ଗୃହର ମୂଲ୍ୟ ବ୍ରାହ୍ମଣଙ୍କୁ ଦାନ କରିବା ବିଧେୟ । ଏହାପରେ ଶାନ୍ତି କରି ସେହି ଗୃହରେ ବାସ କରିବେ । ଗୃଧ୍ର, କାକ, କୁକୁର, ଶୃଗାଳ ଏମାନଙ୍କମଧ୍ୟରୁ କୌଣସି ଏକ ପ୍ରାଣୀ ଶ୍ମଶାନରୁ ମାଂସ ବା ଅସ୍ଥି ଆଣି ଗୃହ ମଧ୍ୟରେ ପ୍ରବେଶ ହେଲେ ବା ଗୃହ ମଧ୍ୟରେ ନିକ୍ଷେପ କଲେ ସେହି ଗୃହ ଶ୍ମଶାନ ହୁଏ । ଲୋକ ଚୌରକର୍ତ୍ତୃକ ବିନଷ୍ଟ ହୁଏ ଏବଂ ପରରାଜ୍ୟ ସମ୍ପର୍କରେ ବିରୋଧ ଉପସ୍ଥିତ ହୋଇ ଯୁଦ୍ଧ ହୁଏ । ମରକ ଓ ଦୁର୍ଭିକ୍ଷ ଉପସ୍ଥିତ ହୁଏ । ଯେଉଁ ଦେଶରେ କୌଣସିପ୍ରକାର ଅଦ୍ଭୁତ ହୁଏ ସେହି ଦେଶରେ ନାନାବିଧ ଉପଦ୍ରବ ଘଟେ । ଅକାଳରେ ଫଳପୁଷ୍ପ ହେଲେ ନାନାବିଧ ଉପଦ୍ରବ ସଂଘଟିତ ହୁଏ । ୧୫ ।

### ତଥାଚ ମତ୍ସ୍ୟପୁରାଣେ—

ଅତିବୃଷ୍ଟିରନାବୃଷ୍ଟିର୍ଦୁର୍ଭିକ୍ଷାଦି ଭୟଂ ଭବେତ୍ ।
ଅନୃତୌ ଚ ଦିନାଦୂର୍ଦ୍ଧ୍ୱଂ ବୃଷ୍ଟିର୍ଜ୍ଞେୟା ଭୟାୟ ଚ ॥
ଅନଭ୍ରେ ବାଥ ରାତ୍ରୌ ବା ଶ୍ୱେତଂ ଯାମ୍ୟୋତ୍ତରେଣ ତୁ ।
ଇନ୍ଦ୍ରାୟୁଧଂ ତତୋ ଦୃଷ୍ଟ୍ୱା ଉଲ୍କାପାତଂ ତଥୈବ ଚ
ଦିଗ୍ଦାହପରିବେଷୌ ଚ ଗନ୍ଧର୍ବନଗରଂ ତଥା ।
ପରଚକ୍ରଭୟଂ ବିଦ୍ୟାଦ୍ଦେଶୋପଦ୍ରବମେବ ଚ । ୧୬ ।

ମତ୍ସ୍ୟପୁରାଣରେ ଉତ୍ପାତ ସମ୍ବନ୍ଧରେ ଲେଖା ଅଛି ଯେ, ଅତିବୃଷ୍ଟି ବା ଅନାବୃଷ୍ଟି ହେଲେ ଦୁର୍ଭିକ୍ଷଭୟ, ଅକାଳରେ ତିନି ଦିନରୁ ଅଧିକ ବୃଷ୍ଟି ହେଲେ ଶସ୍ୟକ୍ଷୟ ହୁଏ । ଦିବା ଭାଗରେ ମେଘଶୂନ୍ୟ ଆକାଶରେ କିମ୍ବା ରାତ୍ରିକାଳରେ ଦକ୍ଷିଣ ବା ଉତ୍ତରଦିଗରେ ଶ୍ୱେତବର୍ଣ୍ଣ ଇନ୍ଦ୍ରଧନୁ ଦେଖାଗଲେ, ଉଲ୍କାପାତ, ଗନ୍ଧର୍ବନଗର, ଦିଗ୍ଦାହ ବା ଉପସୂର୍ଯ୍ୟ ଦେଖାଗଲେ ପରରାଜ୍ୟସମ୍ପର୍କ ଓ ନାନାବିଧ ଉପଦ୍ରବ ହୁଏ । ୧୬ ।

### କଂସନିଧନସୂଚନେ ହରିବଂଶ —

"ବକ୍ରମଙ୍ଗାରକସ୍ତତ୍ର ତସ୍ୟାଂ ଘୋରଦର୍ଶନଃ ।
ଚଲନ୍ତ୍ୟପର୍ବାଣି ମହାଗିରୀଣାଂ ଶିଖରାଣି ଚ ।" ୧୭ ।

ବାଣୋତ୍ପାତେ ସ ଏବ—

ଦକ୍ଷିଣାଂ ଦିଶମାସ୍ଥାୟ ଧୂମକେତୁଃ ସ୍ଥିତୋ ଭବେତ୍
ବକ୍ରମଙ୍ଗାରକସ୍ତତ୍ର କୃତ୍ତିକାସୁ ଭୟଙ୍କରଃ । ୧୮ ।

କଂସର ମୃତ୍ୟୁସୂଚନା ନିମିତ୍ତ ହରିବଂଶରେ ଲେଖାଅଛି ଯେ ଭୟଙ୍କର ଦର୍ଶନ ମଙ୍ଗଳ ତହିଁ ନକ୍ଷତ୍ରରେ ବକ୍ର ଗମନ କଲେ, ପର୍ବ

ବ୍ୟତିରେକରେ ଭୂମିକମ୍ପ ଓ ପର୍ବତଶିଖର ସଞ୍ଚାଳିତ ହେଲା । ବାଣ-ରାଜାଙ୍କ ମୃତ୍ୟୁ ସୂଚନାରେ ଲେଖା ଅଛି ଯେ, ଦକ୍ଷିଣ ଦିଗରେ ଧୂମକେତୁ ଦେଖାଗଲା ଓ କୃତ୍ତିକା ନକ୍ଷତ୍ରରେ ମଙ୍ଗଳ ବକ୍ରଗମନ କଲେ । ଏହି ସବୁ ଉତ୍ପାତ ଅତ୍ୟନ୍ତ ଭୟଙ୍କର ଅଟେ । ୧୭, ୧୮ ।

ବୃତ୍ୟଚିନ୍ତାମଣୌ —

ତ୍ୟକ୍ତାଶୌଚବିବେକତତ୍ତ୍ୱବସୁଧାଲୋକାଃ କ୍ଷୁଧାପୀଡ଼ିତା
ବିପ୍ରା ବେଦହତାସ୍ତଥା ପ୍ରଚଲିତା ବହ୍ୱାଶନୋ ଦୁଃଖିତାଃ ।
କ୍ଷୌଣୀ ମନ୍ଦଫଳା ନୃପାଶ୍ଚ ବିକଲାଃ ସଂଗ୍ରାମଘୋରସ୍ତଥା
ପ୍ରେତାଘାତଦୁରନ୍ତପୀଡ଼ିତଜଗ ଦେବେଜ୍ୟଶନ୍ୟୋର୍ଯୁତୌ ।୧୯।

ବୃତ୍ୟଚିନ୍ତାମଣିନାମକ ଗ୍ରନ୍ଥରେ ଲେଖା ଅଛି, ଶନି ଓ ବୃହସ୍ପତିଙ୍କ ଯୋଗ ହେଲେ ପୃଥିବୀସ୍ଥ ସମସ୍ତ ଲୋକ ସଦାଚାର, ତତ୍ତ୍ୱଚିନ୍ତାପରାଙ୍ମୁଖ ଓ କ୍ଷୁଧାପୀଡ଼ିତ ହୁଅନ୍ତି । ବିପ୍ରଗଣ ବେଦପାଠରୁ ବିରତ, ଧର୍ମଭ୍ରଷ୍ଟ, ବହୁଭୋଜନଶୀଳ ଓ ଦୁଃଖିତ ହୁଅନ୍ତି । ପୃଥିବୀରେ ଭଲ ଶସ୍ୟ ହୁଏ ନାହିଁ । ଘୋରତର ସଂଗ୍ରାମ ହେବାରୁ ରାଜାଗଣ ଦୁର୍ଦ୍ଦଶା-ଗ୍ରସ୍ତ ହୁଅନ୍ତି । ମହାମାରୀ ପ୍ରଭୃତି ହେବାରୁ ବହୁଲୋକର ବିନାଶ ଘଟେ ।୧୯।

ରକ୍ତେ ଶସ୍ତ୍ରୋଦ୍‌ଯୋଗୋ ମାଂସାସ୍ଥିବସାଦିଭିର୍ମରକଃ
ଧାନ୍ୟହିରଣ୍ୟତ୍ୱକ୍‌ଫଲକୁସୁମାଦ୍ୟୈର୍ବର୍ଷିତୈର୍ଭୟଂ ବିଦ୍ୟାତ୍
ଅଙ୍ଗାରପାଂଶୁବର୍ଷେ ବିନାଶମୁପଯାତି ତନ୍ନଗରଂ । ୨୦ ।

ଶୋଣିତବର୍ଷଣ ହେଲେ ଘୋର ଯୁଦ୍ଧ; ମାଂସ, ଅସ୍ଥି ଓ ବସା ପ୍ରଭୃତି ବର୍ଷିଲେ ମଡ଼କଭୟ; ଧାନ୍ୟ ସୁବର୍ଣ୍ଣ ଚର୍ମ ଫଳ ପୁଷ୍ପ ପ୍ରଭୃତି ବର୍ଷଣରେ ଭୟ; ଅଙ୍ଗାର, ପାଉଁଶ ବୃଷ୍ଟି ହେଲେ ସେହି ନଗର ବିନାଶ ହୁଏ । ୨୦ ।

ଛନ୍ଦୋଗପରିଶିଷ୍ଟମ୍—

"ଅଥାତୋରଜସ୍ୱଲାଭିଗମନେ ଗୋଽଶ୍ୱଭର୍ଯ୍ୟାସୁ ଗମନେ ଯମଜଜନନେ ବା କାକ-କଙ୍କ-ଗୃଧ୍ର-ବକ-ଶ୍ୟେନ-ଭାସ-ଶଲ୍ଲ-କପୋତାନାଂ ଗୃହପ୍ରବେଶେ ଗୃହୋପରି ବିଶ୍ରାମଣେ ଏଷାମେବ ନିଷ୍କ୍ରମାଣେ ଗୃହଦ୍ୱାରାବରୋହଣେ ବାଦ୍ଭୂତେଷୁ କଲ୍ପଦୃଷ୍ଟେନ ବିଧିନାଗ୍ନିମୁପସମାଧାୟ ପ୍ରାୟଶ୍ଚିତ୍ତାଜ୍ୟାହୁତୀର୍ଜୁହୋତି ।" "ଅଦ୍ଭୁତାୟ ଅଗ୍ନୟେ ସୋମାୟ, ବିଷ୍ଣବେ, ରୁଦ୍ରାୟ, ବାୟବେ, ସୂର୍ଯ୍ୟାୟ, ମୃତ୍ୟବେ, ବିଶ୍ୱେଭ୍ୟୋ, ଦେବେଭ୍ୟଃ ସ୍ୱାହେ"ତି ସ୍ଥାଲୀପାକହୁତାନ୍ୟପତି ।

କପୋତଂ ବିଶେଷୟତି ଶୌନକଃ—

"ରକ୍ତପାଦଃ କପୋତାଖ୍ୟ ଅରଣ୍ୟୌକାଃ ଶୁକଚ୍ଛବିଃ
ସ ଚେଚ୍ଛାଳାଂ ବିଶେଚ୍ଛାଳାସମୀପଞ୍ଚ ବ୍ରଜେଦ୍ ଯଦି
ଅନ୍ୟେଷୁ ଗୃହମଧ୍ୟେ ବା ବଲ୍ମୀକସ୍ୟୋଦ୍‌ଗମାଦିଷୁ ॥"

କଲ୍ପଦୃଷ୍ଟେନ ବିଧିନାଗୃହ୍ୟୋକ୍ତେନ । ପ୍ରାୟଶ୍ଚିତ୍ତାଜ୍ୟାହୁତୀ ଅଦ୍ଭୁତ ଦୋଷ ପ୍ରଶମନାର୍ଥାଃ ସପ୍ତାଜ୍ୟାହୁତୟଃ "ଅଦ୍ଭୁତାୟ ଅଗ୍ନୟେ ସ୍ୱାହା" ଇତ୍ୟାଦି ମନ୍ତ୍ରୈସ୍ତୈର୍ ସ୍ଥାଲୀପାକେତି କର୍ତ୍ତବ୍ୟତାୟାଂ ପାୟସଚରୁଭିରେତେଭ୍ୟୋ ଦେବେଭ୍ୟୋ ଜୁହୁୟାତ୍ । ୬୧ ।

ଛନ୍ଦୋଗପରିଶିଷ୍ଟମ୍—"ପଶ୍ଚାଦ୍‌ଘୃତପାୟସେନ ବ୍ରାହ୍ମଣାନ୍ ଭୋଜୟିତ୍ୱା ଗୋବରଂ ଦତ୍ୱା ଶାନ୍ତିର୍ଭବତି" । ୬୨ ।

ଛନ୍ଦୋଗପରିଶିଷ୍ଟରେ ଉକ୍ତ ହୋଇଅଛି ଯେ, ରଜସ୍ୱଲା ରମଣୀ, ତାଙ୍କ ଓ ଅଶ୍ୱୀ ଗମନ କଲେ, ଯମଜସନ୍ତାନ ଜାତ ହେଲେ, କମ୍ପ

କାକ, କଙ୍କ, ଗୃଧ୍ର, ବକ, ଶ୍ୟେନ, ବନକୁକ୍କୁଟ, ଉଲ, ବନ୍ୟ ରକ୍ତପାଦ କପୋତ ଏମାନଙ୍କ ମଧ୍ୟରୁ କୌଣସି ଏକ ପକ୍ଷୀ ଗୃହରେ ପ୍ରବେଶ କଲେ କିମ୍ବା ଗୃହ ଉପରେ ବିଶ୍ରାମ କଲେ, ଗୃହର ଦ୍ୱାରଦେଶ ଅଣେଦଣ କଲେ ଗୃହ୍ୟସୂତ୍ର ବିଧାନରେ ଅଗ୍ନି ସଂସ୍କାର କରି "ଅଭୂତାୟ ଅଗ୍ନୟେ ସ୍ୱାହା" ଇତ୍ୟାଦି ମନ୍ତ୍ରରେ ପ୍ରତ୍ୟେକ ଦେବତା ଉଦ୍ଦେଶ୍ୟରେ ଘୃତଦ୍ୱାରା ସପ୍ତବାର ଆହୁତି ପ୍ରଦାନ କରିବେ । ପରେ ସ୍ଥାଲୀପାକ ନିୟମ ଅନୁସାରେ ପାୟସଚରୁ କରି ମୂଳଲିଖିତ ପ୍ରତ୍ୟେକ ଦେବତା ନିମିତ୍ତ ଏକ ଏକ ହୋମ କରିବେ । ମହର୍ଷି ଶୌନକ କପୋତ ପରିଚୟରେ କହିଛନ୍ତି ଯେ, କପୋତ ଅରଣ୍ୟବାସୀ,ଶୁକପକ୍ଷିସଦୃଶ, ଚରଣଦ୍ୱୟ ରକ୍ତବର୍ଣ୍ଣ ଏପରି କପୋତ ଯଦି ଗୃହରେ ବା ଗୃହ ନିକଟକୁ ଗମନ କରେ କିମ୍ବା ଗୃହ ଉପରେ ବସେ କିମ୍ବା ଉଇହୁଙ୍କା ଗୃହ ମଧ୍ୟରେ ଜାତ ହେଲେ ଦୋଷ ହୁଏ । କଳ୍ପବୃକ୍ଷିବିଧି ବୋଲନ୍ତେ ଗୃହ୍ୟୋକ୍ତବିଧି, ପ୍ରାୟଶ୍ଚିତ୍ତଳ୍ୟାହୁତି ଛନ୍ଦରେ ଅଦ୍ଭୁତ ଦୋଷଶାନ୍ତି ନିମିତ୍ତ ସପ୍ତଘୃତାହୁତି, "ଅଭୂତାୟ ଅଗ୍ନୟେ ସ୍ୱାହା" ଇତ୍ୟାଦି ମନ୍ତ୍ରଦ୍ୱାରା ସ୍ଥାଲୀପାକ ନିୟମରେ ପାୟସ ଚରୁ ଦ୍ୱାରା ଏହି ସମସ୍ତ ଦେବତାମାନଙ୍କର ହୋମ କରିବେ । ପରେ ଘୃତ ଓ ପାୟସଦ୍ୱାରା ବ୍ରାହ୍ମଣମାନଙ୍କୁ ଭୋଜନ କରାଇ ଗୋଟିଏ ଉତ୍କୃଷ୍ଟ ଗାଈ ଦକ୍ଷିଣାସହ ପ୍ରଦାନ କରିବେ । ୨୧, ୨୨ ।

ବାହସ୍ପତ୍ୟ—

ଶମଯ୍ୟଲ୍ୟା ସପ୍ତାହୋତ୍କର୍ଷାଧିକୃତଂ ନିମିତ୍ତମାଶ୍ରେବ
ଅତବର୍ଷଣୋପବାସବ୍ରତଦୀକ୍ଷାଜପ୍ୟହ୍ୱବନାନ । ୨୩ ।

ବାର୍ହସ୍ପତ୍ୟନାମକ ଗ୍ରନ୍ଥରେ ଲିଖିତ ଅଛି ଯେ, ଭୂକମ୍ପାଦି ଦ୍ୱିବ୍ବାତ ହେବା ପରେ ସାତଦିନ ମଧ୍ୟରେ ଅତି ବୃଷ୍ଟି ହେଲେ, କିମ୍ବା ଉପବାସ,

ବ୍ରତ, ଦୀକ୍ଷା, ଇଷ୍ଟମନ୍ତ୍ରଜପ ଏବଂ ହୋମ କଲେ ଏହି ସମୁଦାୟ ଉତ୍ପାତ-ସୂଚିତ ଦୋଷ ଶୀଘ୍ର ନଷ୍ଟ ହୁଏ । ୧୩ ।

**ମତ୍ସ୍ୟ ପୁରାଣେ** — ବଜ୍ରାଶନିମହୀକମ୍ପସନ୍ଧ୍ୟାନିର୍ଘାତନିଃସ୍ୱନାଃ
ପରିବେଷରଜୋଧୂମରକ୍ତାର୍କାସ୍ତମୟୋଦୟାଃ ॥
ଦ୍ରୁମେଭ୍ୟୋଽଥ ରସସ୍ନେହ ମଧୁପୁଷ୍ପ ଫଲୋଦ୍‌ଗମାଃ ।
ଗୋ-ପକ୍ଷୀମଦବୃଦ୍ଧିଶ୍ଚ ଶିବାୟ ମଧୁମାଧବେ । ୧୪ ।

କେଉଁ ଋତୁରେ କେଉଁ କେଉଁ ଉତ୍ପାତ ହେଲେ ଅଶୁଭ ହୁଏ ନାହିଁ ସେହି ସମ୍ବନ୍ଧେ ମତ୍ସ୍ୟପୁରାଣରେ ଲେଖା ଅଛି ଯେ, ଚୈତ୍ର ଓ ବୈଶାଖ ମାସରେ ବଜ୍ର, ବିଦ୍ୟୁତ୍, ଭୂକମ୍ପ, ସନ୍ଧ୍ୟାକାଳରେ ନିର୍ଘାତ ଶବ୍ଦ, ଛପସୂର୍ଯ୍ୟ, ଧୂଳି କିମ୍ବା ଧୂମଦ୍ୱାରା ଗଗନ ସମାଚ୍ଛନ୍ନ, ଉଦୟ ଓ ଅସ୍ତ ସମୟରେ ରକ୍ତବର୍ଣ୍ଣ ସୂର୍ଯ୍ୟ, ବୃକ୍ଷରୁ ରସ, ସ୍ନେହ, ମଧୁ, ପୁଷ୍ପ ଓ ଫଳର ନିର୍ଗମନ, ଗୋ ଓ ପକ୍ଷୀର ମଦବୃଦ୍ଧି ହେଲେ ଶୁଭ ହୁଏ । ୧୪ ।

ତାରୋଲ୍କାପାତକଲୁଷଂ କପିଲାର୍କେନ୍ଦୁମଣ୍ଡଳଂ ।
ଅନଗ୍ନି ଜ୍ୱଳନଂ ସ୍ଫୋଟଂ ଧୂମରେଣୁସମାକୁଳଂ ॥
ରକ୍ତପଦ୍ମାରୁଣା ସନ୍ଧ୍ୟା ନଭଃ କ୍ଷୁବ୍ଧାର୍ଣ୍ଣବୋପମଂ ।
ସରିତାଂ ଚାମ୍ବୁସଂଶୋଷଂ ଦୃଷ୍ଟ୍ୱା ଗ୍ରୀଷ୍ମେ ଶୁଭଂ ବଦେତ୍ । ୧୫ ।

ଗ୍ରୀଷ୍ମ ଋତୁ ( ଜ୍ୟେଷ୍ଠ ଓ ଆଷାଢ଼ )ରେ ତାରାପତନ, ଉଲ୍କାପାତ, ସୂର୍ଯ୍ୟ ଓ ଚନ୍ଦ୍ର କପିଳବର୍ଣ୍ଣ ଦେଖାଯିବା, ଅଗ୍ନି ବ୍ୟତିରେକରେ ଜଳ ଉଠିବା, ମାଟି ଫାଟିଯିବା, ଧୂମ ଓ ଧୂଳି ପରିବ୍ୟାପ୍ତ ହେବା, ସନ୍ଧ୍ୟାବେଳେ ଆକାଶ ରକ୍ତପଦ୍ମ ପରି ଲାଲ ହେବା, ଆକାଶ ତରଙ୍ଗପୂର୍ଣ୍ଣ ସମୁଦ୍ର ପରି ଦେଖାଯିବା ଓ ଜଳାଶୟାଦିରୁ ଜଳଶୋଷଣ ହେବା ଶୁଭକର ଅଟେ । ୧୫ ।

ଶକ୍ରାୟୁଧପରିବେଷୌ ବିଦ୍ୟୁଚ୍ଛୁଷ୍କବିରୋହଣଂ ।
କମ୍ପୋଦ୍ୱର୍ତ୍ତନବୈକୃତ୍ୟଂ ରସନଂ ଦରଣଂ କ୍ଷିତେଃ ॥
ନଦ୍ୟୁଦପାନସରସାଂ ବୃଷ୍ଟ୍ୟାର୍ଦ୍ଧ୍ୟା ଭବନପ୍ଲବାଃ ।
ପତନଂ ଗୃହଗେହାନାଂ ବର୍ଷାସୁ ନ ଭୟାବହଂ । ୧୭ ।

ଇନ୍ଦ୍ରଧନୁ, ଛୁପସୂର୍ଯ୍ୟ, ବିଦ୍ୟୁତ୍, ଶୁଷ୍କବୃକ୍ଷାଦିର ଅଙ୍କୁରୋଦ୍‌ଗମ, ଭୂକମ୍ପ, ଭୂବିକୃତ, ଭୂମି ଅଭ୍ୟନ୍ତରରେ କୌଣସି ପ୍ରକାର ଶବ୍ଦ, ଭୂମି ବିଦାରଣ, ନଦୀ ଓ ପୁଷ୍କରଣୀର ଜଳବୃଦ୍ଧି ହେତୁରୁ ତୀରଦେଶ ପ୍ଲାବନ, ଗୃହରେ ଜଳୋତ୍ପତ୍ତି, ପର୍ବତ ଓ ଗୃହର ପତନ ବର୍ଷାକାଳରେ ଅଶୁଭ-ଜନକ ନୁହେ । ୧୭ ।

ଦିବ୍ୟସ୍ତ୍ରୀଭୂତଗନ୍ଧର୍ବବିମାନାଦ୍ଭୁତଦର୍ଶନଂ ।
ଗ୍ରହନକ୍ଷତ୍ରତାରାଣାଂ ଦର୍ଶନଞ୍ଚ ଦିବାମ୍ବରେ ।
ଗୀତବାଦିତ୍ରନିର୍ଘୋଷୋ ବନପର୍ବତସାନୁଷୁ ।
ଶସ୍ୟବୃଦ୍ଧି ରସୋତ୍ପତ୍ତିରପାପାଃ ଶରଦି ସ୍ମୃତାଃ । ୧୭ ।

ଦିବ୍ୟ ରମଣୀ, ଭୂତ, ଗନ୍ଧର୍ବ, ବିମାନ ପ୍ରଭୃତି ଅଦ୍ଭୁତ ଦର୍ଶନ, ଦିନରେ ଆକାଶରେ ବୁଧ ଶୁକ୍ରାଦି ଗ୍ରହ ଓ ନକ୍ଷତ୍ର ଦର୍ଶନ, ବନ ଓ ପର୍ବତ ଶିଖରରେ ଗୀତବାଦ୍ୟ ଶବ୍ଦ ଶ୍ରବଣ, ଶସ୍ୟବୃଦ୍ଧି ଓ ରସୋତ୍ପତ୍ତି ଶରତ୍ କାଳରେ ଦୋଷଜନକ ନୁହେ । ୧୭ ।

ଶୀତାନିଳତୁଷାରତ୍ୱଂ ନର୍ଦ୍ଦନଂ ମୃଗପକ୍ଷିଣାଂ ।
ରକ୍ଷୋଯକ୍ଷାଦି ସତ୍ତ୍ୱାନାଂ ଦର୍ଶନଂ ବାଗମାନୁଷୀ ॥
ଦିଶୋ ଧୂମାନ୍ଧକାରଶ୍ଚ ଶନଭଶ୍ଚ ବନପର୍ବତାଃ ।
ଉଚ୍ଚୈଃ ସୂର୍ଯ୍ୟୋଦୟାସ୍ତତ୍ୱଂ ହେମନ୍ତେ ଶୋଭନା ମତାଃ ॥

ଶୀତଳବାୟୁ, ତୁଷାରପାତ, ପଶୁପକ୍ଷିଙ୍କ କଳରବ, ସ୍ୱସ୍ଥ, ଯକ୍ଷ, କନ୍ଧର, ସିଦ୍ଧ ପ୍ରଭୃତି ଜୀବ ଦର୍ଶନ, ଦୈବବାଣୀ, ବନପର୍ବତ ପତଙ୍ଗପୁଞ୍ଜ ଓ ଦିଗସମୁଦାୟ ଧୂମାବୃତବତ୍ ଅନ୍ଧକାରାଚ୍ଛନ୍ନ, ଆକାଶର ଖଣ୍ଡ ସ୍ଥଳରେ ଅର୍ଥାତ୍ ଚକ୍ରବାଳର ଈଷତ୍ ଊର୍ଦ୍ଧ୍ୱଦେଶରେ ସୂର୍ଯ୍ୟର ଉଦୟାସ୍ତ ଦେଖିବା ହେମନ୍ତ କାଳରେ ଶୁଭକର । ୨୮ ।

ହିମପାତାନିଲୋତ୍ପାତବିରୂପାଦ୍ଭୁତ ଦର୍ଶନଂ ।
ଦୃଷ୍ଟାଞ୍ଜନାଭମାକାଶଂ ତାରୋଲ୍କାପାତ ପିଞ୍ଜରମ୍ ॥
ଚିତ୍ରାଗର୍ଭୋଦ୍ଭବାଃ ସ୍ତ୍ରୀଷୁ ଗୋଽଜାଶ୍ୱମୃଗପକ୍ଷିଣାଂ ।
ପତ୍ରାଙ୍କୁରଲତାନାଞ୍ଚ ବିକାରାଃ ଶିଶିରେ ଶୁଭାଃ । ୨୯ ।

ଅତିରକ୍ତ ହିମପତନ, ବାୟୁ ଉତ୍ପାତ, ବିରୂପାକୃତି ଅଦ୍ଭୁତଦର୍ଶନ, ନୀଳାଭଗଗନ ଦର୍ଶନ, ତାରା ଓ ଉଲ୍କାପତନ, ଗୋ, ଛାଗ, ଅଶ୍ୱ, ମୃଗ ପକ୍ଷୀମାନଙ୍କର ସ୍ତ୍ରୀଜାତିଠାରୁ ବିଚିତ୍ର ଶାବକ ଜନ୍ମ, ପତ୍ର ଅଙ୍କୁର ଓ ଲତାର ବିକୃତି, ଶିଶିର ଋତୁରେ ଶୁଭଦାୟକ । ୨୯ ।

କ୍ରୀଡ଼ାନୁରକ୍ତୋ ରକ୍ତମାଂସଲୁବ୍ଧୋ ଖେଦୋ ରୁଜାର୍ତ୍ତଃ ପତତୋ ବିହଙ୍ଗଃ ।
ନାସୌ ଗୃହସ୍ଥସ୍ୟ ବିନାଶହେତୁର୍ଦ୍ଦୋଷଃ ସମୁତ୍ପାଦ୍ୟତ ଆତ୍ମସାଧ୍ୟଃ ॥

ଗୃହେ ପକ୍ଷିବିକାରେଷୁ କୁର୍ଯ୍ୟାଚ୍ଛାମରତର୍ପଣଂ ।
ଦେବାଃ କପୋତା ଇତି ବା ଜପ୍ତବ୍ୟଂ ସପ୍ତଭିର୍ଦ୍ଦ୍ୱିଜୈଃ । ୩୧ ।

ଗାବଶ୍ଚ ଦେୟା ବିବିଧା ଦ୍ୱିଜାନାଂ ସକାଞ୍ଚନା ବସ୍ତ୍ରଯୁଗୋତ୍ତରୀୟାଃ ।
ଏବଂ କୃତେ ପାପମୁପୈତି ଶାନ୍ତିଂ ମୃଗୈର୍ଦ୍ଦ୍ୱିଜୈର୍ବାପି ନିବେଦିତଂ ଯତ୍ ॥

କ୍ରୀଡ଼ା ଅନୁରକ୍ତ, ରକ୍ତ ବା ମାଂସାହାର ଲୁବ୍ଧ, ଅଥବା ରୋଗ-ପୀଡ଼ିତ କୌଣସି ପକ୍ଷୀ ଗୃହରେ ପଡ଼ିଗଲେ ଦୋଷ ହୁଏ ନାହିଁ ।

ଗୃହରେ ପକ୍ଷୀ ସମ୍ବନ୍ଧୀୟ କୌଣସି ଅଦ୍ଭୁତ ହେଲେ ଦେବତାମାନଙ୍କର ତୃପ୍ତି ବିଧାନ କରିବେ ସାତ ଜଣ ବ୍ରାହ୍ମଣଙ୍କ ଦ୍ୱାରା "ଦେବା କପୋତା" ମନ୍ତ୍ର ଜପ କରିବେ। ସ୍ୱର୍ଣ୍ଣ, ବସ୍ତ୍ରଯୁଗଳ ସହ ବ୍ରାହ୍ମଣଙ୍କୁ ଗୋଦାନ ଦେବେ । ଏପରି କଲେ ପଶୁପକ୍ଷୀ ଦ୍ୱାରା ସୂଚିତ ସକଳ ପ୍ରକାର ଦୋଷ ଶାନ୍ତ ହୁଏ । ଅନ୍ୟାନ୍ୟ ଦୋଷ ମଧ୍ୟ ଶାନ୍ତ ହୁଏ । ୩୦. ୩୧. ୩୨.

ଏକୋ ବୃଷସ୍ତ୍ରୟୋ ଗାବଃ ସପ୍ତାଶ୍ୱା ନବ ଦନ୍ତିନଃ ।
ସିଂହ ପ୍ରସୂତିକା ଗାବଃ କଥିତାଃ ସ୍ୱାମିଘାତକାଃ । ୩୩ ।

ଏକ ବୃଷ, ତିନି ଗାଈ, ସାତ ଘୋଡ଼ା, ନ ହାତୀ ଓ ଭାଦ୍ରବ ମାସରେ ପ୍ରସବକାରିଣୀ ଗାଈ ପାଳିଲେ ସତ୍ତ୍ୱାଧିକାରୀର ମୃତ୍ୟୁ ହୁଏ । ୩୩ ।

ଯତ୍ର ଯତ୍ର ଚ ସଂକୀର୍ଣ୍ଣମାତ୍ମାନଂ ମନ୍ୟତେ ଦ୍ୱିଜଃ ।
ତତ୍ର ତତ୍ର ତିଲୈର୍ହୋମୋ ଗାୟତ୍ର୍ୟା ସମୁଦାହୃତଃ ॥
ଗାୟତ୍ର୍ୟା ପ୍ରଯତଃ ଶୁଦ୍ଧଃ ସର୍ବପାପୈଃ ପ୍ରମୁଚ୍ୟତେ ।
ଶାନ୍ତିକାମସ୍ତୁ ଜୁହୁୟାଦ୍ ଗାୟତ୍ରୀମକ୍ଷତୈଃ ଶୁଚିଃ ॥
ହନ୍ତୁକାମସ୍ତୁ ନୃପତେ ଘୃତେନ ଜୁହୁୟାତ୍ ଶୁଚିଃ ।
ସାବିତ୍ର୍ୟା ଶାନ୍ତିହୋମାଂଶ୍ଚ କୁର୍ଯ୍ୟାତ୍ ପର୍ବସୁ ନିତ୍ୟଶଃ ॥
ପ୍ରଣବବ୍ୟାହୃତିଭ୍ୟାଞ୍ଚ ସ୍ୱାହାନ୍ତା ହୋମକର୍ମଣି ।
ପ୍ରତିଲୋମା ପ୍ରୟୋକ୍ତବ୍ୟା ଫଟ୍‌କାରାନ୍ତାଭିଚାରକେ । ୩୪

ଯେ ସ୍ଥଳରେ ବ୍ରାହ୍ମଣଗଣ କୌଣସି ପ୍ରକାର ପାପ ହୋଇଅଛି । ବୋଲି ସନ୍ଦେହ କରିବେ, ସେ ସ୍ଥଳରେ ଗାୟତ୍ରୀଦ୍ୱାରା ତିଳହୋମ କରିବେ । ଏପରି କଲେ ସେମାନେ ସର୍ବପାପ ବିନିର୍ମୁକ୍ତ ହେବେ । ଉତ୍ପାତାଦିସମ୍ଭୂତ ଯେ କୌଣସି ଦୋଷ ଶାନ୍ତିନିମିତ୍ତ ପର୍ବକୁ ତିଥିରେ

ଗାୟତ୍ରୀଦ୍ୱାରା ଯବହୋମ କରିବେ । ହେ ରାଜନ୍ ! ମାରଣ କାର୍ଯ୍ୟରେ ଏହି ଗାୟତ୍ରୀଦ୍ୱାରା ଘୃତ ହୋମ କରିବେ । ଗାୟତ୍ରୀଦ୍ୱାରା ଶାନ୍ତିହୋମ କରିବାକୁ ହେଲେ କୌଣସି ପର୍ବଦିନରେ (ସଂକ୍ରାନ୍ତି, ଅଷ୍ଟମୀ, ଚତୁର୍ଦ୍ଦଶୀ ଅମାବାସ୍ୟା, ପୌର୍ଣ୍ଣମାସୀରେ କରିବେ, ପ୍ରଥମେ ପ୍ରଣବ, ପରେ ବ୍ୟାହୃତି-ତ୍ରୟ ଏବଂ ଶେଷରେ ସ୍ୱାହା ଶବ୍ଦ ଯୋଗ କରି ହୋମ କରିବେ । ଅଭିଚାର କାର୍ଯ୍ୟ ( ମାରଣ, ଉଚ୍ଚାଟନ, ବିଦ୍ୱେଷଣ )ରେ ଗାୟତ୍ରୀକୁ ବିପରୀତ ଭାବରେ ପାଠ କରି ଶେଷରେ ଫଟ୍ ଶବ୍ଦ ଯୋଗ କରିବେ ।୩୪।

ଉନ୍ମତ୍ତାନାଞ୍ଚ ଯା ଗାଥା ଶିଶୂନାଂ ଚେଷ୍ଟିତଂ ଚ ଯତ୍ ।
ସ୍ତ୍ରିୟୋ ଯଚ୍ଚ ପ୍ରଭାଷନ୍ତେ ତସ୍ୟ ନାସ୍ତି ବ୍ୟତିକ୍ରମଃ । ୩୫ ।

ଉନ୍ମତ୍ତର ଗାନ, ଶିଶୁମାନଙ୍କର କାର୍ଯ୍ୟ ଓ ସ୍ତ୍ରୀଲୋକମାନେ ଯାହା ବୋଲନ୍ତି ତାହାର ବ୍ୟତିକ୍ରମ ହୁଏ ନାହିଁ । ୩୫ ।

ପୂର୍ବଂ ଚରତି ଦେବେଷୁ ପଶ୍ଚାଦ୍‌ଗଚ୍ଛତି ମାନୁଷାନ୍ ।
ନାଦେଶିତା ବାଗ୍‌ବଦତି ସତ୍ୟାହ୍ୟେଷା ସରସ୍ୱତୀ । ୩୬ ।

ବାକ୍‌ସ୍ୱରୂପା ସରସ୍ୱତୀ ପ୍ରଥମେ ଦେବତା ନିକଟରେ ଉପସ୍ଥିତ ହୁଅନ୍ତି । ପରେ ଦେବପ୍ରେରିତ ତତ୍ତ୍ୱ ଗ୍ରହଣପୂର୍ବକ ମନୁଷ୍ୟର ହୃଦୟରେ ଅବର୍ତ୍ତିତ ହୁଅନ୍ତି । ସେହି ହେତୁରୁ ଏହି ବାକ୍‌ସ୍ୱରୂପା ସରସ୍ୱତୀ ଚିରଦିନ ସତ୍ୟସ୍ୱରୂପେ ଅବସ୍ଥିତ କରିଅଛନ୍ତି । ୩୬ ।

ସଙ୍କଳିତ ଜ୍ୟୋତିଷସାରରତ୍ନାବଳୀ ସମାପ୍ତା ।



## ଇଂରାଜୀ ପରିଭାଷା ।



Aries ( ଏରସ୍ ) ମେଷ ।

Tawrus ( ଟରସ୍ ) ବୃଷ ।

Gemini ( ଜେମିନାଇ ) ମିଥୁନ ।

Cancer ( କ୍ୟାନ୍‌ସର୍ ) କର୍କ ।

Leo ( ଲଓ ) ସିଂହ ।

irgo ( ଭର୍‌ଗୋ ) କନ୍ୟା ।

Libra ( ଲବ୍ରା ) ତୁଳା ।

Scorpion ( ସ୍କରପିଅନ୍ ) ବୃଶ୍ଚ ।

Sagittarius ( ସ୍ୟାଜିଟେରସ୍ୟାସ ) ଧନୁ ।

Capricorn ( କ୍ୟାପ୍‌ରିକାରନ ) ମକର ।

Aquarius ( ଯ୍ୟାକୋଏରସ ) କୁମ୍ଭ ।

Picees ( ପିସିସ ) ମୀନ ।

Sun ( ସନ ) ସୂର୍ଯ୍ୟ ।

Moon ( ମୁନ ) ଚନ୍ଦ୍ର ।

Mars ( ମାର୍ସ ) ମଙ୍ଗଳ ।

Mercury ( ମେର୍କୁରି ) ବୁଧ ।

Jupiter ( ଜୁପିଟାର ) ବୃହସ୍ପତି ।

Venus ( ଭେନାସ ) ଶୁକ୍ର ।

Saturn ( ସଟାର୍ନ ) ଶନି ।

Ascendingnode ( ଏସେଣ୍ଡିଙ୍ଗନୋଡ଼ ) ରାହୁ ।

Descendingnode (ଡ଼ିସେଣ୍ଡିଙ୍ଗନୋଡ଼) କେତୁ ।

Polestar ( ପୋଲ୍‌ଷ୍ଟାର୍ ) ଧ୍ରୁବ ।

Epuator ବିଷୁବରେଖା ।

Ecliptic କ୍ରାନ୍ତିବୃତ୍ତ ।

Equinoctialpoint କ୍ରାନ୍ତିପାତ ।

Precession of the equinoxes ଅୟନାଂଶ ।

Longitude ଦ୍ରାଘିମା ।

Latitude ଅକ୍ଷାଂଶ ।

Meridian ଯାମ୍ୟୋତ୍ତରବୃତ୍ତ ।

olartruetime ସ୍ପଷ୍ଟସାବନକାଳ ।

Solarmeantime ମଧ୍ୟମସାବନକାଳ ।

iderialtime ନାକ୍ଷତ୍ରକାଳ ।

Horizon କ୍ଷିତିଜରେଖା ।

Sine of Atlitude ଶଙ୍କୁ ।



Printed by V. KAR. The U. S. Press, Cuttack.